# ସରଳ ମହାଭାରତ

## କାଶୀନାଥ ନାୟକ




ଭୁବନେଶ୍ୱର

# ସରଳ ମହାଭାରତ

ଲେଖକ          କାଶୀନାଥ ନାୟକ

ପ୍ରକାଶକ          ଶିକ୍ଷାସନ୍ଧାନ,
ଏ-୧୨, ହାଉସିଂ ବୋର୍ଡ଼ କଲୋନୀ
ବରମୁଣ୍ଡା, ଭୁବନେଶ୍ୱର, - ୭୫୧୦୦୩
ଫୋନ୍ - ୦୬୭୪-୨୫୫୬୧୦୯, ୨୫୫୦୬୫୬
ପ୍ରଥମ ପ୍ରକାଶନ          ଅଗଷ୍ଟ, ୨୦୦୮
ମୁଦ୍ରଣ          ଶିକ୍ଷା ପ୍ରକାଶନୀ
ଏ-୧୨, ହାଉସିଂ ବୋର୍ଡ଼ କଲୋନୀ
ବରମୁଣ୍ଡା, ଭୁବନେଶ୍ୱର, - ୭୫୧୦୦୩
ପ୍ରଚ୍ଛଦ ପଟ          ଅକ୍ଷୟ କୁମାର ବେହେରା
ଆଇ.ଏସ୍.ବି.ଏନ୍ :          ୧୩:୯୭୮-୮୧-୮୭୯୮୨-୪୨-୫
ମୂଲ୍ୟ          ଟ. ୨୦୦/-

---

# SARALA MAHABHARAT

Written by          Kashinath Nayak

Published by          Sikshasandhan
A-12, Housing Board Colony,
Baramunda, Bhubaneswar - 751003
Phone : 0674-2556109, 2550656
First published          August, 2008

Printed at          Siksha Prakashani
A-12, Housing Board Colony,
Baramunda, Bhubaneswar - 751003

Cover page          Akshaya Kumar Behera

I.S.B.N          13:978-81-87982-42-5

Price          Rs. 200/-

# ମୁଖବନ୍ଧ

ମହାଭାରତ ଓ ରାମାୟଣ ଆମର ଦୁଇ ମହାନ୍ ଗ୍ରନ୍ଥ; ଭାରତୀୟ ସଭ୍ୟତା, ସଂସ୍କୃତି ଓ ପରମ୍ପରାର ଦୁଇ ଅବିଚ୍ଛେଦ୍ୟ ଅଙ୍ଗ । ଏ ଦୁଇ ଗ୍ରନ୍ଥରେ ବର୍ଣ୍ଣିତ କାହାଣୀ, ଉପାଖ୍ୟାନ ଓ ସେସବୁଥିରେ ଅନ୍ତର୍ନିହିତ ମୂଲ୍ୟବୋଧ ଏହି ଉପମହାଦେଶରେ ବାସ କରୁଥିବା ଶହେ କୋଟିରୁ ବେଶୀ ଲୋକଙ୍କର ଜୀବନଶୈଳୀରେ ପ୍ରତିଫଳିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଚିନ୍ତା ଓ ଚେତନାକୁ ଗଭୀର ଭାବରେ ପ୍ରଭାବିତ କରେ । ଏହି ମହାକାବ୍ୟ ଦ୍ୱୟର ଚରିତ୍ରମାନଙ୍କ ନାମ ଅନୁସାରେ କୋଟି କୋଟି ଲୋକଙ୍କର ନାମକରଣ କରାଯାଇଛି; ପ୍ରାୟ ପ୍ରତ୍ୟେକ ଗାଁରେ ରାମ, କୃଷ୍ଣ, ଯୁଧିଷ୍ଠିର, ଭୀମ, ଅର୍ଜୁନ, ପାର୍ଥ, ଅଭିମନ୍ୟୁ, ଦୁର୍ଯ୍ୟୋଧନ, ଶାନ୍ତନୁ, ଗଙ୍ଗା, ସତ୍ୟବତୀ ବା ଅମ୍ବିକା ନାଁରେ କେହି ଜଣେ ଲୋକ ମିଳିବେ । ସେହିପରି ହଜାର ହଜାର ଗ୍ରାମ ବା ସହରର ନାମ ଏଥିର ବର୍ଣ୍ଣିତ ସ୍ଥାନ ବା ଚରିତ୍ରର ନାମ ଅନୁସାରେ ନାମିତ ହୋଇଛି, ଯଥା: ରାମଚନ୍ଦ୍ରପୁର, ଦଶରଥପୁର, ଭୀମପୁର, ପାଣ୍ଡବ ନଗର ଇତ୍ୟାଦି । ଭାରତୀୟ ଉପମହାଦେଶରେ ଏପରି ଅନେକ ସ୍ଥାନ ରହିଛି, ଯେଉଁଠାରେ ଏହି ମହାନ୍ ଚରିତ୍ରମାନଙ୍କ ପାଦ ପଡ଼ିଥିଲା ବୋଲି ଲୋକେ ବିଶ୍ୱାସ କରନ୍ତି । ଆମର ଦୈନନ୍ଦିନ ଜୀବନରେ, ବିଭିନ୍ନ ପ୍ରସଙ୍ଗରେ, କାହାକୁ ପ୍ରଶଂସା ବା ନିନ୍ଦା କରିବାକୁ ଯାଇ ଆମେ ଏ ଦୁଇ ଗ୍ରନ୍ଥର ଅବତାରଣା କରିଥାଉ – ଜଣେ ଧାର୍ମିକ ଲୋକକୁ ଯୁଧିଷ୍ଠିର ବୋଲି କହିଥାଉଁ ଆଉ ଜଣେ କପଟୀ ଲୋକକୁ ଶକୁନି ବୋଲି ଅଭିହିତ କରିଥାଉଁ ।

ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ମହାଭାରତ ଲେଖା ହୋଇଥିଲା ବୋଲି କେତେକ ବିଦ୍ୱାନ୍ ମତ ଦିଅନ୍ତି । ଏଥିରେ ବର୍ଣ୍ଣିତ ଘଟଣାବଳୀ ତା'ଠାରୁ ଆହୁରି ପୁରୁଣା । ଏପରି ହଜାର ହଜାର ବର୍ଷ ତଳର ଘଟଣା ଭାରତୀୟ ଜନମାନସରେ ଆଜି ବି ଜୀବନ୍ତ ରହିଛି – ଏଥିରୁ ଏହାର ଲୋକପ୍ରିୟତା ପ୍ରମାଣିତ ହୁଏ । ଏହା କେବଳ ରାଜା, ରାଣୀ, ରାଜକୁମାର, ମୁନି ଋଷି, ଦେବତା ଓ ରାକ୍ଷସମାନଙ୍କର କାହାଣୀ ମଧ୍ୟରେ ସୀମିତ ନରହି ମନୁଷ୍ୟର ଧର୍ମ, ଅର୍ଥ, କାମ ଓ ମୋକ୍ଷ ପ୍ରାପ୍ତିର ମାର୍ଗ ବୋଲି ବର୍ଣ୍ଣିତ ହୋଇଛି । ବ୍ୟାସଦେବଙ୍କର ମହାଭାରତ ଅନୁସରଣରେ ପ୍ରାୟ ପ୍ରତ୍ୟେକ ଭାରତୀୟ ଭାଷାରେ ମହାଭାରତ ରଚିତ ହୋଇ ଆଦୃତ ହୋଇଛି । ଦୂରଦର୍ଶନରେ ପ୍ରସାରିତ ହିନ୍ଦୀ ଟେଲିଭିଜନ୍ ଧାରାବାହିକ 'ମହାଭାରତ'ର ଦର୍ଶକ ଏତେ ଅଧିକ ଥିଲେ ଯେ ତାହା ଗିନିସ୍ ବୁକ୍ ଅଫ୍ ୱାର୍ଲଡ ରେକର୍ଡ୍ସରେ ସ୍ଥାନ ପାଇଥିଲା । ବିବିସି ଦ୍ୱାରା ବ୍ରିଟେନ୍‌ରେ ପ୍ରସାରିତ ଏହି ଧାରାବାହିକର ଦର୍ଶକ ସଂଖ୍ୟା ପ୍ରାୟ ପଚିଶ ଲକ୍ଷ ଥିଲା ବୋଲି ଏକ ଆକଳନରୁ ଜଣାଯାଏ ।

ମହାଭାରତ କାହାଣୀ ଅନୁସରଣରେ କନ୍ନଡ଼ ଭାଷାରେ ଏସ୍.ଏଲ୍.ଭିରପ୍ପାଙ୍କର 'ପର୍ବ' ଉପନ୍ୟାସ ଓ ଓଡ଼ିଆ ଭାଷାରେ ପ୍ରତିଭା ରାୟଙ୍କର 'ଯାଜ୍ଞସେନୀ' ଉପନ୍ୟାସ ରଚିତ । ଏହି ଦୁଇ ଉପନ୍ୟାସରେ ନୂତନ ଦୃଷ୍ଟିକୋଣରୁ ମହାଭାରତ କାହାଣୀ ତଥା ଚରିତ୍ର ମାନଙ୍କର ଅବତାରଣା କରାଯାଇଛି । ଇଂରାଜୀରେ ଉଇଲିଅମ୍ ବକ୍‌ଙ୍କର 'ମହାଭାରତ' ଏବଂ ଏଲିଜାବେଥ୍ ସିଗର୍‌ଙ୍କ 'ଫାଇଭ୍ ସନସ୍ ଅଫ୍ କିଙ୍ଗ୍ ପଣ୍ଡୁ' ମଧ୍ୟ ମହାଭାରତକୁ ଆଧାର କରି ରଚିତ ହୋଇଛି । ଶଶୀ ଥାରୁର୍‌ଙ୍କର 'ଦି ଗ୍ରେଟ୍ ଇଣ୍ଡିଆନ୍ ନଭେଲ୍'ରେ ସ୍ୱାଧୀନତା ପରବର୍ତ୍ତୀ ବିଂଶ ଶତାବ୍ଦୀର ଭାରତୀୟ ଘଟଣାବଳୀକୁ ମହାଭାରତର ଘଟଣାବଳୀ ଭାବରେ ପରିବେଷଣ କରାଯାଇଛି । ଶ୍ୟାମ ବେନେଗାଲଙ୍କ ଚଳଚ୍ଚିତ୍ର 'କାଳଯୁଗ' (୧୯୮୧) ମଧ୍ୟ ମହାଭାରତର ଏକ ନୂତନ ବ୍ୟାଖ୍ୟା ।

ବିଧିର ବିଡ଼ମ୍ବନା ଯେ ଭାରତୀୟ ସମାଜ ଉପରେ, ବିଶେଷକରି ଭାରତୀୟ ଯୁବ ସମାଜ ଉପରେ ଏହିପରି ଲୋକପ୍ରିୟ ଗ୍ରନ୍ଥର ପ୍ରଭାବ କମିବାରେ ଲାଗିଛି । ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଓ ଜଗତୀକରଣର ପ୍ରଭାବରେ ଆମର ସାଂସ୍କୃତିକ ସ୍ୱତନ୍ତ୍ରତା ଲୋପପାଇବାକୁ ବସିଲାଣି । ଆମର ଯୁବପୀଢ଼ି ତଥା କିଶୋର କିଶୋରୀମାନେ ନିଜର ଗୌରବୀୟ ପରମ୍ପରା ସହିତ ସୁପରିଚିତ ନୁହନ୍ତି । ସଂସ୍କୃତରେ ମୂଳ ମହାଭାରତ କିଏ ରଚନା କରିଛନ୍ତି, ଭୀଷ୍ମଙ୍କର ପିତାଙ୍କ ନାମ କ'ଣ, କୃପାଚାର୍ଯ୍ୟ କିଏ, ଦୁର୍ଯ୍ୟୋଧନଙ୍କର ଭଉଣୀଙ୍କର ନାମ କ'ଣ, ବା ଉତ୍ତରା କିଏ ହୁଏତ ଅନେକ ଯୁବକ ଯୁବତୀ ଏସବୁ ପ୍ରଶ୍ନର ସଠିକ ଉତ୍ତର ଦେଇପାରିବେ ନାହିଁ । ମହାଭାରତ ପଢ଼ିବା ପାଇଁ ଆମର ଧୈର୍ଯ୍ୟ ବା ସମୟ ନାହିଁ । ଏହି ପରିପ୍ରେକ୍ଷୀରେ ମହାଭାରତର ବିଷୟବସ୍ତୁ ସଂକ୍ଷିପ୍ତରେ ସରଳ ଭାଷାରେ ଓ ଗଦ୍ୟ ଆକାରରେ ରଚିତ ହେବା ଯେ ଆବଶ୍ୟକ – ଏଥିରେ ସନ୍ଦେହ ନାହିଁ । ଶ୍ରୀ କାଶୀନାଥ ନାୟକଙ୍କର ଏହି ପୁସ୍ତକଟି ସେ ଆବଶ୍ୟକତା ଅନେକ ପରିମାଣରେ ପୂରଣ କରିଛି ।

ଶ୍ରୀ ନାୟକ ଦୀର୍ଘଦିନ ଧରି ଶିକ୍ଷକତା କରିଛନ୍ତି । ଶିକ୍ଷକ ଭାବରେ ଅନେକ କୋମଳମତି ବାଳକ ବାଳିକାଙ୍କର ଜୀବନକୁ ଗଢ଼ିଛନ୍ତି; ଭଲମନ୍ଦ, ଉଚିତ୍ ଅନୁଚିତ୍ ସମ୍ପର୍କରେ ସେମାନଙ୍କ ମନରେ ଧାରଣା ସୃଷ୍ଟି କରିଛନ୍ତି । ତାଙ୍କର ଏହି ପୁସ୍ତକଟି ପାଠକ ପାଠିକାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା । ଏହା ଯୁବପୀଢ଼ିକୁ ମହାନ୍ ଭାରତୀୟ ପରମ୍ପରା ସହିତ ପରିଚିତ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କ ଜୀବନକୁ ସଠିକ୍ ମାର୍ଗରେ ପରିଚାଳିତ କରିବା ନିମନ୍ତେ ପ୍ରେରଣା ଦେବ ଏଥିରେ ସନ୍ଦେହ ନାହିଁ ।

*ଅରୁଣ କୁମାର ମହାନ୍ତି*

# ପୂର୍ବାଭାଷ

ରାମାୟଣ ରଚନାର ଅନେକ ବର୍ଷ ପରେ ମହାଭାରତ ଲେଖା ହୋଇଥିଲା । ରାମାୟଣ ପରି ମହାଭାରତ ଏକ ଅମୂଲ୍ୟ ଗ୍ରନ୍ଥ । ସବୁ ସ୍ଥାନରେ ସବୁ ସମୟରେ ଧର୍ମ, ସତ୍ୟ ଓ ନ୍ୟାୟର ବିଜୟ-ଅସତ୍ୟ, ଅଧର୍ମ ଓ ଅନ୍ୟାୟର ବିଷମ ପରିଣତି ଏହାର ପ୍ରତି ଅଧ୍ୟାୟରେ ଭରି ରହିଛି । ଏହା ନୀତି ଶିକ୍ଷାମୂଳକ ଏକ ମହାନ ଗ୍ରନ୍ଥ । ପୃଥିବୀର ଅନ୍ୟ କୌଣସି ଭାଷାରେ ଏତେ ବଡ଼ ବିରାଟ ଗ୍ରନ୍ଥ ନାହିଁ ।

ମହାଭାରତ ଅଠର ଖଣ୍ଡରେ ବିଭକ୍ତ । ପ୍ରତି ଖଣ୍ଡକୁ ପର୍ବ କୁହାଯାଏ । ସମୁଦାୟ ମହାଭାରତ ଗ୍ରନ୍ଥରେ ମୋଟ ଏକ ଲକ୍ଷ ଶ୍ଳୋକ ଥିଲା ବୋଲି କୁହାଯାଉଥିଲା । ପୁନାରୁ ପ୍ରକାଶିତ ସଂଶୋଧିତ ସଂସ୍କରଣରୁ ଜଣାଯାଏ ଯେ ମହାଭାରତରେ ସର୍ବମୋଟ ୧୧୪୮ ଅଧ୍ୟାୟ ଓ ୮୩୧୪୬ ଗୋଟି ଶ୍ଳୋକ ରହିଛି । ଏଥିରେ ଥିବା କାହାଣୀମାନ ମାନବ ଚରିତ୍ରର ଧର୍ମ, ନ୍ୟାୟ, ସତ୍ୟ, ପ୍ରେମ, ଉଦାରତା, ଦାନ, ତ୍ୟାଗ, ପରୋପକାର ଓ ଲୋକ ସଂପର୍କର ସୁନ୍ଦର ବର୍ଣ୍ଣନା ସହିତ ଲୋଭ, ମୋହ, ସ୍ୱାର୍ଥ, କୁଟିଳତା, ଘୃଣା ଓ ହିଂସା ଆଦିର ବିଷମୟ ପରିଣତି ସଂପର୍କରେ ବହୁ ମୂଲ୍ୟବାନ ଉପଦେଶ ଓ ଚେତାବନୀ ଦିଆଯାଇଛି ।

ମହର୍ଷି ବ୍ୟାସଦେବ ଏହି ଅମୂଲ୍ୟ ଗ୍ରନ୍ଥ ମାନବ ସମାଜକୁ ଦାନକରି ଅମର ହୋଇଛନ୍ତି । ବ୍ୟାସ ମହର୍ଷି ପରାଶରଙ୍କ ପୁତ୍ର । ତାଙ୍କ ମାତାଙ୍କ ନାମ ସତ୍ୟବତୀ । ଦେହର ରଙ୍ଗ କଳା ଥିବାରୁ ତାଙ୍କର ନାମ କୃଷ୍ଣ ରଖା ଯାଇଥିଲା । ଯମୁନା ନଦୀରେ ଥିବା ଏକ ଦ୍ୱୀପରେ ଜନ୍ମ ହୋଇଥିବାରୁ ତାଙ୍କୁ ଦ୍ୱୈପାୟନ ମଧ୍ୟ କୁହାଯାଉଥିଲା ।

ହିମାଳୟର ବ୍ୟାସକୂଟ ପର୍ବତ ନିକଟ ବଦ୍ରିନାଥ ପାଖରେ ବହି ଯାଉଥିବା ଅଳକାନନ୍ଦା ନଦୀ କୂଳରେ ବ୍ୟାସଦେବ ଆଶ୍ରମ କରିଥିଲେ । ରଚନା ସମୟରେ ଏହି ମହାନ ଗ୍ରନ୍ଥର ନାମ ଥିଲା ଜୟ ଇତିହାସ । ପରେ ଏହା ମହାଭାରତ ନାମରେ ଚାରିଆଡ଼େ ଜଣାଶୁଣା ହୋଇଗଲା ।

ହଜାର ହଜାର ବର୍ଷ ତଳେ ଲେଖାଯାଇଥିବା ଏହି ପବିତ୍ର ଗ୍ରନ୍ଥ ସମଗ୍ର ମାନବ ଜାତିର ଆଦର୍ଶ ହୋଇ ରହିଛି । କାଳେ କାଳେ ଏହା ମାନବ ସମାଜକୁ ନ୍ୟାୟ, ନୀତି, ଧର୍ମ ଓ ତ୍ୟାଗ ବିଷୟରେ ଶିକ୍ଷା ଦେଇଆସୁଥିବ ।

*ଲେଖକ*

# ଆଦିପର୍ବ

## ପୁରୁବଂଶ ଓ କୁରୁବଂଶର ଇତିହାସ

ହଜାର ହଜାର ବର୍ଷ ତଳେ ଆମ ଦେଶରେ ନହୁଷ ନାମରେ ଜଣେ ବିଖ୍ୟାତ ରାଜା ରାଜପଣ କରୁଥିଲେ । ତାଙ୍କ ପରେ ତାଙ୍କ ପୁଅ ଯଯାତି ରାଜଗାଦିରେ ବସିଲେ । ସେ ବୁଦ୍ଧି, ଜ୍ଞାନ ଓ ବୀରତ୍ୱରେ ତାଙ୍କ ପୂର୍ବ ପୁରୁଷମାନଙ୍କୁ ବଳି ପଡ଼ିଲେ । ତାଙ୍କର ଶର୍ମିଷ୍ଠା ଓ ଦେବଯାନୀ ନାମରେ ଦୁଇ ରାଣୀ ଥିଲେ । ଶର୍ମିଷ୍ଠା ଅସୁର ରାଜା ବୃଷପର୍ବାଙ୍କ ଝିଅ ଓ ଦେବଯାନୀ ଅସୁର ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଝିଅ । ଶର୍ମିଷ୍ଠାଙ୍କର ଦ୍ରାହ୍ଯୁ, ଅଦ୍ରୁ ଓ ପୁରୁ ନାମରେ ତିନୋଟି ଓ ଦେବଯାନୀଙ୍କର ଯଦୁ ଏବଂ ତୁର୍ବସୁ ନାମରେ ଦୁଇ ପୁଅ ଥିଲେ । ଯଦୁ ରାଜା ହେବା ପରେ ସେହି ବଂଶର ନାମ ଯଦୁବଂଶ ରଖାଗଲା । ଯଦୁଙ୍କ ପରେ ଏହି ବଂଶରେ ଅନେକ ରାଜା ରାଜତ୍ୱ କରିଥିଲେ । ଭଗବାନ ଶ୍ରୀକୃଷ୍ଣ ଏହି ଯଦୁ ବଂଶରେ ଜନ୍ମଗ୍ରହଣ କରିଥିଲେ ।

ଶର୍ମିଷ୍ଠାଙ୍କ ସବା ସାନ ପୁଅ ପୁରୁ ଅତ୍ୟନ୍ତ ବୁଦ୍ଧିମାନ, ପରାକ୍ରମୀ ଓ ପିତୃଭକ୍ତ ଥିବାରୁ ମହାରାଜ ଯଯାତି ପୁରୁଙ୍କୁ ନିଜର ରାଜଗାଦି ଦେଇଥିଲେ । ପୁରୁ ନିଜର ନାମ ଅନୁସାରେ ତାଙ୍କ ବଂଶରେ ନାମ ପୁରୁବଂଶ ରଖିଥିଲେ । ପୁରୁବଂଶ ପରେ ଅନେକ ରାଜା ରାଜତ୍ୱ କଲେ । ଏହି ବଂଶର ରାଜା ଇଲିନଙ୍କ ପୁଅ ମହାରାଜ ଦୁଷ୍ମନ୍ତ । ସେ କଣ୍ୱଋଷିଙ୍କ ପାଳିତା କନ୍ୟା ଶକୁନ୍ତଳାଙ୍କୁ ବିବାହ କରିଥିଲେ । ଦୁଷ୍ମନ୍ତଙ୍କ ପୁତ୍ର ଭରତ ଜଣେ ପ୍ରତାପୀ ରାଜା ଥିଲେ । କୁହାଯାଏ ଭରତଙ୍କ ନାମ ଅନୁସାରେ ଆମ ଦେଶର ନାମ ଭାରତ ହୋଇଛି ।

ନହୁଷ ଓ ଯଯାତିଙ୍କଠାରୁ ଆରମ୍ଭ କରି ଭରତଙ୍କ ପର୍ଯ୍ୟନ୍ତ ସମସ୍ତ ରାଜା ଖାଣ୍ଡବ ପ୍ରସ୍ଥକୁ ସେମାନଙ୍କର ରାଜଧାନୀ କରିଥିଲେ । ପରେ ଏଠାରେ ମହାରାଜା ଯୁଧିଷ୍ଠିର ନିଜର ରାଜଧାନୀ ସ୍ଥାପନ କରି ଏହାର ନାମ ଇନ୍ଦ୍ରପ୍ରସ୍ଥ ରଖିଥିଲେ ।

ଭରତଙ୍କ ବଂଶଧରମାନେ ଭରତବଂଶ ନାମରେ ପରିଚିତ ହେଲେ । ଭରତଙ୍କ ପୁତ୍ର ଭୁମନ୍ୟୁ । ଭୁମନ୍ୟୁଙ୍କ ପୁତ୍ର ସୁହୋତ୍ର । ସୁହୋତ୍ରଙ୍କ ପୁତ୍ର ହସ୍ତୀନ୍ । ରାଜା ହସ୍ତୀନ୍ ଖାଣ୍ଡବ ପ୍ରସ୍ଥଠାରୁ କିଛି ଦୂରରେ ଏକ ନୂଆ ରାଜଧାନୀ ସ୍ଥାପନ କରି ତାହାର ନାମ ହସ୍ତିନାପୁର ରଖିଲେ । ହସ୍ତିନାପୁରରେ ଆଉ ଦୁଇ ଜଣ ରାଜତ୍ୱ କରିବା ପରେ ସମ୍ବରଣ ନାମରେ ଜଣେ ବିଖ୍ୟାତ ରାଜା ରାଜତ୍ୱ କରିଥିଲେ । ସେ ସୂର୍ଯ୍ୟଙ୍କ କନ୍ୟା ତପତିଙ୍କୁ ବିବାହ କରିଥିଲେ । ସମ୍ବରଣଙ୍କ ପୁଅ କୁରୁ । କୁରୁ ପିତାଙ୍କଠାରୁ ଅଧିକ କ୍ଷମତାଶାଳୀ ହୋଇ ରାଜଚକ୍ରବର୍ତ୍ତୀ ହୋଇଥିଲେ । ତାଙ୍କ ପରଠାରୁ ଯେଉଁମାନେ ହସ୍ତିନା ରାଜଗାଦିରେ ବସିଲେ ସେମାନଙ୍କୁ କୁରୁବଂଶୀ ବା କୌରବ କୁହାଗଲା । ରାଜା କୁରୁ ଯେଉଁ ସ୍ଥାନକୁ ଯଜ୍ଞ ପାଇଁ ବାଛିଥିଲେ ତାହାର ନାମ ହେଲା କୁରୁକ୍ଷେତ୍ର ।

## କୁରୁବଂଶ

ବିଖ୍ୟାତ କୁରୁବଂଶରେ ଜଣକ ପରେ ଜଣେ ରାଜା ରାଜତ୍ୱ କରି ଯାଇଛନ୍ତି । ଏହି ବଂଶର ରାଜା ପ୍ରତିପଙ୍କ ପୁତ୍ର ଶାନ୍ତନୁ ବିରାଜୁଥିଲେ । ପ୍ରଜାମାନେ ଅତି ଆନନ୍ଦରେ ଦିନ କାଟୁଥିଲେ ।

ଦିନେ ଯୁବକ ରାଜା ଶାନ୍ତନୁ ଗଙ୍ଗା କୂଳରେ ବୁଲୁଥିଲେ । ଅଳ୍ପ ଦୂରରେ ଜଣେ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ଏକୁଟିଆ ଠିଆ ହୋଇଥିବାର ଦେଖି ଶାନ୍ତନୁ ତାଙ୍କ ନିକଟକୁ ଗଲେ । ସେ ଯୁବତୀଙ୍କ ରୂପରେ ଏପରି ପାଗଳ ହୋଇଗଲେ ଯେ ତାଙ୍କୁ କିଛି ନପଚାରି କହିଲେ, "ସୁନ୍ଦରୀ, ମୁଁ ତୁମ ପରି ରୂପବତୀ ସ୍ତ୍ରୀ କେବେ ହେଲେ ଦେଖିନାହିଁ । ତୁମକୁ ଦେଖିବାଠାରୁ ମୋ ମନ ଚଞ୍ଚଳ ହୋଇ ଉଠୁଛି । ତୁମେ ଯେ କେହି ହୁଅନା କାହିଁକି, ମୁଁ ତୁମକୁ ହସ୍ତିନାର ପାଟରାଣୀ କରିନେବି ।"

ଶାନ୍ତନୁଙ୍କ କଥା ଶୁଣି ଯୁବତୀ ଜଣକ ଅଳ୍ପ ହସି କହିଲେ, "ମହାରାଜ, ଦେଖୁଛି, ଆପଣ ମୋତେ ସ୍ତ୍ରୀ ଭାବରେ ପାଇବା ପାଇଁ ଖୁବ୍ ଆଗ୍ରହ ପ୍ରକାଶ କରୁଛନ୍ତି । ମୁଁ ମଧ୍ୟ ଆପଣଙ୍କ କଥାରେ ରାଜି ହେବି ଯଦି ଆପଣ ମୋ ସର୍ତ୍ତ ଗ୍ରହଣ କରନ୍ତି ।"

ଶାନ୍ତନୁ ଭଲମନ୍ଦ ବା ଆଗପଛ ବିଚାର ନକରି କହିଲେ, "ସୁନ୍ଦରୀ, ତୁମ ସର୍ତ୍ତ ଯେତେ କଠୋର ହେଲେ ମଧ୍ୟ ମୁଁ ତାହା ନିଶ୍ଚୟ ପାଳନ କରିବି ।"

ଯୁବତୀ ଜଣକ କହିଲେ, "ତେବେ ଶୁଣନ୍ତୁ; ଭଲ ହେଉ ବା ମନ୍ଦ ହେଉ ମୁଁ ଯେଉଁ କାମ କରିବି, ତହିଁରେ ଆପଣ ମୋତେ ବାଧା ଦେବେ ନାହିଁ । କୌଣସି ଦିନ ମୋତେ କଟୁକଥା କହିବେ ନାହିଁ । ଯଦି କେବେ କୌଣସି କାରଣରୁ ଆପଣ ଏହି ନିୟମ ଭଙ୍ଗ କରିବେ , ତେବେ ମୁଁ ସେହିଦିନ ସେହି ମୁହୂର୍ତ୍ତରୁ ଆପଣଙ୍କୁ ଛାଡ଼ି ଚାଲିଯିବି ।"

ଶାନ୍ତନୁ ଏଥିରେ ରାଜି ହୋଇ ସେହି ଅପୂର୍ବ ସୁନ୍ଦରୀ ଯୁବତୀଙ୍କୁ ବିବାହ କଲେ । ରାଜା ଓ ରାଣୀ ଅତି ଆନନ୍ଦରେ ଦିନ କାଟିବାରେ ଲାଗିଥାନ୍ତି । କିଛି ଦିନ ପରେ ରାଣୀଙ୍କର ଉତ୍ତମ ସୁନ୍ଦର ପୁଅଟିଏ ଜନ୍ମ ହେଲା । ଆଶ୍ଚର୍ଯ୍ୟର କଥା– ଜନ୍ମ ହେବା ମାତ୍ରେ ରାଣୀ ନିଜ ହାତରେ ତାକୁ ଗଙ୍ଗା ସ୍ରୋତରେ ଫିଙ୍ଗି ଦେଇ ଆସିଲେ । ଏହି ପରି ଭାବରେ ଗୋଟିକ ପରେ ଗୋଟିଏ କରି ସାତ ଗୋଟି ରାଜପୁତ୍ର ଜନ୍ମ ଦେଇ ରାଣୀ ଗଙ୍ଗାକୁ ଫିଙ୍ଗିଦେଇ ଆସିଲେ । ରାଣୀଙ୍କର ଏ ରାକ୍ଷସୀ କାର୍ଯ୍ୟ ଶାନ୍ତନୁଙ୍କୁ ଖୁବ୍ ବାଧୁଥିଲା । ସେ ମନେ ମନେ ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଥିଲେ; ମାତ୍ର କିଛି କହିଲେ ବା ବାଧାଦେଲେ ସୁନ୍ଦରୀ ରାଣୀ ତାଙ୍କୁ ଛାଡ଼ି ଚାଲିଯିବେ–ଏହି ଭୟରେ ସେ ସବୁ ସହି ଯାଉଥିଲେ ।

କିଛି ଦିନ ପରେ ଅଷ୍ଟମ ସନ୍ତାନଟି ଜନ୍ମହେଲା । ସବୁଥର ପରି ରାଣୀ ପୁଅଟିକୁ ଧରି ଗଙ୍ଗା ନଦୀରେ ଫିଙ୍ଗି ଦେବା ପାଇଁ ବାହାରିଲେ । ଏକଥା ଦେଖି ଶାନ୍ତନୁ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ଦେହ ରାଗରେ ଥରିବାକୁ ଲାଗିଲା । ସେ ରାଣୀଙ୍କୁ ବାଧା ଦେଇ କହିଲେ, "ଠିଆ ହୁଅ, ଆଉ ପାଦେ ହେଲେ ଆଗକୁ ଯାଅନାହିଁ । ତୁମେ କିଏ ? ନିଜର ପୁଅମାନଙ୍କୁ ଏପରି ହତ୍ୟା କରୁଛ କାହିଁକି ? ତୁମେ ମାଆ ନା ରାକ୍ଷସୀ ? ଅତି ଶୀଘ୍ର ତୁମର ପ୍ରକୃତ ପରିଚୟ ଦିଅ ।"

ରାଣୀ କହିଲେ, "ମହାରାଜ, ଆପଣ ପ୍ରତିଜ୍ଞା ଭଙ୍ଗ କରିଛନ୍ତି । ମୋ ପ୍ରତି ଆପଣଙ୍କର ସେ ପୂର୍ବ ସ୍ନେହ ଆଉ ନାହିଁ । ବର୍ତ୍ତମାନ ପୁତ୍ର ସ୍ନେହ ଆପଣଙ୍କୁ ପାଗଳ କରିଛି । ମୁଁ ଆଉ ଦଣ୍ଡେ ହେଲେ ଏ ରାଜପୁରୀରେ ରହିବି ନାହିଁ । ଏବେ ମୋର ପରିଚୟ ଓ ମାଆ ହୋଇ ସନ୍ତାନମାନଙ୍କୁ ହତ୍ୟା କରିବାର କାରଣ ଜଣାଇ ଆପଣଙ୍କଠାରୁ ବିଦାୟ ଗ୍ରହଣ କରିବି ।"

ରାଣୀ କହିଲେ, "ମୁଁ ସାଧାରଣ ମାନବୀ ନୁହେଁ, ସ୍ୱୟଂ ଗଙ୍ଗା ଦେବୀ । ମାନବୀ ରୂପରେ ଆପଣଙ୍କର ସ୍ତ୍ରୀ ହୋଇଥିଲି । ଏହାର କାରଣ ଶୁଣନ୍ତୁ, 'ସ୍ୱର୍ଗରେ ଆଠ ଜଣ ଦେବତା (ଅଷ୍ଟବସୁ) ମହର୍ଷି ବଶିଷ୍ଠଙ୍କଠାରୁ ଅଭିଶାପ ପାଇଥିଲେ । ମଣିଷ ରୂପରେ ଜନ୍ମ ହେଲେ ସେମାନେ ଶାପମୁକ୍ତ ହେବେ ବୋଲି ବଶିଷ୍ଠ ସେମାନଙ୍କୁ କହିଥିଲେ । ସେମାନେ ମୋତେ ମାଆ ରୂପେ ପାଇବା ପାଇଁ ପ୍ରାର୍ଥନା କରିବାରୁ ମୁଁ ମାଆ ହୋଇ ସେମାନଙ୍କୁ ମୁକ୍ତି ଦେଇଛି । ଅଷ୍ଟମ ସନ୍ତାନଟି ପାଇଁ ଆପଣ ମୋତେ ବାଧା ଦେଲେ । ଏବେ ମୁଁ ତାଙ୍କୁ ସଙ୍ଗରେ ନେଇ ଯାଉଛି । ଉପଯୁକ୍ତ ଶିକ୍ଷା ଦେବା ପରେ ଆପଣଙ୍କୁ ଦେଇଯିବି ।" ଏତିକି କହି ଗଙ୍ଗା ଦେବୀ ପିଲାଟି ସହିତ ଅଦୃଶ୍ୟ ହୋଇଗଲେ ।



ଶାନ୍ତନୁ ଓ ଗଙ୍ଗାଦେବୀ

## ଅଷ୍ଟବସୁଙ୍କ ଚରିତ

ବସୁମାନେ ସ୍ୱର୍ଗର ଦେବତା । ଥରେ ଅପ, ଧ୍ରୁବ, ସୋମ, ଅନଳ, ଅନିଳ, ଧର, ପ୍ରତ୍ୟୁଷ ଓ ପ୍ରଭାସ ଆଦି ଅଷ୍ଟବସୁ ସେମାନଙ୍କ ସ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ମର୍ତ୍ତ୍ୟର ଏକ ପାହାଡ଼ିଆ ଅଞ୍ଚଳକୁ ବୁଲି ଆସିଥିଲେ । ସେଠାରେ ମହର୍ଷି ବଶିଷ୍ଠଙ୍କର ଆଶ୍ରମ ଥିଲା । ଏଣେତେଣେ ବୁଲୁବୁଲୁ ଜଣେ ବସୁ ବଶିଷ୍ଠଙ୍କ ଗାଈ ନନ୍ଦିନୀକୁ ଚରୁଥିବାର ଦେଖିଲେ । ନନ୍ଦିନୀଙ୍କ ସୁନ୍ଦର ରୂପ ଦେଖି ସେ ନିଜେ ମୁଗ୍ଧ ହୋଇଗଲେ ଓ ସଙ୍ଗରେ ଥିବା ସ୍ତ୍ରୀ ଲୋକମାନଙ୍କୁ ମଧ୍ୟ ଦେଖାଇଲେ । ସମସ୍ତେ ନନ୍ଦିନୀଙ୍କର ଭାରି ପ୍ରଶଂସା କଲେ । ଜଣେ ସ୍ତ୍ରୀ ଲୋକ ତାଙ୍କ ସ୍ୱାମୀଙ୍କୁ କହିଲେ,- "ମୁଁ ନିଶ୍ଚୟ ଏ ଗାଈଟି ସଙ୍ଗରେ ନେବି ।"

ସ୍ୱାମୀ କହିଲେ, "ସ୍ୱର୍ଗରେ ଗାଈ ଆମର କୌଣସି କାମରେ ଆସିବ ନାହିଁ । ବଶିଷ୍ଠ ଋଷିଙ୍କ ଗାଈକୁ ନେଇଯାଇ ଆମେ ତାଙ୍କୁ ଅଯଥା ବିରକ୍ତ କରିବା କାହିଁକି ?"

ସ୍ତ୍ରୀ କହିଲେ, "ମୁଁ କିଛି ଶୁଣିବି ନାହିଁ । ଗାଈଟି ମୋର ନିତାନ୍ତ ଦରକାର । ମର୍ତ୍ତ୍ୟରେ ମୋର ଜଣେ ବାନ୍ଧବୀ ଅଛନ୍ତି । ମୁଁ ତାଙ୍କୁ ଏ ଗାଈଟି ଉପହାର ଦେଲେ ସେ ଭାରି ଖୁସି ହେବେ । ଯେପରି ହେଉ ତୁମେ ଏ ଗାଈଟିକୁ ଆଣି ମୋତେ ଦିଅ ।"

ସ୍ତ୍ରୀଙ୍କ କଥା ଭାଙ୍ଗି ନପାରି ବସୁ ଜଣକ ଅନ୍ୟ ଭାଇମାନଙ୍କ ସହିତ ମିଶି ଗାଈ ଓ ବାଛୁରୀଟିକୁ ନେଇ ଚାଲିଗଲେ ।

ବଶିଷ୍ଠ ଆଶ୍ରମକୁ ଫେରି ନନ୍ଦିନୀ ଓ ବାଛୁରୀଟିକୁ ନ ଦେଖି ଚିନ୍ତିତ ହୋଇ ପଡ଼ିଲେ । ଧ୍ୟାନ ବଳରେ ସମସ୍ତ କଥା ଜାଣିବା ପରେ ତାଙ୍କ ରାଗର ସୀମା ରହିଲା ନାହିଁ । ସେ କହିଲେ, "ଯେଉଁମାନେ ଏପରି ଅନ୍ୟାୟ କାର୍ଯ୍ୟ କରିଛନ୍ତି, ସ୍ୱର୍ଗପରି ପବିତ୍ର ସ୍ଥାନରେ ସେମାନଙ୍କର ଆଉ ସ୍ଥାନ ନାହିଁ । ମୁଁ ଅଭିଶାପ ଦେଉଛି, ସେମାନେ ମର୍ତ୍ତ୍ୟରେ ମନୁଷ୍ୟ ରୂପରେ ଜନ୍ମ ହେବେ ।"

ବସୁମାନେ ମହର୍ଷିଙ୍କ ଅଭିଶାପ କଥା ଶୁଣି ଦୁଃଖରେ କାତର ହୋଇ ପଡ଼ିଲେ । ସେମାନେ ବଶିଷ୍ଠଙ୍କ ପାଦତଳେ ପଡ଼ି କ୍ଷମା-ପ୍ରାର୍ଥନା କଲେ । ମହର୍ଷିଙ୍କ ମନ ତରଳିଲା, ସେ କହିଲେ, "- ଶାପର ଫଳ ନିଶ୍ଚୟ ଭୋଗ କରିବାକୁ ହେବ । ତେବେ ମୁଁ କିଛି ମାତ୍ରାରେ କୋହଳ କରି ଦେଇପାରେ । ଶୁଣ, ପ୍ରଭାସ ମୋ ଗାଈକୁ ଧରିଥିଲେ, ସେ ବହୁଦିନ ପର୍ଯ୍ୟନ୍ତ ମର୍ତ୍ତ୍ୟରେ ଜଣେ ଖୁବ୍ ଜଣାଶୁଣା ଲୋକ ହୋଇ ରହିବେ । ଅନ୍ୟ ସାତଜଣ ଜନ୍ମ ହେବା ମାତ୍ରେ ଶାପରୁ ମୁକ୍ତି ପାଇ ପୁଣି ସ୍ୱର୍ଗକୁ ଆସି ପାରିବେ ।"

ବସୁମାନଙ୍କ ଚିନ୍ତା ବଢ଼ିବାକୁ ଲାଗିଲା । ସେମାନେ ଗଙ୍ଗା ଦେବୀଙ୍କୁ ପ୍ରାର୍ଥନା କରି କହିଲେ, "ଦେବୀ, ଆମ୍ଭମାନଙ୍କୁ ଉଦ୍ଧାର କରନ୍ତୁ । ଆପଣ ମର୍ତ୍ତ୍ୟରେ ଜଣେ ବିଶିଷ୍ଟ ଲୋକଙ୍କୁ ବିବାହ କରି ଆମ୍ଭମାନଙ୍କର ମାଆ ନ ହେଲେ ଆମ୍ଭେମାନେ ଉଦ୍ଧାର ହୋଇ ପାରିବୁ ନାହିଁ । ଜନ୍ମ ହେବା ମାତ୍ରେ ଆମ୍ଭମାନଙ୍କୁ ଗୋଟି ଗୋଟି କରି ନଦୀରେ ଭସାଇ ଦେଲେ ଆମ୍ଭେ ଶାପମୁକ୍ତ ହେବୁ । ଏତିକି ଦୟା ନ କଲେ ଆମ୍ଭେ ସବୁଦିନ ପାଇଁ ମର୍ତ୍ତ୍ୟରେ ରହିଯିବୁ ।"

ଗଙ୍ଗା ଦେବୀଙ୍କର ଦୟା ହେଲା । ସେ ବସୁମାନଙ୍କୁ ବୋଧ ଦେଇ କହିଲେ, "ଯାଅ, ମୁଁ ତୁମ୍ଭମାନଙ୍କୁ ମୁକ୍ତି ଦେବାର ବ୍ୟବସ୍ଥା କରିବି ।" ବସୁମାନେ ଆନନ୍ଦ ମନରେ ଫେରିଗଲେ ।

ଗଙ୍ଗା ଦେବୀ ମର୍ତ୍ତ୍ୟକୁ ଆସି ମାନବୀ ରୂପରେ ମହାରାଜା ଶାନ୍ତନୁଙ୍କୁ ବିବାହ କରିଥିଲେ ।

## ପୁତ୍ର ଦେବବ୍ରତ

ଅଷ୍ଟମ ପୁତ୍ରଟିକୁ ସଙ୍ଗରେ ନେଇ ଗଙ୍ଗାଦେବୀ ଚାଲିଯିବା ପରେ ଶାନ୍ତନୁଙ୍କୁ ଚାରିଆଡ଼ ଅନ୍ଧାର ଦିଶିଲା । ରାଜକାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ । ଖାଇବା, ପିଇବା, ଶୋଇବା କେଉଁଥିରେ ହେଲେ ସେ ଶାନ୍ତି ପାଇ ପାରିଲେ ନାହିଁ ।

ଦିନେ ମହାରାଜ ଶାନ୍ତନୁ ବିରସ ମନରେ ଗଙ୍ଗା କୂଳରେ ବୁଲୁଥିଲେ । ଦେଖିଲେ ଅତି ସୁନ୍ଦର ପିଲାଟିଏ ଧନୁରୁ ଶରପରେ ଶର ମାରି ବହି ଯାଉଥିବା ଗଙ୍ଗାର ପ୍ରବଳ ସ୍ରୋତରେ ଏକ ବନ୍ଧ ତିଆରି କରି ଦେଉଛି । ସାମାନ୍ୟ ବାଳକର ଏ ଅଦ୍ଭୁତ କାର୍ଯ୍ୟ ଦେଖି ଶାନ୍ତନୁ ଆଶ୍ଚର୍ଯ୍ୟ ହୋଇ ତାହାରି ଆଡ଼କୁ ଏକ ଲୟରେ ଚାହିଁ ରହିଲେ । ଠିକ୍ ଏତିକି ବେଳେ ଗଙ୍ଗାଦେବୀ ସେଠାରେ ଉପସ୍ଥିତ ହୋଇ କହିଲେ, "ମହାରାଜ, ଦେଖୁଛନ୍ତି କଅଣ ? ସେ ପିଲାଟି ଆପଣଙ୍କ ପୁଅ ଦେବବ୍ରତ । ମୁଁ ତାକୁ ମୋ ପାଖରେ ରଖି ଶ୍ରେଷ୍ଠ ଧନୁର୍ଦ୍ଧର ମହାବୀର ପରଶୁରାମଙ୍କଠାରୁ ଯୁଦ୍ଧବିଦ୍ୟା ଓ ମହର୍ଷି ବଶିଷ୍ଠଙ୍କଠାରୁ ଜ୍ଞାନ, ଧର୍ମ, ନୀତି ଏବଂ ସମସ୍ତ ଶାସ୍ତ୍ର ଶିକ୍ଷା ଦେବାର ବ୍ୟବସ୍ଥା କରିଥିଲି । ଏବେ ସେ ସମସ୍ତ ବିଦ୍ୟାରେ ପଣ୍ଡିତ ହୋଇ ସାରିଛି । ଆପଣ ତାକୁ ସଙ୍ଗରେ ରାଜପୁରୀକୁ ନେଇଯା'ନ୍ତୁ ।" ଏତିକି କହି ଗଙ୍ଗା ଦେବୀ ଅଦୃଶ୍ୟ ହୋଇଗଲେ ।

ମହାରାଜ ପୁତ୍ର ଦେବବ୍ରତଙ୍କ ସହିତ ରାଜପୁରୀକୁ ଗଲେ ଓ ତାଙ୍କୁ ଯୁବରାଜ ବୋଲି ଘୋଷଣା କରିଦେଲେ ।



ଶାନ୍ତନୁ ମା' ଗଙ୍ଗା ଓ ପୁତ୍ର ଦେବବ୍ରତ

## ଭୀଷ୍ମ

ଦେବବ୍ରତଙ୍କୁ ଯୁବରାଜ କରିବା ପରେ ମହାରାଜ ଶାନ୍ତନୁଙ୍କ ମନରେ ପରିବର୍ତ୍ତନ ହେଲା । ଆଗ ଅପେକ୍ଷା ସେ ଖୁସିଥିବାର ଦେଖାଗଲା ।

ଦିନେ ମହାରାଜା ଗଙ୍ଗା କୂଳରେ ବୁଲୁଥିବା ବେଳେ ଜଣେ ଅତି ସୁନ୍ଦରୀ ଯୁବତୀକୁ ଦେଖି କହିଲେ, "ମୁଁ ତୁମକୁ ମୋର ରାଣୀ କରିବାକୁ ଇଚ୍ଛା କରେ ।" ଯୁବତୀ ଉତ୍ତର ଦେଲେ "ମହାରାଜ, ମୁଁ କେଉଟ ରାଜାଙ୍କ କନ୍ୟା, ମୋର ନାମ ସତ୍ୟବତୀ । ଆପଣ ପ୍ରଥମେ ଏକଥା ମୋ ବାପାଙ୍କୁ କହି ତାଙ୍କଠାରୁ ଅନୁମତି ଆଣନ୍ତୁ ।" ଶାନ୍ତନୁ ସତ୍ୟବତୀଙ୍କ ରୂପରେ ଯେତିକି ମୁଗ୍ଧ ହୋଇଥିଲେ, ତାଙ୍କ ତୁଣ୍ଡରୁ ଦିପଦ ମଧୁର କଥା ଶୁଣି ତା ଠାରୁ ଅଧିକ ଆନନ୍ଦିତ ହୋଇଉଠିଲେ । ମହାରାଜାଙ୍କ କଥା ଶୁଣି କେଉଟ ରାଜା କହିଲେ, "ଏଥିରେ ମୋର ଆପତ୍ତି କରିବାର କିଛି ନାହିଁ । ମୋ ଝିଅ ହସ୍ତିନାର ରାଜରାଣୀ ହେବ-ଏହାଠାରୁ ବଳି ବଡ଼ ସୌଭାଗ୍ୟ ଆଉ କଅଣ ଥାଇପାରେ ? ମୁଁ ଏଥିରେ ସଂପୂର୍ଣ୍ଣ ରାଜି; ମାତ୍ର ଆପଣ ମୋର ଗୋଟିଏ, ସର୍ତ୍ତ ଗ୍ରହଣ କରିନେଲେ ମୁଁ ସତ୍ୟବତୀକୁ ଆପଣଙ୍କୁ ଦେବାରେ ଆଦୌ ଆପତ୍ତି କରିବି ନାହିଁ । ମୋ ଝିଅର ପୁଅ ଆପଣଙ୍କ ପରେ ହସ୍ତିନା ରାଜଗାଦିରେ ବସିବ । ଯଦି ଏଥିରେ ଆପତ୍ତି ନ ଥାଏ, ତେବେ ମୋ ଝିଅକୁ ଆପଣ ଗ୍ରହଣ କରନ୍ତୁ ।"

କେଉଟ ରାଜାଙ୍କ କଥା ଶୁଣି ଶାନ୍ତନୁ ବିଚଳିତ ହୋଇ ଭାବିଲେ, - ପ୍ରିୟ ପୁତ୍ର ଦେବବ୍ରତ ବର୍ତ୍ତମାନ ଯୁବରାଜ । ହସ୍ତିନା ରାଜସିଂହାସନ ତାର ପ୍ରାପ୍ୟ । ମୁଁ ତାକୁ ତା'ର ଉଚିତ ପ୍ରାପ୍ୟରୁ ବଞ୍ଚିତ କରିବା ଘୋର ଅନ୍ୟାୟ ହେବ । ରାଜ୍ୟସାରା ସମସ୍ତେ ମୋର ନିନ୍ଦା କରିବେ । ନାଁ ଏକଥା। ମୁଁ କଦାପି କହି ପାରିବି ନାହିଁ । ଶାନ୍ତନୁ ନୀରବରେ ହସ୍ତିନା ଫେରି ଆସିଲେ ।

ସୁନ୍ଦରୀ ସତୀବତୀଙ୍କୁ ସେ ଆଦୌ ଭୁଲିପାରୁନଥାନ୍ତି । ପୁଣି ପ୍ରିୟ ପୁତ୍ର ଦେବବ୍ରତଙ୍କ ପ୍ରତି କୌଣସି ଅନ୍ୟାୟ ନ କରିବା ପ୍ରତି ସେ ସର୍ବଦା ସତର୍କ ଥାନ୍ତି । ସତ୍ୟବତୀଙ୍କ ରୂପ ଓ ଦେବବ୍ରତଙ୍କ ପ୍ରତି ସ୍ନେହ ତାଙ୍କୁ ଅସ୍ଥିର କରି ପକାଇଲା । ସେ ସବୁ ବେଳେ ମୁହଁ ଶୁଖାଇ ବସି ରହିଲେ । ରାଜ କାର୍ଯ୍ୟରେ ମନ ଦେଲେ ନାହିଁ । ଖାଇବା, ପିଇବା ବା ଆନନ୍ଦ ଉତ୍ସବ କାର୍ଯ୍ୟରେ ତାଙ୍କ ମନ ଲାଗିଲା ନାହିଁ । ବାପାଙ୍କର ଏପରି ଭାବ ଦେଖି ଦିନେ ପ୍ରିୟବ୍ରତ ପଚାରିଲେ, "ବାପା, ଆପଣ ସବୁବେଳେ ଏତେ ଚିନ୍ତିତ କାହିଁକି ? ଆପଣଙ୍କ ଦେହର ତେଜ କ୍ରମେ କ୍ରମେ ମଳିନ ପଡ଼ି ଆସୁଛି । ଏହାର କାରଣ କଅଣ ? ହସ୍ତିନା ରାଜପୁରୀରେ ଆପଣଙ୍କର ଅଭାବ କଅଣ ଅଛି ?"

ଶାନ୍ତନୁ ଏଣୁ ତେଣୁ କହି ପ୍ରକୃତ କଥାକୁ ଘୋଡ଼ାଇବାକୁ ଚେଷ୍ଟା କଲେ । ମାତ୍ର ଦେବବ୍ରତ ବାପାଙ୍କର କୌଣସି ଉତ୍ତରରେ ସନ୍ତୁଷ୍ଟ ନ ହୋଇ ପ୍ରକୃତ ଘଟଣା ଜାଣିବା ପାଇଁ ବାରମ୍ବାର ଅନୁରୋଧ କଲେ । ପ୍ରାଣପ୍ରିୟ ଦେବବ୍ରତ କଥାରେ ତାଙ୍କର ପିତୃ ହୃଦୟ ତରଳିଗଲା । ସେ ଆଉ କୌଣସି କଥା ଲୁଚାଇ ନରଖି ସମସ୍ତ ଘଟଣା ଜଣାଇଦେଲେ ।

ଦେବବ୍ରତ ଭାବିଲେ:-ମୁଁ ମହାରାଜାଙ୍କ ପୁଅ । ପୁଅ ହୋଇ ବାପାଙ୍କ ଇଚ୍ଛା ପୂରଣ କରିବା ମୋର କର୍ତ୍ତବ୍ୟ । ଏତିକି କରି ନ ପାରିଲେ ମୁଁ ଜୀବନରେ ଶାନ୍ତି ପାଇ ପାରିବି ନାହିଁ । ଯେତେ ଦୁଃଖ ଆସୁପଛେ ମୁଁ ମୋ ବାପାଙ୍କ ମନରେ ନିଶ୍ଚୟ ଆନନ୍ଦ ଦେବି । ତାଙ୍କୁ ଖୁସି କରିବା ପାଇଁ ଦରକାର ହେଲେ ଏ ଜୀବନ ଦେବାକୁ ମୁଁ ପଛାଇବି ନାହିଁ ।

ଏହିପରି ଭାବି ସେ କେଉଟ ରାଜାଙ୍କ ନିକଟକୁ ଗଲେ । କେଉଟ ରାଜା ତାଙ୍କୁ ଅତି ଆଦରରେ ଘରକୁ ନେଇ ଆସିବାର କାରଣ ପଚାରିଲେ । ଦେବବ୍ରତ କହିଲେ, 'ମୁଁ ହସ୍ତିନାର ଯୁବରାଜ ଦେବବ୍ରତ । ଆପଣଙ୍କ କନ୍ୟା ସତ୍ୟବତୀଙ୍କୁ ମୋ ପିତାଙ୍କ ସହିତ ବିବାହ ଦେବାକୁ ପ୍ରାର୍ଥନା କରୁଛି ।"

କେଉଟ ରାଜା ପୁଣି ଥରେ ତାଙ୍କର ପୂର୍ବ ସର୍ତ୍ତ କଥା କହିବାରୁ ଦେବବ୍ରତ କହିଲେ, "ହସ୍ତିନାର ରାଜସିଂହାସନ ମୋର ପ୍ରାପ୍ୟ । ଆଜି ମୁଁ ସ୍ୱଇଚ୍ଛାରେ ସେ ପଦତ୍ୟାଗ କରୁଛି । ଆପଣଙ୍କ ଝିଅର ପୁଅ ହିଁ ହସ୍ତିନା ରାଜସିଂହାସନରେ ବସିବ । ଏବେ ଆପଣ ମୋ ପ୍ରାର୍ଥନା ପୂରଣ କରନ୍ତୁ ।"

କେଉଟ ରାଜା କହିଲେ, "ସେ କଥା ସତ । ମୋର ତୁମ କଥାରେ ଆଦୌ ଅବିଶ୍ୱାସ ନାହିଁ । ହେଲେ ଟିକିଏ ଅଡୁଆ ରହି ଯାଉଛି । ତୁମେ ସିନା ନିଜ ଇଚ୍ଛାରେ ସିଂହାସନର ଦାବୀ ଛାଡ଼ିଦେଲ, ମାତ୍ର ତୁମର ପୁଅ ରାଜଗାଦି ଦାବୀ ନ କରିବ କାହିଁକି ? ସେପରି ହେଲେ ତୁମ ପ୍ରତିଜ୍ଞା ଓ ମୋ ଇଚ୍ଛା ସଂପୂର୍ଣ୍ଣ ବୃଥା ହୋଇଯିବ । ତୁମ କଥା ରଖି ନପାରିବାରୁ ମୁଁ ଦୁଃଖିତ । ଜାଣିଶୁଣି ମୁଁ ମୋ ଝିଅର ଭବିଷ୍ୟତ ନଷ୍ଟ କରି ପାରିବି ନାହିଁ ।"

କଥାଟା ଆଉ ଅବୁଝା ରହିଲା ନାହିଁ । ଦେବବ୍ରତ କହିଲେ, "ପ୍ରଥମେ ମୁଁ ରାଜପଦ ଛାଡ଼ିଥିଲି । ସେଥିରେ ଆପଣଙ୍କ ମନରେ ସନ୍ତୋଷ ଆସିଲା ନାହିଁ । ଏବେ ଆପଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ପ୍ରତିଜ୍ଞା କରୁଛି ମୁଁ ଆଦୌ ବିବାହ କରିବି ନାହିଁ । ଏହା ମୋର ତ୍ରିବାର ସତ୍ୟ ।"

ସ୍ୱର୍ଗର ଦେବତାମାନେ ଦେବବ୍ରତଙ୍କ ପ୍ରତିଜ୍ଞା ଶୁଣି ଧନ୍ୟ ଧନ୍ୟ କରିବାରେ ଲାଗିଲେ । ପୁଅ ବାପାଙ୍କୁ ସୁଖୀ କରିବା ପାଇଁ



ଶାନ୍ତନୁ ମହାରାଜ ମନଦୁଃଖରେ ବସିଛନ୍ତି

କେତେ ବଡ଼ ତ୍ୟାଗ କରିପାରେ ଏକଥା ଭାବି ସମସ୍ତେ ଭୀଷ୍ମ, ଭୀଷ୍ମ କହି ଦେବବ୍ରତଙ୍କ ଉପରେ ଆକାଶରୁ ପୁଷ୍ପ ବୃଷ୍ଟି କରିବାରେ ଲାଗିଲେ । ଅତି ଭୟଙ୍କର ପ୍ରତିଜ୍ଞା କରିଥିବାରୁ ଦେବବ୍ରତଙ୍କର ନାମ ସେହିଦିନଠାରୁ "ଭୀଷ୍ମ" ରଖାଗଲା ।

କେଉଟ ରାଜାଙ୍କର ଆଉ ଆପତ୍ତି କରିବାର କିଛି ନଥିଲା । ସେ ନୀରବ ହୋଇ ବସି ରହିଲେ । ଦେବବ୍ରତ ସତ୍ୟବତୀଙ୍କ ନିକଟକୁ ଯାଇ କହିଲେ, "ମା, ରଥ ଅପେକ୍ଷା କରିଛି । ଆପଣ ମୋ ସହିତ ହସ୍ତିନା ଯିବା ପାଇଁ ବାହାରି ପଡ଼ନ୍ତୁ ।"

ଦେବବ୍ରତ ସତ୍ୟବତୀଙ୍କୁ ସଙ୍ଗରେ ନେଇ ହସ୍ତିନାରେ ପହଞ୍ଚିଲେ । ରାଜସଭାରେ ସମସ୍ତ ବିଷୟ ଜଣାଇବାରୁ ସଭାରେ ଥିବା ଲୋକମାନେ ଦେବବ୍ରତଙ୍କୁ ଧନ୍ୟ, ଧନ୍ୟ କହିବାରେ ଲାଗିଲେ । ନିଜେ ଶାନ୍ତନୁ ପୁଅର ଏପରି କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲେ, "ତୁ ଧନ୍ୟ, ତୁ ଅସାଧ୍ୟ ସାଧନ କରିଛୁ । ମୁଁ ଆଶୀର୍ବାଦ ସହିତ ବର ଦେଉଛି, ମୃତ୍ୟୁ ତୋର ଅଧୀନ ହେବ । ଯେତେଦିନ ଯାଏ ତୁ ମରିବାକୁ ଇଛା ନ କରିବୁ, ସେତେଦିନ ଯାଏ ତୋର ମୃତ୍ୟୁ ହେବ ନାହିଁ ।"

## ସତ୍ୟବତୀଙ୍କ ଜନ୍ମକଥା

ଅନେକ ଅନେକ ବର୍ଷ ତଳର କଥା । ସ୍ୱର୍ଗରେ ଆଦ୍ରିକା ନାମରେ ଜଣେ ଅପ୍‌ସରା ବ୍ରହ୍ମାଙ୍କ ଶାପରେ ମାଛ ହୋଇ ଯମୁନା

ନଈରେ ରହୁଥିଲା । ଦେବତାମାନଙ୍କ ରାଜା ଇନ୍ଦ୍ର ତାଙ୍କୁ ବର ଦେଇଥିଲେ ଯେ ଯେଉଁଦିନ ତା ପେଟରୁ ମନୁଷ୍ୟ ପିଲା ବାହାରିବ, ସେହିଦିନ ସେ ପୁଣି ଅପ୍ସରା ରୂପ ପାଇ ସ୍ୱର୍ଗକୁ ଫେରି ଆସିବ ।

ଏହିପରି ଅନେକ କାଳ କଟିଗଲା । ଯମୁନା ନଦୀ କୂଳରେ ଜରୁଥ ନାମରେ ଜଣେ କେଉଟ ବାସ କରୁଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ଚାନ୍ଦୋଦରୀ । ଜରୁଥ କେଉଟମାନଙ୍କର ରାଜା ଥିଲେ । ତାଙ୍କୁ ଦାସ ରାଜା ବୋଲି କୁହାଯାଉଥିଲା । ଚାନ୍ଦୋଦରୀଙ୍କର ପୁଅ ଝିଅ କିଛି ନ ଥିବାରୁ ତାଙ୍କ ମନରେ ଭାରି ଦୁଃଖ ଥାଏ । ଦାସ ରାଜା ଜରୁଥ ପ୍ରତିଦିନ ମାଛ ମାରିବା ପାଇଁ ଯମୁନା ନଦୀରେ ଜାଲ ପକାନ୍ତି । ଦିନକର କଥା, ତାଙ୍କ ଜାଲରେ ବଡ଼ ମାଛଟାଏ ପଡ଼ିଲା । ଦାସ ରାଜା ଘରକୁ ଆସି ମାଛଟିକୁ କାଟିବା ପାଇଁ ଚାନ୍ଦୋଦରୀଙ୍କୁ ଦେଲେ । ସ୍ତ୍ରୀ ଚାନ୍ଦୋଦରୀ ମାଛଟିକୁ କାଟିଦେବା ମାତ୍ରେ ତା ପେଟରୁ ଦୁଇଟି ମଣିଷ ପିଲା ବାହାରିଲେ । ଗୋଟିଏ ପୁଅ ଓ ଅନ୍ୟଟି ଝିଅ । ଚାନ୍ଦୋଦରୀ ଏ ଆଚମ୍ବିତ କଥା ରାଜା ଜରୁଥଙ୍କୁ ଜଣାଇବାରୁ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଏଡ଼େ ବଡ଼ ଘଟଣାକୁ ଲୁଚାଇବେ କିପରି ? ସଙ୍ଗେ ସଙ୍ଗେ ମହାରାଜା ଉପରିଚର ବସୁଙ୍କୁ ସବୁକଥା ଜଣାଇଲେ । ଉପରିଚର ପୁରୁ ବଂଶର ଜଣେ ବିଖ୍ୟାତ ରାଜା । ତାଙ୍କର ମଧ୍ୟ ପିଲାଝିଲା କିଛି ନଥାନ୍ତି । ସେ ପୁଅଟିକୁ ନିଜେ ରଖି ଦାସରାଜାଙ୍କୁ ଝିଅଟିକୁ ଦେଇ ଦେଲେ । ଚାନ୍ଦୋଦରୀ ଝିଅଟି ପାଇ ଅତି ଆଦରରେ ବଢ଼ାଇବାରେ ଲାଗିଲା । ମାଛ ପେଟରୁ ବାହାରି ଥିବାରୁ ତା ଦେହରୁ ମାଛ ଗନ୍ଧ ବାହାରୁଥିଲା । ସମସ୍ତେ ସେଥିପାଇଁ ତାକୁ ମତ୍ସ୍ୟା ବା ମତ୍ସ୍ୟଗନ୍ଧା ବୋଲି ଡାକୁଥିଲେ । ମତ୍ସ୍ୟା ଦେଖିବାକୁ ଅତି ସୁନ୍ଦରୀ ଥିଲା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା ରୂପ-ଶୋଭାରେ ଚାରିଆଡ଼ ଝଲସି ଉଠିଲା । ବଡ଼ ହୋଇଯିବା ପରେ ମତ୍ସ୍ୟାର ନାମ ହେଲା ସତ୍ୟବତୀ ।

ଦାସ ରାଜା ମାଛ ମାରିବା ଓ ବାଟୋଇମାନଙ୍କୁ ନୌକାରେ ନଦୀ ପାର କରାଇବା କାର୍ଯ୍ୟ କରୁଥାନ୍ତି । ସତ୍ୟବତୀ ବଡ଼ ହୋଇ ଯିବାରୁ ବେଳେ ବେଳେ ବାଟୋଇମାନଙ୍କୁ ନଦୀ ପାର କରାଇବାରେ ବାପାଙ୍କୁ ସାହାଯ୍ୟ କରୁଥିଲେ ।

## ବ୍ୟାସଙ୍କ ଜନ୍ମ

ଦିନକର କଥା । ଦାସ ରାଜା ଅନ୍ୟକାମରେ ଯାଇଥାନ୍ତି । ସତ୍ୟବତୀ ଘାଟରେ ରହି ବାଟୋଇମାନଙ୍କୁ ନଦୀ ପାର କରାଉଥାନ୍ତି । କିଛି ସମୟ ପରେ ଯୁବକ ଋଷି ପରାଶର ନଦୀ ପାର ହେବା ପାଇଁ ଆସିଲେ । ସେତେବେଳକୁ ଅନ୍ୟ କେହି ଲୋକ ନଦୀ ପାରି ହେବାକୁ ନଥିଲେ । ସତ୍ୟବତୀ ପରାଶରଙ୍କୁ ଡଙ୍ଗାରେ ବସାଇ ପାରି କରିବା ପାଇଁ କାତ ମାରିଲେ । ଡଙ୍ଗା କିଛି ବାଟ ଯିବା ପରେ ପରାଶର କହିଲେ, "ମୁଁ ତୁମକୁ କିଛି ସମୟ ପାଇଁ ବିବାହ କରିବି, ତୁମ ଗର୍ଭରୁ ଏକ ମହାଜ୍ଞାନୀ ପୁତ୍ର ଜନ୍ମ ଲାଭ କରିବ । ଏକଥା ମୁଁ ଉତ୍ତମ ରୂପେ ଜଣେ । ଏହାହିଁ ଈଶ୍ୱରଙ୍କ ଇଚ୍ଛା" । ଋଷିଙ୍କ କଥା ଶୁଣି ସତ୍ୟବତୀଙ୍କ ଲାଜର ସୀମା ରହିଲା ନାହିଁ । ସେ ପରାଶର ଋଷିଙ୍କୁ ଆଗରୁ ଭଲ କରି ଜାଣନ୍ତି । ତାଙ୍କ ଅଭିଶାପରେ ସବୁ କିଛି ପୋଡ଼ି ପାଉଁଶ ହୋଇଯିବ । ତେଣୁ ସେ କିଛି ସମୟ ଚୁପ୍ ରହି କହିଲେ, "ପ୍ରଭୁ, ନଦୀର ଦୁଇ ପଟରେ ଲୋକ ଜମା ହେଲେଣି । ପାରି ହେବା ପାଇଁ ଉଚ୍ଛନ୍ନ ହେବେ । ଏପରି ଅବସ୍ଥାରେ ମୁଁ କିପରି ଆପଣଙ୍କ କଥାରେ ରାଜି ହେବି ?" । ଋଷି କହିଲେ, "ସେଥିପାଇଁ ଭୟକର ନାହିଁ, ମୁଁ ଏଇ ମୁହୂର୍ତ୍ତରେ ଚାରିଆଡ କୁହୁଡ଼ିରେ ଅନ୍ଧାର କରି ଦେବି । ଚାହୁଁ ଚାହୁଁ ଚାରିଆଡ଼େ କୁହୁଡ଼ି ଘୋଟିଗଲା । କେହି କାହାକୁ ଦେଖି ପାରିଲେ ନାହିଁ ।

ସତ୍ୟବତୀଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଋଷିଙ୍କୁ କହିଲେ, "ମୋ ଦେହରୁ ମାଛ ଗନ୍ଧ ବାହାରୁଛି । ଆପଣଙ୍କ ପାଖକୁ ଗଲେ ଆପଣ ମୋତେ ଘୃଣା କରିବେ । ସବୁଠାରୁ ବଡ଼ ଭୟ ଯେ ମୋର କୁମାରୀ ଧର୍ମ ନଷ୍ଟ ହେଲେ ମୁଁ ଲୋକଙ୍କୁ ମୁହଁ ଦେଖାଇ ପାରିବି ନାହିଁ । ଆପଣ ଏ ସବୁକୁ ବିଚାର କରି ମୋତେ ଆଉ ବଳାନ୍ତୁ ନାହିଁ ।"

ପରାଶର କହିଲେ, "ସେଥିପାଇଁ ମଧ୍ୟ ଭୟ କରନାହିଁ । ମୋ କଥା ରଖିଲେ ତୁମର ଧର୍ମ ନଷ୍ଟ ହେବ ନାହିଁ । ତୁମେ ପୁଣି ଅବିବାହିତା କୁମାରୀ ହୋଇ ରହିବ । ତୁମ ଦେହର ଗନ୍ଧ ସତରେ ଅତି ଉତ୍କଟ । ମୁଁ ଆଶୀର୍ବାଦ କରୁଛି ବର୍ତ୍ତମାନଠାରୁ ତୁମ ଦେହରୁ

ଗନ୍ଧ ଦୂର ହୋଇ ପଦ୍ମଫୁଲର ସୁବାସ ବାହାରିବ ଓ ସେହି ସୁବାସ ଅନେକ ଦୂର ପର୍ଯ୍ୟନ୍ତ ବ୍ୟାପୀ ଯାଉଥିବ ।"

ସତକୁ ସତ ସେଇଆ ହେଲା । ନିଜ ଦେହର ସୁବାସରେ ସତ୍ୟବତୀ ନିଜେ ମୋହିତ ହୋଇଗଲା । ଋଷିଙ୍କ ଅପୂର୍ବ ତପସ୍ୟାବଳ ଦେଖି ସେ ଅବାକ୍ ହୋଇଗଲା । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ଯମୁନା ନଦୀର ଏକ ଦ୍ୱୀପରେ ସତ୍ୟବତୀ ପରାଶରଙ୍କ ସହିତ ମିଳିତ ହେଲେ ।

ପରାଶର ସତ୍ୟବତୀଙ୍କୁ କହିଲେ, "ଏହିଠାରେ ତୁମେ ବର୍ତ୍ତମାନ ସନ୍ତାନଟିକୁ ଜନ୍ମଦିଅ ।" ଋଷିଙ୍କ କଥା ଅନୁସାରେ ସତ୍ୟବତୀ ସେଇ ଦ୍ୱୀପଠାରେ ପୁଅଟିଏ ଜନ୍ମ ଦେଲେ । ଆଶ୍ଚର୍ଯ୍ୟର କଥା ଜନ୍ମ ହେବା ମାତ୍ରେ ପୁଅଟି କହିଲା, "ମା', ମୋର ପ୍ରଣାମ ଗ୍ରହଣ କରନ୍ତୁ । ମୁଁ ଆଉ ଏଠାରେ ଦଣ୍ଡେ ହେଲେ ରହି ପାରିବି ନାହିଁ । ମୁଁ ଯେଉଁଠି ଥାଏନା କାହିଁକି ଆପଣ ମୋତେ ମନେପକାଇବା ମାତ୍ରେ ମୁଁ ଆସି ଆପଣଙ୍କୁ ଦେଖା କରିବି ।" ଏତିକି କହି ଶିଶୁ ପୁତ୍ରଟି ପରାଶରଙ୍କ ସହିତ ଚାଲିଗଲା ।

ପରାଶରଙ୍କର ଏହି ପୁଅଟି ଗୋଟିଏ ଦ୍ୱୀପରେ ଜନ୍ମ ହୋଇଥବାରୁ ତାଙ୍କୁ ଦ୍ୱୈପାୟନ କୁହାଯାଏ । ତାଙ୍କ ଦେହର ବର୍ଣ୍ଣ କଳା ଥିବାରୁ ତାଙ୍କୁ କୃଷ୍ଣ ବା କୃଷ୍ଣ ଦ୍ୱୈପାୟନ କହନ୍ତି । ହିମାଳୟର ବଦରିକାଠାରେ ଆଶ୍ରମ କରିଥିବାରୁ ତାଙ୍କର ନାମ ବାଦରାୟଣ ଓ ପରେ ସେ ବେଦକୁ ଭାଗ ଭାଗ କରିଥିବାରୁ ତାଙ୍କୁ ବେଦବ୍ୟାସ ବା ବ୍ୟାସଦେବ କୁହାଗଲା ।

ବ୍ୟାସଦେବ ବିରାଟ ମହାଭାରତ ଗ୍ରନ୍ଥ ରଚନା କରି ଅମର ହୋଇଛନ୍ତି ।

ସତ୍ୟବତୀ ଓ ପରାଶରଙ୍କ କଥା କେହି ଜାଣି ପାରିନଥିଲେ । ପରେ ସତ୍ୟବତୀ ମହାରାଜା ଶାନ୍ତନୁଙ୍କୁ ବିବାହ କରି ହସ୍ତିନାର ପାଟରାଣୀ ହୋଇଥିଲେ ।

## ଶାନ୍ତନୁଙ୍କ ପରିବାର

ମହାରାଜା ଶାନ୍ତନୁଙ୍କ ସହିତ ସତ୍ୟବତୀଙ୍କର ବିବାହ ହୋଇଗଲା । ଚିତ୍ରଙ୍ଗନ ଓ ବିଚିତ୍ରବୀର୍ଯ୍ୟ ନାମରେ ତାଙ୍କର ଦୁଇଟି ପୁଅ ହେଲେ । କିଛି ଦିନ ପରେ ଶାନ୍ତନୁଙ୍କର ମୃତ୍ୟୁ ହେବାରୁ ବଡ଼ ପୁଅ ଚିତ୍ରାଙ୍ଗନ ହସ୍ତିନା ସିଂହାସନରେ ବସିଲେ । ସେ ଅଧିକ ଦିନ ରାଜା ହେବାର ସୁଯୋଗ ପାଇ ନ ଥିଲେ । ଥରେ ଗନ୍ଧର୍ବ ରାଜ ଚିତ୍ରସେନଙ୍କ ସହିତ ତାଙ୍କର ଭୟଙ୍କର ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଚିତ୍ରାଙ୍ଗନ ମରିଯିବାରୁ ସାନ ଭାଇ ବିଚିତ୍ରବୀର୍ଯ୍ୟ ହସ୍ତିନାର ରାଜା ହେଲେ । ସେ ବଡ଼ଭାଇ ମହାଜ୍ଞାନୀ ଭୀଷ୍ମଙ୍କ ଅନୁସାରେ ରାଜ୍ୟ ଶାସନ କରିବାକୁ ଲାଗିଲେ ।

ବିଚିତ୍ରବୀର୍ଯ୍ୟଙ୍କର ବିବାହ ବୟସ ହୋଇଗଲା । ଭୀଷ୍ମ ଓ ମାତା ସତ୍ୟବତୀ ଗୋଟିଏ ଉପଯୁକ୍ତ ଝିଅ ଖୋଜିବାରେ ମନ ଦେଲେ । ଠିକ୍ ଏହି ସମୟରେ କାଶୀ ରାଜାଙ୍କ ତିନି ଝିଅଙ୍କର ସ୍ୱୟଂବରର ନିମନ୍ତ୍ରଣ ଆସି ପହଞ୍ଚିଲା । ତିନି ଝିଅଙ୍କର ନାମ ଥିଲା -ଅମ୍ବା, ଅମ୍ବିକା ଓ ଅମ୍ବାଳିକା । ଭୀଷ୍ମ ମାତା ସତ୍ୟବତୀଙ୍କ ଠାରୁ ଅନୁମତି ନେଇ କାଶୀ ରାଜାଙ୍କ ସ୍ୱୟଂବର ସଭାରେ ପହଞ୍ଚିଲେ । ସଙ୍ଗରେ ବିଚିତ୍ରବୀର୍ଯ୍ୟ ମଧ୍ୟ ଯାଇଥିଲେ ।

ରାଜକନ୍ୟାମାନଙ୍କର ରୂପ, ଗୁଣ ଓ ବ୍ୟବହାରର ପ୍ରଶଂସା ଶୁଣି ବହୁ ରାଜା ଓ ରାଜପୁତ୍ର ସ୍ୱୟଂବର ସଭାକୁ ଆସିଥିଲେ । ଭୀଷ୍ମ କହିଲେ, "ଏଠାରେ ଉପସ୍ଥିତ ଥିବା ରାଜା ଓ ରାଜପୁତ୍ରମାନେ ଶୁଣନ୍ତୁ, ହସ୍ତିନାର ରାଜା ମୋର ସାନ ଭାଇ ବିଚିତ୍ରବୀର୍ଯ୍ୟଙ୍କ ପାଇଁ ମୁଁ ଏ କନ୍ୟାମାନଙ୍କୁ ବଳପୂର୍ବକ ନେଇଯାଉଛି । ଆପଣମାନଙ୍କ ମଧ୍ୟରୁ ଯଦି କେହି ମୋତେ ବାଧା ଦେବାକୁ ଇଚ୍ଛା କରୁଥାନ୍ତି, ତେବେ ଆଗେଇ ଆସନ୍ତୁ । ମୁଁ ଯୁଦ୍ଧ ପାଇଁ ପ୍ରସ୍ତୁତ ଅଛି ।"

ଭୀଷ୍ମଙ୍କର ଏପରି କଥାରେ ସମସ୍ତେ ରାଗି ଉଠି ପ୍ରବଳ ଯୁଦ୍ଧ କରିଦେଲେ । ଚାରିଆଡୁ ଭୀଷ୍ମଙ୍କ ଉପରେ ଶରବର୍ଷା ହେବାରେ

ଲାଗିଲା । କିଛି ସମୟ ପାଇଁ ସ୍ୱୟଂବର ସଭା ଯୁଦ୍ଧ ଭୂଇଁ ପାଲଟିଗଲା । ମହାବୀର ଭୀଷ୍ମ ଅଳ୍ପ ସମୟ ମଧ୍ୟରେ ସମସ୍ତଙ୍କୁ ପରାସ୍ତ କଲେ ଓ କନ୍ୟାତିନିଙ୍କୁ ନେଇ ହସ୍ତିନାପୁର ଚାଲି ଆସିଲେ ।

ହସ୍ତିନାରେ ତିନି କନ୍ୟାଙ୍କ ସହିତ ବିଚିତ୍ରବୀର୍ଯ୍ୟଙ୍କର ବିବାହ ଆୟୋଜନ କରାଗଲା । ଏକଥା ଦେଖି କାଶୀରାଜାଙ୍କ ବଡ଼ଝିଅ ଅମ୍ବା ଭୀଷ୍ମଙ୍କୁ କହିଲେ, "ମୁଁ ସୁବଳ ରାଜା ଶାଲ୍ୱଙ୍କୁ ବିବାହ କରିବା ପାଇଁ ସ୍ଥିର କରିଛି ଏବଂ ସେ ମଧ୍ୟ ମୋତେ ସ୍ତ୍ରୀ ରୂପେ ଗ୍ରହଣ କରିବାକୁ ରାଜି ହୋଇଛନ୍ତି । ଏପରି ସ୍ଥଳେ ମୁଁ ଅନ୍ୟ କୌଣସି ରାଜପୁତ୍ରଙ୍କୁ ବିବାହ କରିପାରିବି ନାହିଁ । ଏବେ ଯାହା ଉଚିତ ମନେ କରୁଛନ୍ତି, କରନ୍ତୁ ।"

ଅମ୍ବାଙ୍କ କଥା ଶୁଣି ଭୀଷ୍ମ ଚିନ୍ତିତ ହୋଇପଡ଼ିଲେ । ସେ କେତେକ ଦାସୀ ଓ ବିଶ୍ୱାସୀ ବ୍ରାହ୍ମଣଙ୍କ ସହିତ ଅମ୍ବାଙ୍କୁ ଶାଲ୍ୱଙ୍କ ନିକଟକୁ ପଠାଇଦେଲେ । ଅମ୍ବିକା ଓ ଅମ୍ବାଳିକାଙ୍କ ସହିତ ବିଚିତ୍ରବୀର୍ଯ୍ୟଙ୍କର ବିବାହ ହୋଇଗଲା । ଅମ୍ବା ଶାଲ୍ୱଙ୍କ ନିକଟରେ ପହଞ୍ଚି କହିଲେ, "ମହାରାଜ, ମୁଁ ଆପଣଙ୍କୁ ମୋର ସ୍ୱାମୀ ରୂପେ ବରଣ କରିଥିବା କଥା ଶୁଣି ଭୀଷ୍ମ ମୋତେ ଆପଣଙ୍କ ନିକଟକୁ ପଠାଇ ଦେଇଛନ୍ତି । ଆପଣ ମୋତେ ଗ୍ରହଣ କରନ୍ତୁ ।"

ଶାଲ୍ୱ କହିଲେ, "ସ୍ୱୟଂବର ସଭାରେ ଭୀଷ୍ମ ଆମ  ସମସ୍ତଙ୍କୁ ପରାସ୍ତ କରି ତୁମକୁ ନେଇଛନ୍ତି । ତେଣୁ ତୁମେ ଭୀଷ୍ମଙ୍କର । କୌଣସିମତେ ମୁଁ ଆଉ ତୁମକୁ ବିବାହ କରିପାରିବି ନାହିଁ ।"

ଅମ୍ବାଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସେ ବିନୟ ହୋଇ ଯେତେ ବୁଝାଇଲେ ମଧ୍ୟ ଶାଲ୍ୱ କିଛି ଶୁଣିଲେ ନାହିଁ । ଅନ୍ୟ ଉପାୟ ନଦେଖି ଅମ୍ବା ଫେରି ଆସିଲେ । ଭୀଷ୍ମଙ୍କ ଯୋଗୁଁ ତାଙ୍କ ଜୀବନ ନଷ୍ଟ ହୋଇଗଲା ଭାବି ସେ ରାଗରେ ଜଳିବାକୁ ଲାଗିଲେ । ସେ ବିକଳ ହୋଇ ଏଣେତେଣେ ବୁଲୁଥିବାବେଳେ ହୋତ୍ରବାନ ଋଷିଙ୍କ ଭେଟ ପାଇ ନିଜର ସମସ୍ତ ଦୁଃଖ ଜଣାଇଲେ । ହୋତ୍ରବାନ କହିଲେ, "ରାଜକୁମାରୀ, ତୁମେ ବୀର ପର୍ଶୁରାମଙ୍କ ନିକଟରେ ପ୍ରାର୍ଥନା କର । ସେ ନିଶ୍ଚୟ କିଛି ସାହାଯ୍ୟ କରିପାରିବେ ।"

ଅମ୍ବା ପର୍ଶୁରାମଙ୍କ ନିକଟରେ ନିଜର ଦୁଃଖ ଜଣାଇବାରୁ ତାଙ୍କର ଦୟା ହେଲା । ସେ ନର୍ଦ୍ଦୋଷ ଅମ୍ବାଙ୍କୁ ଗ୍ରହଣ କରିବା ପାଇଁ ଭୀଷ୍ମଙ୍କ ପାଖକୁ ସମ୍ବାଦ ଦେଲେ । ଭୀଷ୍ମ ନାହିଁ କରିବାରୁ ଗୁରୁ ଶିଷ୍ୟଙ୍କ ମଧ୍ୟରେ ଯୁଦ୍ଧ ଲାଗିଗଲା । ଶେଷରେ ଗୁରୁ ପର୍ଶୁରାମ ପରାସ୍ତ ହେବାରୁ ଅମ୍ବାଙ୍କର ସମସ୍ତ ଆଶା ପୋଡ଼ି ଯାଇ ପାଉଁଶ ହୋଇଗଲା । ସେ ହତାଶ ହୋଇ ଭୀଷ୍ମଙ୍କୁ ମାରିବା ପାଇଁ ଶିବଙ୍କ ନିକଟରେ ତପସ୍ୟା କଲେ । ଶିବ ସନ୍ତୁଷ୍ଟ ହୋଇ କହିଲେ, "ଏ ଜନ୍ମରେ ନୁହେଁ, ଆର ଜନ୍ମରେ ତୁ ଶିଖଣ୍ଡୀ ରୂପରେ ଜନ୍ମ ହୋଇ ଭୀଷ୍ମଙ୍କ ମୃତ୍ୟୁର କାରଣ ହେବୁ ।"

ମହାଦେବଙ୍କଠାରୁ ବର ପାଇବା ପରେ ଅମ୍ବା ପୁଣି ଶୀଘ୍ର ଜନ୍ମ ହେବା ପାଇଁ ବ୍ୟାକୁଳ ହୋଇ ଉଠିଲେ । ସେ ସଂଗେ ସଂଗେ ନିଆଁରେ ପୋଡ଼ିହୋଇ ମରିଗଲେ ।

ଅମ୍ବା ଦ୍ରୁପଦ ରାଜାଙ୍କ ଘରେ ଜନ୍ମ ହୋଇଥିଲେ । ସେତେବେଳେ ତାଙ୍କର ନାମ ଶିଖଣ୍ଡୀ ହୋଇଥିଲା । ମହାଭାରତ ଯୁଦ୍ଧରେ ଶୀଖଣ୍ଡୀ ଭୀଷ୍ମଙ୍କ ଆଗରେ ଯୁଦ୍ଧ କରିବା ପାଇଁ ଠିଆ ହେବା ମାତ୍ରେ ଭୀଷ୍ମ ଧନୁଶର ଥୋଇଦେଲେ । ଏହି  ସୁଯୋଗରେ ଅର୍ଜୁନ ଶର ପରେ ଶର ମାରି ଭୀଷ୍ମଙ୍କୁ ତଳେ ପକାଇଦେଇଥିଲେ ।

ପୁରାଣରେ ଅଛି, ଶିଖଣ୍ଡୀ ପ୍ରଥମେ ଦ୍ରୁପଦ ରାଜାଙ୍କ ଝିଅ ହୋଇ ଜନ୍ମ ଲାଭ କରିଥିଲେ । ପରେସେ ପୁଅ ପାଲଟି ଯାଇଥିଲେ । ଭୀଷ୍ମ କୌଣସି ସ୍ତ୍ରୀ ଲୋକ ସହିତ ଯୁଦ୍ଧ କରିବେ ନାହିଁ ବୋଲି ଆଗରୁ ଜଣାଇ ଦେଇଥିଲେ । ଶିଖଣ୍ଡୀଙ୍କୁ ସେ ସ୍ତ୍ରୀ ବୋଲି ଜାଣି ତାଙ୍କୁ ଦେଖିବା ମାତ୍ରେ ଅସ୍ତ୍ର ଛାଡ଼ି ଦେଲେ । ତେଣୁ ଅମ୍ବା ରୂପୀ ଶିଖଣ୍ଡୀ ଭୀଷ୍ମଙ୍କର ମୃତ୍ୟୁର କାରଣ ହୋଇଥିଲେ ।



ଅମ୍ବା, ଅମ୍ବିକା, ଅମ୍ବାଳିକା

## ଧୃତରାଷ୍ଟ୍ର ଓ ପାଣ୍ଡୁ

ଅମ୍ବିକା ଓ ଅମ୍ବାଳିକାଙ୍କୁ ବିବାହ କରି ବିଚିତ୍ରବୀର୍ଯ୍ୟ ମହାସୁଖରେ କାଳ କାଟିବାରେ ଲାଗିଲେ । କିଛି ଦିନ ପରେ ତାଙ୍କୁ ଯକ୍ଷ୍ମା ରୋଗ ଆକ୍ରମଣ କଲା । ବିବାହର ସାତ ବର୍ଷପରେ ସେ ପ୍ରାଣତ୍ୟାଗ କଲେ ।

ବିଚିତ୍ରବୀର୍ଯ୍ୟଙ୍କ ମୃତ୍ୟୁପରେ ରାଣୀ ଅମ୍ବିକା ଧୃତରାଷ୍ଟ୍ର ଓ ଅମ୍ବାଳିକା ପାଣ୍ଡୁଙ୍କୁ ଜନ୍ମ ଦେଇଥିଲେ । ଧୃତରାଷ୍ଟ୍ର ପାଣ୍ଡୁଙ୍କଠାରୁ ବଡ଼ କିନ୍ତୁ ଜନ୍ମ ସମୟରୁ ଅନ୍ଧଥିବାରୁ ପାଣ୍ଡୁଙ୍କୁ ହସ୍ତିନାର ରାଜା କରାଯାଇଥିଲା ।

ଯେତେବେଳେ ଧୃତରାଷ୍ଟ୍ର ଓ ପାଣ୍ଡୁ ଜନ୍ମ ହେଲେ, ଠିକ ସେହି ସମୟରେ ଅମ୍ବିକାଙ୍କ ଏକ ଦାସୀର ମଧ୍ୟ ପୁଅଟିଏ ହୋଇଥିଲା । ତାଙ୍କ ନାମ ବିଦୂର ରଖାଯାଇଥିଲା । ବିଦୂରଙ୍କଠାରେ ବହୁ ଭଲ ଲକ୍ଷଣ ଦେଖି ଭୀଷ୍ମ ରାଜପୁତ୍ର ଦୁହିଁଙ୍କ ସହିତ ତାଙ୍କର ଲାଳନ ପାଳନ ମଧ୍ୟ କରିଥିଲେ । ପରେ ବିଦୂର ଜଣେ ପ୍ରସିଦ୍ଧ ପଣ୍ଡିତ ରୂପେ ଖ୍ୟାତି ଲାଭ କରିଥିଲେ ଓ ହସ୍ତିନାର ମନ୍ତ୍ରୀ ରୂପେ ରାଜାଙ୍କୁ ପରାମର୍ଶ ଦେଉଥିଲେ ।

ଧୃତରାଷ୍ଟ୍ର ଗାନ୍ଧାର ଦେଶର ରାଜା ସୁବଳଙ୍କ କନ୍ୟା ଗାନ୍ଧାରୀଙ୍କୁ ବିବାହ କରିଥିଲେ । ପ୍ରଥମେ ରାଜା ସୁବଳ ଅନ୍ଧକୁ ନିଜର ସୁନ୍ଦରୀ ଝିଅକୁ ବିଭା ହେବା ପାଇଁ ରାଜି ହୋଇନଥିଲେ । ପରେ ଧୃତରାଷ୍ଟ୍ରଙ୍କର ଉଚ୍ଚବଂଶ, ଉତ୍ତମ ଚରିତ୍ର ଓ ବୀରପଣର ପରିଚୟ ପାଇ ତାଙ୍କୁ କନ୍ୟା ଦେବା ପାଇଁ ସ୍ୱୀକାର କଲେ । ଗାନ୍ଧାରୀଙ୍କ ରୂପ ଯେପରି, ଗୁଣ ମଧ୍ୟ ସେହପରି ସୁନ୍ଦର ଥିଲା । ସ୍ୱାମୀ ଜନ୍ମରୁ ଅନ୍ଧ ଥିବା ଜାଣି ସେ ବଞ୍ଚିଥିବା ଯାଏ ନିଜ ଆଖିରେ ପଟି ବାନ୍ଧି ରଖିଥିଲେ । ଅନ୍ଧ ସ୍ୱାମୀଙ୍କୁ ଦେଖିଲେ କାଳେ ମନରେ ଘୃଣା ଆସିବ, ସେଥିପାଇଁ ସେ ଆଖି ଥାଇ ମଧ୍ୟ ନିଜକୁ ଅନ୍ଧ କରି ରଖୁଥିଲେ ।

ଗାନ୍ଧାରୀଙ୍କ ଗର୍ଭରୁ ଶହେ ପୁଅ ଓ ଏକମାତ୍ର ଝିଅ ହୋଇଥିଲେ । ପୁଅମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ ସବୁଠାରୁ ବଡ଼ ଥିଲେ । ଝିଅଟିର ନାଁ ଥିଲା ଦୁଃଶୀଳା । ଦୁଃଶୀଳା ସିନ୍ଧୁ ଦେଶର ରାଜା ଜୟଦ୍ରଥଙ୍କୁ ବିବାହ କରିଥିଲେ ।

ଯଦୁବଂଶର ରାଜା ସୁରସେନଙ୍କ କନ୍ୟା ପୃଥାଙ୍କ ସହିତ ପାଣ୍ଡୁଙ୍କର ବିବାହ ହୋଇଥିଲା । କୁନ୍ତଳ ଦେଶର ରାଜା କୁନ୍ତିଭୋଜ ସୁରସେନଙ୍କର ପିଉସା ପୁଅ ଭାଇ ଥିଲେ । ସେ ପିଲାଦିନୁ ପୃଥାକୁ ଝିଅ କରି ନେଇଥିଲେ । କୁନ୍ତଭୋଜଙ୍କ କନ୍ୟା ହୋଇଥିବାରୁ ପୃଥାଙ୍କ ନାମ କୁନ୍ତୀ ରଖାଯାଇଥିଲା ।

## କୁନ୍ତୀ

ମହାରାଜ ଯଯାତିଙ୍କ ପୁଅ ଯଦୁ ମଥୁରାରେ ରାଜତ୍ୱ କରି ଯଦୁବଂଶ ସ୍ଥାପନ କରିଥିଲେ । ସୁରସେନ ଏହି ବଂଶର ଜଣେ ରାଜାଥିଲେ । ଶ୍ରୀକୃଷ୍ଣଙ୍କ ପିତା ବସୁଦେବ ସୁରସେନଙ୍କର ପୁଅ । କୁନ୍ତୀ ସୁରସେନଙ୍କ ଝିଅ ।

ବିନ୍ଧ୍ୟ ପର୍ବତ ନିକଟରେ ଭୋଜବଂଶର ରାଜାମାନେ ରାଜତ୍ୱ କରୁଥିଲେ । ଏହି ଦେଶକୁ କୁହାଯାଉଥିଲା କୁନ୍ତଳ ଦେଶ । କୁନ୍ତିଭୋଜ କୁନ୍ତଳର ରାଜା ଥିଲେ । ସେ ସୁରସେନଙ୍କର ପିଉସୀ ପୁଅ ଭାଇ । କୁନ୍ତିଭୋଜଙ୍କର କୌଣସି ସନ୍ତାନ ନଥିବାରୁ ସେ କୁନ୍ତୀଙ୍କୁ ଝିଅ କରି ନେଇ ପାଳିଥିଲେ । ମଥୁରାରେ କୁନ୍ତୀଙ୍କ ନାମ ପୃଥା ଥିଲା । କୁନ୍ତଳ ଦେଶକୁ ଯିବା ପରେ ତାଙ୍କ ନାମ କୁନ୍ତୀ ରଖାଗଲା । କୁନ୍ତୀଙ୍କୁ ଝିଅ କରି ଆଣିବା ପରେ କୁନ୍ତିଭୋଜଙ୍କର ପୁଅଟିଏ ହେଲା । ତାଙ୍କ ନାମ ପୁରୁଜିତ୍ କୁନ୍ତିଭୋଜ ।

କୁନ୍ତୀ ରାଜପୁରୀରେ ଅତି ଆଦରରେ ବଢ଼ିବାକୁ ଲାଗିଲେ । ବହୁ ଦାସ ଦାସୀଙ୍କ ମେଳରେ ତାଙ୍କର ପିଲାଦିନ ଅତି ସୁଖରେ କଟିଗଲା । କ୍ରମେ କୁନ୍ତୀ ବଡ଼ ହେଇଗଲେ । କୁନ୍ତିଭୋଜ ମୁନି ଋଷିମାନଙ୍କୁ ବହୁ ଆଦର କରୁଥିଲେ । ସେମାନଙ୍କର ରହିବା, ଖାଇବା ଆଦି ପାଇଁ ଅଧିକ ଦୃଷ୍ଟି ଦେଉଥିଲେ ।

ଥରେ ମହର୍ଷି ଦୁର୍ବାସା କୁନ୍ତିଭୋଜଙ୍କ ନିକଟରେ ପହଞ୍ଚିଲେ । ରାଜା ତାଙ୍କୁ ଅତି ଆଦରରେ ରଖାଇବା ପରେ ନିଜ ଝିଅ କୁନ୍ତୀଙ୍କୁ ଋଷିଙ୍କ ସେବା ଯତ୍ନ କରିବା ପାଇଁ ଆଦେଶ ଦେଲେ । କୁନ୍ତୀ ଦୁର୍ବାସା ଥିବା ପର୍ଯ୍ୟନ୍ତ ତାଙ୍କ ସେବାରେ ମନ ପ୍ରାଣ ଢାଳିଦେଲେ । ଦୁର୍ବାସା ଜଣେ ଅଦ୍ଭୁତ ଋଷି । ସାମାନ୍ୟ ଦୋଷ ଦେଖିଲେ ସେ ରାଗି ନିଆଁ ହୋଇଉଠନ୍ତି ଓ ଅଭିଶାପ ଦେଇ ସର୍ବନାଶ କରିବା ପାଇଁ ପଛାନ୍ତି ନାହିଁ । କୁନ୍ତୀଙ୍କୁ ଏ କଥା ଜଣାଥିଲା । ସେ ଅତି ସାବଧାନ ହୋଇ ଋଷିଙ୍କ ସେବା କରିବାରେ ଲାଗିଲେ । ଦିନେ ହେଲେ ଋଷି କୌଣସି କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ନଥିଲେ ।

ଋଷି ବିଦାୟ ନେବା ସମୟ ହେଲା । କୁନ୍ତୀଭୋଜଙ୍କଠାରୁ ବିଦାୟ ନେଇ ସେ କୁନ୍ତୀଙ୍କ ପାଖରେ ପହଞ୍ଚିଲେ । କୁନ୍ତୀ ଋଷିଙ୍କ ପାଦତଳେ ପଡ଼ି ମଥା ନୁଆଇଁ ଠିଆ ହେଲେ । ମହର୍ଷି ଅତ୍ୟନ୍ତ ଖୁସି ହୋଇ ତାଙ୍କୁ ପାଖରେ ବସାଇ କହିଲେ, "ମା, ମୁଁ ତୋ ସେବାରେ ସନ୍ତୁଷ୍ଟ ହୋଇଛି । ମୁଁ ଏ ସ୍ଥାନ ଛାଡ଼ିବା ପୂର୍ବରୁ ତୋତେ ଗୋଟିଏ ମନ୍ତ୍ର ଓ ଗୋଟିଏ ମାଳା ଦେଇଯିବି । ତୁ ଏହି ମାଳାକୁ ଧରି ମନ୍ତ୍ରଟି ଜପ କଲେ ଯେଉଁ ଦେବତାଙ୍କ ନାମ ସ୍ମରଣ କରିବୁ, ସେ ତୋ ପାଖକୁ ଆସିବେ । ସେଇ ଦେବତାମାନଙ୍କ ଆଗ୍ରହରୁ ତୋର ପୁଅ ହେବେ । ସେମାନେ ପୃଥିବୀରେ ବଡ଼ ବୀର ହୋଇ ବଂଶର ନାମ ରଖିବେ । ଏକଥା ମୁଁ ଆଗରୁ ଜାଣି ତୋତେ ଏ ମାଳା ଓ ମନ୍ତ୍ର ଦେଲି । ଯତ୍ନରେ ରଖିଥିବୁ ।" ଋଷି ଏତିକି କହି ଚାଲିଗଲେ ।

କିଛିଦିନ କଟିଗଲା । ଅନେକ ସମୟରେ ମନ୍ତ୍ର ଓ ମାଳା କଥା ଭାବି କୁନ୍ତୀ ବଡ଼ ଆଶ୍ଚର୍ଯ୍ୟ ହୁଅନ୍ତି । ସମାନ୍ୟ ଗୋଟିଏ ମାଳା ଜପ କଲେ ସ୍ୱର୍ଗର ଦେବତାମାନେ ମଧ୍ୟ ମର୍ତ୍ତ୍ୟ ଲୋକଙ୍କ ପାଖକୁ ଓହ୍ଲାଇ ଆସିବେ – ଏକଥାରେ ତାଙ୍କର ଆଦୌ ବିଶ୍ୱାସ ହେଲା ନାହିଁ । ସେ ଆଉ ଅଧିକ ଦିନ ଅପେକ୍ଷା କରି ପାରିଲେ ନାହିଁ । ଦିନେ ଗାଧୋଇ ସାରି ସେ ମାଳାଟିକୁ ଧରି ମନ୍ତ୍ର ଜପ କରିବାରେ

ଲାଗିଲେ । ଉଇଁ ଆସୁଥିବା ସୂର୍ଯ୍ୟଙ୍କୁ ଆସିବା ପାଇଁ ପ୍ରାର୍ଥନା କରିବା ମାତ୍ରେ ସୂର୍ଯ୍ୟ ଦେବତା ତାଙ୍କ ଆଗରେ ଠିଆ ହୋଇଗଲେ । ଅତ୍ୟନ୍ତ ତେଜୀୟାନ ଦେବତା ସୂର୍ଯ୍ୟଙ୍କୁ ଦେଖି କୁନ୍ତୀଙ୍କ ଆଖି ବୁଜି ହୋଇଗଲା । ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଗୋଟାପଣେ ଥରିବାକୁ ଲାଗିଲା । ସେ ଭୟ ପାଇ ଯାଇ କହିଲେ, "ପ୍ରଭୁ, ମୋ ଦୋଷ କ୍ଷମା କରନ୍ତୁ । ନଜାଣି ମୁଁ ବଡ଼ ଅପରାଧ କରିଛି । ଋଷି ଦେଇଥିବା ମନ୍ତ୍ରକୁ ପରୀକ୍ଷା କରିବା ପାଇଁ ମୁଁ ଆପଣଙ୍କୁ ଡାକିଥିଲି । ଏବେ ଦୟାକରି ଆପଣ ଫେରି ଯାଆନ୍ତୁ ।"

ଦେବତା ହସି ହସି କହିଲେ, – "ସୁନ୍ଦରୀ, ଦୁର୍ବାସା ଋଷି ଯେଉଁ ମାଳା ଓ ମନ୍ତ୍ର ଦେଇଛନ୍ତି ତାହା ମୁଁ ଜାଣେ । ସେହି ମନ୍ତ୍ରଶକ୍ତି ବଳରେ ମୁଁ ଆଜି ଏଠାକୁ ଆସିଛି । କୌଣସି ମତେ ଫେରିଯାଇ ପାରିବି ନାହିଁ । ମୋ ଆଶୀର୍ବାଦରେ ତୁମର ଗୋଟିଏ ପୁଅ ହେବ । ମୁଁ ଖାଲି ଫେରିଗଲେ ତୁମର ବହୁ ଅନିଷ୍ଟ ଘଟିବ ।"

କୁନ୍ତୀ ଲଜ୍ଜା ଓ ଭୟରେ ଥରି ଥରି କହିଲେ, "ପ୍ରଭୁ ମୁଁ ବିଭା ହୋଇନାହିଁ । ଅବିବାହିତା ଝିଅ ମାଆ ହେଲେ ତା ଅବସ୍ଥା କହିଲେ ସରିବ ନାହିଁ । ଆପଣ ମୋତେ ଏ ବିପଦରୁ ରକ୍ଷା କରନ୍ତୁ ।"

ସୂର୍ଯ୍ୟ କହିଲେ, "ସୁନ୍ଦରୀ, ଆଦୌ ଭୟ କର ନାହିଁ । ତୁମେ ଅବିବାହିତା ଥାଇ ପୁଅ ଜନ୍ମ କରିବା ଈଶ୍ୱରଙ୍କ ଇଚ୍ଛା । ସେଥିରେ ବାଧା ଦେଇ ନିଜର ଅନିଷ୍ଟ କରନାହିଁ । ମୁଁ ବର ଦେଉଛି ତୁମକୁ କୌଣସି କଳଙ୍କ ଲାଗିବ ନାହିଁ ଓ ତୁମେ କୁମାରୀ ହୋଇ ରହିବ । କିଛି ଦିନ ପରେ ତୁମେ ଜଣେ ବିଖ୍ୟାତ ରାଜାଙ୍କୁ ବିବାହ କରି ସୁଖରେ ଦିନ କଟାଇବ ।"

କୁନ୍ତୀ ଆଉ କିଛି କହି ପାରିଲେ ନାହିଁ, କିଛି ସମୟ ପରେ ସୂର୍ଯ୍ୟ ଦେବତା ଚାଲିଗଲେ । କୁନ୍ତୀ ଗର୍ଭବତୀ ହେଲେ ସତ; ମାତ୍ର ତାଙ୍କର ଗର୍ଭ ଲକ୍ଷଣ ଆଦୌ ପ୍ରକାଶ ପାଇଲା ନାହିଁ । ତେଣୁ କେହି କିଛି ଜାଣି ପାରିଲେ ନାହିଁ ।

ପିଲାଜନ୍ମ ହେବାର ସମୟ ହୋଇ ଯିବା ଜାଣି କୁନ୍ତୀ ନିଜର ପ୍ରିୟ ସଖୀକୁ ଡାକି ବନ ବୁଲି ଯିବା ପାଇଁ କହିଲେ । ଜଣେ ମାତ୍ର ସଖୀ ସହିତ ବନକୁ ଯାଇ ସେ ଏକ ନିର୍ଜନ ସ୍ଥାନରେ ପୁଅଟିଏ ଜନ୍ମ କଲେ । ଅପୂର୍ବ ସୁନ୍ଦର ପୁଅଟିକୁ ଦେଖି ତାଙ୍କର ଆଖି ଲାଖି ରହିଲା । ଦେହରେ ହୀରାର କବଚ, କାନରେ ମକର କୁଣ୍ଡଳ, ନୀଳ ପଦ୍ମ ପରି ଢଳ ଢଳ ଦୁଇଟି ଆଖିରୁ ଅପୂର୍ବ ତେଜ ବାହାରୁଥାଏ । ପିଲାଟିଠାରେ ବହୁ ଶୁଭ ଲକ୍ଷଣ ପୂରି ରହିଥାଏ । କୁନ୍ତୀ କଅଣ କରିବେ କିଛି ସ୍ଥିର କରି ପାରିଲେ ନାହିଁ, ତାଙ୍କର ମାତୃହୃଦୟ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲା ।

ମନେ ମନେ ଚିନ୍ତା କଲେ, ହାୟରେ ବିଧି, ତୋର ଦଣ୍ଡ କେଡ଼େ ଦାରୁଣ ! ମୁଁ ମଥୁରାରୁ କୁନ୍ତଳ ରାଜାଙ୍କ ଝିଅ ହୋଇ ଆସିଲି । ମୋର ବିବାହ ହୋଇନାହିଁ । ଅଭିଆଡ଼ୀ ହୋଇ ସନ୍ତାନର ଜନନୀ ହେବା କି ଦୁର୍ଭାଗ୍ୟର କଥା ! କିପରି କାହାକୁ ଏ ନିର୍ଲଜ ମୁହଁ ଦେଖାଇ କଅଣ କହିବି ? ସମସ୍ତଙ୍କ ପ୍ରଶ୍ନର ଉତ୍ତର ମୋ ପାଖରେ କାହିଁ ? ମାଆ ହେବା କେଡ଼େ ସୌଭାଗ୍ୟର କଥା ! ମାତ୍ର ମୁଁ ଯେପରି ମାଆ ହୋଇଛି ତାହା ମୋର ସବୁଠାରୁ ବଡ଼ ଦୁର୍ଭାଗ୍ୟ । ଯେଉଁ ଅପୂର୍ବ ସୁନ୍ଦର ଦେବ-ଶିଶୁ ବର୍ତ୍ତମାନ ମୋ କୋଳରେ ଅଛି ସେ ଅମୂଲ୍ୟ ନିଧିକୁ କଅଣ କରିବି ?" ଏହି ପରି ନାନା କଥା ଚିନ୍ତା କରି ସେ କାନ୍ଦିବାରେ ଲାଗିଲେ । ସାଥୀରେ ଥିବା ସଖୀଟି କହିଲା, "ଜେମା, ଯାହା ହେବାର ହେଲାଣି । ଏକଥା ଆଉ କେହି ଜାଣିବାର ସୁଯୋଗ ନ ଦେବା ହିଁ ମଙ୍ଗଳ । ନିଜର, ରାଜାଙ୍କର ଓ ରାଜ କୁଳର ମହତ ରଖିବାକୁ ଇଚ୍ଛା ଥିଲେ ମୋ କଥା ଅନୁସାରେ କାମ କର । ଆଉ ଅଧିକ ସମୟ ମାତୃ ସ୍ନେହ ନ ଦେଖାଇ ଏ ପିଲାଟିକୁ ଏକ ପେଡ଼ିରେ ରଖ । ପେଡ଼ିଟିକୁ ଫୁଲରେ ଘୋଡ଼ାଇ ଦେଇ ନଈ ସୁଅରେ ଭସାଇଦିଅ । ବଣର କଥା ବଣରେ ହିଁ ରହିଯାଉ । ମୋ ପରାମର୍ଶ ନ ମାନି ଅନ୍ୟ କିଛି କରି ବସିଲେ କୁଳ କୁଟୁମ୍ବ, ଜାତି, ମାନ, ମହତ ସବୁଥିରେ କଳଙ୍କ ଲାଗିଯିବ । ତୁମର ଜୀଇଁବା ମରିବାଠାରୁ ବଳି ପଡ଼ିବ ।"

କୁନ୍ତୀଙ୍କର କହିବାକୁ କିଛି ନ ଥିଲା । ତାଙ୍କ ପାଟିରୁ କଥା ବାହାରୁ ନ ଥାଏ । ସେ କେତେବେଳେ ନବ-ଜାତ ଶିଶୁଟିକୁ ପୁଣି

କେତେବେଳେ ପ୍ରିୟ ସଖୀ ଆଡ଼କୁ ଚାହିଁ ଧାର ଧାର ଲୁହ ବୁହାଇବାରେ ଲାଗିଥାନ୍ତି । ସଖୀର ବାରମ୍ବାର ଅନୁରୋଧକୁ ସେ ଆଉ ଟାଳି ପାରିଲେ ନାହିଁ । ସନ୍ତାନର ମମତାଠାରୁ ନିଜର ବଂଶର ମାନ ମହତକୁ ଅଧିକ ମନେ କରି ସେ ସଖୀର କଥାରେ ରାଜି ହେଲେ । ଫୁଲ ଶେଯ ମଧରେ ଚନ୍ଦ୍ର-ଉଦିଆ ପରି ଝଟକୁ ଥିବା ଶିଶୁଟିକୁ ଶୁଆଇ ନଦୀ ସୁଅରେ ମେଲି ଦେଲେ । ସଖୀଟି ତାଙ୍କ ହାତ ଧରି ଶୀଘ୍ର ଉଆସକୁ ନେଇଗଲା । କୁନ୍ତୀଙ୍କ ପାଦ ଆଗକୁ ପଡୁ ନଥାଏ । ବାରମ୍ବାର ନଦୀ ସୁଅକୁ ଚାହିଁ ଝୁଣ୍ଟି ପଡୁଥାନ୍ତି । 'ମାଆ ହୋଇ ମୁଁ ରାକ୍ଷସୀଠାରୁ ବଳିଗଲି' କହି ଅତି ବ୍ୟାକୁଳ ହୋଇ କାନ୍ଦି ଉଠୁଥାନ୍ତି । 'ମୋ ସ୍ତ୍ରୀ ଜନ୍ମକୁ ଶତ ଧିକ୍' କହି କପାଳରେ ହାତ ପିଟିବାରେ ଲାଗିଥାନ୍ତି । ତାଙ୍କର ଏ ଅବସ୍ଥା ଲକ୍ଷ୍ୟ କରି ସଖୀଟି କହିଲା, "ସାବଧାନ କରି ଦେଉଛି ଜେମା । ନଅରରେ ପହଞ୍ଚିବା ପୂର୍ବରୁ ତୁମେ ସବୁ କିଛି ଭୁଲିଯାଅ । ସତେ ଯେପରି ତୁମର କିଛି ହୋଇନାହିଁ । ବଣକୁ ବୁଲି ଯାଇ ଖୁସିରେ ଉଆସକୁ ଫେରି ଆସିଛ । ଏହି ପରି ଭାବ ପ୍ରକାଶ କର । ଯଦି ମାଆର ମମତାକୁ ମନେ ପକାଇବାର ଇଚ୍ଛା ଅଛି, ତେବେ ଶୀଘ୍ର ନଦୀକୁ ଡେଇଁ ଆତ୍ମହତ୍ୟା କର । ମୋ କଥା ନମାନିଲେ ତୁମ ଜୀବନର ସୁଖ ସବୁଦିନ ପାଇଁ ଲୁଚିଯିବ ।" କୁନ୍ତୀ ଅତି କଷ୍ଟରେ ସମସ୍ତ ଦୁଃଖକୁ ଚାପି ସଖୀ ସହିତ ଅଗ୍ରସର ହେବାକୁ ଲାଗିଲେ ।

ପେଡ଼ିଟି ସୁଅରେ ଭାସି ଭାସି ଚମ୍ପା ନଗର ଆଡ଼କୁ ଯାଉଥାଏ । କିଛି ଦୂର ଯିବା ପରେ ସେହି ନଗରୀର ଅଧିରଥ ନାମରେ ଜଣେ ଲୋକ ଭାସି ଯାଉଥିବା ପେଡ଼ିଟିକୁ ପାଣିରୁ ଉଠାଇନେଲେ । ଢାଙ୍କୁଣୀ ଖୋଲି ଦେଖିଲେ ଏକ ଅପୂର୍ବ-ସୁନ୍ଦର ଶିଶୁ । ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଶିଶୁଟିର ସ୍ୱର୍ଗୀୟ ତେଜରେ ତାଙ୍କ ଆଖି ଝଲସି ଉଠିଲା । ସେ ଆନନ୍ଦରେ ଅଧୀର ହୋଇ ତାଙ୍କ ସ୍ତ୍ରୀ ରାଧାଙ୍କୁ ଡାକି କହିଲେ, "ଦେଖ, ଦେଖ, ଏତେ ଦିନେ ପ୍ରଭୁ ଆମ ଗୁହାରି ଶୁଣିଛନ୍ତି । ଆମ ମନ କାମନା ପୂର୍ଣ୍ଣ ହୋଇଛି । ଚାହିଁଛ କଅଣ ? ନିଅ, ପୁଅକୁ କୋଳକୁ ନିଅ । ଭଗବାନଙ୍କ ଅପାର କରୁଣାରୁ ଆମ ଶୂନ୍ୟଘର ପୂର୍ଣ୍ଣ ହୋଇ ଉଠିଲା ।" ରାଧା ଆଚମ୍ବିତ ହୋଇ ଚାହିଁ ରହିବାରୁ ଅଧିରଥ ସବୁ ଘଟଣା ବର୍ଣ୍ଣନା କରିଗଲେ । ଏଥର ରାଧାଙ୍କର ବିଶ୍ୱାସ ହେଲା । ସେ ପୁଅଟିକୁ କୋଳକୁ ନେଲେ ଓ ନିଜ ଜନ୍ମ କଲା ପୁଅଠାରୁ ଅଧିକ କରି ପାଳିବାରେ ଲାଗିଲେ ।

ସୂର୍ଯ୍ୟଦେବଙ୍କ ଆଶୀର୍ବାଦରୁ ପିଲାଟି ଜନ୍ମ ହୋଇଥିବାରୁ ସେହି ଦେବତା ହିଁ ତାଙ୍କୁ ସବୁ ବିପଦରୁ ରକ୍ଷା କରିଥିଲେ । ଅଧିରଥ ପୁଅଟିର ନାମ ଦେଲେ ବସଶେଣ । ପିଲାଟି ଆଦର ଯତ୍ନ ପାଇ ଶଶୀ-କଳା ପରି ବଢ଼ିବାରେ ଲାଗିଲା । ପରେ ଏହି ପିଲା ମହାପରାକ୍ରମୀ ବୀର କର୍ଣ୍ଣ ନାମରେ ପୃଥିବୀ ବିଖ୍ୟାତ ହୋଇଥିଲା ।

## ବିଦୂରଙ୍କ ଜନ୍ମକଥା

ମାଣ୍ଡବ୍ୟ ନାମରେ ଜଣେ ସନ୍ୟାସୀ ଥିଲେ । ସେ କାହାକୁ କିଛି କହନ୍ତି ନାହିଁ । ବର୍ଷ ବର୍ଷ ଧରି ମୌନ ବ୍ରତ ପାଳି କଠୋର ତପସ୍ୟା କରୁଥାନ୍ତି ।

ଦିନକର କଥା । ଦଳେ ଚୋର ଚୋରିମାଲ ସହ ଆସୁଥିବା ଦେଖି ରାଜାଙ୍କ ସିପାହୀମାନେ ତାଙ୍କୁ ଗୋଡାଇଲେ । ଚୋରମାନଙ୍କୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ସେମାନେ ତରବରରେ ଚୋରିମାଲଗୁଡ଼ିକୁ ମାଣ୍ଡବ୍ୟଙ୍କ ଆଶ୍ରମରେ ପକାଇଦେଇ ଭିତରେ ଲୁଚିଗଲେ । ସିପାହୀମାନେ ଆଶ୍ରମକୁ ଆସି ଚୋରମାନେ କୁଆଡ଼େ ଗଲେ ବୋଲି ଋଷିଙ୍କୁ ପଚାରିଲେ । ମାତ୍ର ମାଣ୍ଡବ୍ୟ ଧ୍ୟାନରେ ବୁଡ଼ି ରହିଥିବାରୁ ସିପାହୀମାନଙ୍କ କଥା ଆଦୌ ଶୁଣି ପାରିଲେ ନାହିଁ । ଋଷିଙ୍କଠାରୁ କିଛି ଉତ୍ତର ନପାଇ ସିପାହୀମାନେ ଆଶ୍ରମର ଏଣେ ତେଣେ ଖୋଜି ଚୋରି ଧନ ଓ ଲୁଚିରହିଥିବା ଚୋରମାନଙ୍କୁ ଧରିଲେ । ମାଣ୍ଡବ୍ୟଙ୍କୁ ଚୋରମାନଙ୍କ ସର୍ଦ୍ଦାର ଭାବି ସିପାହୀମାନଙ୍କଠାରୁ ସମସ୍ତ ଘଟଣା ଶୁଣି ରାଜା ଋଷିଙ୍କ ସହ ଚୋରମାନଙ୍କୁ ଶୂଳୀରେ ବସାଇବା ପାଇଁ ଆଦେଶ ଦେଲେ । ବଡ଼ ଆଶ୍ଚର୍ଯ୍ୟର କଥା ଚୋରମାନେ ଶୂଳୀ ପାଇ ମଲେ; ମାତ୍ର ଶୂଳୀରେ ଚଢ଼ିବା ପରେ ମଧ ମାଣ୍ଡବ୍ୟଙ୍କ ମୃତ୍ୟୁ ହେଲା ନାହିଁ ।

ଶୂଳୀ ଦଣ୍ଡରେ ମଧ ଋଷି ମରିନାହାନ୍ତି ଶୁଣି ରାଜା ଚମକି ପଡ଼ିଲେ । ମାଣ୍ଡବ୍ୟ ଜଣେ ସାଧାରଣ ଲୋକ ନୁହନ୍ତି ଭାବି ସେ ନିଜେ ଋଷିଙ୍କ ପାଖରେ ପହଞ୍ଚି ତାଙ୍କ ଦେହରୁ ଶୂଳୀଟିକୁ ବାହାର କରି ଦେବାକୁ ଆଦେଶ ଦେଲେ । ବହୁ ଚେଷ୍ଟା କରାଗଲା । ମାତ୍ର ଶୂଳୀଟିକୁ ଋଷିଙ୍କ ଦେହରୁ ବାହାର କରାଯାଇ ପାରିଲା ନାହିଁ । ଅନ୍ୟ ଉପାୟ ନ ଦେଖି ବାହାର ପଟୁ ଶୂଳୀଟିକୁ କାଟି ଦିଆଗଲା । ତଥାପି ଋଷିଙ୍କ ଦେହରେ ଶୂଳୀଟିରୁ ଖଣ୍ଡେ ଗଳି କରି ରହିଗଲା । ଦେହ ଭିତରେ ଲୁହା ବାଡ଼ିଟିଏ ପଶି ରହିବା ଯୋଗୁଁ ମାଣ୍ଡବ୍ୟଙ୍କୁ ଖୁବ୍ କଷ୍ଟ ହେଉଥାଏ । ତେବେ ମଧ ଋଷି ସେ କଷ୍ଟକୁ ଖାତିର୍ ନ କରି ବହୁସ୍ଥାନ ବୁଲିବାରେ ଲାଗିଲେ ଓ କଠୋର ତପସ୍ୟାରେ ମନଦେଲେ ।

ଦିନେ ଯମରାଜଙ୍କ ସହିତ ଦେଖାହେବାରୁ ମାଣ୍ଡବ୍ୟ ପଚାରିଲେ,-"ହେ ଧର୍ମରାଜ, ମୁଁ ଏପରି କି ପାପ କରିଥିଲି ଯେ, ମୋତେ ଏପରି କଷ୍ଟ ଭୋଗ କରିବାକୁ ପଡୁଛି ?

ଯମ କହିଲେ, "ଅନେକ ଦିନ ତଳେ ଆପଣ କୀଟ ପତଙ୍ଗମାନଙ୍କୁ ଧରି ସେମାନଙ୍କ ମଳଦ୍ୱାରରେ କଣ୍ଟା, କୁଶ ଆଦି ମୁନିଆଁ ଜିନିଷ ପୂରାଇ ସେମାନଙ୍କୁ କଷ୍ଟ ଦେଉଥିଲେ । ତେଣୁ ସେହି ମନ୍ଦ କାମର ଫଳ ରୂପେ ଆପଣ ଏ କଷ୍ଟ ଭୋଗ କରୁଛନ୍ତି ।"

ଯମରାଜଙ୍କ କଥା ଶୁଣି ମାଣ୍ଡବ୍ୟ ରାଗିଯାଇ କହିଲେ, "ମୋର ପିଲା ଖେଳର ଅଜ୍ଞାନ କାମ ପାଇଁ ତୁମେ ମୋତେ ଏପରି କଠିନ ଦଣ୍ଡ ଦେଇଛ ? ମୁଁ ତୁମକୁ ଅଭିଶାପ ଦେଲି -"ତୁମର ମନୁଷ୍ୟ ରୂପେ ଜନମ ହେବ ।"

ଧର୍ମଦେବତା ଯମଙ୍କର ଆଉ ଉପାୟ ନଥିଲା । ଋଷିଙ୍କ ଅଭିଶାପ ଯୋଗୁ ସେ ଅମ୍ବିକାଙ୍କ ଦାସୀ ଗର୍ଭରୁ ବିଦୂର ରୂପେ ଜନ୍ମ ହୋଇଥିଲେ । ବିଦୂର ଧାର୍ମିକ, ରାଗଶୂନ୍ୟ ଓ ମହାପଣ୍ଡିତ ଥିଲେ । ସେ ଧୃତରାଷ୍ଟ୍ରଙ୍କ ମନ୍ତ୍ରୀ ରୂପେ ରହି ତାଙ୍କୁ ସବୁବେଳେ ଉତ୍ତମ ପରାମର୍ଶ ଦେଉଥିଲେ ।

## କୁନ୍ତୀଙ୍କ ବିବାହ ଓ ପାଣ୍ଡୁଙ୍କୁ ଅଭିଶାପ

ରାଜା କୁନ୍ତଭୋଜ ନିଜ ଝିଅ କୁନ୍ତୀଙ୍କ ବିବାହ ପାଇଁ ଏକ ସ୍ୱୟଂବର ସଭାର ଆୟୋଜନ କଲେ । ସଭାକୁ ଆସିଥିବା ବହୁ କ୍ଷତ୍ରିୟ ବୀରମାନଙ୍କ ମଧ୍ୟରେ କୁନ୍ତୀ ଭରତ ବଂଶର ରାଜା ପାଣ୍ଡୁଙ୍କୁ ନିଜର ପତି ରୂପରେ ବରଣ କରି ହସ୍ତିନାର ପାଟରାଣୀ ହୋଇ ଆସିଲେ । କୁନ୍ତୀଙ୍କୁ ବିବାହ କରିବା ପରେ ପାଣ୍ଡୁ ମଦ୍ର ଦେଶର ରାଜାଙ୍କ ଭଉଣୀ ମାଦ୍ରୀଙ୍କୁ ମଧ ବିବାହ କରିଥିଲେ । ଦୁଇ ରାଣୀଙ୍କୁ ନେଇ ପାଣ୍ଡୁ ମହାସୁଖରେ ଦିନ କାଟିବାରେ ଲାଗିଲେ ।

ଶିକାର କରିବାରେ ପାଣ୍ଡୁଙ୍କର ଖୁବ୍ ଆଗ୍ରହ ଥିଲା । ତେଣୁ ସେ ଅନେକ ସମୟରେ ବଣକୁ ଯାଉଥିଲେ । ଦିନକର କଥା, ପାଣ୍ଡୁ ବଣରେ ବୁଲୁଥିବା ବେଳେ ଦେଖିଲେ,-ହରିଣ ହରିଣୀ ଦୁଇଟି ଆନନ୍ଦରେ କ୍ରୀଡ଼ା କରୁଛନ୍ତି । ସେ ହରିଣଟି ଉପରକୁ ଶର ମାରିଦେଲେ । ସଙ୍ଗେ ସଙ୍ଗେ ହରିଣଟି ଏକ ଋଷି ପାଲଟି ଯାଇ କହିଲା, "ତୁମେ ରାଜା ହୋଇ ଏପରି ଅନ୍ୟାୟ କଲ ? ମୁଁ ହରିଣ ରୂପ ହୋଇ ମୋ ସ୍ତ୍ରୀ ସହିତ କ୍ରୀଡ଼ା କରୁଥିବାବେଳେ ତୁମେ ଶରମାରି ହତ୍ୟା କରିଛ । ମୋ ଅଭିଶାପ ଫଳରେ ତୁମେ ଯେଉଁଦିନ ତୁମ ସ୍ତ୍ରୀ ସହିତ ଏହିପରି କ୍ରୀଡ଼ା କରିବ, ଠିକ୍ ସେହିଦିନ ତୁମ ଛାତିରେ ଏକ ଶର ପଶି ତୁମର ମୃତ୍ୟୁ ହେବ ।"

ଋଷିଙ୍କଠାରୁ ଅଭିଶାପ ପାଇ ପାଣ୍ଡୁଙ୍କ ମନରେ ଗଭୀର ଦୁଃଖ ଜାତ ହେଲା । ସେ ଚିନ୍ତିତ ହୋଇ ରାଜପୁରୀକୁ ଫେରି ଆସିଲେ ।



ପାଣ୍ଡୁ ମହାରାଜ ମନଦୁଃଖରେ ବସିଛନ୍ତି

## ପାଣ୍ଡୁ ବଣକୁ ଗଲେ ଓ ଧୃତରାଷ୍ଟ୍ର ରାଜା ହେଲେ

ଋଷିଙ୍କଠାରୁ ଅଭିଶାପ ପାଇବା ପରଠାରୁ ପାଣ୍ଡୁଙ୍କ ମନରେ ଶାନ୍ତି ରହିଲା ନାହିଁ । ଶେଷକୁ ସେ ହସ୍ତିନା ସିଂହାସନ ଛାଡ଼ି ବଣକୁ ଯିବାକୁ ସ୍ଥିର କଲେ ।

ଜନ୍ମରୁ ଅନ୍ଧଥିବାରୁ ବଡ଼ଭାଇ ହେଲେ ମଧ ଧୃତରାଷ୍ଟ୍ର ରାଜା ହୋଇ ନଥିଲେ । ଏଥିପାଇଁ ଧୃତରାଷ୍ଟ୍ରଙ୍କ ମନରେ ଟିକିଏ ଦୁଃଖ ରହିଯାଇଥିଲା । ନିଜର ସାନ ଭଉଣୀ ଅମ୍ବାଳିକା ରାଜମାତା ହୋଇଥିବାରୁ ଅମ୍ବିକା ମଧ ଅତ୍ୟନ୍ତ ଦୁଃଖରେ ଦିନ କଟାଉଥିଲେ । ଏବେ ମହାରାଜ ପାଣ୍ଡୁ ରାଜ୍ୟ ଛାଡ଼ି ବଣକୁ ଯିବାର ସ୍ଥିର କରିବାରୁ ଅନ୍ଧ ଧୃତରାଷ୍ଟ୍ର ରାଜା ହେବେ ଓ ମହାଜ୍ଞାନୀ ବିଦୁର ମନ୍ତ୍ରୀ ରୂପେ ରହି ରାଜାଙ୍କୁ ସବୁ ବିଷୟରେ ସାହାଯ୍ୟ କରିବାର ସ୍ଥିର ହେଲା । ଧୃତରାଷ୍ଟ୍ର ହସ୍ତିନାର ରାଜସିଂହାସନରେ ବସିବା ପରେ ପାଣ୍ଡୁ ତପସ୍ୟା କରିବା ପାଇଁ ବଣକୁ ଯିବାକୁ ବାହାରିଲେ । ତାଙ୍କର ଦୁଇ ସ୍ତ୍ରୀ କୁନ୍ତୀ ଓ ମାଦ୍ରୀ ତାଙ୍କ ସହିତ ଯିବାକୁ କହିବାରୁ ପାଣ୍ଡୁ ସେଥିରେ ରାଜି ହେଲେ ନାହିଁ । କୁନ୍ତୀ କହିଲେ, "ମହାରାଜ, ଆମେ ଦୁହେଁ ଆପଣଙ୍କ ଧର୍ମପତ୍ନୀ, ଆଶ୍ରମରେ ଆପଣଙ୍କ ସହିତ ରହି ତପସ୍ୟାରେ ସାହାଯ୍ୟ କରିବୁ । ଆପଣ ଯଦି ଆମକୁ ଛାଡ଼ି ଏକୁଟିଆ ବଣକୁ ଯିବାକୁ ସ୍ଥିର କରିବେ, ତେବେ ଆମେ ଆଜି ଆତ୍ମହତ୍ୟା କରିବୁ ।"

ପାଣ୍ଡୁ ଏ ପର୍ଯ୍ୟନ୍ତ ପ୍ରକୃତ କଥାଟିକୁ ଲୁଚାଇ ରଖିଥିଲେ । । କୁନ୍ତୀଙ୍କ ଆତ୍ମହତ୍ୟା କଥା ଶୁଣି ସେ ବନ ମଧ୍ୟରେ ଘଟିଥିବା ଘଟଣା ଓ ଋଷିଙ୍କ ନିଷ୍ଠୁର ଅଭିଶାପ କଥା କହିବାକୁ ବାଧ୍ୟ ହେଲେ । ଅଭିଶାପ କଥା ଶୁଣି କୁନ୍ତୀ ଓ ମାଦ୍ରୀଙ୍କ ମନରେ ଯେଉଁ ଦୁଃଖ ହେଲା, ତାହା କଥାରେ କହିହେବ ନାହିଁ । ସେମାନେ ନିଜ ନିଜ ଭାଗ୍ୟକୁ ନିନ୍ଦା କରି କହିଲେ, "ଆମେ ଦୁହେଁ ଆପଣଙ୍କ ସହିତ ତପସ୍ୟା କରିବୁ । ଏହାହିଁ ଆମ ଭାଗ୍ୟରେ ଲେଖାଅଛି ।"

ପାଣ୍ଡୁ ଦୁଇପତ୍ନୀଙ୍କୁ ସଙ୍ଗରେ ନେଇ ହିମାଳୟ ପର୍ବତକୁ ଗଲେ । ହିମାଳୟର ନାନା ସ୍ଥାନ ବୁଲି ଶେଷରେ ସେମାନେ ଶତଶୃଙ୍ଗ ପର୍ବତରେ ପହଞ୍ଚିଥିଲେ । ତିନିହେଁ ସନ୍ୟାସୀ ଓ ସନ୍ୟାସିନୀ ଭାବରେ ବଣର ଫଳମୂଳ ଓ ଝରଣାର ଜଳ ପିଇ ଜୀବନ ବିତାଉଥିଲେ । ଏହି ପରି କିଛି ବର୍ଷ କଟିଗଲା । ଦିନେ ଶତଶୃଙ୍ଗ ଆଶ୍ରମକୁ ଅନେକ ମୁନିଋଷି ଆସିଥିଲେ । ମହାରାଜା ପାଣ୍ଡୁ ଋଷିମାନଙ୍କ ପାଦ ସେବା କରି କହିଲେ, "ଋଷିଗଣ, ଏ ପର୍ଯ୍ୟନ୍ତ ମୋର କିଛି ହେଲେ ସନ୍ତାନ ନାହାନ୍ତି । ପୁତ୍ରହୀନ ଲୋକର ତପସ୍ୟା, ବ୍ରତ, ଦାନ ଆଦି ସବୁ ବୃଥା । ସେଥିପାଇଁ ମୁଁ ଅତି ଦୁଃଖରେ କାଳ କାଟୁଛି ।" ଋଷିମାନେ କଲ୍ୟାଣ କରି କହିଲେ, "ମହାରାଜ, ଦେବତାଙ୍କ ଅନୁଗ୍ରହରୁ ଆପଣ ଶୀଘ୍ର ପୁତ୍ରଲାଭ କରିବେ ।" ଋଷିଙ୍କ ଆଶୀର୍ବାଦରେ ପାଣ୍ଡୁ ଆନନ୍ଦିତ୍ ହୋଇପାରିନଥିଲେ ।

କିଛି ଦିନ ବିତିଗଲା । ମହାରାଜାଙ୍କର ସେହି ଗୋଟିଏ ଚିନ୍ତା । ଆଣ୍ଟୁକୁଡ଼ା ହୋଇ ମରିବା ଠାରୁ ବଳି ବଡ଼ ଦୁଃଖ କିଛି ନାହିଁ । ଏଇ କଥା ସେ ବାରମ୍ବାର କହି ବ୍ୟସ୍ତ ହେବାରେ ଲାଗିଲେ । ଦିନେ ସେ କୁନ୍ତୀଙ୍କୁ ପାଖରେ ବସାଇ କହିଲେ, "ଦେବୀ !ତୁମେ ଦେବତା ଓ ଋଷିମାନଙ୍କୁ ପ୍ରାର୍ଥନା କର । ସେମାନେ ଦୟା କଲେ ତୁମେ ପୁତ୍ରଲାଭ କରିପାରନ୍ତ ।"

କୁନ୍ତୀ ବିନୟ ହୋଇ କହିଲେ "ପ୍ରଭୁ, ମହର୍ଷି ଦୁର୍ବାସା ମୋ ସେବାରେ ସନ୍ତୁଷ୍ଟ ହୋଇ ମୋତେ ଏକ ମାଳା ଓ ମନ୍ତ୍ର ଦେଇଛନ୍ତି । ସେହି ମନ୍ତ୍ରକୁ ସ୍ମରଣ କରି ଯେଉଁ ଦେବତାଙ୍କୁ ଡାକିବ ସେ ଆସି ପୁଅଟିଏ ଦେଇଯିବେ । ଆପଣ ଅନୁମତି ଦେଲେ ମୁଁ କୌଣସି ଦେବତାଙ୍କୁ ସ୍ମରଣ କରନ୍ତି । ପୁତ୍ରଲାଭ ହେଲେ ଆପଣଙ୍କ ଦୁଃଖ ଦୂର ହୋଇପାରନ୍ତା ।"

କୁନ୍ତୀଙ୍କଠାରୁ ଏକଥା ଶୁଣି ପାଣ୍ଡୁ ଆନନ୍ଦରେ ନାଚି ଉଠିଲେ । ସେ କହିଲେ, "ଆଜି ପର୍ଯ୍ୟନ୍ତ ମୋତେ ଏକଥା ନକହି ତୁମେ କେଡ଼େ ଭୁଲ୍ କରି ବସିଛ । ଯାଅ, ମନ ଇଚ୍ଛା ଦେବତାଙ୍କୁ ଡାକି ମୋତେ ଏ ଦୁଃଖରୁ ରକ୍ଷା କର ।"

କୁନ୍ତୀ ପ୍ରଥମେ ଧର୍ମଦେବତାଙ୍କ ଠାରୁ ଯେଉଁ ପୁଅଟି ପାଇଲେ ତାଙ୍କ ନାମ ଯୁଧିଷ୍ଠିର । ପବନଦେବତାଙ୍କଠାରୁ ଭୀମ ଓ ଇନ୍ଦ୍ରଦେବତାଙ୍କଠାରୁ ଅର୍ଜୁନଙ୍କୁ ପୁତ୍ର ରୂପେ ପାଇଥିଲେ । ପିଲାମାନଙ୍କୁ ଦେଖି ପାଣ୍ଡୁଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା ।

ସ୍ତ୍ରୀ ହୋଇ ପିଲାଟିଏ କୋଳରେ ଧରି ପାରିଲେ ନାହିଁ, ଏଥିପାଇଁ ମାଦ୍ରୀଙ୍କ ଦୁଃଖ କହିଲେ ନସରେ । ପାଣ୍ଡୁ ମଧ୍ୟ ମନେ ମନେ ମାଦ୍ରୀଙ୍କ ପାଇଁ ବ୍ୟସ୍ତ ହେଉଥାନ୍ତି । ଦିନେ ମାଦ୍ରୀ ମହାରାଜାଙ୍କୁ କହିଲେ, "ଆପଣ ଅଭିଶାପ ପାଇଛନ୍ତି । ମୁଁ ଅଭିଶାପ ନ ପାଇ ମଧ୍ୟ ପୁଅର ମୁହଁ ଦେଖି ପାରିଲି ନାହିଁ । ଗାନ୍ଧାରୀ ଶହେ ପୁଅର ମାଆ ହୋଇସାରିଲେଣି । ମୋର ସଉତୁଣୀ କୁନ୍ତୀ ତିନୋଟି ପୁଅଙ୍କୁ କୋଳରେ ଧରି ସାରିଲେଣି । ମୁଁ ସବୁ ବିଷୟରେ ତାଙ୍କ ସହିତ ସମାନ । ମାତ୍ର ମାଆ ହୋଇପାରିଲି ନାହିଁ । ଏହି କଥା ମୋତେ ବ୍ୟାକୁଳ କରି ପକାଉଛି । ଯଦି କୁନ୍ତୀ ଦେବୀ ପୁଅ ପାଇବାର ଉପାୟଟି ମୋତେ ବତାଇ ଦିଅନ୍ତେ, ତେବେ ମୁଁ ଅତ୍ୟନ୍ତ ସୁଖୀ ହୁଅନ୍ତି । ଆପଣଙ୍କର ମଧ୍ୟ କିଛି କ୍ଷତି ହୁଅନ୍ତା ନାହିଁ ।"

ପାଣ୍ଡୁ ମଧ୍ୟ ସେଇଆ ଚାହୁଁଥିଲେ । କିଛି ଦିନ ପରେ ସେ କୁନ୍ତୀଙ୍କୁ କହିଲେ, "ମାଦ୍ରୀ ଏ ପର୍ଯ୍ୟନ୍ତ କୌଣସି ସନ୍ତାନର ମାଆ ହୋଇପାରି ନଥିବାରୁ ଦୁଃଖରେ ଦିନ କାଟୁଛି । ସେ ତୁମର ସାନ ଭଉଣୀ ପରି । ତେଣୁ ତୁମେ ତାଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଅନୁରୋଧ କରୁଛି ।" ସ୍ୱାମୀଙ୍କ ଅନୁରୋଧ ଆଦେଶଠାରୁ ମଧ୍ୟ ବଡ଼ । କୁନ୍ତୀ ମାଦ୍ରୀଙ୍କୁ ପାଖକୁ ଡାକି ମନ୍ତ୍ର ଉଚ୍ଚାରଣ ଓ ମାଳା ଜପ କରିବାର ସମସ୍ତ ନିୟମ୍ ଜଣାଇଦେଲେ ।

ମାଦ୍ରୀ ସ୍ୱର୍ଗର ସବୁଠାରୁ ସୁନ୍ଦର ଦେବତା ଅଶ୍ୱନୀ କୁମାରଙ୍କୁ ପ୍ରାର୍ଥନା କରି ତାଙ୍କ ଠାରୁ ଦୁଇପୁତ୍ର ନକୁଳ ଓ ସହଦେବଙ୍କୁ ପାଇଥିଲେ ।

ପାଣ୍ଡୁଙ୍କର ପାଞ୍ଚ ପୁଅ ଯୁଧିଷ୍ଠିର, ଭୀମ ଅର୍ଜୁନ, ନକୁଳ ଓ ସହଦେବ ବଣରେ ଜନ୍ମ ହୋଇ ମୁନିଋଷିମାନଙ୍କ ମେଳରେ ବଢ଼ିବାକୁ ଲାଗିଲେ । ଏହିପରି ଭାବରେ ଷୋଳବର୍ଷ କଟିଗଲା । ଦିନେ ପାଣ୍ଡୁ ବଣରେ ମାଦ୍ରୀଙ୍କ ସହିତ ମିଶି କ୍ରୀଡ଼ା କରୁଥିବା ବେଳେ ହଠାତ୍ ଶୂନ୍ୟରୁ ଏକ ଶରଆସି ତାଙ୍କ ଛାତିରେ ଗଳିଗଲା । ସେ ମରିଗଲେ । ମାଦ୍ରୀଙ୍କ ବିକଳ କାନ୍ଦଣାରେ ବନସାରା କମ୍ପି ଉଠିଲା । କୁନ୍ତୀ ବ୍ୟସ୍ତ ହୋଇ ଦୌଡ଼ିଗଲେ । ସ୍ୱାମୀଙ୍କ ଅବସ୍ଥା ଦେଖି ସେ ତାଙ୍କୁ କୁଣ୍ଢାଇ ଧରି ଅଚେତା ହୋଇ ପଡ଼ିଗଲେ । କିଛି ସମୟ ପରେ ଚେତା ପାଇ ସେ ଋଷିଙ୍କ ଅଭିଶାପ କଥା ମନେପକାଇ କେତେ ବାହୁନି ହେଲେ ।

ମୁନି ଋଷିମାନେ ଆସି ପହଞ୍ଚିଗଲେ । ସେମାନେ ପାଣ୍ଡୁଙ୍କ ଶେଷକାର୍ଯ୍ୟ କରିବାର ବ୍ୟବସ୍ଥା କରିବାରୁ କୁନ୍ତୀ ସ୍ୱାମୀ ଚିତାରେ ପୋଡ଼ି ମରିବାକୁ ପ୍ରସ୍ତୁତ ହେଲେ । ମାଦ୍ରୀ ଏଥିରେ ବାଧା ଦେଇ କହିଲେ, "ନାଁ ଆପଣ ବଞ୍ଚିରହି ପିଲାମାନଙ୍କୁ ପାଳନ କରନ୍ତୁ । ମୋ ଯୋଗୁଁ ସ୍ୱାମୀଙ୍କ ମୃତ୍ୟୁ ହୋଇଛି । ମୁଁ ଏ ନିର୍ଲଜ ମୁହଁ ଦେଖାଇ ଅଧିକ ଦିନ ବଞ୍ଚିବାକୁ ଇଛା କରୁନାହିଁ । ମୁଁ ଚିତାରେ ପଶି ସ୍ୱାମୀଙ୍କ ସହ ସ୍ୱର୍ଗକୁ ଯିବି ।" ତାହା ହିଁ ହେଲା ।

ମାଦ୍ରୀ ସ୍ୱାମୀଙ୍କ ଚିତାରେ ପଶି ମଲେ । କୁନ୍ତୀ ପାଞ୍ଚଟି ପିଲାଙ୍କୁ ଲାଳନ ପାଳନ କରିବାରେ ଲାଗିଲେ ।

## ପାଣ୍ଡବମାନେ ହସ୍ତିନା ଆସିଲେ

ମହାରାଜ ପାଣ୍ଡୁଙ୍କ ମୃତ୍ୟୁପରେ କୁନ୍ତୀ ପିଲାମାନଙ୍କୁ ସଙ୍ଗରେ ନେଇ ହସ୍ତିନାକୁ ଫେରି ଆସିଲେ । ମହର୍ଷି ବ୍ୟାସଦେବ ଓ ମହାତ୍ମା ବିଦୁର ତାଙ୍କୁ ବହୁତ ବୁଝାଇ ଶୁଝାଇ ସମସ୍ତ ଦୁଃଖ ଭୁଲିଯିବା ପାଇଁ ପରାମର୍ଶ ଦେଲେ । କୁନ୍ତୀ ପିଲାମାନଙ୍କ ମୁହଁକୁ ଚାହିଁ ଦିନ କାଟିବାରେ ଲାଗିଲେ ।

ରାଜପୁରୀରେ ସତ୍ୟବତୀ, ଅମ୍ବିକା ଓ ଅମ୍ବାଳିକା ଥିଲେ । ବ୍ୟାସଦେବ ସେମାନଙ୍କୁ ବଣରେ ତପସ୍ୟା କରିବାକୁ ସଙ୍ଗରେ ନେଇଗଲେ । ସେମାନେ ଘୋର ତପସ୍ୟାରେ ଦିନ କଟାଇ କିଛି ଦିନ ପରେ ଦେହ ତ୍ୟାଗ କରିଥିଲେ ।

## କୌରବ ଓ ପାଣ୍ଡବମାନେ

ହସ୍ତିନାପୁରରେ ପାଣ୍ଡବ ପାଞ୍ଚଭାଇ ଓ କୌରବ ଶହେ ଭାଇ ଏକାଠି ରହିଥାନ୍ତି । ପାଣ୍ଡୁଙ୍କ ପୁତ୍ର ଭୀମସେନ ସବୁ ପିଲାଙ୍କ ମଧ୍ୟରେ ଅତ୍ୟନ୍ତ ବଳବାନ ଥିଲେ । ଏପରିକି କୌରବ ଶହେ ଭାଇଙ୍କୁ ସେ ଏକାକୀ ଖେଳରେ ହରାଇ ଦେଉଥିଲେ । ବେଳେ ବେଳେ ଭୀମ କୌରବ ଭାଇମାନଙ୍କୁ ବ୍ୟତିବ୍ରସ୍ତ କରି ପକାଉଥିଲେ । ମନ ଖୁସିରେ ଖେଳୁଥିବା ବେଳେ ଭୀମ କୌରବ ଭାଇମାନଙ୍କ ମୁଣ୍ଡବାଳକୁ ଏପରି ଟାଣି ଦେଉଥିଲେ ଯେ ସେମାନେ ବିକଳରେ କାନ୍ଦି ପକାଉଥିଲେ । ପାଣିରେ ଖେଳୁଥିବା ସମୟରେ ଭୀମ କୌରବ ଭାଇମାନଙ୍କ ମଧ୍ୟରୁ ଦଶ ବାରଜଣଙ୍କୁ ଧରି ଅନେକ ସମୟ ଯାଏ ପାଣି ଭିତରେ ମାଡ଼ି ବସୁଥିଲେ । ବୁଡ଼ି ମରିବା ଭୟରେ ଯେ ଯେତେ ପାଟିତୁଣ୍ଡ କଲେ ମଧ୍ୟ ଭୀମ ସହଜରେ ସେମାନଙ୍କୁ ଛାଡୁ ନ ଥିଲେ । ବେଳେବେଳେ ଧୃତରାଷ୍ଟ୍ରଙ୍କ ପୁଅମାନେ ଗଛରେ ଚଢ଼ି କୋଳି ଖାଉଥିବା ବେଳେ ଭୀମ କୌତୁକରେ ଗଛତଳେ ଥାଇ ଗୋଇଠା ମାରି ଗଛକୁ ଏପରି ଦୋହଲାଇ ଦେଉଥିଲେ ଯେ ସେମାନେ ଦୁମ୍‌ଦାମ୍ ତଳେ କଚାଡ଼ି ହୋଇ ପଡୁଥିଲେ । ଅନେକଙ୍କ ଦେହ ହାତ ଖଣ୍ଡିଆ ଖାବରା ହୋଇ ଯାଉଥିଲା । ସେମାନଙ୍କର ଏ ଅବସ୍ଥା ଦେଖି ଭୀମ ତାଳିମାରି ନାଚି ଉଠୁଥିଲେ ।

ଦିନକୁ ଦିନ ଖେଳରେ ଭୀମ କୌରବମାନଙ୍କୁ ନାନା ହଟହଟା କରିବା ଦେଖି ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନଙ୍କ ମନରେ ଖୁବ୍ ରାଗ ହେଲା । ସେମାନେ ଭୀମଙ୍କୁ ଜୀବନରେ ମାରି ଦେବା ପାଇଁ ଉପାୟ ପାଞ୍ଚିଲେ ।

କୌରବ ଭାଇମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ ଭାରି ଗର୍ବୀ, ଦୁଷ୍ଟ ଓ ଏକଜିଦିଆ ଥିଲେ । କୌଣସି ପାପ କାର୍ଯ୍ୟ କରିବା ପାଇଁ ତାଙ୍କର ଟିକିଏ ହେଲେ ଭୟ ନଥିଲା । ଦିନେ ସେ ଭାବିଲେ, "କୁନ୍ତୀଙ୍କ ମଝିଆଁ ପୁଅ ଭୀମସେନକୁ କୌଣସି ଉପାୟରେ ମାରି ଦେଇପାରିଲେ ଆମେ ନିଶ୍ଚିନ୍ତରେ ରହିପାରନ୍ତେ । ଆମ ବାଟରୁ ଭୀମକୁ ହଟାଇ ଦେଲେ ଯୁଧିଷ୍ଠିର, ଅର୍ଜୁନ ପ୍ରଭୃତିଙ୍କୁ ସହଜରେ ବନ୍ଦୀ କରି ମୁଁ ଓ ମୋ ଭାଇମାନେ ଆନନ୍ଦରେ ହସ୍ତିନାର ରାଜଗାଦି ସହିତ ସମସ୍ତ ସମ୍ପତ୍ତିର ପ୍ରଭୁ ହୋଇ ବସନ୍ତୁ ।" ଏହିପରି ଭାବି ସେ ଦିନ ଯୁଧିଷ୍ଠିରଙ୍କୁ କହିଲେ, "ଚାଲ, ଆଜି ଆମେ ଗଙ୍ଗା ନଦୀରେ ଜଳକ୍ରୀଡ଼ା କରିବା ଓ କୂଳରେ ଏକ ବଣ ଭୋଜିର ବ୍ୟବସ୍ଥା ମଧ୍ୟ କରିବା ।"

ଯୁଧିଷ୍ଠିରଙ୍କ ମନ ଖୁବ ସରଳ । ସେ ଦୁର୍ଯ୍ୟୋଧନଙ୍କ କଥାରେ ରାଜି ହୋଇଗଲେ । ଜଳକ୍ରୀଡ଼ା ଓ ବଣଭୋଜିର ଅୟୋଜନ କରାଗଲା । ପାଣିରୁ ଉଠି ସମସ୍ତେ ଖାଇ ବସିଲେ । ଖାଇବା ବେଳେ ଅତି ସ୍ନେହରେ ଜଣେ ଆର ଜଣକୁ ଖୁଆଇବାରେ ଲାଗିଲେ । ଏହି ସମୟରେ ଚତୁର ଦୁର୍ଯ୍ୟୋଧନ ଭୀମଙ୍କୁ ବିଷ ମିଶିଥିବା ଲଡୁ ଖୁଆଇଦେଲେ । ଜଳକ୍ରୀଡ଼ା କରି ସମସ୍ତେ ହାଲିଆ ହୋଇ ପଡ଼ିଥିଲେ । ଭଲ କରି ପେଟେ ପେଟେ ଖାଇ ଦେବାରୁ ସମସ୍ତେ ଯେ ଯେଉଁଠି ପାରିଲେ ଶୋଇପଡ଼ିଲେ । ବିଷ ଖାଇଥିବାରୁ ଭୀମ ଶୋଉ ଶୋଉ ଅଚେତ ହୋଇପଡ଼ିଲେ । ଦୁର୍ଯ୍ୟୋଧନଙ୍କ ଆଖିରେ ନିଦ ନଥାଏ, ସମସ୍ତେ ଶୋଇପଡ଼ିଲେ । ଦୁର୍ଯ୍ୟୋଧନଙ୍କ ଆଖିରେ ନିଦ ନଥାଏ, ସମସ୍ତେ ଶୋଇ ପଡ଼ିବା ଦେଖି ସେ ଭୀମ ସେନଙ୍କୁ ହାତ ଗୋଡ଼ ବାନ୍ଧି ଗଙ୍ଗାନଦୀକୁ ଫିଙ୍ଗି ଦେଲେ । ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ଆଗରୁ ଗଙ୍ଗାନଦୀର ପାଣି ଭିତରେ ମୁନିଆଁ ଲୁହା ଖଣ୍ଡମାନ ପୋତି ରଖିଥିଲେ । ଭାବିଥିଲେ, ଭୀମ ପାଣିରେ ପଡ଼ିବା ମାତ୍ରେ ମୁନିଆଁ ଲୁହା ଖଣ୍ଡମାନ ତାଙ୍କ ଦେହରେ ଗଳିଯିବ ଓ ସେ ଶୀଘ୍ର ମୃତ୍ୟୁ ମୁଖରେ ପଡ଼ିବେ । ମାତ୍ର ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ଥିଲା । ଯେଉଁ ସ୍ଥାନରେ ଭୀମଙ୍କୁ ଫିଙ୍ଗି ଦେଲେ, ସେଠାରେ ଗୋଟିଏ ହେଲେ ଲୁହାଖଣ୍ଡ ନ ଥିଲା । ଭୀମ ଅକ୍ଷତ ଅବସ୍ଥାରେ ଅଚେତ ହୋଇ ପାଣି ତଳେ ପଡ଼ିରହିଲେ ।

କିଛି ସମୟ ବିଶ୍ରାମ କରିବା ପରେ ଭାଇମାନେ ହସ୍ତିନାକୁ ଫେରିବା ପାଇଁ ବାହାରିଲେ । ପାଖରେ ଭୀମଙ୍କୁ ନ ଦେଖି ଯୁଧିଷ୍ଠିର ଦର୍ଯ୍ୟୋଧନଙ୍କୁ ଭୀମଙ୍କ ବିଷୟରେ ପଚାରିଲେ । ଦୁର୍ଯ୍ୟୋଧନ କହିଲେ, "ସେ ଅନେକ ବେଳୁ ହସ୍ତିନା ଚାଲିଗଲେଣି ।" ସରଳ ବିଶ୍ୱାସୀ ଯୁଧିଷ୍ଠିର ଦୁର୍ଯ୍ୟୋଧନଙ୍କ କଥାକୁ ସତ ମଣି ହସ୍ତିନା ଫେରିଆସିଲେ । କିନ୍ତୁ କୁନ୍ତୀଙ୍କଠାରୁ ଭୀମସେନ ଫେରି ନଥିବା କଥାଶୁଣି ତାଙ୍କ ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ସେ ଭାଇମାନଙ୍କୁ ସଙ୍ଗରେ ଧରି ଭୀମଙ୍କୁ ଖୋଜିବାରେ ଲାଗିଲେ ।

ଭୀମ ପାଣି ଭିତରେ ଅଚେତା ହୋଇ ପଡ଼ି ରହିଥିବା ଦେଖି ବହୁ ବିଷଧର ସାପ ତାଙ୍କୁ କାମୁଡ଼ିବାରେ ଲାଗିଲେ । ଭୀମଙ୍କ ଦେହରେ ବିଷ ପଶିଗଲା । ଆଗରୁ ତାଙ୍କୁ ବିଷ ଖୁଆଇ ଦିଆଯାଇଥିବାରୁ ସାପ ବିଷ ଔଷଧ ପରି କାମ ଦେଲା । ଶାସ୍ତ୍ରରେ ଅଛି, ବିଷ ହିଁ ବିଷର ଔଷଧ । ଅର୍ଥାତ ବିଷକୁ ବିଷ କାଟେ । ଭୀମ ଚେତାପାଇ ଆଗଠାରୁ ଅଧିକ ଶକ୍ତିଶାଳୀ ହୋଇ ଉଠିଲେ । ପାଣି ଉପରକୁ ଉଠିବା ମାତ୍ରେ ଢେଉରେ ଆସି କୂଳରେ ଲାଗିଲେ ।

ଚାରିଭାଇ ଭୀମଙ୍କୁ ଖୋଜି ଆସି ଗଙ୍ଗାକୂଳରେ ଠିଆ ହୋଇଥିଲେ । ଦେଖିଲେ ଭୀମ ହାତୀ ପରି ଝୁଲି ଝୁଲି ତାଙ୍କରି ଆଡ଼କୁ ଆସୁଛନ୍ତି । ଭାଇମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସମସ୍ତେ ଆନନ୍ଦରେ ଭୀମଙ୍କୁ କୁଣ୍ଢାଇ ପକାଇଲେ ଓ ହସଖୁସୀ ହୋଇ ଘରେ ପହଞ୍ଚିଲେ । ଭୀମ ମାତା କୁନ୍ତୀ ଓ ଭାଇମାନଙ୍କୁ ଦୁର୍ଯ୍ୟୋଧନର ଷଡ଼ଯନ୍ତ୍ର କଥା କହିଲେ । କୁନ୍ତୀଙ୍କ ଦୁଃଖ ବହୁ ଗୁଣରେ ବଢ଼ିଗଲା । ସେ ତାଙ୍କ ପିଲାମାନଙ୍କ ଜୀବନ ବିଷୟରେ ନାନା ସନ୍ଦେହ କରିବାରେ ଲାଗିଲେ ଓ ବିଦୁରଙ୍କୁ ଡକାଇ ତାଙ୍କୁ ସମସ୍ତ ଘଟଣା ଜଣାଇଲେ ।

ବିଦୁର କହିଲେ, "ମା', ବ୍ୟାସଦେବ କହିଛନ୍ତି, ତୁମ ପୁଅମାନେ ବହୁଦିନ ବଞ୍ଚି ରହିବେ । ତାଙ୍କର କେହି କିଛି ଅନିଷ୍ଟ କରିପାରିବେ ନାହିଁ । ତୁମେ କିଛି ଚିନ୍ତା କରନାହିଁ; ମାତ୍ର ଦର୍ଯ୍ୟୋଧନକୁ କିଛି ଜଣାଇ ଦିଅନାହିଁ କିମ୍ବା ପାଟିତୁଣ୍ଡ କରନାହିଁ । ସେପରି ହେଲେ ସେ ଅଧିକ ରାଗିଯିବ ଓ ପୁଣି କିଛି ବିପଦକୁ ଡାକି ଆଣିବ ।"

ଯୁଧିଷ୍ଠିର ଭୀମଙ୍କୁ କହିଲେ, "ଏ କଥା ଏଇଠି ରଖିବାକୁ ହେବ । କେହି ଯେପରି ଏହାର ଗନ୍ଧ ଜାଣି ନପାରନ୍ତି । ଆଜିଠାରୁ ଆମେ ସାବଧାନ ହୋଇ ରହିବା ଓ ଆମକୁ ରକ୍ଷା କରିବା ପାଇଁ ପ୍ରସ୍ତୁତ ହେବା ।"

ଦୁର୍ଯ୍ୟୋଧନ ଭୀମଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ରାଗ ଓ ଦୁଃଖରେ ସେ ପାଗଳ ହୋଇଉଠିଲା ।

## କୌରବ ଓ ପାଣ୍ଡବଙ୍କ ଅସ୍ତ୍ରଶିକ୍ଷା

ଋଷି ଶରଦ୍ୱାନଙ୍କ ପୁତ୍ର କୃପାଚାର୍ଯ୍ୟ ସବୁ ପ୍ରକାର ଯୁଦ୍ଧ ବିଦ୍ୟା ଶିକ୍ଷା ଦେବା ପାଇଁ ପାରିବାର ଥିଲେ । ଭୀଷ୍ମ କୌରବ ଓ ପାଣ୍ଡବମାନଙ୍କୁ ଯୁଦ୍ଧ ବିଦ୍ୟା ଶିକ୍ଷା ଦେବା ପାଇଁ କୃପାଚାର୍ଯ୍ୟଙ୍କୁ ଗୁରୁ ରୂପେ ନିଯୁକ୍ତ କଲେ । କିଛି ଦିନ ଶିକ୍ଷା ଲାଭ କଲା ପରେ ସମସ୍ତେ ଉଚ୍ଚଶିକ୍ଷା ପାଇବା ପାଇଁ ଉପଯୁକ୍ତ ହୋଇଗଲେ । ପିଲାମାନଙ୍କର ଉଚ୍ଚଶିକ୍ଷା ପାଇଁ ଭୀଷ୍ମ ଜଣେ ଉପଯୁକ୍ତ ଗୁରୁ ଖୋଜୁଥିଲେ ।

ଦିନକର କଥା । କୌରବ ଓ ପାଣ୍ଡବମାନେ ନଗର ବାହାର ପଡ଼ିଆରେ ପେଣ୍ଡୁ ଖେଳରେ ମାତିଥାନ୍ତି । ଦୈବାତ ପେଣ୍ଡୁଟି ଗୋଟାଏ ଶୁଖିଲା କୂଅ ଭିତରେ ପଡ଼ିଗଲା । ବହୁ ଚେଷ୍ଟା କରି ମଧ୍ୟ ପେଣ୍ଡୁଟି ବାହାର କରି ନ ପାରିବାରୁ ପିଲାମାନେ ହତାଶ ହୋଇ ପଡ଼ିଲେ । ଯୁଧିଷ୍ଠିର ବାରମ୍ବାର କୂଅ ଭିତରକୁ ହାତ ବଢ଼ାଇ ପେଣ୍ଡୁଟି ଆଣିବା ପାଇଁ ଚେଷ୍ଟା କରିବାରେ ଲାଗିଥାନ୍ତି । ପେଣ୍ଡୁ ତ ଆଣି ପାରିଲେ ନାହିଁ । ଶେଷକୁ ତାଙ୍କ ହାତର ମୁଦିଟି ମଧ୍ୟ କୂଅ ଭିତରେ ପଡ଼ିଗଲା । ସମସ୍ତେ ମୁହଁ ଶୁଖାଇ ଠିଆହୋଇ ରହିଲେ ।

ଏହି ସମୟରେ ଜଣେ କାଳିଆ ବ୍ରାହ୍ମଣ ସେଇ ବାଟ ଦେଇ ଯାଉଥିଲେ । ପିଲାମାନଙ୍କଠାରୁ ପେଣ୍ଡୁ କୂଅରେ ପଡ଼ିଯିବା ଶୁଣି ସେ ହସି ହସି କହିଲେ, "ପିଲାଏ, ଏତ ଅତି ସାମାନ୍ୟ କଥା । ଦେଖ, କିପରି ମୁଁ କୂଅରୁ ପେଣ୍ଡୁଟି ବାହାର କରି ଆଣୁଛି । ଏତିକି କହି ବ୍ରାହ୍ମଣ ପାଖ ପଡ଼ିଆରୁ କେରାଏ କୁଶ ଆଣିଲେ । ଶରଦ୍ୱାରା କୁଶକୁ କୁଶ ଯୋଡ଼ିଦେଇ କୂଅ ଭିତରୁ ପେଣ୍ଡୁ ସହିତ ମୁଦିଟିକୁ ମଧ୍ୟ ବାହାର କରି ଆଣିଲେ । ପିଲାମାନେ ବ୍ରାହ୍ମଣଙ୍କର ଏପରି ଅଦ୍ଭୁତ ଶକ୍ତି ଦେଖି ତାଙ୍କର ପରିଚୟ ପଚାରିଲେ । ବ୍ରାହ୍ମଣ କହିଲେ, "ତୁମେମାନେ ମୋ ରୁପତ ଦେଖୁଛ । ଗୁଣ କଥାତ ଦେଖିଲ । ଏବେ ଯାଇ ଭୀଷ୍ମଙ୍କୁ ସବୁ କଥା କହ । ସେ ମୋତେ ନିଶ୍ଚୟ ଚିହ୍ନି ପାରିବେ ।"

ଏହି ବ୍ରାହ୍ମଣଙ୍କ ନାମ ଦ୍ରୋଣାଚାର୍ଯ୍ୟ । ସେ ମହର୍ଷି ଭରଦ୍ୱାଜଙ୍କ ପୁତ୍ର କୃପାଚାର୍ଯ୍ୟଙ୍କ ଭଉଣୀ କୃପୀଙ୍କୁ ବିବାହ କରିଥିଲେ ।

ପିଲାମାନଙ୍କଠାରୁ ସବୁକଥା ଶୁଣି ଭୀଷ୍ମ ଅତି ଆନନ୍ଦ ମନରେ ଦ୍ରୋଣଙ୍କୁ ସାକ୍ଷାତ କରି କହିଲେ, "ପିଲାମାନଙ୍କ ଅସ୍ତ୍ରଶିକ୍ଷା ପାଇଁ ମୁଁ ଜଣେ ଉପଯୁକ୍ତ ଗୁରୁ ଖୋଜୁଥିଲି । ମୋର ବଡ଼ ଭାଗ୍ୟ, ହଠାତ୍ ଆପଣ ଆସି ପହଞ୍ଚି ଯାଇଛନ୍ତି । ଅନୁଗ୍ରହ କରି ରାଜକୁମାରମାନଙ୍କର ଅସ୍ତ୍ରଶିକ୍ଷା ଦାୟିତ୍ୱ ଗ୍ରହଣ କରନ୍ତୁ ।"

ଆଚାର୍ଯ୍ୟ ଦ୍ରୋଣ ସେହି ଦିନଠାରୁ କୌରବ ଓ ପାଣ୍ଡବମାନଙ୍କୁ ଅସ୍ତ୍ରଶିକ୍ଷା ଦେବାରେ ଲାଗିଲେ । ଉପଯୁକ୍ତ ଗୁରୁଙ୍କଠାରୁ ଅସ୍ତ୍ରଶିକ୍ଷା କରି ରାଜକୁମାରମାନେ ଅଳ୍ପ ଦିନରେ ଖୁବ୍ ପାରିବାର ହୋଇଉଠିଲେ । ରାଜକୁମାରମାନଙ୍କ ମଧ୍ୟରେ ଅର୍ଜୁନ ସବୁଠାରୁ ଶ୍ରେଷ୍ଠ ଥିଲେ । ଲକ୍ଷ୍ୟଭେଦ କରିବାରେ ତାଙ୍କ ସହିତ କେହି ସମାନ ହୋଇ ପାରୁନଥିଲେ । ସେହି କାରଣରୁ ଦ୍ରୋଣାଚାର୍ଯ୍ୟ ଅର୍ଜୁନଙ୍କୁ ଅଧିକ ସ୍ନେହ କରୁଥିଲେ ।



ରାଜକୁମାରଙ୍କ ଅସ୍ତ୍ରଶିକ୍ଷାପରୀକ୍ଷା

## ଲକ୍ଷ୍ୟଭେଦ ପରୀକ୍ଷା

ଦିନେ ଗୁରୁ ଦ୍ରୋଣ ଶିଷ୍ୟମାନଙ୍କର ପରୀକ୍ଷା ନେବା ପାଇଁ ସ୍ଥିର କଲେ । ସେ ଗୋଟିଏ ଗଛର ଡାଳରେ କାଠ ତିଆରି ଚଢ଼େଇଟିଏ ରଖି କହିଲେ, "ଏହି କାଠ ଚଢ଼େଇର ଆଖିକୁ ଶର ମାରିବାକୁ ହେବ ।" ରାଜକୁମାରମାନେ ନିଜ ନିଜର ଧନୁ ଧରି ଠିଆ ହୋଇଗଲେ । ଗୁରୁ ଯୁଧିଷ୍ଠିରଙ୍କୁ ଚାହିଁ କହିଲେ, "ବାବୁ, ତୁମେ ବର୍ତ୍ତମାନ କଅଣ ଦେଖୁଛ ?" ଯୁଧିଷ୍ଠିର ଉତ୍ତର ଦେଲେ, "ମହାଶୟ, ମୁଁ ଡାଳ ଉପରେ ରଖା ଯାଇଥିବା ପକ୍ଷୀଟିକୁ ଦେଖି ପାରୁଛି ।"

ଗୁରୁ କହିଲେ, "ଯୁଧିଷ୍ଠିର, ତୁମେ ଅଲଗା ହୋଇ ଠିଆହୁଅ । ଏହି ପରି ଜଣ ଜଣ କରି ସବୁ ରାଜପୁତ୍ରଙ୍କୁ ପଚାରି ଗୁରୁ ସମସ୍ତଙ୍କୁ ଅଲଗା କରିଦେଲେ । ଶେଷରେ ଆସିଲେ ଅର୍ଜୁନ । ଗୁରୁ ତାଙ୍କୁ ମଧ୍ୟ ସେହିପରି ପଚାରିଲେ, "ତୁମକୁ କଅଣ ଦେଖା ଯାଉଛି ?" ଅର୍ଜୁନ କହିଲେ, "ଗୁରୁଦେବ, ମୋତେ କାଠ ଚଢ଼େଇଟିର ଆଖିଟି ମାତ୍ର ଦେଖାଯାଉଛି ।" ଏତିକି କହି ଅର୍ଜୁନ ଶର ମାରି କାଠ ଚଢ଼େଇର ଆଖି ଫୁଟାଇଦେଲେ । ପରୀକ୍ଷା ସ୍ଥାନରେ ଥିବା ଲୋକମାନେ ଆନନ୍ଦରେ ତାଳିମାରି ନାଚି ଉଠିଲେ । ସେହି ଦିନଠାରୁ ଆଚାର୍ଯ୍ୟ ଅର୍ଜୁନଙ୍କୁ ଅଧିକ ସ୍ନେହ କରିବାକୁ ଲାଗିଲେ ।

## ଏକଲବ୍ୟ

ଦ୍ରୋଣାଚାର୍ଯ୍ୟ ରାଜପୁତ୍ରମାନଙ୍କୁ ଅସ୍ତ୍ରଶିକ୍ଷା ଦେଉଥିବା ସମୟରେ ଏକ ଅପୂର୍ବ ଘଟଣା ଘଟିଥିଲା । ଏକଲବ୍ୟ ନାମରେ ଶବର

ପିଲାଟିଏ, ଦ୍ରୋଣଙ୍କ ପ୍ରଶଂସା ଶୁଣି ତାଙ୍କ ପାଖକୁ ଆସି କହିଲା, "ପ୍ରଭୁ, ମୁଁ ଆପଣଙ୍କ ନିକଟରୁ ଅସ୍ତ୍ରଶିକ୍ଷା କରିବା ପାଇଁ ପ୍ରାର୍ଥନା କରୁଛି । ମୋ ପ୍ରତି ଦୟା କରନ୍ତୁ । ଦ୍ରୋଣ ପଚାରିଲେ, "ତୁ କିଏ ? ପିଲାଟି କହିଲା, "ମୋ ନାଁ ଏକଲବ୍ୟ । ମୁଁ ଜାତିରେ ଶବର ।" ଏ କଥା ଶୁଣି ଆଚାର୍ଯ୍ୟ କହିଲେ, "ମୁଁ କେବଳ ରାଜପୁତ୍ରମାନଙ୍କୁ ହିଁ ଶିକ୍ଷାଦାନ ପାଇଁ ଆସିଛି । ଅନ୍ୟ କୌଣସି ଛାତ୍ରକୁ ମୁଁ ଶିକ୍ଷା ଦେଇ ପାରିବି ନାହିଁ । ତୁ ଏ ସ୍ଥାନ ଛାଡ଼ି ଚାଲିଯା' ।"

ଏକଲବ୍ୟ ମନ ଦୁଃଖରେ ଫେରିଗଲା ସତ, ମାତ୍ର ହତାଶ ହୋଇ ନଥିଲା । ସେ ନିଜ କୁଡ଼ିଆରେ ଗୁରୁଙ୍କର ମାଟିରେ ଏକ ମୂର୍ତ୍ତି ତିଆରି କରି ତାଙ୍କୁ ଦ୍ରୋଣ ମନେକରି ପୂଜା କଲା । ପ୍ରତିଦିନ ତାଙ୍କରି ପାଦତଳେ ବସି ଧନୁଶର ଧରି ଅସ୍ତ୍ର ଶିକ୍ଷା କରିବାରେ ଲାଗିଲା । ଅଳ୍ପଦିନ ମଧ୍ୟରେ ସେ ଧନୁର୍ବିଦ୍ୟାରେ ପାରଙ୍ଗମ ହୋଇ ଉଠିଲା ।

ଦିନେ ସବୁ ରାଜପୁତ୍ର ବଣକୁ ଶିକାର କରିବା ପାଇଁ ଯାଉଥିବା ବେଳେ ସାଙ୍ଗରେ ତାଙ୍କର କୁକୁରଟି ଯାଇଥାଏ । ସେତେବେଳକୁ ଏକଲବ୍ୟ ଗୁରୁଦ୍ରୋଣଙ୍କ ମାଟି ତିଆରି ମୂର୍ତ୍ତି ପାଖରେ ପୂଜା କରୁଥାଏ । କୁକୁରଟି ଏକଲବ୍ୟକୁ ଦେଖି ଭୁକିବାରେ ଲାଗିଲା । ପୂଜାରେ ବାଧା ଦେବାରୁ ଏକଲବ୍ୟ ଗୋଟିକ ପରେ ଗୋଟିଏ ଶରମାରି କୁକୁର ମୁହଁକୁ ଏପରି ସିଲେଇ କରିଦେଲା ଯେ ସେ ଆଉ ଭୁକି ପାରିଲା ନାହିଁ । କୁକୁରଟିକୁ ଦେଖି ରାଜପୁତ୍ରମାନେ ଆବାକାବା ହୋଇଗଲେ । ସମସ୍ତେ ଏକଲବ୍ୟ ପାଖକୁ ଯାଇ ପଚାରିଲେ, "ତୁମେ ଏ କୌଶଳ କାହାଠାରୁ ଶିକ୍ଷା କରିଛ ?"

ଦ୍ରୋଣଙ୍କ ମାଟିର ମୂର୍ତ୍ତି ଆଡ଼କୁ ହାତ ଦେଖାଇ ଏକଲବ୍ୟ କହିଲେ, "କୁମାରଗଣ, ଆଚାର୍ଯ୍ୟ ଦ୍ରୋଣ ହିଁ ମୋର ଅସ୍ତ୍ରଗୁରୁ । ତାଙ୍କରି ଆଶୀର୍ବାଦରୁ ମୁଁ ବହୁ ଅସ୍ତ୍ରରେ ଦକ୍ଷତା ଲାଭ କରିଛି ।"

ରାଜପୁତ୍ରମାନେ ହସ୍ତିନା ଫେରିଆସି ଏକଲବ୍ୟର ଅଦ୍ଭୁତ ଅସ୍ତ୍ର-ଚାଳନା କଥା ଗୁରୁ ଦ୍ରୋଣଙ୍କୁ କହିଲେ । ଅର୍ଜୁନ କହିଲେ, "ମହାଶୟ ଆପଣ ଏକଲବ୍ୟକୁ ଅଧିକ ସ୍ନେହ କରୁଥିବା କଥା ଆଜି ଜାଣିବାକୁ ପାଇଲୁ ।"

ଗୁରୁ ଆଶ୍ଚର୍ଯ୍ୟ ହୋଇ କହିଲେ "ତୁମେମାନେ କଅଣ କହୁଛ, ମୁଁ କିଛି ବୁଝି ପାରୁନାହିଁ । ଦିନେ ହେଲେ ମୁଁ ଏକଲବ୍ୟକୁ ଅସ୍ତ୍ରଶିକ୍ଷା ଦେଇନାହିଁ । ସେ ଯାହା ପାଇଛି, ତାହା ତା'ର ଗୁରୁଭକ୍ତି ଓ କଠୋର ଅଧ୍ୟବସାୟର ଫଳ । ବିଦ୍ୟାଶିକ୍ଷାରେ ଆଗ୍ରହ ଓ ଗୁରୁଙ୍କ ପ୍ରତି ଅତ୍ୟନ୍ତ ଭକ୍ତି ଥିଲେ ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । ଏକଲବ୍ୟ ଏହାର ଉଜ୍ଜ୍ୱଳ ଉଦାହାରଣ ।"

ଏକଲବ୍ୟ ଦିନେ ପୃଥିବୀର ସର୍ବଶ୍ରେଷ୍ଠ ବୀର ହେବ, ଏଥିରେ ଦ୍ରୋଣଙ୍କର ଆଉ ସନ୍ଦେହ ରହିଲା ନାହିଁ । ନିଜର ପ୍ରିୟ ଶିଷ୍ୟ ଅର୍ଜୁନଙ୍କୁ ସର୍ବ ଶ୍ରେଷ୍ଠ ବୀର ରୂପେ ଗଢ଼ିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲା । ତେଣୁ ସେ ଏକଲବ୍ୟକୁ ଡାକି ଗୁରୁ ଦକ୍ଷିଣା ମାଗିଲେ । ଦିନେ ହେଲେ ଶିକ୍ଷା ନ ଦେଇ ଦ୍ରୋଣ ଗୁରୁ ଦକ୍ଷିଣା ମାଗିଲେ । ଏକଲବ୍ୟ ଗୁରୁଙ୍କୁ ସାକ୍ଷାତ ଈଶ୍ୱର ଜ୍ଞାନରେ ପୂଜା କରେ । ତେଣୁ ସେ କହିଲା, "ଦକ୍ଷିଣା ରୂପେ ମୁଁ ମୋର ଜୀବନ ମଧ୍ୟ ଆପଣଙ୍କୁ ଦେଇପାରେ । କହନ୍ତୁ ଆପଣ ମୋଠାରୁ କି ଦକ୍ଷିଣା ଆଶା କରନ୍ତି ?" ଗୁରୁ କହିଲେ, "ଯଦି ଦକ୍ଷିଣା ଦେବାକୁ ରାଜି, ତେବେ ମୋତେ ତୋ ଡାହାଣ ହାତର ବୁଢ଼ା ଆଙ୍ଗୁଠିଟି ଦାନକର ।" ଏକଲବ୍ୟ ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ଗୁରୁଙ୍କୁ ଦିକ୍ଷିଣା ରୂପେ ବୁଢ଼ା ଆଙ୍ଗୁଠି ଦେଇ ସବୁ ଦିନ ପାଇଁ ଧନୁରେ ଶର ଯୋଖିବାର ଶକ୍ତି ହରାଇଲା । ଦ୍ରୋଣ ଏକଲବ୍ୟକୁ ଦିନେ ହେଲେ ଶିକ୍ଷା ଦେଇନାହାନ୍ତି । ମହାଭାରତରେ ଦ୍ରୋଣଙ୍କର ଏହା ଏକ ଅନ୍ୟାୟ କାର୍ଯ୍ୟ ରୂପେ ସବୁଦିନ ପାଇଁ ଲେଖାହୋଇ ରହିଗଲା ।

## ରାଜକୁମାରମାନଙ୍କ ଅସ୍ତ୍ରଶିକ୍ଷା ପରୀକ୍ଷା

କୁମାରମାନେ କିପରି ଅସ୍ତ୍ର ଚାଳନା ଶିକ୍ଷା କରିଛନ୍ତି, ତାହାର ପରୀକ୍ଷା ନେବା ପାଇଁ ଭୀଷ୍ମ ଇଚ୍ଛା ପ୍ରକାଶ କଲେ । ଦିନ ମଧ୍ୟ ସ୍ଥିର ହୋଇଗଲା ।

ପରୀକ୍ଷା ଦିନ ପଡ଼ିଆରେ ଯୁଦ୍ଧ କୌଶଳ ଦେଖିବା ପାଇଁ ଅସୁମାରି ଦର୍ଶକ ଜମା ହୋଇଗଲେ । ବିଦୂର ଅନ୍ଧ ଧୃତରାଷ୍ଟ୍ରଙ୍କୁ ଓ କୁନ୍ତୀ ଗାନ୍ଧାରୀଙ୍କୁ ଯୁଦ୍ଧ କୌଶଳ ବିଷୟରେ ଶୁଣାଉଥାନ୍ତି ।

ଅର୍ଜୁନଙ୍କ ପାଳି ପଡ଼ିଲା । ତାଙ୍କର ଅପୂର୍ବ ଅସ୍ତ୍ରଚାଳନା ଦେଖି ଦର୍ଶକମାନେ ଅବାକ୍ ହୋଇଗଲେ । ସମସ୍ତେ ଧନ୍ୟ ଧନ୍ୟ କରିବାରେ ଲାଗିଲେ । ଗୁରୁ ଦ୍ରୋଣ ଅର୍ଜୁନଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ ଦେଲେ । ଅନ୍ୟ ରାଜପୁତ୍ରମାନେ ମଧ୍ୟ ନିଜ ନିଜର ଯୁଦ୍ଧ କୌଶଳ ଦେଖାଇଥିଲେ ।

ବର୍ତ୍ତମାନ ଭୀମ ଓ ଦୁର୍ଯ୍ୟୋଧନ ଗଦା ଯୁଦ୍ଧ ପାଇଁ ଆଗେଇ ଆସିଲେ । ଆଗରୁ ଦୁହିଁଙ୍କ ମଧ୍ୟରେ ଘୋର ଶତ୍ରୁତା ଥାଏ । ସେ ଦୁହେଁ ଏପରି ଯୁଦ୍ଧ କଲେ ଯେ, ଦର୍ଶକମାନଙ୍କ ଭୟ ଜାତ ହେବାରେ ଲାଗିଲା । ଏତିକି ବେଳେ ଦ୍ରୋଣଙ୍କ ପୁଅ ଅଶ୍ୱତ୍ଥମା ଆଗେଇ ଆସି ସେ ଦୁହିଁଙ୍କୁ ଅଲଗା କରିଦେଲେ । ନ ହେଲେ ଅବସ୍ଥା ଅଣଆୟତ୍ତ ହୋଇପଡ଼ିଥାନ୍ତା ।

କର୍ଣ୍ଣ ଆସିଲେ: ଯୁଦ୍ଧ କୌଶଳ ଦେଖାଉଥିବା ସ୍ଥାନରେ ଉପସ୍ଥିତ ଲୋକେ ଅର୍ଜୁନଙ୍କ କୌଶଳ ବାରମ୍ବାର ପ୍ରଶଂସା କରିବାରେ ଲାଗିଥାନ୍ତି । ଏତିକିବେଳେ ମହାବୀର କର୍ଣ୍ଣ ଆଗକୁ ଆସି କହିଲେ, "ଅର୍ଜୁନ ଆପଣମାନଙ୍କୁ କିଛି କିଛି କୌଶଳ ଦେଖାଇଛନ୍ତି । ମୋ ବିଚାରରେ ସେ ଗୁଡ଼ିକ ଅତି ସାଧାରଣ । ମୁଁ କିଛି ବଢ଼ିଆ କୌଶଳ ଆପଣମାନଙ୍କୁ ଦେଖାଇବାକୁ ଚାହେଁ ।"

ଦୁର୍ଯ୍ୟୋଧନ ଆନନ୍ଦିତ ହୋଇ କହିଲେ, "ହେ ମହାବୀର କର୍ଣ୍ଣ, ତୁମେ ଅବଶ୍ୟ ତୁମର ଚମତ୍କାର କୌଶଳମାନ ଦେଖାଇବ ।" କର୍ଣ୍ଣ ଖୁସି ହୋଇ କହିଲେ, "ତେବେ ମୁଁ ପ୍ରଥମେ ଅର୍ଜୁନ ସହିତ ମାଲଯୁଦ୍ଧ କରିବାକୁ ଇଚ୍ଛା କରୁଛି ।"

ସଙ୍ଗେ ସଙ୍ଗେ କୃପାଚାର୍ଯ୍ୟ କହିଲେ, "ଏ କିପରି କଥା ? ଅର୍ଜୁନ ରାଜପୁତ୍ର । ତୁମେ ଜଣେ ସାମାନ୍ୟ ସାରଥୀର ସନ୍ତାନ । ରାଜକୁମାର ସହିତ ରାଜକୁମାର ହିଁ ଲଢ଼ାଇ କରିପାରେ । ଛୋଟ ଲୋକର ପୁଅ ସହିତ ନୁହେଁ । ଏତିକିବେଳେ ଭୀମ କହିଲେ, "ତୁମ ବାପା ଅଧିରଥ ଆମର ରଥ ଚଳାନ୍ତି । ଘୋଡ଼ାମାନଙ୍କ ଦାୟିତ୍ୱ ନିଅନ୍ତି । ତୁମେ ବରଂ ଘୋଡ଼ାଙ୍କ ପାଇଁ ଘାସ କାଟି ବାପାଙ୍କୁ ସାହାଯ୍ୟ କର ।"

ଭୀମଙ୍କ କଟୁକଥା ଶୁଣି ଦୁର୍ଯ୍ୟୋଧନ ଗର୍ଜନ କରି କହିଲେ, "ଠିକ୍ ଅଛି, ଯଦି ଏପରି କଥା, ତେବେ ମୁଁ ବର୍ତ୍ତମାନ ମହାବୀର କର୍ଣ୍ଣଙ୍କୁ ଅଙ୍ଗରାଜ୍ୟର ରାଜା ରୂପେ ଘୋଷଣା କରୁଛି ।" ସେ ତାଙ୍କର ଅଭିଷେକ ମଧ୍ୟ କରାଇଦେଲେ । ଏହାପରେ କର୍ଣ୍ଣ ଅର୍ଜୁନ ଆଡ଼କୁ ଚାହିଁବାରୁ ଅର୍ଜୁନ କହିଲେ, "କର୍ଣ୍ଣ, ତୁମେ ଜଣେ ବୀର ଏକଥା ସତ; ମାତ୍ର ଭାବ ନାହିଁ ଯେ, ଭାରତରେ ତୁମେ ଏକୁଟିଆ ବୀର ହୋଇ ଜନ୍ମଲାଭ କରିଛ । ଯାହାହେଲେ ବି ଅର୍ଜୁନ କାହାକୁ ଭୟ କରିବା ଶିଖିନାହିଁ ।" ଏକଥା ଶୁଣି ସଭାର ଲୋକମାନେ ତାଳିମାରି ନାଚି ଉଠିଲେ । ସୂର୍ଯ୍ୟାସ୍ତ ହୋଇ ଆସିବା ଦେଖି ପିତାମହ ଭୀଷ୍ମ ଖେଳ ବନ୍ଦ କରାଇଦେବାରୁ ଅର୍ଜୁନଙ୍କ କଟୂକଥା କର୍ଣ୍ଣଙ୍କ ମନରେ ଛୁଞ୍ଚ ଫୋଡ଼ିଲା ପରି ଯନ୍ତ୍ରଣା ଦେବାରେ ଲାଗିଲା । ଖେଳ ବନ୍ଦ ହେବା ପରେ ସମସ୍ତେ ଘରକୁ ଫେରିଲେ ।

## ଦ୍ରୋଣ ଗୁରୁଦକ୍ଷିଣା ନେଲେ

ଦିନେ ଦ୍ରୋଣାଚାର୍ଯ୍ୟ ସବୁ ରାଜକୁମାରଙ୍କୁ ଡାକି କହିଲେ, "ମୁଁ ତୁମ୍ଭମାନଙ୍କୁ ଯୁଦ୍ଧର ସମସ୍ତ କୌଶଳ ଶିକ୍ଷା ଦେଇ ସାରିଛି । ଏବେ ତୁମ୍ଭମାନଙ୍କଠାରୁ ଗୁରୁ ଦକ୍ଷିଣା ପାଇବା କଥା । ସୁନାରୂପା ବା ଅନ୍ୟ କିଛି ଦକ୍ଷିଣାରେ ମୁଁ ସନ୍ତୁଷ୍ଟ ହୋଇ ପାରିବି ନାହିଁ । ଶୁଣ,- ଦ୍ରୁପଦ ବର୍ତ୍ତମାନ ପାଞ୍ଚାଳ ଦେଶର ରାଜା । ତାଙ୍କୁ ବନ୍ଦୀ କରି ଆଣି ମୋତେ ଦେଇ ପାରିଲେ ତାହାହିଁ ତୁମର ଉପଯୁକ୍ତ ଗୁରୁ ଦକ୍ଷିଣା ହେବ ଓ ମୋ ଠାରୁ ତୁମ୍ଭେମାନେ ଯେଉଁ ଯୁଦ୍ଧ ବିଦ୍ୟା ଶିକ୍ଷା କରିଛ ତାହାର ପ୍ରମାଣ ମଧ୍ୟ ମିଳିଯିବ ।"

ରାଜପୁତ୍ରମାନେ ଗୁରୁଦେବଙ୍କର ଏ ଅଦ୍ଭୁତ ଗୁରୁ ଦକ୍ଷିଣା କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । କାହାରି ପାଟିରୁ କଥା ବାହାରିଲା ନାହିଁ । କେବଳ ଜଣେ ଅନ୍ୟ ଜଣଙ୍କ ଆଡ଼କୁ ଚାହିଁବାରେ ଲାଗିଲେ । ଗୁରୁ ରାଜପୁତ୍ରମାନଙ୍କ ମନକଥା ଜାଣିପାରି କହିଲେ, "କୁମାରଗଣ, ଘଟଣାଟି ଏହିପରି । ଅନେକ ଦିନ ତଳେ ମୁଁ ମହର୍ଷି ଅଗ୍ନିବେଶଙ୍କ ନିକଟରେ ଯୁଦ୍ଧ ବିଦ୍ୟା ଶିକ୍ଷା କରୁଥିଲି । ସେତିକି ବେଳେ ପାଞ୍ଚାଳ ଦେଶର ରାଜକୁମାର ଦ୍ରୁପଦ ମୋ ସହିତ ଯୁଦ୍ଧ ଶିକ୍ଷା କରିବା ପାଇଁ ଅଗ୍ନିବେଶଙ୍କ ନିକଟକୁ ଆସିଲେ । କ୍ରମେ ଦ୍ରୁପଦ ଓ ମୁଁ ପରସ୍ପରକୁ ଭଲ ପାଇ ବସିଲୁ । ଦ୍ରୁପଦ ମୋତେ କହିଥିଲେ, "ବନ୍ଧୁ, ବାପାଙ୍କର ମୁଁ ଏକମାତ୍ର ପୁତ୍ର । ମୁଁ ରାଜଗାଦିରେ ବସିଲେ ତୁମକୁ ଅଧେ ରାଜ୍ୟର ରାଜା କରାଇ ଆମର ଏ ବନ୍ଧୁତାକୁ ସବୁଦିନ ପାଇଁ ସ୍ଥାୟୀ କରିଦେବି ।"

ଶିକ୍ଷା ଶେଷ ହେଲା, ଦ୍ରୁପଦ ପାଞ୍ଚାଳ ଫେରିଗଲେ । ମୁଁ ଘରକୁ ଫେରି ଗୌତମ ଋଷିଙ୍କ କନ୍ୟା କୃପୀଙ୍କୁ ବିବାହ କଲି । କିଛି ଦିନ ପରେ ମୋର ଅଶ୍ୱତ୍ଥମା ନାମରେ ପୁଅଟିଏ ହେଲା । ଅଶ୍ୱତ୍ଥମା ମୋର ଅତି ପ୍ରିୟ ପୁତ୍ର । ମାତ୍ର ଦରିଦ୍ର ଅବସ୍ଥା ଯୋଗୁଁ ମୁଁ ତାର ଉପଯୁକ୍ତ ଯତ୍ନ ନେଇପାରୁନଥିଲି । ସେଥିପାଇଁ ମୋ ମନରେ ବହୁତ ଦୁଃଖ ହେଉଥାଏ । ବାପ ହୋଇ ମୁଣ୍ଡ ତଳକୁ ହୋଇ ଯାଇଥାଏ । ଏଥି ମଧ୍ୟରେ ଦ୍ରୁପଦ ପାଞ୍ଚାଳର ରାଜା ହେବା କଥା ଶୁଣି ମୁଁ ଖୁବ୍ ଆନନ୍ଦିତ ହେଲି । କାଳ ବିଳମ୍ବ ନକରି ଦିନେ ଦ୍ରୁପଦଙ୍କ ନିକଟରେ ପହଞ୍ଚିଗଲି । ତାଙ୍କୁ ଦେଖା କରି କହିଲି, "ବନ୍ଧୁ, ମୋତେ ଅଧେ ରାଜ୍ୟର ରାଜା କରି ଦେବ ବୋଲି ତୁମେ ଗୁରୁଗୃହରେ ଶପଥ କରିଥିବା କଥା ନିଶ୍ଚୟ ମନେଥିବ । ସେଇଥିପାଇଁ ମୁଁ ଆଜି ଆସିଛି ।"

ମୋ କଥା ଶୁଣିବା ମାତ୍ରେ ଦ୍ରୁପଦ ଗର୍ଜି ଉଠିଲେ, "ଦେଖୁଛି, ତୁମର ସାହସ କମ୍ ନୁହେଁ । ମୋତେ ବନ୍ଧୁ ବୋଲି କହିବାକୁ ତୁମର ସାହସ ହେଲା କିପରି ? ତୁମ ସହିତ ମୁଁ ସାଙ୍ଗ ହୋଇଥିଲି, ସେ ତ ଅନେକ ଦିନ ତଳର କଥା । ବର୍ତ୍ତମାନ ମୁଁ ପାଞ୍ଚାଳର ରାଜା, ଆଉ ତୁମେ ଜଣେ ଦରିଦ୍ର ଭିକାରୀ ବ୍ରାହ୍ମଣ । ତୁମେ କିପରି ମୋର ବନ୍ଧୁ ହୋଇ ପାରିବ ? ସମାନ ସମାନ ଲୋକଙ୍କ ମଧ୍ୟରେ ବନ୍ଧୁତା ଶୋଭାପାଏ । ତୁମ ପରି ଜଣେ ଅତି ଦରିଦ୍ର ଲୋକ ସହିତ ମୋ ପରି ମହାରାଜାର ବନ୍ଧୁତା ଏକାବେଳେ ଅସମ୍ଭବ । ପୁଣି ତୁମକୁ ଅଧେ ରାଜ୍ୟ ଦେବି ବୋଲି ଶପଥ କରିବା କଥା ମୋର ଆଦୌ ମନେପଡୁନାହିଁ । ହଉ, ଯେତେବେଳେ ଏତେ ବାଟ ଆସି ଯାଇଛ, ରାତିଟା ଏଇଠି ରହିଯାଅ । ମୁଁ ଆଜିପାଇଁ ତୁମ ରହିବା ଓ ଖାଇବାର ବ୍ୟବସ୍ଥା କରି ଦେଉଛି ।"

କୁମାରଗଣ, ଦ୍ରୁପଦଙ୍କ ଏ କଟୁକଥା ମୋ ଦେହରେ ନିଆଁ ଲଗାଇ ଦେଲା । ମୁଁ ସଙ୍ଗେ ସଙ୍ଗେ ପାଞ୍ଚାଳ ରାଜ୍ୟ ଛାଡ଼ି ଚାଲି ଆସିଲି । ସେହିଦିନ ଦ୍ରୁପଦଙ୍କୁ ଉପଯୁକ୍ତ ଶିକ୍ଷାଦେବା ପାଇଁ ପ୍ରତିଜ୍ଞା କରିଥିଲି । ମୁଁ କାହିଁକି ଏପରି ଗୁରୁ ଦକ୍ଷିଣା ମାଗିଲି ତୁମେ ସମସ୍ତେ ବୁଝିପାରୁଥିବ । ବିଳମ୍ବ ନ କରି ଦ୍ରୁପଦଙ୍କୁ ବନ୍ଦୀ କରି ମୋ ପାଖରେ ଠିଆ କରାଅ ।"

## ଦ୍ରୁପଦ ବନ୍ଦୀ ହୋଇ ଆସିଲେ

ଗୁରୁଙ୍କ ଠାରୁ ସମସ୍ତ ବିଷୟ ଶୁଣିବା ପରେ ଗର୍ବୀ ଦୁର୍ଯ୍ୟୋଧନ ନିଜର ଭାଇ ଓ କର୍ଣ୍ଣଙ୍କୁ ସଙ୍ଗରେ ନେଇ ଦ୍ରୁପଦଙ୍କୁ ଆକ୍ରମଣ କରିବା ନିମିତ୍ତ ବାହାରି ପଡ଼ିଲେ । ମାତ୍ର ବନ୍ଦୀ କରିବା ତ ଦୂରର କଥା ଦ୍ରୁପଦଙ୍କ ହାତରେ ପରାଜିତ ହୋଇ ପଳାଇ ଆସିଲେ । ଏହାପରେ ଦ୍ରୋଣାଚାର୍ଯ୍ୟ ଅର୍ଜୁନଙ୍କୁ ଚାହିଁ ପଚାରିଲେ, "ତୁମେ ପାଞ୍ଚାଳ ଯାଇ ଦ୍ରୁପଦଙ୍କୁ ବନ୍ଦୀ କରି ଆଣି ପାରିବକି ?" ଅର୍ଜୁନ ବିନୀତ ଭାବରେ ଗୁରୁଙ୍କୁ ପ୍ରଣାମ କରି ସଙ୍ଗେ ସଙ୍ଗେ ଦ୍ରୁପଦଙ୍କ ରାଜ୍ୟକୁ ବାହାରିପଡ଼ିଲେ । ପାଣ୍ଡବ ପାଞ୍ଚଭାଇଙ୍କର ମହାରାଜ ଦ୍ରୁପଦଙ୍କ ସହିତ ପ୍ରବଳ ଯୁଦ୍ଧ ହେଲା । ଶେଷରେ ଦ୍ରୁପଦ ପରାସ୍ତ ହୋଇ ଅର୍ଜୁନଙ୍କ ହାତରେ ବନ୍ଦୀ ଆଚାର୍ଯ୍ୟ ଦ୍ରୋଣଙ୍କ ନିକଟରେ ଉପସ୍ଥିତ ହେଲେ ।

ଦ୍ରୁପଦଙ୍କୁ ବନ୍ଦୀ ଅବସ୍ଥାରେ ଦେଖି ଦ୍ରୋଣ ହସି ହସି କହିଲେ, "ମୋର ଆଦେଶ ଅନୁସାରେ ମୋର ପ୍ରିୟ ଶିଷ୍ୟମାନେ

ତୁମକୁ ପରାସ୍ତ କରି ତୁମର ରାଜପଦ ଏପରିକି ତୁମ ଜୀବନକୁ ମଧ୍ୟ ମୋ ହାତରେ ଦେଇ ଦେଇଛନ୍ତି । ମାତ୍ର ମହାରାଜା ଦ୍ରୁପଦ, ତୁମ ଜୀବନ ବିଷୟରେ ଆଦୌ ସନ୍ଦେହ କର ନାହିଁ । ତୁମେ ମୋର ବାଲ୍ୟବନ୍ଧୁ । ପିଲାଦିନେ ଆମେ ଖୁବ୍ ସାଙ୍ଗ ଥିଲେ । ଦୁଃଖର କଥା ରାଜପଦ, ଧନ, ସମ୍ପତ୍ତି ଆଉ ଭୋଗ ବିଷୟରେ ବୁଡ଼ି ରହି ତୁମେ ଆମର ସେ ପିଲାଦିନର ବନ୍ଧୁତାକୁ ସମ୍ପୂର୍ଣ୍ଣ ଭୁଲିଯାଇଛ । ଖାଲି ସେତିକି ନୁହେଁ, ମୁଁ ତୁମକୁ ଆମ ବନ୍ଧୁତ୍ୱ କଥା ମନେପକାଇ ଦେବାରେ ତୁମେ କ୍ଷମତାରେ ଅନ୍ଧ ହୋଇ ମୋତେ ଅପମାନ ମଧ୍ୟ ଦେଇ ବିଦା କରି ଦେଇଛ । ସେ ସମସ୍ତ ମୁଁ ନୀରବରେ ସହ୍ୟ କରିଯାଇଥିଲି । ମନେପକାଇ ଦେଉଛି ଯେ, ତୁମେ କହିଥିଲ ଜଣେ ରାଜା ସହିତ କେବଳ ରାଜା ହିଁ ବନ୍ଧୁତା ସମ୍ଭବ । ବର୍ତ୍ତମାନ ମୁଁ ତୁମର ରାଜ୍ୟ ଜୟ କରି ସମୁଦାୟ ପାଞ୍ଚାଳ ଦେଶର ରାଜା । କିନ୍ତୁ ଦ୍ରୁପଦଙ୍କୁ ମୁଁ ରାଜା ରୂପେ ଦେଖିବାକୁ ଚାହେଁ । ଏବେ ସମୁଦାୟ ପାଞ୍ଚାଳ ରାଜ୍ୟରୁ ଅଧେ ତୁମକୁ ଛାଡ଼ିଦେଉଛି । ତୁମେ ଗଙ୍ଗାନଦୀର ଦକ୍ଷିଣ ପଟର ରାଜା ହେବ ଓ ମୁଁ ହେବି ଉତ୍ତର ପଟର ରାଜା । ଏଥିରେ ଯଦି ଏକମତ ହୁଅ, ତେବେ ମୋତେ ବନ୍ଧୁ ବୋଲି ଗ୍ରହଣ କର ।"

ଦ୍ରୁପଦଙ୍କର କହିବାର କିଛି ନଥିଲା । ଦ୍ରୋଣ ଦେଖିଲେ ଯଥେଷ୍ଟ ଶାସ୍ତି ଦିଆଗଲାଣି । ତେଣୁ ସେ ଦ୍ରୁପଦଙ୍କ ବନ୍ଧନ ଖୋଲି ଦେଇ ତାଙ୍କୁ ଆଲିଙ୍ଗନ କଲେ ଓ ଯଥେଷ୍ଟ ଆଦର ସମ୍ମାନ ଦେଖାଇଲେ ।

ଦ୍ରୁପଦ ଅଧେ ରାଜ୍ୟ ଫେରି ପାଇ ରାଜପୁରୀକୁ ଆସିଲେ ସତ; ମାତ୍ର ଦ୍ରୋଣଙ୍କ ଉପରେ ତାଙ୍କର ରାଗ ବହୁ ଗୁଣରେ ବଢ଼ିଗଲା । ଉପଯୁକ୍ତ ପ୍ରତିଶୋଧ ନେବା ପାଇଁ ସେ ଉପାୟ ଚିନ୍ତା କରିବାରେ ଲାଗିଲେ ।

କିଛି ଦିନ ପରେ ମହାରାଜା ଦ୍ରୁପଦ ଏକ ପୁତ୍ରେଷ୍ଟି ଯଜ୍ଞର ଅୟୋଜନ କଲେ । ଏହି ଯଜ୍ଞରୁ ଧୃଷ୍ଟଦ୍ୟୁମ୍ନ ନାମରେ ଏକ ପୁତ୍ର ଜନ୍ମ ହୋଇଥିଲା । ମହାଭାରତ ଯୁଦ୍ଧରେ ଏହି ଧୃଷ୍ଟଦ୍ୟୁମ୍ନ ଦ୍ରୋଣାଚାର୍ଯ୍ୟଙ୍କୁ ହତ୍ୟା କରିଥିଲେ ।

ଦ୍ରୁପଦଙ୍କ ଝିଅ ଦ୍ରୌପଦୀ ପାଣ୍ଡବମାନଙ୍କୁ ବିବାହ କରିଥିଲେ । ଅନ୍ୟ ପୁଅ ଶିଖଣ୍ଡୀ ଭୀଷ୍ମଙ୍କ ମୃତ୍ୟୁର କାରଣ ହୋଇଥିଲେ । ଶିଖଣ୍ଡୀ ପୂର୍ବ ଜନ୍ମରେ କାଶୀରାଜାଙ୍କ କନ୍ୟା ଅମ୍ବା ରୂପେ ଜନ୍ମ ହୋଇଥିଲେ ।

## ଜଉଘର ପୋଡ଼ି

ଅସ୍ତ୍ର ପରୀକ୍ଷା ଦିନଠାରୁ ଅର୍ଜୁନଙ୍କର ପ୍ରଶଂସା ଚାରିଆଡ଼େ ଖେଳିବୁଲିଲା । ଭୀମଙ୍କର ଅମାପ ବଳ କଥା କେହି ଭୁଲି ପାରୁ ନଥାନ୍ତି । ଯେଉଁଆଡ଼େ ଶୁଣିବ, ସବୁଠି ଯୁଧିଷ୍ଠିରଙ୍କ ପ୍ରଶଂସା । ପାଣ୍ଡବମାନଙ୍କୁ ସମସ୍ତେ ପ୍ରଶଂସା କରୁଥିବା ଶୁଣି ଦୁର୍ଯ୍ୟୋଧନଙ୍କ ଦେହ ସହିଲା ନାହିଁ । କୌଣସି ଉପାୟରେ ସେମାନଙ୍କୁ ହସ୍ତିନାରୁ ବାହାର କରି ଜୀବନରେ ମାରି ନଦେବା ପର୍ଯ୍ୟନ୍ତ ତାଙ୍କର ଚିନ୍ତା ଦୂର ହେବ ନାହିଁ । ଏହିପରି ଭାବୁଥିବା ବେଳେ ତାଙ୍କ ମାମୁଁ କପଟୀ ଶକୁନୀ ଓ ବନ୍ଧୁ କର୍ଣ୍ଣ ତାଙ୍କ ସହିତ ଆସି ଯୋଗଦେଲେ । ଦୁର୍ଯ୍ୟୋଧନ କହିଲେ, "ମାମୁଁ, ଶୁଣିଥିବ, ଲୋକେ କୁହାକୁହି ହେଉଛନ୍ତି ପାଣ୍ଡୁଙ୍କ ବଡ଼ପୁଅ ଯୁଧିଷ୍ଠିର ହିଁ ହସ୍ତିନାର ସିଂହାସନ ପାଇବା ଉଚିତ । ବର୍ତ୍ତମାନର ରାଜା ଧୃତରାଷ୍ଟ୍ର ଜନ୍ମରୁ ଅନ୍ଧ । ସେ କି ରାଜ୍ୟ ଶାସନ କରିବେ ? ଭୀଷ୍ମ ସବୁକିଛି କରିପାରନ୍ତେ; ମାତ୍ର ରାଜା ହେବେ ନାହିଁ ବୋଲି ସେ ଆଗରୁ ପ୍ରତିଜ୍ଞା କରି ସାରିଛନ୍ତି । ଏ ସବୁ କଥା ମୁଁ ଆଉ କେତେଦିନ ସହିବି ? ଆପଣ କିଛି ଉପାୟ କରନ୍ତୁ, ଯହିଁରେ ମୁଁ ହସ୍ତିନାର ରାଜଗାଦିରେ ବସି ପାରିବି ଓ ମୋର କେହି ଶତ୍ରୁ ରହିବେ ନାହିଁ ।"

ମନ୍ଦବୁଦ୍ଧି ଶକୁନୀ ଭଣଜାଙ୍କୁ କେତେକ ଉପଦେଶ ଦେଲା ପରେ ଦୁର୍ଯ୍ୟୋଧନ ମହାରାଜା ଧୃତରାଷ୍ଟ୍ରଙ୍କ ନିକଟକୁ ଗଲେ ଓ କହିଲେ, "ବାପା, ହସ୍ତିନାର ଲୋକେ ଆପଣଙ୍କୁ ଅଯୋଗ୍ୟ କହି ଯୁଧିଷ୍ଠିରଙ୍କୁ ରାଜା କରିବା ପାଇଁ ଚାହିଁଲେଣି । ମହାରାଜ ପାଣ୍ଡୁ ଆପଣଙ୍କଠାରୁ ସାନ ହୋଇ ଗୁଣବାନ ଥିବାରୁ ରାଜଗାଦି ପାଇଥିଲେ; କିନ୍ତୁ ଆପଣ ଜନ୍ମରୁ ଅନ୍ଧ ଥିବାରୁ ବଡ଼ ହୋଇ ମଧ୍ୟ ରାଜା

ହୋଇ ପାରିନଥିଲେ । ଯଦି ଯୁଧିଷ୍ଠିର ବର୍ତ୍ତମାନ ରାଜଗାଦି ପାଆନ୍ତି, ତେବେ ତାଙ୍କ ପରେ ତାଙ୍କ ପୁଅ ଓ ନାତି ମାନେ ରାଜ୍ୟଭୋଗ କରି ଆନନ୍ଦରେ ରହିବେ । ଆମେ ସମସ୍ତେ ପୁରୁଷ ପୁରୁଷ ଧରି ତାଙ୍କରି ଉପରେ ନିର୍ଭର କରି ଚଳିବାକୁ ବାଧ୍ୟ ହେବୁ ଓ ସେମାନଙ୍କ ଆଦେଶ ପାଳନ କରିବୁ । ଏବେ ମଧ୍ୟ ବେଳ ଅଛି, ଆପଣ ଆପଣଙ୍କ ବଂଶକୁ ରକ୍ଷା କରିବା ପାଇଁ କିଛି ଉପାୟ ଚିନ୍ତା କରନ୍ତୁ ।"

ଦୁର୍ଯ୍ୟୋଧନ କଥା ଶୁଣି ଧୃତରାଷ୍ଟ୍ର ମହା ଚିନ୍ତାରେ ପଡ଼ିଲେ । ତାଙ୍କର ବୁଦ୍ଧିର ଅଭାବ ନଥିଲା । କିନ୍ତୁ ନିଜ ପୁଅମାନଙ୍କ ପ୍ରତି ଅତି ଅଧିକ ସ୍ନେହ ଥିବାରୁ ଅନେକ ସମୟରେ ସେ ଜାଣିଶୁଣି ଭୁଲ୍ କରି ପକାଉଥିଲେ । ବଡ଼ପୁଅ ଦୁର୍ଯ୍ୟୋଧନର କଥା ଶୁଣି ଧୃତରାଷ୍ଟ୍ର କହିଲେ, "ବାବୁ, ଯାହା କହିଲୁ ସେ ସବୁ ସତ । ଏକଥା ମଧ୍ୟ ସତ ଯେ ଯୁଧିଷ୍ଠିର ଅତି ସରଳ, ଧାର୍ମିକ ଓ ସାଧୁ ପ୍ରକୃତିର ପିଲା । ହସ୍ତିନାର ଲୋକେ ତାଙ୍କୁ ଖୁବ୍ ପ୍ରଶଂସା କରନ୍ତି । ହସ୍ତିନା ସିଂହାସନ ତାଙ୍କ ପିତାଙ୍କର । ସେତିକି ନୁହେଁ, ରାଜ୍ୟର ମନ୍ତ୍ରୀ, ସେନା, ଓ ସେନାପତିମାନେ ମହାରାଜା ପାଣ୍ଡୁଙ୍କଠାରୁ ବହୁ ଉପକାର ପାଇଛନ୍ତି । ବର୍ତ୍ତମାନ ପାଣ୍ଡବମାନଙ୍କ ପ୍ରତି କୌଣସି ଅବିଚାର କରାଗଲେ ସେମାନେ ଯୁଧିଷ୍ଠିରଙ୍କୁ ସାହାଯ୍ୟ କରି ଆମର ବହୁ ଅନିଷ୍ଟ କରିବେ । ଏପରିକି ଆମ ସମସ୍ତଙ୍କୁ ହତ୍ୟା ମଧ୍ୟ କରିପାରନ୍ତି ।"

ଦୁର୍ଯ୍ୟୋଧନ କହିଲେ, "ବାବା, ଆପଣ ଯାହା କହିଲେ ତାହା ସତ; ମାତ୍ର ଧନ ସମ୍ପତ୍ତି ଦ୍ୱାରା ମୁଁ ସମସ୍ତଙ୍କୁ ମୋ ପଟକୁ ନେଇଆସି ପାରିବି । ଆପଣ ସୈନ୍ୟ, ସେନାପତି କିମ୍ବା ମନ୍ତ୍ରୀମାନଙ୍କ କଥା ଚିନ୍ତା କରନ୍ତୁ ନାହିଁ । ପୁଣି ଭୀଷ୍ମ ଆମ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି । ସେ କାହା ପକ୍ଷକୁ ଢ଼ଳିବେ ନାହିଁ । ଦ୍ରୋଣଙ୍କ ପୁଅ ମହାବୀର ଅଶ୍ୱତ୍ଥମା ମୋର ଅତି ପ୍ରିୟ । ପୁଅ ଯୋଗୁ ଦ୍ରୋଣ ମଧ୍ୟ ଆମ ପକ୍ଷରେ ରହିବେ । ତା ଛଡ଼ା କୃପାଚାର୍ଯ୍ୟଙ୍କ କଥା । ସେ କ'ଣ ନିଜ ଭିଣୋଇ ଓ ଭଣଜା ଅଶ୍ୱତ୍ଥମାଙ୍କୁ ଛାଡ଼ି ପାଣ୍ଡବମାନଙ୍କୁ ସାହାଯ୍ୟ କରିବେ ? ହୋଇପାରେ, ବିଦୂର ପାଣ୍ଡବ ମାନଙ୍କୁ ସାହାଯ୍ୟ କରିପାରନ୍ତି; ମାତ୍ର ସେ ଏକୁଟିଆ ଆମର ବା କି କ୍ଷତି କରିପାରିବେ ? ସେ କେଡ଼େ ବଳବାନ ସେ କଥା ମୋତେ ଉତ୍ତମ ରୂପେ ଜଣାଅଛି । ଆପଣ ଅଯଥା ଭୟ କରି ଶେଷକୁ ସବୁ ନଷ୍ଟ କରି ବସିବେ । ମୁଁ ଆଉ ଅଧିକ କାଳ ଅପେକ୍ଷା କରିପାରିବି ନାହିଁ । ଯେ କୌଣସି ଉପାୟରେ ପାଣ୍ଡବମାନଙ୍କୁ ବାରଣାବନ୍ତକୁ ପଠାଇବାର ବ୍ୟବସ୍ଥା କରି ଦିଅନ୍ତୁ ।"

ଏହାପରେ ଦୁର୍ଯ୍ୟୋଧନ ଧନରତ୍ନ ଓ କ୍ଷମତା ଆଦି ଦେଇ ବହୁ ମନ୍ତ୍ରୀ, ସେନାପତି ଓ ପ୍ରଧାନ ନଗର ଲୋକଙ୍କୁ ନିଜ ପକ୍ଷକୁ ଆଣିବାରେ ଲାଗିପଡ଼ିଲେ । ଅଳ୍ପ ସମୟ ମଧ୍ୟରେ ସେ ଗୋଟିଏ ଦଳ ଗଢ଼ି ଦେଲେ । ଶକୁନିଙ୍କ ମନ୍ତ୍ରୀ କନିକା ଏହି ଦଳର ମୁଖ୍ୟ ହୋଇ ଅନ୍ଧ ରାଜାଙ୍କୁ କହିଲେ, "ମହାରାଜ, ପାଣ୍ଡବମାନେ ଆପଣଙ୍କ ଭାଇର ପୁଅ ହେଲେ ମଧ୍ୟ ଘରର ଶତ୍ରୁ । ସେମାନେ ଖୁବ୍ ବଳୁଆ । ଆପଣ ବେଳହୁଁ ସାବଧାନ ନହେଲେ ଘର ଡିଙ୍କି କୁମ୍ଭୀର ପାଲିଟିବ, ସାବଧାନ ।"

ଦୁର୍ଯ୍ୟୋଧନ ଆସି ଧୃତରାଷ୍ଟ୍ରଙ୍କୁ କହିଲେ, "ମୁଁ ସମସ୍ତ ବ୍ୟବସ୍ଥା କରି ସାରିଲିଣି । ମନ୍ତ୍ରୀ ସେନାପତି, ସୈନ୍ୟଦଳ ଓ ନଗରବାସୀ ସମସ୍ତେ ବର୍ତ୍ତମାନ ଆମ ପକ୍ଷରେ, ଏହି ସୁଯୋଗରେ ପାଣ୍ଡବମାନଙ୍କୁ ବାରଣାବନ୍ତ ପଠାଇଦେଲେ ଆମ ବାଟର କଣ୍ଟା ଦୂର ହୋଇଯିବ । ଥରେ ଏ ରାଜ୍ୟ ଆମ କରାଗତ ହୋଇଗଲେ ପାଣ୍ଡବମାନେ ଆଉ କୌଣସିମତେ ହସ୍ତିନାକୁ ଆସି କିଛି କରିବାକୁ ସାହସ କରିପାରିବେ ନାହିଁ । ନିକଟରେ ବାରଣାବନ୍ତରେ ଭଗବାନ ଶିବଙ୍କର ମେଳା ହେବ । ସେଥିପାଇଁ ନାନା ସ୍ଥାନରୁ ବହୁ ଭକ୍ତ, ସାଧୁ ଓ ସନ୍ୟାସୀମାନେ ସେଠାକୁ ଆସିବେ । ବାରଣାବନ୍ତର ଉଚ୍ଚ ପ୍ରଶଂସା କରି ପାଣ୍ଡବମାନଙ୍କ ମନରେ ସେଠାକୁ ଯିବାର ଆଗ୍ରହ ସୃଷ୍ଟି କରିବାର ବ୍ୟବସ୍ଥା ମୁଁ କରିସାରିଛି । ଆପଣ ଆଉ ବିଳମ୍ବ ନକରି ଶୀଘ୍ର ସେମାନଙ୍କୁ ବାରଣାବନ୍ତ ଯିବା ପାଇଁ ଆଦେଶ ଦେଇ ଦିଅନ୍ତୁ ।"

ମନ୍ତ୍ରୀମାନେ, ବହୁ ନଗରବାସୀ ଓ କେତେକ ସାଧାରଣ ଲୋକ ବାରଣାବନ୍ତ ନଗରୀର ଖୁବ୍ ପ୍ରଶଂସା ଗାଇବାରେ ଲାଗିଥାନ୍ତି । ବହୁ ତୁଣ୍ଡରୁ ସ୍ଥାନଟିର ସୌନ୍ଦର୍ଯ୍ୟ, ଶିବଙ୍କ ମହିମା ଆଦି ଶୁଣି ଶୁଣି ସେଠାକୁ ଯିବା ପାଇଁ ପାଣ୍ଡବମାନଙ୍କ ମନରେ ଆଗ୍ରହ ବଢ଼ିବାରେ ଲାଗିଲା । ଧୃତରାଷ୍ଟ୍ର, ଯୁଧିଷ୍ଠିର ଓ ତାଙ୍କର ଅନ୍ୟ ଭାଇମାନଙ୍କୁ ଡାକି କହିଲେ, "ବାବୁ, ଭଗବାନ ମୋତେ ଆଖି ଦେଇ

ନାହାନ୍ତି । ବାରଣାବନ୍ତ ନଗରଟି ସବୁଠାରୁ ସୁନ୍ଦର ବୋଲି ଖାଲି ଶୁଣିବାକୁ ପାଉଛି ସିନା ଦେଖିକରି ମନବୋଧ କରିବାର ସୁଯୋଗ ମୋର ନାହିଁ । ସେଠାକୁ ଯାଇ ମନଖୁସି କରିବାକୁ ଯଦି ତୁମ୍ଭମାନଙ୍କର ଇଚ୍ଛା ଥାଏ, ତେବେ ସାଙ୍ଗସାଥୀମାନଙ୍କୁ ନେଇ ସେହି ଅପୂର୍ବ ସୁନ୍ଦର ନଗରୀକୁ ଦେଖି ନିଅ, ଭଗବାନ ଶଙ୍କରଙ୍କୁ ଦର୍ଶନ କର ଓ ଦୀନ, ଦୁଃଖୀମାନଙ୍କୁ ମନଇଚ୍ଛା ଦାନ କରି ମହାପୁଣ୍ୟ ଅର୍ଜନ କର । କିଛିଦିନ ସେଠାରେ ରହି ପୁଣି ହସ୍ତିନା ଫେରିଆସିବାରେ କିଛି ଅସୁବିଧା ହେବନାହିଁ ।"

ଧୃତରାଷ୍ଟ୍ରଙ୍କ ଚତୁର କଥାରେ ସରଳ ଯୁଧିଷ୍ଠିର ଭଳି ଗଲେ । ସେ ଭୀଷ୍ମ, ଦ୍ରୋଣ, ବିଦୂର ଓ କୃପାଚାର୍ଯ୍ୟ ଆଦି ଗୁରୁଜନଙ୍କଠାରୁ ଆଶୀର୍ବାଦ ନେଇ ମାତା କୁନ୍ତୀ ଓ ଭାଇମାନଙ୍କ ସହିତ ବାରଣାବନ୍ତ ଯିବା ପାଇଁ ସ୍ଥିର କଲେ ।

ପାଣ୍ଡବମାନେ ବାରଣାବନ୍ତ ଯାଉଥିବା ଦେଖି ଦୁର୍ଯ୍ୟୋଧନଙ୍କ ଆନନ୍ଦ କହିଲେ ନସରେ । ଏତେଦିନେ ତାଙ୍କ ମନ କାମନା ପୂର୍ଣ୍ଣ ହେଲା ଜାଣି ଖୁବ୍ ଖୁସି ହେଲେ ଏବଂ ସଙ୍ଗେ ସଙ୍ଗେ ପୁରୋଚନ ନାମକ ଜଣେ ମନ୍ତ୍ରୀଙ୍କୁ ପାଖକୁ ଡାକି କହିଲେ, "ତୁମେ ମୋର ଅତି ବିଶ୍ୱାସୀ ବନ୍ଧୁ । ତେଣୁ ମୁଁ ଯାହା କରିବାକୁ କହିବି, ତାହା ତୁମେ ଅତି ସାବଧାନ ହୋଇ କରିବ । ଯେପରି କେହି କୌଣସି କଥା ଆଦୌ ଜାଣିବାକୁ ପାଇବେ ନାହିଁ । ପାଣ୍ଡବମାନେ ବାରଣାବନ୍ତ ଯିବାର ସ୍ଥିର ହୋଇଗଲା । ତୁମେ ଅତିଶୀଘ୍ର ସେଠାକୁ ଯାଇ ସେମାନଙ୍କର ରହିବା ପାଇଁ ଏକ ସୁନ୍ଦର ଘର ତିଆରି କରିଦିଅ । ମନେରଖ, ଘର ମାଟି, ଝୋଟ, ତେଲ, ଘିଅ, ଜଉ ଓ ଶୀଘ୍ର ନିଆଁ ଧରୁଥିବା କାଠ ଆଦି ଦେଇ ଏପରି କୌଶଳରେ ତିଆରି କରିବ, ଯେପରି କେହି କିଛି ଜାଣିପାରିବେ ନାହିଁ । ଘର ତିଆରି ପରେ ପାଣ୍ଡବମାନଙ୍କୁ ଅତ୍ୟନ୍ତ ଆଦରରେ ପାଛୋଟି ନେଇ ସେଠାରେ ରଖାଇବ । ସାବଧାନ, ସେମାନଙ୍କର ଯେପରି କୌଣସି ଅସୁବିଧା ନ ହୁଏ । କିଛିଦିନ ଅତ୍ୟନ୍ତ ସେବାଯତ୍ନ କରି ସେମାନଙ୍କର ଖୁବ୍ ବିଶ୍ୱାସୀ ହୋଇଯିବ । ଦିନେ ସେମାନେ ନିଘୋଡ଼ ନିଦରେ ଶୋଇଥିବା ବେଳେ ଠିକ୍ ଅଧରାତିରେ ଘରେ ନିଆଁ ଲଗାଇଦେବ । ସେହି ନିଆଁରେ କୁନ୍ତୀଙ୍କ ସହିତ ପାଣ୍ଡବମାନେ ପୋଡ଼ି ପାଉଁଶ ହୋଇଯିବେ । କେହି ଆମକୁ ସନ୍ଦେହ କରିବାର କାରଣ ନଥିବ ଏବଂ ସବୁଦିନ ପାଇଁ ଆମ ବାଟ ସଫା ହୋଇଯିବ ।"

ଦୁର୍ଯ୍ୟୋଧନଙ୍କୁ ଚାହିଁ ତାଙ୍କ ପୁରୋଚନ ମନ୍ତ୍ରୀ । ସେ ଅତି ଅଳ୍ପଦିନ ମଧ୍ୟରେ ବାରଣାବନ୍ତଠାରେ ଅତି ସୁନ୍ଦର ଘରଟିଏ ତିଆରି କରିଦେଲେ ।

ପାଣ୍ଡବମାନେ ବାରଣାବନ୍ତ ଯିବା ସମୟରେ ଲୋକେ କୁହାକୁହି ହେଲେ, "ରାଜା ଧୃତରାଷ୍ଟ୍ର ଏକେତ ଅନ୍ଧ, ଦ୍ୱିତୀୟରେ ସେ ପବିତ୍ର କୁରୁବଂଶର ଏକ କଳଙ୍କ ମଧ୍ୟ । ପାଣ୍ଡବମାନଙ୍କୁ କୌଶଳରେ ହସ୍ତିନାରୁ ବିଦାୟ କରି ସେ ଘୋର ଅନ୍ୟାୟ କରିବାକୁ ଯାଉଛନ୍ତି । ପିତାମହ ଭୀଷ୍ମ କିପରି ଏ ଅନ୍ୟାୟ କାର୍ଯ୍ୟକୁ ସହିନେଲେ ? ଯାହାହେଲେ ମଧ୍ୟ ଆମେ କଦାପି ଏହା ସହି ପାରିବୁ ନାହିଁ । ବରଂ ହସ୍ତିନା ଛାଡ଼ି ପାଣ୍ଡବମାନଙ୍କ ସହିତ ବାରଣାବନ୍ତକୁ ଚାଲିଯିବୁ ।"

ଯୁଧିଷ୍ଠିର ସେମାନଙ୍କୁ ବହୁତ ବୁଝାଇ ଶୁଝାଇ ଶାନ୍ତ କଲେ । ନଗରବାସୀମାନେ ଯୁଧିଷ୍ଠିରଙ୍କ କଥା ମାନି ଫେରିଆସିଲେ । ବିଦୂର ପାଣ୍ଡବମାନଙ୍କୁ ବିଦାୟ ଦେବା ସମୟରେ ଯୁଧିଷ୍ଠିରଙ୍କୁ କହିଲେ, "ମୂଷା କୁଟା ଗଦା ଭିତରେ ଥିଲେ ମଧ୍ୟ ଗଦାରେ ନିଆଁ ଲାଗିଲେ ସେ ପୋଡ଼ିମରେ ନାହିଁ, କାରଣ ସେ ଆଗରୁ ଗାତ କରି ରଖିଥାଏ । ବିପଦ ଆସିବା ଦେଖିଲେ ସେ ଗାତ ଭିତରେ ପଶି ଜୀବନ ରକ୍ଷା କରେ । ଅନ୍ଧ ଲୋକ ଦିଗ ବାରିପାରେ ନାହିଁ । କିନ୍ତୁ ପଥିକମାନେ ସେମାନଙ୍କ ବାଟ ସୁବିଧାରେ ଜାଣିପାରନ୍ତି । ନକ୍ଷତ୍ରମାନଙ୍କୁ ଦେଖି ଦିଗ ନିର୍ଣ୍ଣୟ କରିହୁଏ । ମୋର ଏହି କଥା ସବୁର ଅର୍ଥ ବୁଝି କାମ କରିବ ।"

ଯୁଧିଷ୍ଠିର 'ବୁଝିଲି' ବୋଲି କହି ବିଦୂରଙ୍କଠାରୁ ବିଦାୟ ନେଲେ । କୁନ୍ତୀ ପଚାରିଲେ, "ବିଦୂରଙ୍କ କଥାର ଅର୍ଥ କିଛି ବୁଝିହେଲା ନାହିଁ । ସେ କଅଣ କହିଲେ କି ?"

ଯୁଧିଷ୍ଠିର କହିଲେ, "ମା', ଦୁର୍ଯ୍ୟୋଧନ ଆମକୁ ପୋଡ଼ି ମାରିଦେବା ପାଇଁ ଜଉ, ଘିଅ ଆଦିରେ ଘର ତିଆରି କରିଛି । ସେଥିରୁ ରକ୍ଷା ପାଇବାକୁ ସେ ଆମକୁ ଉପାୟ ବତାଇ ଦେଇଛନ୍ତି ।"

ତା ପରେ ପାଣ୍ଡବମାନେ ମାତା କୁନ୍ତୀଙ୍କ ସହ ଫଗୁଣମାସ ଅଷ୍ଟମୀ ଦିନ ବାରଣାବନ୍ତରେ ପହଞ୍ଚିଲେ । ବାରଣାବନ୍ତ ନଗରବାସୀ ପାଣ୍ଡବମାନଙ୍କୁ ଅତି ଆଦରରେ ପାଛୋଟି ନେଲେ ।

ଜଉଘର ତୋଳା ସରିବା ପରେ ମନ୍ତ୍ରୀ ପୁରୋଚନ ପାଣ୍ଡବମାନଙ୍କୁ ସେଠାରେ ରହିବା ପାଇଁ ଅନୁରୋଧ କଲେ । ପାଣ୍ଡବମାନେ ବିନା ଆପତ୍ତିରେ କୁନ୍ତୀଙ୍କୁ ନେଇ ସେଇ ଘରେ ରହିଲେ ।

ଯୁଧିଷ୍ଠିର ଭୀମଙ୍କୁ କହିଲେ, "ଭାଇ ଏ ଘର ଜଉ, ଘିଅ, ଝୋଟ ଆଦିରେ ତୋଳା ହୋଇଛି । ପୁରୋଚ୍ନ ଠିକ୍ ଦୁର୍ଯ୍ୟୋଧନ ପରି ପାପୀ । କୌଣସି ଅନ୍ୟାୟ କାର୍ଯ୍ୟକୁ ତା'ର ତିଳେ ହେଲେ ଭୟ ନାହିଁ । ମଧୁର ବ୍ୟବହାର ଦ୍ୱାରା ଆପଣାର କରି ନେବା ପରେ ଘରେ ନିଆଁ ଲଗାଇ ଆମକୁ ପୋଡ଼ି ମାରିବା ପାଇଁ ସେ ଏଠାରେ ଅଛି । ବିଦୂର ଜଣେ ମହାତ୍ମା । ସେ ଦୁଷ୍ଟ ଦୁର୍ଯ୍ୟୋଧନର ଚକ୍ରାନ୍ତ ଜାଣିପାରି ଆଗରୁ ମୋତେ ସାବଧାନ କରାଇ ଦେଇ ବଡ଼ ଉପକାର କରିଛନ୍ତି ।"

ଭୀମ କହିଲେ, "ଯଦି ଏପରି କଥା, ତେବେ ଆଜି ଏ ଘର ଛାଡ଼ି ଚାଲିଯିବା । ରହିବା ପାଇଁ ଆମକୁ ଘରର ଅଭାବ ରହିବ ନାହିଁ ।"

ଯୁଧିଷ୍ଠିର କହିଲେ, "ଭାଇ, ଯଦି ପୁରୋଚନ ଆମ କଥା ଜାଣିଯାଏ, ତେବେ ସେ ନିଶ୍ଚୟ ଅନିଷ୍ଟ କରିବ । ତେଣୁ ଆମେ ଏଇଠି ରହି କିପରି ବିପଦରୁ ରକ୍ଷା ପାଇବା ସେଥିପାଇଁ ଚିନ୍ତା କରିବା ଉଚିତ୍ । ଦୁର୍ଯ୍ୟୋଧନ ଆମକୁ ମାରିବା ପାଇଁ ଯୋଜନା କରିଛି । ଆମେ ଘର ଛାଡ଼ି ଦେଲେ କଥାଟା ପ୍ରକାଶ ହୋଇଯିବ । ସେ ଯେ କୌଣସି ଉପାୟରେ ଆମକୁ ମାରିଦେବା ପାଇଁ ଚେଷ୍ଟା କରିବ । ତେଣୁ ଏ ସ୍ଥାନରୁ କିପରି ପଳାଇ ଯାଇପାରିବା ସେ ବିଷୟରେ ଚିନ୍ତା କରିବା ଉଚିତ । ମୋ ମତରେ ଆମେ ଦିନବେଳେ ଅରଣ୍ୟରେ ବୁଲି ଶିକାର କରିବା । ତା ସାଙ୍ଗେ ସାଙ୍ଗେ ଅରଣ୍ୟ ମଧ୍ୟରେ ବାଟ ଠିକଣା କରି ନେଇ ଶୀଘ୍ର ପଳାଇଯିବା ସୁବିଧା ହେବ । ଘର ଭିତରେ ସୁଡ଼ଙ୍ଗ କରି ରାତିରେ ତାହାରି ଭିତରେ ରହିବା । ଏହିପରି ଉପାୟ କରି ଶତ୍ରୁ ହାତରୁ ନିଜକୁ ରକ୍ଷା କରିବା ।"

ତହିଁ ଆରଦିନ ବିଦୂର ଗୋଟିଏ ଲୋକ ଯୁଧିଷ୍ଠିରଙ୍କ ନିକଟକୁ ପଠାଇଲେ । ସେ ଘର ଭିତରେ ଏକ ସୁଡ଼ଙ୍ଗ ଖୋଳି ଖୋଳି ଅରଣ୍ୟ ପର୍ଯ୍ୟନ୍ତ ନେବ ବୋଲି ବିଦୂର ତାକୁ କହିଥିବା ଜଣାଇଲା । ଯୁଧିଷ୍ଠିର ଅତ୍ୟନ୍ତ ଆନନ୍ଦିତ ହୋଇ ଲୋକଟିକୁ ଭିତରକୁ ନେଲେ । ସୁଡ଼ଙ୍ଗ ଖୋଳୁଥିବା ଲୋକ ଏତେ ସାବଧାନରେ କାମ କରୁଥିଲା ଯେ, ପୁରୋଚ୍ନ ସେ ବିଷୟରେ କିଛି ଜାଣିପାରିଲା ନାହିଁ । ସୁଡ଼ଙ୍ଗ ଖୋଳାକାମ ସରିବା ପରେ ଲୋକଟି ଯୁଧିଷ୍ଠିରଙ୍କଠାରୁ ବିଦାୟନେଇ ଚାଲିଗଲା । ପାଣ୍ଡବମାନେ ଦିନଯାକ ବଣରେ ଏଣେତେଣେ ବୁଲି ରାତିରେ ସୁଡ଼ଙ୍ଗ ଭିତରେ ଶୋଇପଡୁଥିଲେ । ଏହିପରି ବର୍ଷଟିଏ ବିତିଗଲା ।

ଦିନେ ପୁରୋଚ୍ନର ଭାବଭଙ୍ଗୀ ଦେଖି ଯୁଧିଷ୍ଠିର ଜାଣିପାରିଲେ ଯେ ଦୁଷ୍ଟ ପୁରୋଚ୍ନ ନିଶ୍ଚୟ କିଛି ମନ୍ଦକାର୍ଯ୍ୟ କରିବା ପାଇଁ ସ୍ଥିର କରିଛି । ସେ ଭାଇମାନଙ୍କୁ ଡାକି କହିଲେ, "ଆଜି ଆମ୍ଭମାନଙ୍କୁ ପଳାଇବାକୁ ହେବ । ଦୁଷ୍ଟ ପୁରୋଚ୍ନ ଆଜି ରାତିରେ ଆମ ସମସ୍ତଙ୍କୁ ପୋଡ଼ି ମାରିବା ପାଇଁ ଚିନ୍ତା କରୁଛି । ସେ କିଛି କରିବା ପୂର୍ବରୁ ଆମେ ଏ ଘରେ ନିଆଁ ଲଗାଇ ଦେବା ଓ ପୁରୋଚ୍ନ ସେଇ ନିଆଁରେ ପୋଡ଼ି ମରିବ । ଅନ୍ୟ ପାଇଁ ଖୋଳୁଥିବା ଖାଲରେ ନିଜେ ପଡ଼ି ମରିବ ।"

ସେଦିନ ରାତିରେ କୁନ୍ତୀ ଗୋଟିଏ ଭୋଜିର ଅୟୋଜନ କରି ବାରଣାବନ୍ତ ନଗରର କିଛି ଲୋକ ଓ ଘରର ଚାକର, ଚାକରାଣୀମାନଙ୍କୁ ପେଟପୂରା ଖାଇବାକୁ ଦେଲେ । ଏତିକିବେଳେ ଜଣେ ସ୍ତ୍ରୀ ଲୋକ ତା'ର ପାଞ୍ଚଟି ପୁଅଙ୍କୁ ସଙ୍ଗରେ ଆଣି

ଖାଇବାକୁ ମାଗିଲା । ତାଙ୍କୁ ମଧ୍ୟ ପେଟପୂରା ଖାଇବାକୁ ଦିଆଗଲା । ଭୋକ ବିକଳରେ ସେମାନେ ଏତେଗୁଡ଼ାଏ ଖାଇଦେଲେ ଯେ, ବାହାରକୁ ଯିବା ସମ୍ଭବ ହେଲା ନାହିଁ । କୌଣସି ମତେ ପଡ଼ି ଉଠି ଜଉଘରର ଗୋଟିଏ ପାଖରେ ଗାଢ଼ ନିଦରେ ଶୋଇ ପଡ଼ିଲେ । ଚାକର ଓ ଜଗୁଆଳିମାନେ ମଧ୍ୟ ନିଦରେ ଅଚେତ ହୋଇ ପଡ଼ିଥାନ୍ତି ।

ଠିକ୍ ଅଧରାତି । ଚାରିଆଡ଼େ ଶୁନ୍‌ଶାନ । ଏତିକିବେଳେ ଭୀମ ପ୍ରଥମେ ପୁରୋଚନ ରହୁଥିବା ଘରେ ନିଆଁ ଲଗାଇଦେଇ ପରେ ଜଉଘରର କେତେକ ସ୍ଥାନରେ ନିଆଁ ମାଡ଼ି ଦେଲେ । କୁନ୍ତୀ ଦେବୀ ପାଞ୍ଚପୁଅଙ୍କୁ ଧରି ସୁଡ଼ଙ୍ଗ ବାଟେ ଘୋର ଅନ୍ଧାର ମଧ୍ୟରେ ପଳାଇବାକୁ ଲାଗିଲେ । ଚାହୁଁ ଚାହୁଁ ପ୍ରବଳ ବେଗରେ ନିଆଁ ଜଳିଉଠିଲା । ନଗରବାସୀମାନେ ଦଉଡ଼ି ଆସି ଖୁବ୍ ପାଟିତୁଣ୍ଡ କଲେ ଓ ଶୀଘ୍ର ନିଆଁ ଲିଭାଇଦେବା ପାଇଁ ପ୍ରାଣପଣେ ଉଦ୍ୟମ କଲେ; ମାତ୍ର ସବୁ ବୃଥା ହେଲା । ଅଳ୍ପ ସମୟ ମଧ୍ୟରେ ବିରାଟ ଜଉଘର ପୋଡ଼ି ପାଉଁଶ ହୋଇଗଲା । ପାଣ୍ଡବମାନେ ପୋଡ଼ି ମରିଯାଇଛନ୍ତି ଭାବି ନଗରବାସୀମାନେ ଶୋକ କଲେ । ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ପୋଡ଼ିମାରିବା ପାଇଁ ଏ କୌଶଳ କରିଥିବା କଥା କହି ବହୁ ନିନ୍ଦା କରିବାକୁ ଲାଗିଲେ ।

ପୁରୋଚନ ଘରେ ପ୍ରଥମେ ନିଆଁ ଲାଗିଥିବାରୁ ସେ ନିଦରୁ ଉଠି ପଳାଇଯିବାକୁ ବାଟ ପାଇଲା ନାହିଁ । ସର୍ବ ପ୍ରଥମେ ସେ ନିଜ ଶରରେ ନିଜେ ମଲା ।

ସକାଳୁ ନଗରବାସୀମାନେ ଏଣେତେଣେ ବୁଲି ଦେଖୁଥିବା ବେଳେ ପ୍ରଥମେ ପୁରୋଚନର ପୋଡ଼ା ଦେହ ଦେଖିଲେ । ଜଉଘରର ବାରଣ୍ଡାରେ ଗୋଟିଏ ସ୍ତ୍ରୀ ଲୋକ ଓ ପାଞ୍ଚଟି ପୁରୁଷର ପୋଡ଼ା ଦେହ ଦେଖି ସ୍ତ୍ରୀ ଲୋକଟା କୁନ୍ତୀ ଦେବୀ ଓ ଅନ୍ୟମାନଙ୍କୁ ପାଣ୍ଡବ ପାଞ୍ଚଭାଇ ବୋଲି ମନେକଲେ । ସେମାନେ ସଙ୍ଗେ ସଙ୍ଗେ ହସ୍ତିନାପୁରକୁ ଏ ଦୁର୍ଘଟଣା ଜଣାଇଦେବା ପାଇଁ ଲୋକ ପଠାଇଦେଲେ ।

ଗଭୀର ପୁଷ୍କରିଣୀର ଉପର ଅଂଶର ଜଳ ଉଷ୍ମ ଓ ତଳ ଭାଗର ଜଳ ଶୀତଳ ଥିବା ପରି ଧୃତରାଷ୍ଟ୍ର ପାଣ୍ଡବମାନଙ୍କ ମୃତ୍ୟୁ ଖବରରେ ପ୍ରଥମେ ଆନନ୍ଦିତ ହୋଇ ଉଠିଥିଲେ ମଧ୍ୟ ପରେ ପରେ ଦୁଃଖରେ ଭାଙ୍ଗି ପଡ଼ିଲେ । ହସ୍ତିନାପୁରବାସୀଗଣ ଅତ୍ୟନ୍ତ ଦୁଃଖିତ ହୋଇ ଶୋକ କରିବାରେ ଲାଗିଲେ । ମହାତ୍ମା ବିଦୂର ଲୋକେ ଜାଣିବା ପାଇଁ ଶୋକ କରିଥିଲେ ମାତ୍ର । ଭୀଷ୍ମଙ୍କ ଦୁଃଖ ସୀମା ଟପିଗଲା । ସେ ପିଲାଙ୍କ ପରି ଭୁଇଁରେ ଲୋଟିବାକୁ ଲାଗିଲେ । ତାଙ୍କ ଅବସ୍ଥା ଦେଖି ବିଦୂର ଥୟ ଧରି ନପାରି ଗୋପନରେ ତାଙ୍କୁ ସମସ୍ତ ଘଟଣା ଜଣାଇ ଦେଇ ଶାନ୍ତ କରାଇଲେ ।

ଏଣେ ପାଣ୍ଡବମାନେ କୁନ୍ତୀଦେବୀଙ୍କ ସହିତ ସେହି ଅନ୍ଧକାର ରାତିରେ ଅତି ଶୀଘ୍ର ଅତି କଷ୍ଟରେ ପଳାଇ ଯାଉଥାନ୍ତି । କିଛି ଦୂର ଯିବା ପରେ ଭୀମଙ୍କ ଛଡ଼ା ଅନ୍ୟମାନେ ଖୁବ୍ ହାଲିଆ ହୋଇପଡ଼ିଲେ । ଏକଥା ଦେଖି ଭୀମ ନକୁଳ, ସହଦେବ ଓ କୁନ୍ତୀଙ୍କୁ କାନ୍ଧରେ ବସାଇଲେ । ଯୁଧିଷ୍ଠିର ଓ ଅର୍ଜୁନଙ୍କୁ ଦୁଇ ହାତରେ ଧରି ପବନ ବେଗରେ ଧାଇଁବାରେ ଲାଗିଲେ । କିଛି ସମୟ ପରେ ସମସ୍ତେ ଗଙ୍ଗାନଦୀ କୂଳରେ ପହଞ୍ଚିଲେ । କିପରି ନଦୀ ପାରି ହେବେ, ଏଇ କଥା ଭାବୁଥିବା ବେଳେ ଜଣେ ଲୋକ କହିଲା, "ମହାତ୍ମା ବିଦୂର ଡଙ୍ଗା ଦେଇ ମୋତେ ପଠାଇଛନ୍ତି । ଶୀଘ୍ର ଆସନ୍ତୁ । ମୁଁ ଆପଣଙ୍କୁ ନଦୀ ପାରି କରାଇଦେବା ପରେ ଆପଣମାନେ ଏ ରାଜ୍ୟ ଛାଡ଼ି ଅନ୍ୟଆଡ଼େ ଚାଲିଯିବାକୁ ବିଦୂର କହିଛନ୍ତି । ଆପଣମାନେ ସୁଖରେ ରହିବା ସେ ଆଶୀର୍ବାଦ ମଧ୍ୟ କରିଛନ୍ତି ।"

ଗଙ୍ଗା ପାରି ହେବା ପରେ ସେମାନେ ଜଣେ ଜଣେ ଧାଇଁବାରେ ଲାଗିଲେ । ଅନେକ ବାଟ ଯିବାପରେ ସମସ୍ତେ ଖୁବ୍ କ୍ଳାନ୍ତ ହୋଇ ପଡ଼ିଲେ । ଭୀମଙ୍କୁ ଛାଡ଼ି ଆଉ କେହି ଆଗେଇବାକୁ ସାହସ କରିପାରିଲେ ନାହିଁ । ପ୍ରବଳ ଶୋଷରେ ସମସ୍ତେ ଅସ୍ଥିର ହୋଇ ଉଠିଲେ । ଭୀମ ମା' ଓ ଭାଇମାନଙ୍କୁ ଗୋଟିଏ ବରଗଛ ତଳେ ବସାଇଦେଇ ଗଛ ଉପରକୁ ଚଢ଼ିଗଲେ । ଅଳପ ଦୂରରେ ପକ୍ଷୀମାନେ ଉଡୁଥିବାର୍ ଦେଖି ସେଠାରେ ପାଣି ଥିବାର ଅନୁମାନ କଲେ । ସେ ଗଛରୁ ଓହ୍ଲାଇ ପାଣି ପାଇଁ ଦୌଡ଼ିଲେ । ନିଜେ ପାଣି

ପିଇ ପଦ୍ମ ପତ୍ର ଠୋଲାରେ ପାଣି ଆଣି ଭାଇମାନଙ୍କ ପାଖରେ ପହଞ୍ଚିଲେ । ପାଣି ପିଇବା ମାତ୍ରେ ସମସ୍ତେ ସେଇ ଅଳିଆ ଅସନା ଜାଗାରେ ଗାଢ଼ ନିଦରେ ଶୋଇପଡ଼ିଲେ । ଭାଇ ଓ ମା'ଙ୍କୁ ଏପରି ସ୍ଥାନରେ ଶୋଇଥିବା ଦେଖି ଭୀମସେନଙ୍କ ହୃଦୟ ଦୁଃଖରେ ଫାଟିଗଲା ପରି ଲାଗିଲା । ରାଜପୁରୀର ସୁଖ ସଙ୍ଗେ ଅରଣ୍ୟ ମଧ୍ୟର ଏ ଦୁଃଖ ତୁଳନା କରି ତାଙ୍କ ଆଖିରୁ ଧାର ଧାର ଲୁହ ବହିବାରେ ଲାଗିଲା ।

ସମସ୍ତେ ନିଦରେ ଶୋଇଥିବାବେଳେ କେବଳ ଭୀମ ଚେଇଁ ରହି ପହରା ଦେଉଥାନ୍ତି । କୁନ୍ତୀ ଓ ପାଣ୍ଡବମାନେ ଯେଉଁଠି ଶୋଇଥିଲେ ତାର ଅଳ୍ପ ଦୂରରେ ଏକ ଶାଳଗଛ ଜଙ୍ଗଲ ଥିଲା । ସେଠାରେ ହିଡ଼ିମ୍ବ ଅସୁର ଓ ତା ଭଉଣୀ ହିଡ଼ିମ୍ବା ରହୁଥିଲେ । ହିଡ଼ିମ୍ବ ବଣରେ ବୁଲୁ ବୁଲୁ ପାଣ୍ଡବମାନଙ୍କୁ ଦେଖି ଖାଇବାକୁ ମନ ବଳାଇଲା । ସେ ଭଉଣୀ ହିଡ଼ିମ୍ବାକୁ ଡାକି କହିଲା, "ଅନେକ ଦିନ ହେଲାଣି ମଣିଷ ମାଂସ ଆମ ପାଟିରେ ବାଜିନାହିଁ । ଆଜି ଯୋଗକୁ ଏକାବେଳେକେ ଛଅଛଅଟା ମଣିଷ ହାବୁଡ଼େ ପଡ଼ିଛନ୍ତି । ଶୀଘ୍ର ଯା, ସେମାନଙ୍କୁ ମାରି ଏଠାକୁ ନେଇ ଆ । ଦୁହେଁ ସାଙ୍ଗ ହୋଇ ମଣିଷ ମାଉଁସର ଭୋଜି କରିବା ।"

ଭାଇ କଥା ଶୁଣି ହିଡ଼ିମ୍ବା ଆସି ଦେଖିଲା, ପାଞ୍ଚଜଣ ଲୋକ ଶୋଇଛନ୍ତି । କେବଳ ହାତୀ ପରି ଜଣେ ବଳୁଆ ମଣିଷ ସେମାନଙ୍କୁ ଜଗି ବସିଛି । ଭୀମଙ୍କ ଚେହେରା ଦେଖି ହିଡ଼ିମ୍ବା ତାଙ୍କୁ ବିବାହ କରିବାକୁ ଇଚ୍ଛା କଲା । ସେ ସଙ୍ଗେ ସଙ୍ଗେ ନିଜର ରାକ୍ଷସୀ ରୂପ ବଦଳାଇ ଗୋଟିଏ ଅତି ସୁନ୍ଦରୀ ସ୍ତ୍ରୀ ଲୋକ ହୋଇ ଯାଇ କହିଲା, "ଏ ବଣରେ ହିଡ଼ିମ୍ବ ଅସୁର ରହେ, ଏକଥା କ'ଣ ଆପଣ ଜାଣିନାହାନ୍ତି ? ମୁଁ ସେଇ ହିଡ଼ିମ୍ବର ଭଉଣୀ ହିଡ଼ିମ୍ବା । ଆପଣମାନଙ୍କୁ ମାରିବା ପାଇଁ ଭାଇ ମୋତେ ପଠାଇଥିଲା । ଆପଣଙ୍କୁ ଦେଖିଲା ବେଳୁ ମୋ ମନ ବଦଳି ଯାଇଛି । ମୁଁ ଆପଣଙ୍କୁ ବିବାହ କରିବାକୁ ଇଚ୍ଛା କରେ । ଦୟାକରି ମୋତେ ଗ୍ରହଣ କରନ୍ତୁ ।"

ଭୀମ ହିଡ଼ିମ୍ବାକୁ ନାହିଁ କରି ଦେବାରୁ ସେ ବହୁ ବିନୟ ହୋଇ ତାଙ୍କ ପାଦତଳେ ପଡ଼ି ପ୍ରାର୍ଥନା କଲା । ମାତ୍ର ଭୀମଙ୍କ ମନ ଆଦୌ ବଦଳିଲା ନାହିଁ ।

ହିଡ଼ିମ୍ବାର ଆସିବା ବିଳମ୍ବ ହେବାରୁ ନିଜେ ହିଡ଼ିମ୍ବ ସେଠାକୁ ଆସିଲା । ଦୂରରୁ ହିଡ଼ିମ୍ବକୁ ଦେଖି ହିଡ଼ିମ୍ବା ଭୀମଙ୍କୁ କହିଲା, "ଦେଖ, ମଣିଷ ମାଂସ ଲୋଭରେ ମୋ ଭାଇ ଆପଣମାନଙ୍କ ପାଖକୁ ମାଡ଼ି ଆସୁଛି । ତା ହାତରୁ ରକ୍ଷା ପାଇବାର କୌଣସି ଉପାୟ ନାହିଁ । ସେ ଯେପରି ବଳବାନ୍ ସେପରି ନିଷ୍ଠୁର ମଧ୍ୟ । ଆପଣ ମୋ କଥାରେ ରାଜି ହେଲେ ମୁଁ ମାୟାବଳରେ ସମସ୍ତଙ୍କୁ ଅନ୍ୟ ସ୍ଥାନକୁ ନେଇ ଚାଲିଯିବି । ସେ ଏଠାକୁ ଆସି କାହାକୁ ହେଲେ ନପାଇ ଫେରିଯିବ ।"

ଭୀମ କହିଲେ, "ଶୋଇଥିବା ଭାଇ ମା'ଙ୍କୁ ମୁଁ ଉଠାଇବି ନାହିଁ । ତୋ ଭାଇ କଥା କଅଣ କହୁଛୁ ? ତାରି ପରି ଶହ ଶହ ରାକ୍ଷସ ଆସିଲେ ମଧ୍ୟ ମୋର କିଛି କ୍ଷତି କରି ପାରିବେ ନାହିଁ । ଭାଇ ଆସୁ, ମୁଁ ତା ସାଙ୍ଗରେ କିଛି ସମୟ ଯୁଦ୍ଧ କରେଁ । ତୁ ଠିଆ ହୋଇ ଯୁଦ୍ଧ ଦେଖୁଥା । ତା'ପରେ ବାହାଘର କଥା ବୁଝିବା ।"

ହିଡ଼ିମ୍ବ ଆସି ଭୀମଙ୍କ ନିକଟରେ ପହଞ୍ଚିଗଲା । ଭଉଣୀ ହିଡ଼ିମ୍ବାକୁ ସୁନ୍ଦରୀ ସ୍ତ୍ରୀ ବେଶରେ ଦେଖି ତାର ରାଗର ସୀମା ରହିଲା ନାହିଁ । ସେ ତାକୁ ମାରିବା ପାଇଁ ଦୌଡ଼ି ଆସିଲାବେଳକୁ ମଝିରେ ଭୀମ ଅଟକାଇଦେଲେ । ଦୁହିଁଙ୍କ ଭିତରେ ଯୁଦ୍ଧ ଆରମ୍ଭ ହୋଇଗଲା । ଧରାଧରି, ପିଟାପିଟି, ଗଡ଼ାଗଡ଼ିରେ ବଣର କେତେ ଗଛ ପଦା ହୋଇଗଲା । ବଣୁଆ ଜୀବମାନେ ଭୟରେ ଏଣେତେଣେ ପଳାଇବାକୁ ଲାଗିଲେ । ଭୀଷଣ ଗର୍ଜନ ଶୁଣି କୁନ୍ତୀ ଓ ପାଣ୍ଡବମାନଙ୍କର ନିଦ ଭାଙ୍ଗିଗଲା । ଅର୍ଜୁନ, ନକୁଳ ଓ ସହଦେବ ଭୀମଙ୍କୁ ସାହାଯ୍ୟ କରିବା ପାଇଁ ଦୌଡ଼ିଗଲେ । ମାତ୍ର ସେମାନେ ସେଠାରେ ପହଞ୍ଚିବା ଆଗରୁ ଭୀମ ହିଡ଼ିମ୍ବକୁ ତଳେ କଚାଡ଼ି ଦେଲେ ଓ ତା'ର ଦୁଇ ଗୋଡ଼କୁ ଧରି ଘିରି ଘିରି କରି ବୁଲାଇ ଏପରି ଜୋର୍‌ରେ ଫିଙ୍ଗିଦେଲେ ଯେ ସେ ଅନେକ ଦୂରରେ ପଡ଼ି ମରିଗଲା ।

ହିଡ଼ିମ୍ବା ଭୀମର ବୀରପଣିଆ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ କୁନ୍ତୀ ଦେବୀଙ୍କ ନିକଟକୁ ଯାଇ ତା ମନକଥା କହିଲା । କୁନ୍ତୀ ତା କଥାରେ ଅତ୍ୟନ୍ତ ସୁନ୍ତୁଷ୍ଟ ହୋଇ ଯୁଧିଷ୍ଠିରଙ୍କୁ ସବୁ କଥା କହିଲେ । ଯୁଧିଷ୍ଠିର ଅନୁମତି ଦେବାରୁ ଭୀମ ହିଡ଼ିମ୍ବାକୁ ବିବାହ କଲେ । ଭୀମ ସେହି ବଣରେ ହିଡ଼ିମ୍ବା ସହିତ କିଛି କାଳ ରହିଲେ । ମାତା ଓ ଅନ୍ୟ ଭାଇମାନେ ମଧ୍ୟ ସେହି ବଣ ମଧ୍ୟରେ ରହିଥାନ୍ତି । କିଛି ଦିନ ପରେ ଭୀମଙ୍କର ଘଟୋତ୍କଚ ନାମକ ପୁଅଟିଏ ହେଲା । ପିଲାଦିନରୁ ଘଟୋତ୍କଚ ଅତି ପରାକ୍ରମୀ ବୀର ଥିଲା ।

ଯେତେବେଳେ ଭୀମ ମାଆ ଓ ଭାଇମାନଙ୍କ ସହ ସେ ବଣ ଛାଡ଼ି ଅନ୍ୟ ଆଡ଼େ ଯିବା ପାଇଁ ବାହାରିଲେ, ଘଟୋତ୍କଚ ନିଜ ମାଆ ହିଡ଼ିମ୍ବା ସହିତ ହିମାଳୟ ପର୍ବତକୁ ଯିବାକୁ ପ୍ରସ୍ତୁତ ହେଲା । ଯିବା ପୂର୍ବରୁ ସେ ଭୀମଙ୍କ ନିକଟକୁ ଯାଇ କହିଲା, "ବାପା, ମୁଁ ଯାଉଛି । ଯେତେବେଳେ ଦରକାର ପଡ଼ିବ, ସ୍ମରଣ କଲେ ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଅତିଶୀଘ୍ର ପହଞ୍ଚିବି ।"

## ଏକଚକ୍ରା ନଗରବାସ

ବଣରେ ପାଣ୍ଡବମାନେ ବୁଲୁ ବୁଲୁ ବାଟରେ ମହର୍ଷି ବ୍ୟାସଦେବଙ୍କ ସହିତ ସେମାନଙ୍କର ଭେଟ ହେଲା । ପାଣ୍ଡବମାନେ ଋଷିଙ୍କୁ ପ୍ରଣାମ କଲେ । କୁନ୍ତୀ କାନ୍ଦି ଉଠିବା ଦେଖି ବ୍ୟାସ କହିଲେ, "ବ୍ୟସ୍ତ ହୁଅ ନାହିଁ; ମନେରଖ ମନୁଷ୍ୟର ସବୁଦିନ ଏକା ପରି କଟେ ନାହିଁ । ଚକ ବୁଲିଲା ପରି ସୁଖ ଓ ଦୁଃଖ ଆସିବ ଓ ଯିବ । ସୁଖ ବା ଦୁଃଖ ଯାହା ଆସୁ, ସବୁବେଳେ ଧର୍ମ ବାଟରେ ଚାଲିବା ହିଁ ପ୍ରକୃତ ମଣିଷ ପଣିଆ । ସବୁବେଳେ ଗର୍ବ କରିବା କିମ୍ବା ଦୁଃଖ ସମୟରେ କାତର ହୋଇ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ ।"

ବ୍ୟାସଙ୍କ ଉପଦେଶ ଶୁଣି ପାଣ୍ଡବମାନଙ୍କ ମନର ବଳ ବଢ଼ିଗଲା । ସେହି ପରାମର୍ଶ ଅନୁସାରେ ସେମାନେ ମୃଗଚର୍ମ ଓ ବକଳ ପିନ୍ଧି ବ୍ରହ୍ମଚାରୀ ବେଶରେ ଏକଚକ୍ରା ନଗରୀର ଏକ ବ୍ରାହ୍ମଣଙ୍କ ଘରେ ବସା କରି ରହିଲେ ।

ପାଣ୍ଡବ ପାଞ୍ଚଭାଇ ପ୍ରତିଦିନ ସକାଳୁ ଭିକ୍ଷା କରିବାକୁ ଯାଇ ସନ୍ଧ୍ୟାବେଳକୁ ଫେରନ୍ତି । ଯେ ଯାହା ଭିକ୍ଷା ପାଇଥାନ୍ତି ସବୁ ମା'ଙ୍କୁ ଦେଇଦିଅନ୍ତି । ରାନ୍ଧି ସାରି କୁନ୍ତୀ ଅଧେ ଖାଦ୍ୟ ଭୀମଙ୍କୁ ଦେଇ ବାକୀ ଅଧକୁ ଚାରି ପୁଅଙ୍କ ସହିତ ନିଜେ ଖାଆନ୍ତି । ସମୁଦାୟ ଖାଦ୍ୟରୁ ଅଧେ ଖାଇ ମଧ୍ୟ ଭୀମଙ୍କ ପେଟ ପୂରେ ନାହିଁ । ସେ ଯେପରି ବଳୁଆ, ତାଙ୍କର ଖାଦ୍ୟ ମଧ୍ୟ ସେହି ଅନୁସାରେ ଅଧିକ । ସେଥିପାଇଁ ଭୀମଙ୍କ ଅନ୍ୟ ନାମ ବୃକୋଦର ।

## ବକାସୁର ବଧ

ଦିନେ ଭୀମ ଭିକ୍ଷା କରିବାକୁ ନଯାଇ ମାଆଙ୍କ ପାଖରେ ରହିଥିଲେ । ହଠାତ୍ ତାଙ୍କୁ ଆଶ୍ରୟ ଦେଇଥିବା ବ୍ରାହ୍ମଣଙ୍କ ଘରୁ କାନ୍ଦଣା ଶବ୍ଦ ଶୁଣାଗଲା । କୁନ୍ତୀ ଚମକି ପଡ଼ି କହିଲେ, "ନିଶ୍ଚୟ କିଛି ବିପଦ ପଡ଼ିଛି । ବ୍ରାହ୍ମଣ ଆମକୁ ରହିବାକୁ ସୁବିଧା ଦେଇ ବହୁ ଉପକାର କରିଛନ୍ତି । ବିପଦ ବେଳେ ଆମେ ତାଙ୍କୁ ସାହାଯ୍ୟ କରିବା ଉଚିତ । ମୁଁ ଯାଉଛି । ଘଟଣା କଅଣ ବୁଝି ଆସେ ।"

କୁନ୍ତୀ ବ୍ରାହ୍ମଣଙ୍କ ଘର ଭିତରକୁ ଯାଇ ଶୁଣିଲେ, ବ୍ରାହ୍ମଣ କହୁଛନ୍ତି, "ଏ ସ୍ଥାନ ଛାଡ଼ି ଅନ୍ୟ କୁଆଡ଼େ ଚାଲିଯିବା ପାଇଁ ମୁଁ କେତେ ଥର ନ କହିଛି ? ମାତ୍ର ତୁମେ ଆଦୌ ମୋ କଥା ଶୁଣିଲ ନାହିଁ । ଏବେ କଅଣ ହେବ କହ ? ମୋ ଜୀବନ ରକ୍ଷା କରିବା ପାଇଁ ମୁଁ କିପରି ସ୍ତ୍ରୀ ଓ ପୁଅକୁ ମରଣ ମୁହଁକୁ ଠେଲିଦେବି । ଯଦି ମୁଁ ଅସୁର ମୁହଁକୁ ଯାଏ, ତେବେ ମୋ ପରିବାରଙ୍କୁ ବଞ୍ଚାଇବ କିଏ ? ବରଂ ଆମେ ସମସ୍ତେ ଏକାବେଳେକେ ମରିଯିବା ଭଲ ।"

ସ୍ତ୍ରୀ କହିଲେ, "ସେ ଅଶୁଭ କଥା ତୁଣ୍ଡରେ ଧର ନାହିଁ । ତୁମେ ବଞ୍ଚି ରହିଲେ ମୋ ପିଲାମାନେ ସୁଖରେ ରହିବେ । ମୋର ସ୍ତ୍ରୀ ଜନ୍ମ ସଫଳ ହୋଇଛି । ପୁଅ ଝିଅଙ୍କୁ ତୁମ ପାଖରେ ଛାଡ଼ି ମୁଁ ଆନନ୍ଦରେ ମରିପାରିବି । ସଧବା ହୋଇ ମରିବାଠାରୁ ସ୍ତ୍ରୀର ଆଉ ବଡ଼ ସୌଭାଗ୍ୟ କଅଣ ଅଛି ? ପ୍ରାର୍ଥନା କରୁଛି, ମୋତେ ଅସୁର ପାଖକୁ ଯିବାକୁ ଅନୁମତି ଦିଅନ୍ତୁ ।"



ବକାସୁର ବଧ

ବାପ ମାଆଙ୍କ କଥା ଶୁଣି ଝିଅ କହିଲା, "ଝିଅ ଜନ୍ମ ପରଘରକୁ । ପର ଘରକୁ ଯିବା ମରିବା ସଙ୍ଗେ ସମାନ । କିଛି ଦିନ ପରେ ମୋତେ ତୁମେ ଅନ୍ୟକୁ ଦେଇଥାନ୍ତ । ଏବେ ମୋତେ ଛାଡ଼ିଦେଲେ କିଛି କ୍ଷତି ହେବ ନାହିଁ । ଏଣୁ ଅସୁରର ଖାଦ୍ୟ ପାଇଁ ମୋତେ ପଠାଇବା ଉଚିତ ।"

ବାପା, ମାଆ ଓ ବଡ଼ ଭଉଣୀର କଥା ଶୁଣି ସାନ ପୁଅଟି କହିଲା, "କେହି ମରିବେ ନାହିଁ । ମରିବ ସେ ଅସୁରଟା । ଦେଖ, ଏଇ ବାଡ଼ି ଖଣ୍ଡିକରେ ମୁଁ ସେ ଅସୁରକୁ ପିଟିପିଟି ମାରିଦେବି ।" ଛୋଟ ପିଲାଟା ମୁହଁରୁ ଏପରି କଥା ଶୁଣି ଏତେ ଦୁଃଖରେ ମଧ୍ୟ ସମସ୍ତେ ହସି ଉଠିଥିଲେ ।

କୁନ୍ତୀ ଏସବୁ କଥା ଶୁଣି ସେମାନଙ୍କ ଆଗକୁ ଯାଇ ପଚାରିଲେ, "ଘଟଣା କଅଣ ?" ବ୍ରାହ୍ମଣ କହିଲେ, "ମା, ସେ ବହୁତ କଥା । ବକ ନାମରେ ଗୋଟାଏ ରାକ୍ଷସ ଏ ନଗର ନିକଟରେ ଥିବା ପାହାଡ଼ ଗୁମ୍ଫାରେ ରହେ । ଆଗେ ସେ ଯାହାକୁ ଦେଖୁଥିଲା, ମାରି ଖାଇ ଯାଉଥିଲା । ରାଜ୍ୟର ରାଜା ଅସୁର ଦାଉରୁ ପ୍ରଜାମାନଙ୍କୁ ରକ୍ଷା କରି ପାରିଲେ ନାହିଁ । ବକାସୁର ଅତ୍ୟାଚାର ସହି ନ ପାରି ନଗର ଲୋକମାନେ ଦିନେ ତା ପାଖକୁ ଯାଇ ପ୍ରାର୍ଥନା କରି କହିଲେ, "ପ୍ରତିଦିନ ତୁମ ଖାଦ୍ୟ ପାଇଁ ଆମେ ମାଂସ, ମଦ, ଦହି, ଭାତ ଓ ପିଠା ଗାଡ଼ିରେ ଲଦି ଆଣି ଦେଇଯିବୁ । ଗାଡ଼ି ନେଇ ଆସିଥିବା ଲୋକକୁ ମଧ୍ୟ ତୁମେ ଖାଇବ । ଏହି ନିୟମ ଅନେକ ଦିନୁ

ଚଳି ଆସୁଛି । ଆଜି ମୋର ପାଳି । ସବୁଦିନ ପାଇଁ ମୁଁ ମୋର ପ୍ରିୟ ପରିବାରଙ୍କ ମୁହଁ ଆଉ ଦେଖିବାକୁ ପାଇପାରିବି ନାହିଁ । ସେଥିପାଇଁ ଘରେ କାନ୍ଦ ବୋବାଳି ପଡ଼ିଛି ।"

ବ୍ରାହ୍ମଣଙ୍କଠାରୁ ସବୁକଥା ଶୁଣି କୁନ୍ତୀ କହିଲେ, "ଆଉ ଦୁଃଖ କରନ୍ତୁ ନାହିଁ । ଆପଣମାନେ ଆମର ବହୁ ଉପକାର କରିଛନ୍ତି । ଆପଣଙ୍କ ବିପଦ ବେଳେ ଆମେ ସାହାଯ୍ୟ କରିବା ଉଚିତ । ମୋର ପାଞ୍ଚ ପୁଅ । ଆପଣଙ୍କ ପାଳି ରକ୍ଷା କରିବା ପାଇଁ ମୁଁ ମୋ ପୁଅ ଭୀମକୁ ଅସୁର ପାଖକୁ ପଠାଇବି ।"

ବ୍ରାହ୍ମଣ କହିଲେ, "ହାୟ, ହାୟ କି କଥା କହୁଛନ୍ତି ? ଆପଣମାନେ ମୋ ଘରେ ଆଶ୍ରୟ ନେଇ ଅତିଥି ହୋଇଛନ୍ତି । ଅତିଥି ଭିକାରୀ ଓ ଶରଣ ପଶିଥିବା ଲୋକର ଜୀବନ ରକ୍ଷା କରିବା ବଡ଼ ଧର୍ମ । ମୋ ପରିବାରର ମଙ୍ଗଳ ପାଇଁ ଅତିଥି ହତ୍ୟା କରି ମୁଁ ମହାପାପ କରିପାରିବି ନାହିଁ ।"

କୁନ୍ତୀ କହିଲେ, "ଛାର ଅସୁରଟା ମୋ ପୁଅର କ୍ଷତି କରିବ ? ଭୀମ ଦେହରେ କେତେ ବଳ ସେ କଥା ମୁଁ ଉତ୍ତମ ରୂପେ ଜାଣେ । ମନ୍ତ୍ର ଶକ୍ତି ନେଇ ମୋ ପୁଅ ଆଜି ତୁମ ବଦଳରେ ଯିବ । ବକାସୁର ଭୀମର କିଛି ହେଲେ କ୍ଷତି କରିପାରିବ ନାହିଁ । କିଛି ସମୟ ପରେ ଅସୁରର ମୃତ୍ୟୁ ଖବର ପାଇ ଆପଣ ଖୁସି ହେବେ । ମନେ ରଖନ୍ତୁ, ଏକଥା ଆଦୌ କେଉଁଠି ପ୍ରକାଶ କରିବେ ନାହିଁ ।"

କୁନ୍ତୀଙ୍କ କଥା ଶୁଣି ବ୍ରାହ୍ମଣ ପ୍ରଥମେ ମହା ଅଡୁଆରେ ପଡ଼ିଥିଲେ, କିନ୍ତୁ ପରେ ଭୀମଙ୍କ ପରାକ୍ରମ କଥା ଶୁଣି ରାଜି ହୋଇଗଲେ ।

ଖାଦ୍ୟ ପଦାର୍ଥ ପୂର୍ଣ୍ଣ ଶଗଡ଼ ଚଳାଇ ଭୀମ ରାକ୍ଷସ ରହୁଥିବା ଗୁମ୍ଫା ଆଡ଼କୁ ଗଲେ । ବହୁଦିନ ହେଲା ଭୀମଙ୍କ ପେଟ ପୂରି ନ ଥିଲା । ଏତେ ଗୁଡ଼ାଏ ଅତି ସୁନ୍ଦର ଖାଦ୍ୟ ପଦାର୍ଥ ଦେଖି ତାଙ୍କ ପାଟିରୁ ଲାଳ ବହିବାକୁ ଲାଗିଲା । ଗୁମ୍ଫା ନିକଟରେ ଶଗଡ଼ ଫିଟାଇ ଭୀମ ଖାଇବା ଆରମ୍ଭ କରିଦେଲେ । ଖାଦ୍ୟ ଆସିବା ବିଳମ୍ବ ଦେଖି ବକାସୁର ରାଗରେ ଗର୍ଜନ କରି ପଦାକୁ ବାହାରି ଆସିଲା । ଦେଖିଲା ଗୋଟାଏ ଖୁବ୍ ମୋଟା ସୋଟା ମଣିଷ ତା ଖାଦ୍ୟ ପଦାର୍ଥ ଗୁଡ଼ାକ ପୁଳା ପୁଳା କରି ଖାଇବାରେ ଲାଗିଛି । ତା' ଦେହ ରାଗରେ ଜଳିଗଲା । ସେ ଭୀମକୁ ଏକ ଗୋଇଠା ମାରିଲା । ଭୀମ ଅଳ୍ପ ହସି ଦେଇ କହିଲେ, "ଟିକିଏ ଅପେକ୍ଷା କର । ଆଉ ଅଳ୍ପ କିଛି ଖାଇବାକୁ ବାକି ଅଛି । ସେତକ ଶେଷ କରିବା ପରେ ତୋ କଥା ବୁଝିନେବି ।" ରାକ୍ଷସର ରାଗ ଆହୁରି ବଢ଼ିଗଲା । ସେ ଗୋଟାଏ ଗଛ ଉପାଡ଼ି ଭୀମଙ୍କୁ ପିଟିବା ପାଇଁ ଆସିଲା । ଭୀମ ତା ହାତରୁ ଗଛଟା ଛଡ଼ାଇ ରାକ୍ଷସକୁ ପିଟିଲେ । ଶେଷକୁ ଦୁହିଁଙ୍କ ଭିତରେ ମଲ୍ଲଯୁଦ୍ଧ ଆରମ୍ଭ ହୋଇଗଲା । ଧରାଧରି, ପେଲାପେଲି ଓ ମୁଥ ମରାମରି ଚାଲିଲା । ଦୁହିଁଙ୍କ ଗର୍ଜନରେ ଚାରିଆଡ଼ କମ୍ପି ଉଠିଲା । ଭୀମ ଅସୁରଟାକୁ ବାରମ୍ବାର ତଳେ କଚାଡ଼ି ଦେଉଥାନ୍ତି; ଶେଷକୁ ତା'ର ବଳ ହଟିଲା । ଭୀମ ତାକୁ ତଳେ ପକାଇ ଏପରି ଗୋଇଠା ମାରିଲେ ଯେ ଅସୁରର ହାଡ଼ସବୁ ମଡ଼ମଡ଼ ହୋଇ ଭାଙ୍ଗିଗଲା ଓ ସେ ସେଇଠି ପଡ଼ି ମରିଗଲା । ଭୀମ ଅସୁରଟାକୁ ଘୋସାରି ଘୋସାରି ଏକଚକ୍ରା ନଗରର ଫାଟକ ଯାଏ ନେଇ ଆସିଲେ । ଅତ୍ୟାଚାରୀ ବକ ମରିଯିବା ଦେଖି ଲୋକମାନେ ନିଶ୍ଚିନ୍ତ ହୋଇଗଲେ । କୁନ୍ତୀ ଓ ପାଣ୍ଡବ ଭାଇମାନେ ଏ ଖବର ପାଇ ଖୁବ୍ ଆନନ୍ଦିତ ହେଲେ ।

## ଦ୍ରୌପଦୀ ସ୍ୱୟଂବର

ଏକଚକ୍ରା ନଗରୀରେ କେତେ ମାସ ରହିବା ପରେ ଦିନେ ପାଣ୍ଡବମାନେ ପାଞ୍ଚାଳ ଦେଶର ରାଜା ଦ୍ରୁପଦଙ୍କ ଝିଅ ଦ୍ରୌପଦୀଙ୍କ ସ୍ୱୟଂବର ହେଉଥିବା କଥା ଶୁଣିବାକୁ ପାଇଲେ । ସ୍ୱୟଂବର ଦେଖିବା ଓ ବହୁତ ଦାନ ଦକ୍ଷିଣା ପାଇବା ଆଶାରେ ଏକଚକ୍ରାରୁ

ଅନେକ ବ୍ରାହ୍ମଣ ପାଞ୍ଚାଳ ରାଜ୍ୟକୁ ଯାଉଥାନ୍ତି । ସେଠାକୁ ଯିବା ପାଇଁ ପାଣ୍ଡବ ଭାଇମାନେ ମାତା କୁନ୍ତୀଙ୍କୁ ଜଣାଇଲେ । ଠିକ ଏହି ସମୟରେ ମହର୍ଷି ବ୍ୟାସଦେବ ପହଞ୍ଚି ପାଣ୍ଡବ ଭାଇମାନଙ୍କୁ ପାଞ୍ଚାଳ ଯିବା ପାଇଁ ପରାମର୍ଶ ଦେଲେ । ମାତା କୁନ୍ତୀଙ୍କ ସହିତ ପାଣ୍ଡବମାନେ ପାଞ୍ଚାଳ ରାଜ୍ୟକୁ ଗଲେ ।

ବାଟରେ ଯାଉଥିବାବେଳେ ଧୌମ୍ୟ ନାମରେ ଜଣେ ଅତି ପଣ୍ଡିତ ବ୍ରାହ୍ମଣଙ୍କ ସହିତ ପାଣ୍ଡବମାନଙ୍କର ଦେଖାହେଲା । ଧୌମ୍ୟଙ୍କ ଜ୍ଞାନ ଓ ବୁଦ୍ଧି ଦେଖି ପାଣ୍ଡବମାନେ ତାଙ୍କୁ ନିଜର ପୁରୋହିତ ହେବାପାଇଁ ଅନୁରୋଧ କଲେ । ଧୌମ୍ୟ ଏଥିରେ ଆପତ୍ତି କଲେ ନାହିଁ । ସମସ୍ତେ ମିଶି ପାଞ୍ଚାଳ ଆଡ଼କୁ ଯାତ୍ରା କଲେ । କିଛିବାଟ ଯିବାପରେ ପାଣ୍ଡବମାନେ ଦ୍ରୌପଦୀଙ୍କ ରୂପ ଓ ଗୁଣର ପ୍ରଶଂସା ଶୁଣିବାକୁ ପାଇଲେ ଓ ଦ୍ରୌପଦୀ ଯଜ୍ଞ ନିଆଁରୁ ଜନ୍ମ ହୋଇଛନ୍ତି ବୋଲି ଜାଣିଲେ । ପାଣ୍ଡବମାନେ ପାଞ୍ଚାଳ ରାଜ୍ୟରେ ପହଞ୍ଚି ମାତା କୁନ୍ତୀଙ୍କ ସହିତ ଏକ କୁମ୍ଭାର ଘରେ ବସା କରି ରହିଲେ ।

ଆଜି ସ୍ୱୟଂବର । ରାଜଧାନୀକୁ ଅତି ଅପୂର୍ବ ସୁନ୍ଦର ରୂପେ ସଜାଇ ଦିଆଯାଇଥାଏ । ବହୁ ରାଜ୍ୟର ରାଜାମାନେ ସ୍ୱୟଂବର ସଭାକୁ ଆସିଥାନ୍ତି । ହସ୍ତିନାରୁ କର୍ଣ୍ଣ, ଦୁର୍ଯ୍ୟୋଧନ ଓ ଦୁଃଶାସନ ଆଦି ଆସି ସ୍ୱୟଂବର ସଭାରେ ଯୋଗ ଦେଇଥାନ୍ତି ।

କିଛି ସମୟ ପରେ ଦ୍ରୌପଦୀ ନିଜ ଭାଇ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ସଭାକୁ ଆସିଲେ । ତାଙ୍କର ଅପୂର୍ବ ସୁନ୍ଦର ରୂପ ଦେଖି ରାଜାମାନେ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ଦ୍ରୌପଦୀ ଏକ ରେଶମୀ ଶାଢ଼ୀ ପିନ୍ଧି ହାତରେ ଫୁଲମାଳ ଧରି ଆଗେଇ ଆସୁଥିବା ବେଳେ ସମସ୍ତଙ୍କ ଆଖି ତାଙ୍କଠାରେ ଲାଖି ରହିଥାଏ ।

ସ୍ୱୟଂବର ସଭାର ମଝିରେ ଏକ ଉଚ୍ଚ ସ୍ଥାନରେ ମାଛଟିଏ ରଖାଯାଇଥାଏ । ମାଛର ତଳକୁ ଗୋଟାଏ ଚକ ଖୁବ୍ ବେଗରେ ବୁଲୁ ଥାଏ । ତଳେ ଥିବା ପାଣି କୁଣ୍ଡରେ ମାଛର ଛାଇ ପଡ଼ିଥାଏ । ଯେଉଁ ବୀର ପାଣିରେ ମାଛର ଛାଇକୁ ଦେଖି ବୁଲୁଥିବା ଚକ୍ରର ମଝିରେ ଶର ମାରି ମାଛର ଆଖିକୁ ଫୁଟାଇ ପାରିବ, ସେ ଦ୍ରୌପଦୀଙ୍କୁ ବିବାହ କରିବ । ମହାରାଜା ଦ୍ରୁପଦ ସ୍ୱୟଂବର ପାଇଁ ଏହି ପଣ ରଖିଥିଲେ । ପ୍ରକୃତରେ ଏହା ଏକ କଠିନ ପରୀକ୍ଷା ଥିଲା ।

ଧୃଷ୍ଟଦ୍ୟୁମ୍ନ ସଭାରେ ଥିବା ରାଜା ଓ ରାଜପୁତମାନଙ୍କୁ ଲକ୍ଷ୍ୟଭେଦ ପାଇଁ ଡାକିଲେ । ଜଣ ଜଣ ହୋଇ ରାଜାମାନେ ଆଗେଇ ଆସିଲେ; ମାତ୍ର କେହି ହେଲେ ମାଛର ଆଖିରେ ଶର ଗଳାଇ ପାରିଲେ ନାହିଁ । ସଭାରେ ଥିବା ରାଜାମାନଙ୍କ ମୁହଁ ଶୁଖିଗଲା । ଏତିକି ବେଳେ ମହାବୀର କର୍ଣ୍ଣ ଲକ୍ଷ୍ୟଭେଦ କରିବାକୁ ଆଗେଇ ଆସିବା ଦେଖି ଲୋକେ କହିଲେ, "ଏ'ତ ରାଜପୁତ୍ର ନୁହନ୍ତି । ଜଣେ ସାରଥୀର ସନ୍ତାନ ।" ଏକଥା ଶୁଣି ଦ୍ରୌପଦୀ କହିଲେ, "ଯଦି କର୍ଣ୍ଣ ଲକ୍ଷ୍ୟ ଭେଦ କରନ୍ତି, ତେବେ ମଧ ମୁଁ ତାଙ୍କ ବେକରେ ବରଣମାଳା ଦେବି ନାହିଁ ।" ଏହା ଶୁଣି କର୍ଣ୍ଣ ଲଜ୍ଜା ଓ ଅପମାନରେ ଫେରି ଆସିଲେ ।

ବ୍ରାହ୍ମଣମାନେ ଅଲଗା ସ୍ଥାନରେ ବସିଥିଲେ । ସମସ୍ତେ ହତାଶ ହୋଇଯିବାରୁ ଧୃଷ୍ଟଦ୍ୟୁମ୍ନଙ୍କ ମନରେ ଗଭୀର ଦୁଃଖ ଜାତ ହେଲା । ଏହି ସମୟରେ ବ୍ରାହ୍ମଣ ବେଶ ଧରିଥିବ । ଅର୍ଜୁନ ଲକ୍ଷ୍ୟ ଭେଦ କରିବା ପାଇଁ ଠିଆ ହେଲେ । ଲୋକେ ନାନା କଥା କହି ଥଟ୍ଟା କରିବାରେ ଲାଗିଲେ; ମାତ୍ର ଅର୍ଜୁନ କାହାରି କଥା ନ ଶୁଣି ଅଗେଇଆସିଲେ । ମନରେ ଭଗବାନଙ୍କୁ ସ୍ମରଣ କରି ଏକା ଶରକେ ମାଛର ଆଖି ଫୁଟାଇଦେଲେ । ବ୍ରାହ୍ମଣମାନେ ଜୟ ଜୟ ନାଦରେ ସଭାସ୍ଥଳୀ କମ୍ପାଇ ଦେଲେ । କିନ୍ତୁ ସଭାରେ ଥିବା ଅନେକ ରାଜା ଠିକ୍ ମାଛ ଆଖିରେ ଶରବାଜି ନାହିଁ ବୋଲି ପାଟିତୁଣ୍ଡ କରିବାରେ ଲାଗିଲେ । ସେମାନଙ୍କ ସନ୍ଦେହ ଦୂର କରିବା ପାଇଁ ଅର୍ଜୁନ ଧନୁରେ ଆଉ ଗୋଟିଏ ଶର ଯୋଖି ଏପରି ଲାଖ କଲେ ଯେ ମାଛର ଆଖିରେ ଶର ଗଳିଥିବା ଅବସ୍ଥାରେ ମାଛଟା ଆସି ତଳେ ପଡ଼ିଲା । ଦ୍ରୌପଦୀ ବ୍ରାହ୍ମଣ ବେଶରେ ଆସିଥିବା ଅର୍ଜୁନଙ୍କ ଗଳାରେ ବରଣମାଳା ପିନ୍ଧାଇଦେଲେ । ବ୍ରାହ୍ମଣ ଯୁବକଟାଏ ଦ୍ରୌପଦୀଙ୍କୁ ବିବାହ କରିବ --ଏକଥା ରାଜାମାନଙ୍କର ସହ୍ୟ ହେଲା ନାହିଁ । ସେମାନେ ଏକାଠି ହୋଇ ଅର୍ଜୁନଙ୍କ ପାଖରୁ



ଦ୍ରୌପଦୀ ସ୍ୱୟଂବର

ଦ୍ରୌପଦୀଙ୍କୁ ଛଡ଼ାଇ ନେବା ପାଇଁ ଆଗେଇ ଆସିଲେ । ଦ୍ରୌପଦୀ ସ୍ୱୟଂବରକୁ କୃଷ୍ଣ ଓ ବଳରାମ ମଧ୍ୟ ଆସିଥିଲେ । ସେ ରାଜାମାନଙ୍କୁ ବହୁତ ବୁଝାଇବାରେ ଲାଗିଲେ ।

ଶ୍ରୀକୃଷ୍ଣ ବୁଝାଇବା ପରେ ମଧ୍ୟ ରାଜାମାନେ ତାଙ୍କ କଥାରେ କାନ ନଦେଇ ଗଣ୍ଡଗୋଳ କରିବାକୁ ବାହାରିବାରୁ ଭୀମ ଗୋଟାଏ ବିରାଟ ଗଛ ଉପାଡ଼ି ଆଣି ସଭା ସ୍ଥଳକୁ ଆସିଲେ ଓ ଅର୍ଜୁନଙ୍କ ପଛପଟେ ଠିଆ ହେଲେ । ରାଜା ମାନେ ଭୀମଙ୍କ ଭୀଷଣ ମୂର୍ତ୍ତି ଦେଖି ଆଉ ଆଗେଇବା ପାଇଁ ସାହସ କଲେ ନାହିଁ ।

ଅର୍ଜୁନ ଓ ଭୀମ ଦ୍ରୌପଦୀଙ୍କ ସଙ୍ଗରେ ମାତା କୁନ୍ତୀଙ୍କ ନିକଟକୁ ଗଲେ । ଜଣେ ବ୍ରାହ୍ମଣଙ୍କୁ ବରଣ ମାଳା ଦେଇଥିବାରୁ ଦ୍ରୌପଦୀ କିଛି ଭାବୁଥିବା ଲକ୍ଷ୍ୟ କରି ଅର୍ଜୁନ କହିଲେ, "ସୁନ୍ଦରୀ ତମେ ଯାହାକୁ ବରଣ କରିଛ, ସେ କ୍ଷତ୍ରିୟ, ଯୋଦ୍ଧା ଓ ବୀର ମଧ୍ୟ । ସେ ହସ୍ତିନାର ମହାରାଜା ପାଣ୍ଡୁଙ୍କ ପୁତ୍ର ଅର୍ଜୁନ ।" ଅର୍ଜୁନଙ୍କ ତୁଣ୍ଡରୁ ଏତିକି ଶୁଣିବା ପରେ ଦ୍ରୌପଦୀ ଆନନ୍ଦରେ ଅଧୀର ହୋଇ ଉଠିଲେ । ତାଙ୍କ ସୁନ୍ଦର ମୁହଁରେ ହସର ଲହରୀ ଖେଳିଗଲା ।

ଧୃଷ୍ଟଦ୍ୟୁମ୍ନଙ୍କର ସନ୍ଦେହ ହେଲା । ବ୍ରାହ୍ମଣ ଯୁବକଙ୍କର ପ୍ରକୃତ ପରିଚୟ ଜାଣିବା ପାଇଁ ସେ ଛପି ଛପି ସେମାନଙ୍କ ପଛରେ

ଯାଉଥିଲେ । ଅର୍ଜୁନ ଦ୍ରୌପଦୀଙ୍କୁ ଯାହା କହିଲେ, ସେ କଥା ଶୁଣି ଧୃଷ୍ଟଦ୍ୟୁମ୍ନଙ୍କ ଆନନ୍ଦର ସୀମା ରହିଲା ନାହିଁ । ନଗରକୁ ଫେରି ଧୃଷ୍ଟଦ୍ୟୁମ୍ନ ମହାରାଜ ଦ୍ରୁପଦଙ୍କୁ ସମସ୍ତ କଥା ଜଣାଇଦେବାରୁ ରାଜପରିବାର ମଧ୍ୟରେ ଆନନ୍ଦର ସୀମା ରହିଲା ନାହିଁ ।

ଯେତେବେଳେ ଅର୍ଜୁନ ଓ ଭୀମ ଦ୍ରୌପଦୀଙ୍କୁ ନେଇ କୁମ୍ଭାର ଘର ବସାରେ ପହଞ୍ଚିଲେ, ସେତେବେଳେ କୁନ୍ତୀ ଘର ଭିତରେ ଥିଲେ । ଦି ଭାଇ ବଡ଼ ପାଟିରେ କହିଲେ, "ମା, ଆସି ଦେଖ, ଆମେ ଆଜି କଅଣ ଆଣିଛୁ ।" ଘର ଭିତରେ ଥାଇ ମା କହିଲେ, "ବାବୁ, ଯାହା ଆଣିଛ, ତାକୁ ପାଞ୍ଚଭାଇ ଯାକ ବାଣ୍ଟି ନିଅ ।" ବାହାରକୁ ଆସି କୁନ୍ତୀ ଅପୂର୍ବ ସୁନ୍ଦରୀ ରାଜକୁମାରୀଙ୍କୁ ଦେଖି ମହା ଅଡୁଆରେ ପଡ଼ିଗଲେ । ନ ବୁଝି ନ ଦେଖି ଯାହା କହିଦେଲେ ତାହା ତାଙ୍କୁ ଛୁଞ୍ଚି ଫୋଡ଼ିଲା ପରି ଲାଗିଲା । ସେ ମୁଣ୍ଡ ତଳକୁ ପୋତି ଠିଆ ହେବା ଦେଖି ଅର୍ଜୁନ କହିଲେ, "ମା, ତୁମ କଥା ମିଛ ହେବନାହିଁ । ଆମେ ପାଞ୍ଚଭାଇ ଦ୍ରୌପଦୀଙ୍କୁ ବିବାହ କରିବୁ ।"

ଏଣେ ମହାରାଜ ଦ୍ରୁପଦ ପାଣ୍ଡବମାନଙ୍କୁ ରାଜପୁରୀକୁ ନେବା ପାଇଁ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ରାଜ ପୁରୋହିତଙ୍କୁ ପଠାଇଦେଲେ ।। ଧୃଷ୍ଟଦ୍ୟୁମ୍ନ କୁନ୍ତୀ ଦେବୀଙ୍କୁ ମହାରାଜ ଦ୍ରୁପଦଙ୍କ ନିମନ୍ତ୍ରଣ ଜଣାଇ ସେମାନଙ୍କୁ ଅତି ଆନନ୍ଦରେ ପାଞ୍ଚାଳ ରାଜପୁରୀକୁ ନେଇଗଲେ । ବିବାହର ଆୟୋଜନ ଚାଲିଲା । ଦ୍ରୌପଦୀଙ୍କ ବିବାହ ପାଞ୍ଚ ପାଣ୍ଡବଙ୍କ ସହିତ ହେବା ଶୁଣି ଦ୍ରୁପଦ ଏଥିରେ ଆପତ୍ତି କଲେ । ଏହି ସମୟରେ ମହର୍ଷି ବ୍ୟାସ ଉପସ୍ଥିତ ହୋଇ କହିଲେ, "ଦ୍ରୌପଦୀଙ୍କର ପାଞ୍ଚ ପତି ହେବେ ବୋଲି ଭଗବାନ ଶଙ୍କର ତାଙ୍କୁ ବର ଦେଇଛନ୍ତି । ଦ୍ରୁପଦଙ୍କ ମନରୁ ସନ୍ଦେହ ଦୂର ହୋଇଗଲା । ସେ ବେଦ ବିଧିରେ ପାଞ୍ଚ ପାଣ୍ଡବଙ୍କ ସହିତ ନିଜ ଝିଅର ବିବାହ କରିଦେଲେ । ପାଣ୍ଡବମାନେ ମାଆ କୁନ୍ତୀ ଓ ସ୍ତ୍ରୀ ଦ୍ରୌପଦୀଙ୍କ ସହିତ ପାଞ୍ଚାଳ ରାଜପୁରୀରେ ଅତି ଆନନ୍ଦରେ ରହିଲେ ।

## ପାଣ୍ଡବମାନେ ପୁଣି ହସ୍ତିନା ଆସିଲେ

ଦ୍ରୌପଦୀଙ୍କ ବିବାହ ଖବର ଚାରିଆଡ଼େ ପ୍ରଚାର ହୋଇଗଲା । ପାଣ୍ଡବମାନେ ଜଉଘର ମଧ୍ୟରୁ ନିରାପଦରେ ରକ୍ଷା ପାଇଯାଇଛନ୍ତି, ଏ କଥା ଜାଣିବା ପରେ ହସ୍ତିନାବାସୀଙ୍କ ଖୁସିର ସୀମା ରହିଲା ନାହିଁ । ଲୋକମାନେ କହିଲେ, "ମହାରାଜ, ବଡ଼ ସୌଭାଗ୍ୟ, ଆମେ ପାଞ୍ଚାଳ ରାଜଜେମାଙ୍କୁ ବୋହୂ ରୂପରେ ପାଇଲୁ ।"

ଧୃତରାଷ୍ଟ୍ର ଭାବିଲେ, "ସ୍ୱୟଂବରକୁ ଯାଇ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ବୋହୂ କରି ଆଣିଛି ।" ସେ ଆନନ୍ଦରେ ଅଧୀର ହୋଇ କହିଲେ, "ବିଦୂର, ଆଉ ବିଳମ୍ବ କାହିଁକି ? ଯାଅ, ସେମାନଙ୍କୁ ମୋ ପାଖକୁ ନେଇ ଆସ ।"

ବିଦୂର ଅଳ୍ପ ହସି କହିଲେ, "ମହାରାଜ, ଆପଣଙ୍କ ପୁଅ ନୁହନ୍ତି, ପାଣ୍ଡବମାନେ ଦ୍ରୌପଦୀଙ୍କୁ ବିବାହ କରି ପାଞ୍ଚାଳ ରାଜପୁରୀରେ ଅଛନ୍ତି ।"

ପାଣ୍ଡବମାନେ ଜୀବନରେ ଅଛନ୍ତି ଜାଣି ଧୃତରାଷ୍ଟ୍ର ସୁଖୀ ହୋଇପାରି ନ ଥିଲେ । ଏବେ ସେମାନେ ପାଞ୍ଚାଳ ରାଜଜେମାଙ୍କୁ ବିବାହ କରିବା କଥା ଶୁଣି ତାଙ୍କ ଛାତି ଫାଟିଗଲା ପରି ଲାଗିଲା । କିନ୍ତୁ ଲୋକ ଲଜ୍ଜାରୁ ରକ୍ଷା ପାଇବା ପାଇଁ ସଙ୍ଗେ ସଙ୍ଗେ କହିଲେ, "ଏତ ଆହୁରି ଭଲ କଥା । ପାଣ୍ଡବମାନେ ମଧ୍ୟ ମୋର ପୁଅ । ମୁଁ ସେମାନଙ୍କୁ କ'ଣ ଊଣା ସ୍ନେହ କରେ ?" କ୍ରମେ ଭୀଷ୍ମ, ଦ୍ରୋଣ ଓ ଅନ୍ୟମାନେ ଏ ସଂବାଦ ପାଇ ଆନନ୍ଦିତ ହେଲେ । ଲୋକେ ଜାଣିବା ପାଇଁ ଧୃତରାଷ୍ଟ୍ର ପାଣ୍ଡବମାନଙ୍କୁ ଖୁବ୍ ପ୍ରଶଂସା କରିବାରେ ଲାଗିଲେ । ଭୀଷ୍ମ ଓ ଦ୍ରୋଣାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ପାଣ୍ଡବମାନଙ୍କୁ ହସ୍ତିନା ଫେରାଇ ଆଣିବା ପାଇଁ ବ୍ୟବସ୍ଥା କରାଗଲା ।

ଦୁର୍ଯ୍ୟୋଧନ ଓ କର୍ଣ୍ଣ ପାଣ୍ଡବମାନଙ୍କୁ ହସ୍ତିନା ନ ଆଣିବା ପାଇଁ ବହୁ ଯୁକ୍ତି କଲେ । ଭୀଷ୍ମ ବିରକ୍ତ ହୋଇ କହିଲେ, "ମହାରାଜ, ମୁଁ ଦୁର୍ଯ୍ୟୋଧନ ଓ କର୍ଣ୍ଣର ଯୁକ୍ତି ଶୁଣିଲି । ସେମାନେ ପାଣ୍ଡବମାନଙ୍କର ଅନିଷ୍ଟ ଚିନ୍ତାରେ ପାଗଳ ହୋଇଉଠିଛନ୍ତି ।



ପାଣ୍ଡବମାନେ ହସ୍ତିନାପୁରରେ

ଜଉଘର ଘଟଣା ତ ଶୁଣିଲେ । ଫଳ କଅଣ ହେଲା ? ଏବେ ଦ୍ରୁପଦ ପାଣ୍ଡବମାନଙ୍କର ବନ୍ଧୁ, ଶ୍ରୀକୃଷ୍ଣ ଓ ଯାଦବମାନେ ପାଣ୍ଡବଙ୍କ ପକ୍ଷରେ ଅଛନ୍ତି । ଯୁଦ୍ଧ କରି ପାଣ୍ଡବମାନଙ୍କୁ ନିପାତ କରିଦେବା ପାଇଁ କର୍ଣ୍ଣ କହିଛି । ତା'ର ନିର୍ବୋଧ କଥାରେ କାନ ଦେବା ଉଚିତ ହେବନାହିଁ । ଶକୁନି ଓ ଦୁର୍ଯ୍ୟୋଧନ କୁରୁବଂଶର ମଙ୍ଗଳ ଚାହୁଁ ନାହାନ୍ତି । ମୁଁ ପୁଣି ଥରେ କହୁଛି, ପାଣ୍ଡବମାନଙ୍କୁ ଏଠାକୁ ନିମନ୍ତ୍ରଣ କରି ଆଣନ୍ତୁ ।"

ଧୃତରାଷ୍ଟ୍ର ମହାତ୍ମା ବିଦୂରଙ୍କ ପରାମର୍ଶ ଚାହିଁବାରୁ ସେ କହିଲେ, "ପାଣ୍ଡବମାନଙ୍କୁ ହସ୍ତିନା ଫେରାଇଆଣି ଅଧେ ରାଜ୍ୟ ଦେଇଦେଲେ କୁରୁବଂଶର ମର୍ଯ୍ୟାଦା ବୃଦ୍ଧି ପାଇବ ।"

ବିଦୂରଙ୍କ ପରାମର୍ଶ ଗ୍ରହଣ କରି ମହାରାଜା କହିଲେ, "ବିଦୂର, ତୁମେ ନିଜେ ପାଞ୍ଚାଳ ଯାଇ ପାଣ୍ଡବମାନଙ୍କୁ ତୁରନ୍ତ ହସ୍ତିନାକୁ ନିମନ୍ତ୍ରଣ କରିଆଣ ।"

ବିଦୂର ପାଞ୍ଚାଳ ଯାଇ କୁନ୍ତୀ ଦେବୀଙ୍କୁ ସାକ୍ଷାତ କଲେ । କୁନ୍ତୀ କାନ୍ଦି କାନ୍ଦି କହିଲେ, "ତୁମ ଯୋଗୁ ମୋ ପିଲାମାନେ ଏ ପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି । ଧୃତରାଷ୍ଟ୍ରଙ୍କ ଉପରେ ମୋର ଆଦୌ ଭରସା ନାହିଁ । ତୁମେ ଯାହା କହିବ ମୁଁ ସେହି ଅନୁସାରେ କାର୍ଯ୍ୟ କରିବି ।"

ବିଦୁର କହିଲେ, "ତୁମ ପିଲାମାନଙ୍କର କୌଣସି ଅନିଷ୍ଟ ହେବ ନାହିଁ । ସେମାନେ ରାଜ୍ୟଲାଭ କରି ସୁନାମର ସହିତ ବଞ୍ଚିରହିବେ ।"

ପାଣ୍ଡବମାନଙ୍କୁ ଅନେକ ଧନରତ୍ନ ଦେଇ ଦ୍ରୁପଦ ହସ୍ତିନାପୁରକୁ ବିଦାକଲେ । ବିଦୁରଙ୍କ ସହିତ ପାଣ୍ଡବମାନେ ହସ୍ତିନାରେ ପହଞ୍ଚିବା ମାତ୍ରେ ନଗରବାସୀ ଅତ୍ୟନ୍ତ ଆନନ୍ଦର ସହିତ ସେମାନଙ୍କୁ ପାଛୋଟି ନେଲେ ।

କିଛିଦିନ ପରେ ଦିନେ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ କହିଲେ, "ବତ୍ସ ମୋର ପିଲାମାନେ ଅତ୍ୟନ୍ତ ମନ୍ଦ ପ୍ରକୃତିର ଓ ଗର୍ବୀ । ପରିବାରର କଳହଠାରୁ ଦୂରରେ ରହିବା ଭଲ । ମୋ ପ୍ରସ୍ତାବ ଅନୁସାରେ ତୁମ୍ଭେମାନେ ହସ୍ତିନାପୁର ଛାଡ଼ି ଖାଣ୍ଡବପ୍ରସ୍ଥ ଚାଲିଯାଅ । ସେଠାରେ ଆମ୍ଭମାନଙ୍କର ପୂର୍ବ ପୁରୁଷ ପୁରୁରବା, ନହୁ, ଯଯାତି ଆଦି ବିଖ୍ୟାତ ରାଜାମାନେ ରାଜତ୍ୱ କରି ଯଶ ରଖିଯାଇଛନ୍ତି । ସେଠାରେ ନୂତନ ରାଜଧାନୀ ସ୍ଥାପନ କରି ତୁମେ ଶାନ୍ତିରେ ରାଜତ୍ୱ କରିପାରିବ ।"

ଧୃତରଷ୍ଟ୍ରଙ୍କ କଥା ମାନି ପାଣ୍ଡବମାନେ ଖାଣ୍ଡବପ୍ରସ୍ଥ ଗଲେ ଓ ଭାଙ୍ଗିରୁଜି ଯାଇଥିବା ଖାଣ୍ଡବପ୍ରସ୍ଥକୁ ପୁଣି ନୂଆକରି ଗଢ଼ି ତୋଳିବାରେ ଲାଗିଲେ । ସୁନ୍ଦର ନଗର ସାଙ୍ଗକୁ ବିରାଟ ଦୁର୍ଗ ଓ ଚମତ୍କାର ରାଜମହଲ ତିଆରି ହୋଇଗଲା । ଏହି ନୂତନ ରାଜଧାନୀର ନାମ ହେଲା ଇନ୍ଦ୍ରପ୍ରସ୍ଥ । ଅଳ୍ପଦିନ ମଧ୍ୟରେ ରାଜ୍ୟରେ ଧନ, ରତ୍ନ ଓ ସୁଖ ସମ୍ପଦ ଭରି ଉଠିଲା । ତେର ବର୍ଷକାଳ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ସୁଖରେ ରାଜତ୍ୱ କରିଥିଲେ ଓ ତାଙ୍କର ସୁଶାସନରେ ପ୍ରଜାମାନେ ଅତ୍ୟନ୍ତ ସୁଖରେ କାଳ କାଟୁଥିଲେ ।

## ଅର୍ଜୁନଙ୍କ ବନବାସ

ଦିନେ ପାଣ୍ଡବମାନଙ୍କ ନୂଆ ରାଜଧାନୀରେ ଦେବର୍ଷି ନାରଦ ପହଞ୍ଚି ବହୁତ ଖୁସି ହେଲେ । ଗୋଟିଏ କଥାରେ ତାଙ୍କର ବଡ଼ ସନ୍ଦେହ ହେବାରୁ ସେ ପଚାରିଲେ, "ତୁମେ ପାଞ୍ଚଭାଇ ଦ୍ରୌପଦୀଙ୍କୁ ବିବାହ କରିଛ । କିନ୍ତୁ କିଏ କେଉଁଦିନ ଦ୍ରୌପଦୀଙ୍କ ପାଖରେ ରହିବ, ଏଥିପାଇଁ ତୁମେ କୌଣସି ନିୟମ କରିନାହଁ । ଏବେ ସେ ବିଷୟରେ ଗୋଟିଏ ନିୟମ କରିଦିଅ ।" ନାରଦଙ୍କ କଥା ସବୁଭାଇଙ୍କ ମନକୁ ପାଇଲା । ସେହିଦିନଠାରୁ ନିୟମ ହେଲା ଯେ, ଦ୍ରୌପଦୀଙ୍କ ସହିତ ପ୍ରତ୍ୟେକ ଭାଇ ମାସେ ଲେଖାଏଁ ରହିବେ । ଯେଉଁ ଭାଇ ଏହି ନିୟମ ଭାଙ୍ଗିବ, ସେ ଘର ଛାଡ଼ି ବାରବର୍ଷ ଯାଏ ବଣରେ ବୁଲିବ । ପାଣ୍ଡବ ଭାଇମାନେ ଏହି ନିୟମ ମାନି ଚଳିବାରେ ଲାଗିଲେ ।

ଦିନେ ଅର୍ଜୁନ ରାଜଭବନର ଦ୍ୱାର ପାଖରେ ବସି ରହିଥିଲେ । ଏହି ସମୟରେ ଜଣେ ବ୍ରାହ୍ମଣ ଆସି ରାଜାଙ୍କୁ ମନଇଚ୍ଛା ଗାଳି ଦେବାରେ ଲାଗିଲେ । ଅର୍ଜୁନ ତାଙ୍କୁ କାରଣ ପଚାରିବାରୁ ସେ କହିଲେ, "ଚୋରଟାଏ ମୋ ଦୁହାଁଳୀ ଗାଈଟାକୁ ନେଇ ପଳାଇ ଯାଉଛି । ତାଠାରୁ ମୋ ଗାଈକୁ ଧରି ଆଣ । ଅର୍ଜୁନ ଚୋରକୁ ଧରିବା ପାଇଁ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ; ମାତ୍ର ତାଙ୍କ ହାତରେ କୌଣସି ଅସ୍ତ୍ର ନଥିବାରୁ ସେ ମହାଚିନ୍ତାରେ ପଡ଼ିଗଲେ । ସେତେବେଳକୁ ଯୁଧିଷ୍ଠିର ଦ୍ରୌପଦୀଙ୍କ ସହିତ ରହିଥାନ୍ତି । ଯେଉଁଘରେ ଯୁଧିଷ୍ଠିର ଥିଲେ ସେ ଘର ଭିତର ଦେଇ ଗଲେ ଅସ୍ତ୍ରଶସ୍ତ୍ର ଥିବା ଘରୁ ଅସ୍ତ୍ର ଆଣିବାକୁ ହେବ । ଦ୍ରୌପଦୀ ଯୁଧିଷ୍ଠିରଙ୍କ ସହିତ ଥିବାବେଳେ ସେ ଘର ଭିତରକୁ ଗଲେ ନିୟମ ଭାଙ୍ଗିବାକୁ ପଡ଼ିବ ଓ ବାରବର୍ଷ ବଣକୁ ଯିବାକୁ ହେବ । ଗାଈ ଫେରାଇ ନ ଆଣିଲେ ବ୍ରାହ୍ମଣଙ୍କ ଅଭିଶାପ ଭୋଗ କରିବା ନିଶ୍ଚୟ । ଶେଷରେ ଅର୍ଜୁନ ବ୍ରାହ୍ମଣଙ୍କ ଗାଈ ଫେରାଇ ଆଣିବାକୁ ସ୍ଥିର କଲେ ଓ ଭିତରକୁ ଯାଇ

ଅସ୍ତ୍ର ନେଇଆସିଲେ । ଚୋର ହାତରୁ ଗାଈଟିକୁ ଆଣି ବ୍ରାହ୍ମଣଙ୍କୁ ଦେବାରୁ ସେ ଅର୍ଜୁନଙ୍କୁ ଆଶୀର୍ବାଦ କରି ଆନନ୍ଦରେ ଘରକୁ ଫେରିଗଲେ ।

ନିୟମ ଭାଙ୍ଗିଥିବାରୁ ଅର୍ଜୁନ ବାରବର୍ଷ ବନବାସକୁ ଯିବା ପାଇଁ ରାଜା ଯୁଧିଷ୍ଠିରଙ୍କୁ ଅନୁମତି ମାଗିଲେ । ଯୁଧିଷ୍ଠିର ଅର୍ଜୁନଙ୍କୁ କହିଲେ, "ଏ ନିୟମ ସେତେବେଳେ ଲାଗୁହେବ, ଯେତେବେଳେ ସାନ ଭାଇ ଦ୍ରୌପଦୀଙ୍କ ସହିତ ଥିବେ । ତୁମେ ମୋର ସାନ ଭାଇ ହୋଇଥିବାରୁ ଏ ନିୟମ ଲାଗୁହେବ ନାହିଁ ।" ଯୁଧିଷ୍ଠିର ଯେତେ ବୁଝାଇଲେ ମଧ ଅର୍ଜୁନ କିଛି ବୁଝିଲେ ନାହିଁ । ସେ କହିଲେ, "ନିୟମ ସମସ୍ତଙ୍କ ପାଇଁ ସମାନ ହୋଇଥାଏ । ଏଥିରେ ସାନବଡ଼ର ବିଚାର ନଥାଏ । ତେଣୁ ମୁଁ ନିଶ୍ଚୟ ବଣକୁ ଯିବି ।"

ଅର୍ଜୁନ ସବୁଭାଇଙ୍କଠାରୁ ବିଦାୟ ନେଇ ବଣକୁ ଚାଲିଗଲେ ।

## ନାଗକନ୍ୟା ଉଲୁପୀଙ୍କ ସହିତ ଅର୍ଜୁନଙ୍କ ବିବାହ

ବନବାସ ସମୟରେ ଅର୍ଜୁନ ନାନା ଦେଶ ବୁଲିବାରେ ଲାଗିଥାନ୍ତି । ଦିନେ ବୁଲୁବୁଲୁ ସେ ହରିଦ୍ୱାର ନିକଟରେ ପହଞ୍ଚି ଗଙ୍ଗା ନଦୀରେ ସ୍ନାନ କରିବାକୁ ଗଲେ । ସେଠାରେ ନାଗରାଜା କୌରବଙ୍କ କନ୍ୟା ଉଲୁପୀଙ୍କ ଦୃଷ୍ଟି ଅର୍ଜୁନଙ୍କ ଉପରେ ପଡ଼ିବା ମାତ୍ରେ ସେ ଅତ୍ୟନ୍ତ ଆନନ୍ଦିତ ହୋଇଗଲେ । ଏହି ଅପୂର୍ବ ସୁନ୍ଦର ଯୁବକଙ୍କୁ ବିବାହ କରିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ହେଲା । ସେ ଅର୍ଜୁନଙ୍କୁ ଭିଡ଼ି କରି ପାତାଳପୁରକୁ ନେଇଗଲେ ଓ ନିଜର ଇଚ୍ଛା ପ୍ରକାଶ କଲେ । ଅର୍ଜୁନ ମଧ ଉଲୁପୀଙ୍କ ସୁନ୍ଦର ରୂପରେ ମୁଗ୍ଧ ହୋଇ ଯାଇଥିଲେ । ଉଲୁପୀଙ୍କ ସହିତ ତାଙ୍କର ବିବାହ ହୋଇଗଲା । ଅର୍ଜୁନ କିଛିଦିନ ପାତାଳପୁରୀରେ ଆନନ୍ଦରେ ରହିଲେ ।

ବିଦାୟ ନେବାକୁ ବାହାରିବାରୁ ଉଲୁପୀ ଅର୍ଜୁନଙ୍କୁ ବର ଦେଇ କହିଲେ, "ଆପଣ ସ୍ଥଳ ଭାଗରେ ଯେପରି ଯାଉଛନ୍ତି ଜଳଭାଗରେ ମଧ ସେହିପରି ଯିବାରେ କୌଣସି ଅସୁବିଧା ହେବ ନାହିଁ ଏବଂ କୌଣସି ଜଳ ଜୀବ ଆପଣଙ୍କର କୌଣସି ଅନିଷ୍ଟ କରିପାରିବେ ନାହିଁ ।" ଉଲୁପୀ ଅର୍ଜୁନଙ୍କୁ ସାଙ୍ଗରେ ଆଣି ପୃଥିବୀ ଉପରେ ଛାଡ଼ିଦେଇ ନାଗଲୋକକୁ ଫେରିଗଲେ ।

## ଚିତ୍ରାଙ୍ଗଦାଙ୍କ ସହିତ ଅର୍ଜୁନଙ୍କ ବିବାହ

ଅନେକ ଦେଶ ଓ ତୀର୍ଥଭ୍ରମଣ କରୁ କରୁ ଅର୍ଜୁନ ମଣିପୁର ରାଜ୍ୟରେ ପହଞ୍ଚିଲେ । ସେଠାର ବଣ ଓ ପାହାଡ଼ ଘେରା ଅଞ୍ଚଳ ତାଙ୍କୁ ଅତ୍ୟନ୍ତ ଆନନ୍ଦ ଦେଲା । ଦିନେ ସେ ବଣରେ ବୁଲୁଥିବା ବେଳେ ସେହି ରାଜ୍ୟର ରାଜଜେମା ଚିତ୍ରାଙ୍ଗଦାଙ୍କୁ ଦେଖିଲେ । ଚିତ୍ରାଙ୍ଗଦାଙ୍କ ଅପ୍ସରାପରି ସୁନ୍ଦର ରୂପରେ ଅର୍ଜୁନଙ୍କ ଆଖି ଲାଖି ରହିଲା । ସେ ତାଙ୍କୁ ବିବାହ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ପିତାଙ୍କ ଅନୁମତି ବିନା ମୁଁ ଆପଣଙ୍କୁ ବିବାହ କରିପାରିବିନାହିଁ ବୋଲି ଚିତ୍ରା କହିବାରୁ ଅର୍ଜୁନ ରାଜାଙ୍କ ନିକଟକୁ ଗଲେ ଓ ପରିଚୟ ଦେଇ ମନକଥା ଜଣାଇଲେ ।

ଅର୍ଜୁନଙ୍କ ସହିତ ଚିତ୍ରାଙ୍ଗଦାଙ୍କ ବିବାହ ହୋଇଗଲା । ସେ ମଣିପୁରରେ ତିନିବର୍ଷ ରହିଲେ । ଏହି ସମୟ ମଧରେ ବଭ୍ରୁବାହନ ନାମରେ ଚିତ୍ରାଙ୍ଗଦାଙ୍କର ପୁଅଟିଏ ହେଲା । ବଭ୍ରୁ ବଡ଼ ଦିନକୁ ଅତି ବଳବାନ ଯୋଦ୍ଧା ହୋଇଥିଲେ । ବଭ୍ରୁକୁ ଚିତ୍ରାଙ୍ଗଦାଙ୍କ ପାଖେ ଛାଡ଼ି ଦେଇ ଅର୍ଜୁନ ଅନ୍ୟଆଡ଼େ ଗଲେ ।



ଚିତ୍ରାଙ୍ଗଦାଙ୍କ ସହିତ ଅର୍ଜୁନଙ୍କର ବିବାହ



ଚିତ୍ରାଙ୍ଗଦାଙ୍କ ସହିତ ଅର୍ଜୁନ ବଣରେ ଭ୍ରମଣ

# ସୁଭଦ୍ରାଙ୍କ ସହିତ ଅର୍ଜୁନଙ୍କ ବିବାହ

ମଣିପୁରରୁ ଆସି ଅର୍ଜୁନ ଅନେକ ସ୍ଥାନ ବୁଲିବୁଲି ପ୍ରଭାସ ତୀର୍ଥରେ ପହଞ୍ଚିଲେ । ପ୍ରଭାସ ଶ୍ରୀକୃଷ୍ଣଙ୍କ ରାଜ୍ୟ । ଅର୍ଜୁନ ଆସିଥିବା ଜାଣି ଶ୍ରୀକୃଷ୍ଣ ଅତି ଆଦରରେ ତାଙ୍କୁ ପାଛୋଟି ନେଲେ । ସେତେବେଳକୁ ତାଙ୍କର ବୀରତ୍ୱ କଥା ଚାରିଆଡ଼େ ପ୍ରଚାରିତ ହୋଇଯାଇଥାଏ । ଦ୍ୱାରକାବାସୀ ଅର୍ଜୁନଙ୍କ ଅପୂର୍ବ ଯୁଦ୍ଧବିଦ୍ୟା ଦେଖି ଖୁସି ହୁଅନ୍ତୁ, ଏହି ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ରୈବତକ ପର୍ବତ (ବର୍ତ୍ତମାନ ଗିରିନାର) ପାଦଦେଶରେ ଏକ ସମର କୌଶଳ ଦେଖାଇବାର ଆୟୋଜନ କଲେ ।

ଅର୍ଜୁନ ରୈବତକରେ ବଳରାମଙ୍କ ଭଉଣୀ ସୁଭଦ୍ରାଙ୍କୁ ଦେଖିଲେ । ବିବାହ କରିବା ଉଦ୍ଦେଶ୍ୟ ମନରେ ରଖି ତାଙ୍କ ସହିତ ଖୁବ୍ ମିଳାମିଶା କଲେ । କୃଷ୍ଣଙ୍କୁ କୌଣସି କଥା ଅଛପା ରହିଲା ନାହିଁ । ସେ ଦିନେ ଅର୍ଜୁନଙ୍କୁ କହିଲେ, "ବନ୍ଧୁ, ଯାହା ସହିତ ଏତେ ମିଳାମିଶା କରୁଛ, ସେ କିଏ ଜାଣିଛ ? ସେ ପରା ଆମ ଭଉଣୀ ସୁଭଦ୍ରା । ତା'କୁ ପାଇବା ସହଜ ନୁହେଁ । ଶକ୍ତିଥିଲେ ତାକୁ ହରଣ କରି ନିଅ । ସେପରି କଲେ ଯାଦବମାନେ ତୁମ ସହିତ ଖୁବ୍ ଲଢ଼ିବେ । ଯଦି ତୁମେ ସେମାନଙ୍କୁ ପରାସ୍ତ କରିପାରିବ, ତେବେ ସୁଭଦ୍ରାଙ୍କୁ ବିବାହ କରିବା ସହଜ ହୋଇଯିବ ।"

ସୁଭଦ୍ରାଙ୍କୁ ପାଇବା ପାଇଁ ଅର୍ଜୁନଙ୍କ ମନ ବ୍ୟାକୁଳ ହେଉଥିଲା । କୃଷ୍ଣଙ୍କଠାରୁ ପରାମର୍ଶ ପାଇ ସେ ସୁବିଧା ଖୋଜିବାରେ ଲାଗିଲେ । ଦିନେ ସେ ସୁଭଦ୍ରାଙ୍କୁ ରଥରେ ବସାଇ ଅତି ବେଗରେ ପଳାଇବାରେ ଲାଗିଲେ ।

ସୁଭଦ୍ରାଙ୍କ ହରଣ ଖବର ବିଜୁଳି ବେଗରେ ପ୍ରଚାର ହୋଇଗଲା । ଯାଦବମାନେ ରାଗି ଉଠି ଅର୍ଜୁନଙ୍କୁ ଗୋଡ଼ାଇବାରେ ଲାଗିଲେ । ଘୋର ଯୁଦ୍ଧ ଆରମ୍ଭ ହୋଇଗଲା । ଅର୍ଜୁନଙ୍କ ଅପୂର୍ବ ଯୁଦ୍ଧ କୌଶଳ ଦେଖି ସୁଭଦ୍ରା ଅତ୍ୟନ୍ତ ଖୁସି ହୋଇ ଉଠୁଥାନ୍ତି । ଯୁଦ୍ଧ କରିବା ଓ ରଥ ଚଳାଇବା ଉଭୟ କାମ କରିବାରେ ଅର୍ଜୁନ ଅସୁବିଧାରେ ପଡୁଥିବା ଦେଖି ସୁଭଦ୍ରା ନିଜେ ରଥ ଚଳାଇବାରେ ଲାଗିଲେ । ଅର୍ଜୁନଙ୍କ ଶରରେ ଯାଦବମାନେ ଅସ୍ତବ୍ୟସ୍ତ ହୋଇ ପଡ଼ିବାରୁ ଶ୍ରୀକୃଷ୍ଣ ଆସି ଯାଦବମାନଙ୍କୁ ବହୁତ ବୁଝାଇଲେ । ଯୁଦ୍ଧ ବନ୍ଦ ହେଲା । ଦୁଇ ଜଣଙ୍କ ମଧ୍ୟରେ ମିଳାମିଶା ହୋଇଗଲା । ସୁଭଦ୍ରାଙ୍କ ସହିତ ଅର୍ଜୁନଙ୍କ ବିବାହ ମହା ଆଡ଼ମ୍ବରରେ ସମ୍ପନ୍ନ ହେଲା ।

ବିବାହ ପରେ ଅର୍ଜୁନ ସୁଭଦ୍ରାଙ୍କୁ ନେଇ ପୁଷ୍କରତୀର୍ଥକୁ ଗଲେ ଓ ସେଠାରେ ଅନେକ ଦିନ ସୁଖରେ ରହିଲେ । ବନବାସର ସମୟ ଅତିବାହିତ ହୋଇଯିବାରୁ ସେ ପ୍ରଥମେ ଦ୍ୱାରିକାକୁ ଆସି ଶ୍ରୀକୃଷ୍ଣଙ୍କୁ ସାଥିରେ ନେଇ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ । ଅର୍ଜୁନଙ୍କୁ ଦେଖି ଭାଇମାନେ, ମାତା କୁନ୍ତୀ ଓ ରାଜପରିବାରର ସମସ୍ତେ ଆନନ୍ଦରେ ବୁଡ଼ିଗଲେ । ନୂଆ ହୋଇ ଆସିଥିବା ବୋହୂ ସୁଭଦ୍ରାଙ୍କୁ ଦେଖି କୁନ୍ତୀଙ୍କ ମନ ନାଚିଉଠିଲା । କେବଳ ଅଳ୍ପ ସମୟ ପାଇଁ ଦ୍ରୌପଦୀ ସଉତୁଣୀ ସୁଭଦ୍ରାଙ୍କୁ ଆପଣାର ନଭାବି ଭିନ୍ନ ଦୃଷ୍ଟିରେ ଦେଖିଲେ । କିଛି ଦିନ ମଧ୍ୟରେ ସୁଭଦ୍ରାଙ୍କ ସରଳ ଓ ନିଷ୍କପଟ ବ୍ୟବହାରରେ ଦ୍ରୌପଦୀଙ୍କ ମନ ସମ୍ପୂର୍ଣ୍ଣ ବଦଳିଯାଇଥିଲା । ଦ୍ରୌପଦୀଙ୍କଠାରୁ ପାଣ୍ଡବମାନଙ୍କର ପାଞ୍ଚପୁଅ ଜନ୍ମ ହୋଇଥିଲେ । ସୁଭଦ୍ରା ମଧ୍ୟ ଗୋଟିଏ ଅତି ସୁନ୍ଦର ପୁଅକୁ ଜନ୍ମ ଦେଇଥିଲେ । ତା'ର ନାମ ଅଭିମନ୍ୟୁ । ଅଭିମନ୍ୟୁ ଅସାଧାରଣ ବୀର ଥିଲେ । ମହାଭାରତ ଯୁଦ୍ଧରେ ତାଙ୍କ ବୀରତ୍ୱ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ।



ସୁଭଦ୍ରାଙ୍କ ସହିତ ଅର୍ଜୁନଙ୍କର ବିବାହ

## ଖାଣ୍ଡବ ବନ ପୋଡ଼ି

ଶ୍ୱେତରାଜାଙ୍କ ଯଜ୍ଞରେ ଅଗ୍ନି ଦେବତାଙ୍କୁ ଏତେ ଘିଅ ଢାଳିଲେ ଯେ ତାଙ୍କୁ ଅଜୀର୍ଣ୍ଣ ରୋଗ ଧରିଲା । ସ୍ୱର୍ଗର ବୈଦ୍ୟ କହିଲେ, "ଏ ରୋଗର ଗୋଟିଏ ମାତ୍ର ଔଷଧ ଅଛି । ଯଦି ଖାଣ୍ଡବ ବନରେ ଥିବା ସମସ୍ତ ଜୀବଜନ୍ତୁଙ୍କୁ ପୋଡ଼ି ଖାଇ ପାରିବ ତେବେ ତୁମର ଏ ରୋଗ ଆପେ ଆପେ ଭଲ ହୋଇଯିବ ।" ଖାଣ୍ଡବ ବନରେ ଇନ୍ଦ୍ରଙ୍କ ମିତ୍ର ତକ୍ଷକ ସର୍ପ ବାସକରେ । ଅଗ୍ନି ଯେତେ ଥର ଖାଣ୍ଡବ ବନକୁ ପୋଡ଼ିବାକୁ ଚେଷ୍ଟାକରନ୍ତି; ଇନ୍ଦ୍ର ସଙ୍ଗେ ସଙ୍ଗେ ବରୁଣଙ୍କ ଦ୍ୱାରା ବର୍ଷା କରାଇ ନିଆଁ ଲିଭାଇ ଦେଉଥାନ୍ତି । ବାରମ୍ବାର ଚେଷ୍ଟା କରି ଅଗ୍ନିଦେବ ଖାଣ୍ଡବ ବନକୁ ପୋଡ଼ି ପାରିଲେ ନାହିଁ ।

ଦିନେ ଅର୍ଜୁନ ପ୍ରିୟ ସଖା ଶ୍ରୀକୃଷ୍ଣଙ୍କ ସହିତ ଆସି ଖୁସିଗପ କରୁଥିବା ବେଳେ ଅଗ୍ନିଦେବ ବ୍ରାହ୍ମଣ ବେଶରେ ଆସି ନିଜର ଦୁଃଖ ଜଣାଇଲେ ।

ଅର୍ଜୁନ କହିଲେ, "ମୁଁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଅଛି; ମାତ୍ର ଇନ୍ଦ୍ରଙ୍କ ସହିତ ମୁଁ ଯୁଦ୍ଧ କରି ତାଙ୍କୁ ପରାସ୍ତ କରିବା ଭଳି ଅସ୍ତ୍ର ମୋ ପାଖରେ ନାହିଁ । ଆପଣ ମୋତେ ଏପରି ଅସ୍ତ୍ର ଦିଅନ୍ତୁ, ଯାହା ସାହାଯ୍ୟରେ ମୁଁ ଇନ୍ଦ୍ରଙ୍କ ସହିତ ଯୁଦ୍ଧ

କରିପାରିବି ।" ଖାଣ୍ଡବ ବନ ଇନ୍ଦ୍ରପ୍ରସ୍ଥର ନିକଟରେ ଥିଲା । ସେ ବଣଟା ପୋଡ଼ିଗଲେ ଇନ୍ଦ୍ରପ୍ରସ୍ଥ ନଗରକୁ ବଢ଼ାଇବା ପାଇଁ ବହୁତ ସ୍ଥାନ ମିଳିଯିବ - ଏକଥା ମଧ୍ୟ ଅର୍ଜୁନଙ୍କ ମନରେ ଥିଲା ।

ଅର୍ଜୁନଙ୍କ କଥାରେ ଅଗ୍ନିଦେବ ସନ୍ତୁଷ୍ଟ ହେଲେ । ସେ ଗାଣ୍ଡିବ ଧନୁ ଅକ୍ଷୟ ତୂଣୀର ଏବଂ ବରୁଣଙ୍କଠାରୁ ପାଇଥିବା ନନ୍ଦିଘୋଷ ରଥ ଅର୍ଜୁନଙ୍କୁ ଦେଲେ ।

ଅର୍ଜୁନଙ୍କଠାରୁ ସଙ୍କେତ ପାଇବା ମାତ୍ରେ ଅଗ୍ନିଦେବ କାମରେ ଲାଗିଗଲେ । ଚାହୁଁ ଚାହୁଁ ଖାଣ୍ଡବ ବନ ହୁ ହୁ ହୋଇ ଜଳିଉଠିଲା । ହଜାର ହଜାର ଜୀବଜନ୍ତୁ ପୋଡ଼ି ପାଉଁଶ ହେବାରେ ଲାଗିଲେ । ଖାଣ୍ଡବ ପୋଡ଼ି ଖବର ପାଇ ଇନ୍ଦ୍ର ନିଆଁ ଲିଭାଇବା ପାଇଁ ମେଘ ବର୍ଷା କରାଇବାକୁ ଆଦେଶ ଦେଲେ । ଏତିକି ବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ "ନିଆଁ ଲିଭିଯିବ । ଶୀଘ୍ର ପବନ ଶର ମାରି ମେଘକୁ ଉଡ଼ାଇ ଦିଅ ।" ତାହା ହିଁ ହେଲା, ଅନ୍ୟ ଉପାୟ ନ ଦେଖି ନିଜେ ଦେବରାଜ ଇନ୍ଦ୍ର ଯୁଦ୍ଧ କରିବା ପାଇଁ ଅଗେଇ ଆସିଲେ । ଅର୍ଜୁନ ମଧ୍ୟ ପ୍ରସ୍ତୁତ ଥିଲେ । ଦୁଇ ଆଡ଼ୁ ଶରବର୍ଷା ହେବାରେ ଲାଗିଲା ସତ; ମାତ୍ର ଇନ୍ଦ୍ର ଖାଣ୍ଡବ ବନକୁ ରକ୍ଷା କରିପାରିଲେ ନାହିଁ । ଅଗ୍ନିଦେବଙ୍କ କାମ ହୋଇଗଲା । ସେ ରୋଗମୁକ୍ତ ହେଲେ । ଇନ୍ଦ୍ର ଅର୍ଜୁନଙ୍କ ଅପୂର୍ବ ଯୁଦ୍ଧ କୌଶଳକୁ ପ୍ରଶଂସା କରିବାରେ ଲାଗିଲେ । ଅର୍ଜୁନ କହିଲେ, "ଯଦି ଆପଣ ମୋ ଉପରେ ଖୁସି ହୋଇଛନ୍ତି; ତେବେ ମୋତେ ଦୟାକରି ଦିବ୍ୟ ଅସ୍ତ୍ର ଦାନ କରନ୍ତୁ ।" ଇନ୍ଦ୍ର କହିଲେ, "ତୁମେ ଭଗବାନ ଶିବଙ୍କୁ ପୂଜାକର । ସେ ସନ୍ତୁଷ୍ଟ ହେଲେ ତୁମେ ବହୁ ଦିବ୍ୟ ଅସ୍ତ୍ରର ଅଧିକାରୀ ହେବ ।"

ଖାଣ୍ଡବ ବନ ପୋଡ଼ି ଯାଉଥିବା ବେଳେ ମୟ ଦାନବ ବଞ୍ଚି ଯାଇଥିଲା । ସେ ଅର୍ଜୁନଙ୍କ ନିକଟକୁ ଯାଇ କହିଲା, "ଆପଣଙ୍କ ଦୟାରୁ ମୁଁ ବଞ୍ଚି ଯାଇଛି । ସେଥିପାଇଁ ମୁଁ ଆପଣଙ୍କର କିଛି ସେବା କରିବା ପାଇଁ ଇଚ୍ଛା କରେ । ଦୟା କରି ଅଦେଶ ଦିଅନ୍ତୁ । ଅର୍ଜୁନ କିଛି କହିବା ପୂର୍ବରୁ କୃଷ୍ଣ କହିଲେ, "ମୟ ତମେ ଜଣେ ଶ୍ରେଷ୍ଠ କାରିଗର । ଶିଳ୍ପୀ ହିସାବରେ ତୁମେ ଖୁବ୍ ପ୍ରଶଂସା ଅର୍ଜିଛ । ମହାରାଜା ଯୁଧିଷ୍ଠିରଙ୍କ ପାଇଁ ଇନ୍ଦ୍ରପ୍ରସ୍ଥରେ ତୁମେ ଏପରି ଏକ ସୁନ୍ଦର ସଭା ଗୃହ ନିର୍ମାଣ କରିବ, ଯାହା ଅନ୍ୟ କେଉଁଠି ନଥିବ । ସାରା ପୃଥିବୀର ଲୋକ ତାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିବେ ।" ମୁଣ୍ଡ ତଳକୁ କରି ମୟ କହିଲେ, "ପ୍ରଭୁ, ତାହା ହିଁ ହେବ ।"

## ସଭାପର୍ବ ସଭାଗୃହ ନିର୍ମାଣ

ମୟ-ଦାନବ ଜଣେ ବଢ଼ିଆ କାରିଗର । ଶ୍ରୀକୃଷ୍ଣଙ୍କ ଆଦେଶ ପାଇ ସେ ଇନ୍ଦ୍ରପ୍ରସ୍ଥର ସଭାଗୃହ ନିର୍ମାଣ କରିବାରେ ଲାଗିଲେ । ଇନ୍ଦ୍ରପ୍ରସ୍ଥ ଆସିବା ପୂର୍ବରୁ ସେ ବହୁ ମୂଲ୍ୟବାନ୍ ପଦାର୍ଥ ଓ ଆଗରୁ ତିଆରି ହୋଇଥିବା ସଭାଗୃହର ନମୂନା ମଧ୍ୟ ସଂଗ୍ରହ କରିଥିଲେ । ପୃଥିବୀର ସବୁଠାରୁ ସୁନ୍ଦର ସଭାଗୃହ ନିର୍ମାଣ କରିବାକୁ ସ୍ଥିର କରି ସେ କାମ ଆରମ୍ଭ କଲେ । ଶୁଭ ବେଳରେ କୃଷ୍ଣଙ୍କର ଉପସ୍ଥିତିରେ ସଭାଗୃହର ଶୁଭ ଦିଆଗଲା । ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଯିବା ପରେ ଶ୍ରୀକୃଷ୍ଣ କିଛି ସମୟ ପାଇଁ ନିଜ ରାଜଧାନୀ ଦ୍ୱାରିକା ଯାଇଥିଲେ ।

ମୟ ତାଙ୍କର ବୁଦ୍ଧି ଓ କୌଶଳ ଲଗାଇ ଏକ ଅପୂର୍ବ ସଭାଗୃହ ନିର୍ମାଣ କରିଦେଲେ ।

## ରାଜସୂୟ ଯଜ୍ଞର ପ୍ରସ୍ତାବ

କିଛିଦିନ ପରେ ମହର୍ଷି ନାରଦ ଇନ୍ଦ୍ରପ୍ରସ୍ଥରେ ପହଞ୍ଚିଲେ । ସେ ଏକ ରାଜସୂୟ ଯଜ୍ଞ କରିବା ପାଇଁ ମହାରାଜ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେଲେ । ଯୁଧିଷ୍ଠିର ଏ ବିଷୟରେ ବିଚାର କରିବା ପାଇଁ ଦ୍ୱାରିକାକୁ ଲୋକ ପଠାଇ ଶ୍ରୀକୃଷ୍ଣଙ୍କୁ ଡକାଇ ଆଣିଲେ । ଶ୍ରୀକୃଷ୍ଣ ଆସିବା ମାତ୍ରେ ପାଣ୍ଡବମାନେ ଏହି ନୂତନ ସଭା-ଗୃହରେ ତାଙ୍କୁ ସ୍ୱାଗତ କରି ରାଜସୂୟ ଯଜ୍ଞ କରିବା କଥା ପଚାରିଲେ ।

ଶ୍ରୀକୃଷ୍ଣ କହିଲେ, "ମହାରାଜ, ଆପଣଙ୍କ ରାଜ୍ୟରେ ପ୍ରଜାମାନେ ମହାସୁଖରେ କାଳ କାଟୁଛନ୍ତି । ଆପଣ ଧର୍ମରାଜ୍ୟ ପ୍ରତିଷ୍ଠା କରିଛନ୍ତି । ରାଜସୂୟ ଯଜ୍ଞ କରି ସମ୍ରାଟ ବୋଲାଇବା ପାଇଁ ଆପଣ ସଂପୂର୍ଣ୍ଣ ଉପଯୁକ୍ତ । କିନ୍ତୁ ସେଥିରେ କୃତକାର୍ଯ୍ୟ ହେବାରେ ମୋର ସନ୍ଦେହ ହେଉଛି । ମଗଧ ରାଜ ଜରାସନ୍ଧ ନିଶ୍ଚୟ ଏଥିରେ ବାଧା ସୃଷ୍ଟି କରିବେ । ତାଙ୍କରି ଭୟରେ ଅନ୍ୟ ରାଜାମାନେ ଆମ ଯଜ୍ଞରେ ଭାଗ ନେବା ପାଇଁ ସାହସ ମଧ କରିବେ ନାହିଁ । ଜରାସନ୍ଧର କାରାଗାରରେ ଏ ପର୍ଯ୍ୟନ୍ତ ୮୬ ଜଣ ରାଜା ବନ୍ଦୀ ହୋଇ ନାନା ଦୁଃଖ କଷ୍ଟ ଭୋଗ କରୁଛନ୍ତି । ଶହେ ରାଜାଙ୍କୁ ମାରି ସେ ନରମେଧ ଯଜ୍ଞ କରିବାକୁ ସ୍ଥିର କରିଛନ୍ତି । ଜରାସନ୍ଧ ପରି ଶକ୍ତିଶାଳୀ ଓ ନିର୍ଦ୍ଦୟ ରାଜା ପୃଥିବୀରେ ବିରଳ । ତାଙ୍କର ବାରମ୍ବାର ଆକ୍ରମଣରେ ମୁଁ ବ୍ୟତିବ୍ୟସ୍ତ ହୋଇ ଶେଷକୁ ମଥୁରା ଛାଡ଼ି ଦ୍ୱାରିକାରେ ରାଜଧାନୀ କରିବାକୁ ବାଧ ହେଲି ।"

ଶ୍ରୀକୃଷ୍ଣଙ୍କ କଥା ଶୁଣି ଯୁଧିଷ୍ଠିରଙ୍କ ମନରେ ଭୟ ଜାତ ହେଲା । ଭୀମ ଓ ଅର୍ଜୁନ କହିଲେ, "ମହାରାଜ, ଆମେ କ୍ଷତ୍ରିୟ । ଶତ୍ରୁକୁ ବଶ କରିବା ବା ଜୟ କରିବା ପାଇଁ ସବୁବେଳେ ଯତ୍ନ କରିବା ଆମର କର୍ତ୍ତବ୍ୟ । ଆମେ ଯେ କୌଣସି ପ୍ରକାରେ ଆମ ଶତ୍ରୁକୁ ପରାସ୍ତ କରିବୁ ।" ଆପଣ ନିଶ୍ଚିନ୍ତ ରହନ୍ତୁ ।"

## ଜରାସନ୍ଧ ବଧ

ଅର୍ଜୁନ ଓ ଭୀମ ଏକାନ୍ତରେ ଶ୍ରୀକୃଷ୍ଣଙ୍କ ସହିତ ମନ୍ତ୍ରଣା କଲେ । ତହିଁ ପରଦିନ୍ ଜରାସନ୍ଧକୁ ପରାଜିତ କରିବା ଉଦ୍ଦେଶ୍ୟରେ ଭୀମ ଓ ଅର୍ଜୁନଙ୍କୁ ସଙ୍ଗରେ ନେଇ ଶ୍ରୀକୃଷ୍ଣ ମଗଧର ରାଜଧାନୀ ରାଜଗୃହକୁ ଗଲେ । ତିନିହେଁ ବ୍ରାହ୍ମଣ ବେଶଧରି ଜରାସନ୍ଧର ସଭାରେ ପହଞ୍ଚିଗଲେ । ଜରାସନ୍ଧ ତିନିଙ୍କୁ ବ୍ରାହ୍ମଣ ମନେକରି ବହୁ ଆଦର ଯତ୍ନ କଲେ । ସେମାନଙ୍କୁ ଅତିଥି ରହୁଥିବା ଘରେ ରଖିବାର ବ୍ୟବସ୍ଥା କରିବା ପରେ କହିଲେ, "ରାତିରେ ଆପଣମାନଙ୍କ ସହିତ ସାକ୍ଷାତ ହେବ । ଯାଆନ୍ତୁ, ବିଶ୍ରାମ କରିବେ ।"

ରାତି ଅଧରେ ଜରାସନ୍ଧ ଅତିଥି ବ୍ରାହ୍ମଣମାନଙ୍କୁ ସାକ୍ଷାତ କରିବା ମାତ୍ରେ ଭୀମ ଯୁଦ୍ଧ, ଯୁଦ୍ଧ ବୋଲି ପାଟି କରିବାରେ ଲାଗିଲେ । ଜରାସନ୍ଧ ଅତି ବଡ଼ ବୀର । ସେ ଶୀଘ୍ର ସମସ୍ତ ଘଟଣା ବୁଝି କହିଲେ, "ବେଶ୍ ତୁମେ ସବୁ ଯୁଦ୍ଧ କରିବାକୁ ଆସିଛ ପରା ! ଭଲକଥା ! ଜରାସନ୍ଧ ଖୁବ୍ ଯୁଦ୍ଧ ପ୍ରିୟ । ଏବେ ତୁମ ଭିତରୁ କିଏ ମୋ ସହିତ ଲଢ଼ିବ ଶୀଘ୍ର ପ୍ରସ୍ତୁତ ହୋଇଯାଅ ।

ଏକଥା ଶୁଣି ଭୀମ ଡେଇଁ ପଡ଼ିଲେ । ଦୁହିଁଙ୍କ ଭିତରେ ମଲ୍ଲଯୁଦ୍ଧ ଆରମ୍ଭ ହୋଇଗଲା । ମରାମରି, ଧରାଧରି, ପିଟାପିଟିରେ କେତେଦିନ ବିତିଗଲା । କେହି କାହାକୁ ହଟାଇ ପାରୁନଥାନ୍ତି । କ୍ରମେ ଜରାସନ୍ଧ ଦୁର୍ବଳ ହୋଇଗଲା । ଏତିକି ବେଳେ ଶ୍ରୀକୃଷ୍ଣ ଖଣ୍ଡିଏ କୁଟାକୁ ଦୁଇଫାଳ କରି ଚିରି ଭୀମଙ୍କୁ ସେହିପରି କରିବାକୁ ସଙ୍କେତ ଦେଲେ । ସଙ୍କେତ ପାଇ ଭୀମ କଥାଟା ବୁଝିଗଲେ । ସେ ଜରାସନ୍ଧକୁ ତଳେ ପକାଇଦେଇ ତାର ଦୁଇ ଗୋଡ଼କୁ ଦୁଇ ହାତରେ ଧରି ଦୁଇ ଫାଳ କରି ଚିରିଦେଲେ । ଜରାସନ୍ଧର ଦେହ ଦୁଇ ଫାଳ ହୋଇଯିବାରୁ ଭୀମ ବାମ ହାତରେ ଥିବା ଫାଳକୁ ଡାହାଣ ଦିଗକୁ ଓ ଡାହାଣ ହାତରେ ଥିବା ଫାଳକୁ ବାମ ଦିଗକୁ ଫିଙ୍ଗିଦେଲେ । ଅତ୍ୟାଚାରୀ ରାଜା ଜରାସନ୍ଧ ମଲା ।

ଶ୍ରୀକୃଷ୍ଣ, ଭୀମ ଓ ଅର୍ଜୁନ ଜରାସନ୍ଧର ବନ୍ଦୀ ଗୃହରେ କଷ୍ଟ ପାଉଥିବା ସବୁ ରାଜାଙ୍କୁ ବନ୍ଧନ ମୁକ୍ତ କରିଦେଲେ ଓ ଯୁଧିଷ୍ଠିରଙ୍କୁ ରାଜସୂୟ ଯଜ୍ଞରେ ଯୋଗ ଦେବା ପାଇଁ ସେମାନଙ୍କୁ ନିମନ୍ତ୍ରଣ ଜଣାଇଲେ । ଜରାସନ୍ଧର ପୁଅ ସହଦେବଙ୍କୁ ମଗଧ ରାଜ ସିଂହାସନରେ ବସାଇ ସେମାନେ ଇନ୍ଦ୍ରପ୍ରସ୍ଥ ଲେଉଟି ଆସିଲେ ।

## ଜରାସନ୍ଧର ଜନ୍ମ କଥା

ମହାପ୍ରତାପୀ ଜରାସନ୍ଧ ରାଜା ବୃହଦ୍ରଥଙ୍କ ପୁତ୍ର । ବୃହଦ୍ରଥ ବଡ଼ ଯୋଦ୍ଧା ଓ ବୀର ଥିଲେ । ସେ କାଶୀ ରାଜାଙ୍କ ଦୁଇ ଯାଆଁଳା

ଝିଅଙ୍କୁ ବିବାହ କରିଥିଲେ । ପ୍ରଥମେ କାଶୀ ରାଜା ଦୁଇ ଝିଅଙ୍କୁ ସଉତୁଣୀ ଭାବରେ ରହିବାକୁ ପସନ୍ଦ କରି ନଥିଲେ । ମାତ୍ର ବୃହଦ୍ରଥ ରାଜାଙ୍କ ଆଗରେ ପ୍ରତିଜ୍ଞା କରି କହିଲେ, "ମୁଁ ପକ୍ଷପାତ ନ କରି ଉଭୟ ରାଣୀଙ୍କୁ ସମାନ ସ୍ନେହ, ଶ୍ରଦ୍ଧା ଓ ଆଦର କରିବି ।" କାଶୀ ରାଜାଙ୍କ ମନ ବଦଳିଗଲା । ସେ ଏଥିରେ ସମ୍ମତ ହୋଇ ଦୁଇ ଝିଅଙ୍କୁ ବୃହଦ୍ରଥଙ୍କ ସହିତ ବିବାହ ଦେଲେ ।

କନ୍ୟା ଦୁହିଁଙ୍କୁ ସଙ୍ଗରେ ଆଣି ବୃହଦ୍ରଥ ନିଜ ରାଜ୍ୟ ମଗଧକୁ ଫେରି ଆସିଲେ । ଦୁଇ ରାଣୀଙ୍କ ସହିତ ଅନେକ ଦିନ ସୁଖରେ କଟିଗଲା, କ୍ରମେ ବୟସ ବଢ଼ିଲା । ରାଜା ବୁଢ଼ା ହୋଇଆସିଲେ । କୌଣସି ରାଣୀଙ୍କଠାରୁ ସନ୍ତାନଟିଏ ନହେବାରୁ ରାଜା ଅତ୍ୟନ୍ତ ଦୁଃଖିତ ହୋଇ ପଡ଼ିଲେ । ରାଣୀ ଦୁହିଁଙ୍କୁ ମଧ୍ୟ କିଛି ଭଲ ଲାଗିଲା ନାହିଁ । ରାଜ୍ୟ, ଧନ ସୁଖ, ଭୋଗ ବିଳାସ ଆଦି ସବୁକିଛି ବିଷ ପରି ଲାଗିଲା । ରାଜା ମଧ୍ୟ ସବୁବେଳେ ଉଦାସ ରହିଲେ । କୌଣସି କାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ । ଶେଷକୁ ଅବସ୍ଥା ଏପରି ହେଲା ଯେ ସେ ମନ୍ତ୍ରୀମାନଙ୍କ ଉପରେ ରାଜ୍ୟ ଭାର ଦେଇ ଦୁଇ ରାଣୀଙ୍କ ସହ ତପସ୍ୟା କରିବା ଉଦ୍ଦେଶ୍ୟରେ ବଣକୁ ଚାଲିଗଲେ ।

ବଣରେ ଆଶ୍ରମଟିଏ କରି ରାଜା ଓ ଦୁଇ ରାଣୀ ରହିଥାନ୍ତି । କାହାରି ମନରେ ସୁଖ ଶାନ୍ତି ନଥାଏ । ଦିନେ ରାଜା ବୃହଦ୍ରଥ ଜଣେ ଋଷିଙ୍କ ଆଶ୍ରମକୁ ଗଲେ ଓ ଋଷିଙ୍କୁ ପ୍ରଣାମ କରି ଅତ୍ୟନ୍ତ ଦୁଃଖପୂର୍ଣ୍ଣ ହୃଦୟରେ କହିଲେ, "ମହାଭାଗ, ମୁଁ ରାଜ୍ୟ, ଧନ ଓ ଭୋଗ ବିଳାସ ଛାଡ଼ି ଆପଣଙ୍କ ପାଦପଦ୍ମରେ ଶରଣ ପଶିଛି । ଆପଣ ମୋର ଆଶା ପୂରଣ କରି କୃତାର୍ଥ କରନ୍ତୁ ।"

ରାଜାଙ୍କ ସରଳ ବ୍ୟବହାର ଓ ଆକୁଳ ପ୍ରାର୍ଥନାରେ ଋଷିଙ୍କ ମନରେ ଦୟା ହେଲା । ସେ କିଛି ସମୟ ନୀରବ ରହି ପଚାରିଲେ, "-ରାଜା, ତୁମେ ମୋ ଠାରୁ କଅଣ ଆଶା କରୁଛ ?" ରାଜା ବିନୟ ହୋଇ କହଲେ, "ପ୍ରଭୁ, ଆପଣଙ୍କ କୃପାରୁ ମୁଁ ସବୁକିଛି ପାଇଛି । ମାତ୍ର ସନ୍ତାନଟିଏ ନଥିବାରୁ ମୋର କାହିଁରେ ଶାନ୍ତି ନାହିଁ । ଦୟାକରି ମୋତେ ଏକ ସନ୍ତାନ ପ୍ରଦାନ କରନ୍ତୁ ।"

ଋଷିଙ୍କ ମନ ତରଳି ଗଲା । କିପରି ଭାବରେ ରାଜାଙ୍କୁ ସାହାଯ୍ୟ କରିବେ ବୋଲି ଚିନ୍ତା କରୁଥିବା ସମୟରେ ଗଛରୁ ପାଚିଲା ଆମ୍ବଟିଏ ଋଷିଙ୍କ କୋଳରେ ଖସି ପଡ଼ିଲା । ଫଳଟିକୁ ରାଜାଙ୍କ ହାତକୁ ବଢ଼ାଇ ଦେଇ ଋଷି କହିଲେ, "ଏଇଟି ଗ୍ରହଣ କର । ଏଥିରେ ତୁମର ମନୋବାଞ୍ଛା ନିଶ୍ଚୟ ପୂରଣ ହେବ ।"

ରାଜା ବିଷମ ସମସ୍ୟାରେ ପଡ଼ିଲେ । ଆମ୍ବ ଗୋଟିଏ, ରାଣୀ ଦୁଇଟି । କେଉଁ ରାଣୀଙ୍କୁ ଆମ୍ବଟି ଦେବେ । ପ୍ରଥମେ କିଛି ସ୍ଥିର କରିପାରିଲେ ନାହିଁ । ପକ୍ଷପାତ ବିଚାର କରିବେ ନାହିଁ ବୋଲି ସେ ବିବାହ ଦିନରୁ ହିଁ ପ୍ରତିଜ୍ଞା କରିଛନ୍ତି । ତେଣୁ ସେ ଆମ୍ବଟିକୁ ଦୁଇ ରାଣୀଙ୍କ ମଧ୍ୟରେ ଅଧେ ଅଧେ ବାଣ୍ଟିଦେଲେ ।

କିଛିଦିନ ପରେ ଦୁଇ ରାଣୀ ଗର୍ଭବତୀ ହେଲେ । ଏକଥା ଦେଖି ରାଜାଙ୍କ ଆନନ୍ଦ କହିଲେ ନସରେ । ଯଥା ସମୟରେ ଦୁଇରାଣୀ ଏକାବେଳକେ ଏକ ସମୟରେ ପ୍ରସବ କଲେ । ମାତ୍ର ଦୁଃଖର କଥା, ରାଣୀ ଦୁହିଁଙ୍କର ଅଧେ ଲେଖାଏଁ ପିଲା ଜନ୍ମ ହେଲେ । ସନ୍ତାନ ଆଦୌ ନଥିବା ଦୁଃଖଠାରୁ ଏ ଖଣ୍ଡିଆ ସନ୍ତାନ ଜନ୍ମର ଦୁଃଖ ବଳି ପଡ଼ିଲା । ପ୍ରତି ରାଣୀ ଜନ୍ମ କରିଥିବା ପିଲାର ଗୋଟିଏ ଗୋଡ଼, ଗୋଟିଏ ଆଖି, ଗୋଟିଏ କାନ, ମୁହଁରୁ ଅଧେ ଏହିପରି ସବୁ ଅଧା । ମାତ୍ର କେହି ଯଦି ଦୁଇଟି ଅଧାକୁ ଯୋଡ଼ିଦେଇ ପାରିବ, ତେବେ ସୁନ୍ଦର ପୁଅଟିଏ ହୋଇଯିବ । ହାୟ ! ଏ କି ବିପତ୍ତି ! ରାଜା ଅତ୍ୟନ୍ତ ବ୍ୟସ୍ତ ହୋଇପଡ଼ିଲେ । ଭାଗ୍ୟକୁ ନିନ୍ଦା କରି କହିଲେ, "ଯାହା ଯୋଗ ଥିଲା, ଘଟିଲା । ଶୀଘ୍ର ଏ ମାଂସ ପିଣ୍ଡୁଳା ଦୁଇଟାକୁ କନାରେ ଗୁଡ଼ାଇ ବାହାରେ ଫିଙ୍ଗିଦିଅ । ମୁଁ ଅଧିକ ସମୟ ସେ ସବୁକୁ ଆଉ ଦେଖିପାରିବି ନାହିଁ ।"

ଚାକରମାନେ କନା ଗୁଡ଼ା ହୋଇଥିବା ମାଂସ ପିଣ୍ଡୁଳା ଦୁଇଟିକୁ ନେଇ ରାସ୍ତାକଡ଼ର ଅଳିଆ ଗଦାରେ ଫିଙ୍ଗି ଦେଇ ଆସିଲେ ।

ରାତି ଅଧ ରାକ୍ଷସୀ ଜରା ମାଂସ ଖାଇବା ଆଶାରେ ଏଣେତେଣେ ବୁଲୁ ବୁଲୁ କନା ଗୁଡ଼ା ହୋଇଥିବା ପିଣ୍ଡୁଳାରେ ତା ଦୃଷ୍ଟି ପଡ଼ିଗଲା । ଖାଦ୍ୟ ମିଳିଗଲା ଭାବି ସେ ଆନନ୍ଦରେ ପୁଡ଼ା ଫିଟାଇ ଦେଖିଲା, ପ୍ରତି ପୁଡ଼ାରେ ଗୋଟିଏ ପିଲାର ଠିକ୍ ଅଧା ଦେହ ରହିଛି । ଠିକ୍ ଭାବରେ ଯୋଡ଼ି ଦେଲେ ସୁନ୍ଦର ପିଲାଟିଏ ହୋଇଯିବ । ତା'ର ଆଗ୍ରହ ବଢ଼ିଲା । ସେ ଅତି ଯତ୍ନରେ ଦୁଇଫାଳକୁ ଯୋଡ଼ିଦେଲା । ଆଶ୍ଚର୍ଯ୍ୟର କଥା, ଦୁଇଟିଯାକ ଅଧା ଦେହ ମିଶିଯାଇ ସୁନ୍ଦର ଶିଶୁଟିଏ ହୋଇଗଲା । ପିଲାଟିକୁ ମାରି ଖାଇବାକୁ ରାକ୍ଷସୀର ଆଦୌ ଇଚ୍ଛା ହେଲା ନାହିଁ । ସେ ଗୋଟିଏ ସୁନ୍ଦର ସ୍ତ୍ରୀ ରୂପ ହୋଇ ରାଜାଙ୍କ ନିକଟକୁ ଗଲା ଓ କହିଲା, "ମହାରାଜ, ଏଇଟି ଆପଣଙ୍କ ପୁଅ । ଗ୍ରହଣ କରନ୍ତୁ ।"

ରାଜାଙ୍କ ମନ ଆନନ୍ଦରେ ପୂରି ଉଠିଲା । ସେ ପିଲାଟିକୁ ନେଇ ରାଣୀ ଦୁହିଁଙ୍କୁ ଦେଲେ । ଏଇ ପିଲାଟି ବଡ଼ ହୋଇ ମହାପ୍ରତାପୀ ମଗଧ ସମ୍ରାଟ ଜରାସନ୍ଧ ବୋଲାଇଲା ।

ଜରାସନ୍ଧ ମହାବୀର ଥିଲା ସତ; ମାତ୍ର ଦୁଇ ଖଣ୍ଡ ହୋଇ ଯୋଡ଼ା ହୋଇଥିବାରୁ ସେଥିରେ କିଛି ଦୁର୍ବଳତା ରହି ଯାଇଥିଲା । ଅତି ଜୋରରେ ଦୁଇ ଆଡ଼କୁ ଭିଡ଼ିଦେଲେ ତା ଦେହ ପୁଣି ଦୁଇଫାଳ ହୋଇଯିବ । ଏହା ହିଁ ଥିଲା ତା'ର ଦୁର୍ବଳତା ।

ଏକଥା ଶ୍ରୀକୃଷ୍ଣଙ୍କୁ ଉତ୍ତମ ରୂପେ ଜଣାଥିଲା । ଭୀମ ସହିତ ଜରାସନ୍ଧର ଯୁଦ୍ଧ ବେଳେ ଶ୍ରୀକୃଷ୍ଣ ଜରାସନ୍ଧକୁ ଦୁଇଫାଳ କରି ଚିରିଦେବା ପାଇଁ ସଙ୍କେତ ଦେଇଥିଲେ । ଠିକ୍ ସେହିପରି କରି ଭୀମ ଜରାସନ୍ଧକୁ ହତ୍ୟା କରିଥିଲେ ।

## ରାଜସୂୟ ଯଜ୍ଞ

ଇନ୍ଦ୍ରପ୍ରସ୍ଥରେ ପହଞ୍ଚିବା ପରେ ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଚାରିଦିଗ ଜୟ କରିବା ପାଇଁ ବାହାରିଗଲେ । ଅଳ୍ପଦିନ ମଧ୍ୟରେ ସମସ୍ତ ରାଜାଙ୍କୁ ମହାରାଜ ଯୁଧିଷ୍ଠିରଙ୍କ ଅଧୀନତା ସ୍ୱୀକାର କରାଇ ଇନ୍ଦ୍ରପ୍ରସ୍ଥ ଫେରିଆସିଲେ ।

ରାଜସୂୟ ଯଜ୍ଞ ଆରମ୍ଭ ହେଲା । ଦେଶ ଦେଶରୁ ରାଜା ମହାରାଜା ମାନେ ଯଜ୍ଞରେ ଯୋଗଦେବା ପାଇଁ ଇନ୍ଦ୍ରପ୍ରସ୍ଥ ଆସିବାରେ ଲାଗିଲେ । ରାଜାମାନଙ୍କୁ ଉପଯୁକ୍ତ ଭାବରେ ଚର୍ଚ୍ଚା କରିବା ଭାର ଶ୍ରୀକୃଷ୍ଣଙ୍କୁ ଦିଆଯାଇଥିଲା । ବ୍ରାହ୍ମଣମାନଙ୍କ ପାଦ ଧୋଇବା କାର୍ଯ୍ୟ କୃଷ୍ଣ ନିଜେ କରୁଥିଲେ । ଏହି ଯଜ୍ଞରେ ଯୋଗଦେବା ପାଇଁ ହସ୍ତିନାପୁରରୁ ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର, ବିଦୂର, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ଦୁର୍ଯ୍ୟୋଧନ ଓ ଦୁଃଶାସନ ଆଦି ଇନ୍ଦ୍ରପ୍ରସ୍ଥକୁ ଆସିଥିଲେ । ଯଜ୍ଞକୁ ଆସିଥିବା ରାଜାମାନେ ଆଣିଥିବା ଉପହାରମାନ ସଂଗ୍ରହ କରି ରଖିବା ଦାୟିତ୍ୱ ଦୁର୍ଯ୍ୟୋଧନ ଗ୍ରହଣ କରିଥିଲେ । ମହା ଆଡ଼ମ୍ବରରେ ଯଜ୍ଞ କାର୍ଯ୍ୟ ଶେଷ ହେଲା ।

## ଶିଶୁପାଳ ବଧ

ଯଜ୍ଞରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ବୋଲି ଯାହାଙ୍କୁ ସ୍ଥିର କରାଯାଇଥାଏ, ତାଙ୍କୁ ଯଜ୍ଞର ପ୍ରଥମ ସମ୍ମାନ (ଅର୍ଘ୍ୟ) ଦିଆଯିବାର ବିଧି । ମହାରାଜ ଯୁଧିଷ୍ଠିର ତାଙ୍କ ରାଜସୂୟ ଯଜ୍ଞରେ କାହାକୁ ପ୍ରଥମ ସମ୍ମାନ ଦିଆଯିବ ବୋଲି ପିତାମହ ଭୀଷ୍ମଙ୍କୁ ପଚାରିଲେ । ଭୀଷ୍ମ କହିଲେ, "ଉପସ୍ଥିତ ରାଜାମାନଙ୍କ ମଧ୍ୟରେ କୃଷ୍ଣ ହିଁ ସବୁଠାରୁ ଶ୍ରେଷ୍ଠ ଅଟନ୍ତି । ତାଙ୍କର ପୂଜା ସର୍ବପ୍ରଥମେ ହେବା ଉଚିତ ।" ଏହା ଶୁଣି ସହଦେବ ଶ୍ରୀକୃଷ୍ଣଙ୍କ ପାଦ ଧୋଇଦେଲେ । ଚେଦୀ ରାଜ୍ୟର ରାଜା ଶିଶୁପାଳ ଏ ଦୃଶ୍ୟ ଦେଖି ସହିପାରିଲେ ନାହିଁ । ଶ୍ରୀକୃଷ୍ଣଙ୍କୁ ପ୍ରଥମ ସମ୍ମାନ ଦିଆଯାଉଥିବାରୁ ସେ ରାଗରେ ଜଳି ଉଠିଲେ । ଭୀଷ୍ମ ଓ କୃଷ୍ଣଙ୍କୁ ନାନା କଟୁକଥା କହିବାରେ ଲାଗିଲେ । ଶେଷରେ କହିଲେ, "କୃପାଚାର୍ଯ୍ୟ, ଦ୍ରୋଣ, ଦୁର୍ଯ୍ୟୋଧନ ଓ କର୍ଣ୍ଣ ଆଦି ମହାନ ବ୍ୟକ୍ତିମାନେ ଥାଉଁ ଥାଉଁ ଗୋଟାଏ ଗଉଡ଼ ଜାତିର ଲୋକକୁ ଶ୍ରେଷ୍ଠ ସମ୍ମାନ ଦେଇ ଯୁଧିଷ୍ଠିର ଆମ୍ଭମାନଙ୍କୁ ଅପମାନିତ କରିଛନ୍ତି । ଏ ଅନ୍ୟାୟ, ଅବିଚାର ଆମେ କଦାପି ସହ୍ୟ କରିପାରିବୁ ନାହିଁ ।" ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନଙ୍କୁ ଶିଶୁପାଳଙ୍କ କଥା ବହୁତ ଭଲ ଲାଗିଲା । ଭୀମ

ସମ୍ଭାଳି ନପାରି ଗର୍ଜନ କରି ଠିଆ ହୋଇଗଲେ । ଶିଶୁପାଳ ଆଡ଼କୁ ଆଗେଇଯିବା ଦେଖି ଭୀଷ୍ମ ତାଙ୍କୁ ଶାନ୍ତ କରାଇବାରେ ଲାଗିଲେ । କିନ୍ତୁ ଶିଶୁପାଳଙ୍କ ପାଟି ବନ୍ଦ ହୋଇନଥାଏ । ସେ ଅନବରତ ନାନା କଟୂକଥା କହି ଶ୍ରୀକୃଷ୍ଣଙ୍କୁ ଅପମାନ ଦେବାରେ ଲାଗିଥାନ୍ତି । ଆଶ୍ଚର୍ଯ୍ୟର କଥା, ଶ୍ରୀକୃଷ୍ଣ ସବୁ ଶୁଣି ମଧ ନୀରବ ରହିଥାନ୍ତି ।

ଶିଶୁପାଳ ଶ୍ରୀକୃଷ୍ଣଙ୍କ ପିଉସୀ ପୁଅ ଭାଇ । କୁନ୍ତୀ ଓ ଶିଶୁପାଳଙ୍କ ମାଆ ଶତ୍ରୁଶ୍ରବା ଦୁଇ ଭଉଣୀ । ତଥାପି ଶିଶୁପାଳ ଶ୍ରୀକୃଷ୍ଣଙ୍କୁ ନିଜର ପ୍ରଧାନ ଶତ୍ରୁ ବୋଲି ବିଚାର କରୁଥାନ୍ତି । ଥରେ ଶିଶୁପାଳଙ୍କ ଜନନୀ କୃଷ୍ଣଙ୍କୁ କହିଥିଲେ, "ପୁଅ, ତୁମେ ଦୁହେଁ ଦୁଇଭାଇ । ଦେଖୁଛି ଭାଇ ଭାଇ ଭିତରେ ଯେଉଁ ପବିତ୍ର ସ୍ନେହ ମମତା ଥାଏ, ତାହା ମୋ ପୁଅ ଶିଶୁପାଳ ଆଦୌ ରକ୍ଷା କରିବାକୁ ଇଚ୍ଛା କରୁନାହିଁ । ଏକଥା ମୁଁ ଭଲକରି ଜାଣେ । ତାକୁ ମୁଁ ଜନ୍ମ ଦେଇଛି । ତୁ ମୋ ଭଉଣୀର ପୁଅ । ଅନୁରୋଧ କରୁଛି, ଶିଶୁପାଳର ଶହେ ଦୋଷ କ୍ଷମା କରିବୁ ।" ଶ୍ରୀକୃଷ୍ଣ ପିଉସୀଙ୍କୁ କଥା ଦେଇଥିଲେ, ତେଣୁ ନୀରବରେ ବସିରହି ଶିଶୁପାଳଙ୍କ ଗାଳିର ହିସାବ ରଖୁଥିଲେ । ଶହେ ଗାଳି ଦେବାପରେ ମଧ ନୀରବ ନହେବାରୁ ଶ୍ରୀକୃଷ୍ଣ ସୁଦର୍ଶନ ଚକ୍ର ଚଳାଇ ଦେଲେ । ଚାହୁଁ ଚାହୁଁ ଶିଶୁପାଳର ମୁଣ୍ଡ କଟି ତଳେ ପଡ଼ିଗଲା । ସଭାରେ ହାହାକାର ଖେଳିଗଲା । ଏ ଘଟଣା ଦେଖି ମହାରାଜ ଯୁଧିଷ୍ଠିର ହାତଯୋଡ଼ି ଶାନ୍ତ ହେବା ପାଇଁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ଶ୍ରୀକୃଷ୍ଣଙ୍କ ରାଗ ଶାନ୍ତ ହେବା ପରେ ଶିଶୁପାଳଙ୍କ ପୁଅ ଚେଦୀକୁ ରାଜଗାଦୀରେ ବସାଇ ରାଜା କରାଯିବାର ବ୍ୟବସ୍ଥା କରାଗଲା ।

ଯଜ୍ଞ କାର୍ଯ୍ୟ ଶେଷ ହୋଇଗଲା । ପାଣ୍ଡବମାନଙ୍କ ମନରେ ଅପୂର୍ବ ଆନନ୍ଦ । ଯଜ୍ଞରେ ଯୋଗଦେବାକୁ ଆସିଥିବା ରାଜାମାନେ ନିଜ ନିଜ ରାଜ୍ୟକୁ ବାହୁଡ଼ିବାକୁ ଚାହିଁବାରୁ ଯୁଧିଷ୍ଠିର ବିନୟର ସହିତ ସେମାନଙ୍କୁ ବିଦାୟ ଦେଲେ ।

ଶିଳ୍ପୀ ମୟଦାନବ ତିଆରି କରିଥିବା ଚମତ୍କାର ସଭାଗୃହକୁ ଦେଖି ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ ହୋଇଗଲେ । ସେ ମାମୁଁ ଶକୁନୀଙ୍କ ସହିତ ଏହି ଗୃହଟିକୁ ଉତ୍ତମ ରୂପେ ଦେଖିବା ପାଇଁ ବାହାରିଲେ । ଏଣେତେଣେ ବୁଲୁବୁଲୁ ସେ ଏପରି ଅବସ୍ଥାନରେ ପହଞ୍ଚିଲେ, ଯେଉଁଠି ସ୍ଥଳ ଭାଗଟା ଜଳଭାଗ ପରି ମନେହେଲା । ଓଦା ହୋଇଯିବେ ଭାବି ଦୁର୍ଯ୍ୟୋଧନ ଆଣ୍ଠୁଯାଏ ଲୁଗା ଟେକିଦେଲେ । ପାଖରେ ଦ୍ରୌପଦୀ ଛିଡ଼ା ହୋଇଥିଲେ । ଦୁର୍ଯ୍ୟୋଧନଙ୍କ ଏ କାର୍ଯ୍ୟ ଦେଖି ସେ ଫିକ୍ କରି ହସି ଦେବାରୁ ଦୁର୍ଯ୍ୟୋଧନଙ୍କୁ ବଡ଼ ଅପମାନ ହେଲା । ସେ ତୁଣ୍ଡ ଖୋଲି କିଛି କହିଲେ ନାହିଁ ସତ; ମାତ୍ର ରାଗରେ ଜଳିବାରେ ଲାଗିଲେ । ଦୁର୍ଯ୍ୟୋଧନ ମାମୁଁଙ୍କ ସହିତ ଆଗକୁ ଗଲେ । କିଛି ଦୂର ପରେ ଦର୍ପଣଗୁଡ଼ିକ ଏପରି ଖଞ୍ଜାଯାଇଥିଲା ଯେ ଆଗରୁ ଦେଖି ନଥିବା ଲୋକ ନିଶ୍ଚୟ ଭ୍ରମରେ ପଡ଼ିବ । ଦୁର୍ଯ୍ୟୋଧନ ରାସ୍ତା ମନେକରି ଆଗକୁ ମାଡ଼ିଗଲେ । ତାଙ୍କ ମୁଣ୍ଡ କାଚ ବାଡ଼ରେ ପିଟି ହୋଇଗଲା । ଭୀମ ଦୁର୍ଯ୍ୟୋଧନଙ୍କ ଅବସ୍ଥା ଦେଖି ହସି ହସି ଗଡ଼ିଗଲେ । ଦୁର୍ଯ୍ୟୋଧନ କିଛି ବୁଝି ନପାରି ରାଗିବାରେ ଲାଗିଲେ । ଆଉ କିଛି ଦୂର ଆଗେଇଯିବା ପରେ ସେ ପାଣିରେ ପୂର୍ଣ୍ଣ ଏକ ସ୍ଥାନ ନିକଟରେ ପହଞ୍ଚିଗଲେ । ଦୁର୍ଯ୍ୟୋଧନ ତାକୁ ସ୍ଫଟିକ ପଥରରେ ତିଆରି ହୋଇଥିବା ଶୁଖିଲା ସ୍ଥାନ ମନେକରି ଭିତରକୁ ପଶିଗଲେ । ତାଙ୍କ ପୋଷାକ ଓଦା ହୋଇଯିବାରୁ ଲୋକେ ହସି ଉଠିଲେ । ଦୁର୍ଯ୍ୟୋଧନଙ୍କ ରାଗ ଦୁଇ ଗୁଣ ବଢ଼ିଗଲା ।

ଯୁଧିଷ୍ଠିରଙ୍କ ନିକଟରୁ ବିଦାୟ ନେଇ ଦୁର୍ଯ୍ୟୋଧନ ମାମୁଁଙ୍କ ସହିତ ହସ୍ତିନାପୁର ଫେରି ଆସିଲେ ।

## ମାମୁଁ ଭଣଜାଙ୍କ ମନ୍ତ୍ରଣା

ଇନ୍ଦ୍ରପ୍ରସ୍ଥ ଯାଇ ସେଠାରେ ପାଣ୍ଡବମାନଙ୍କ ଧନ ସମ୍ପତ୍ତି ଦେଖି ଓ ଲୋକ ସମ୍ମୁଖରେ ସେମାନଙ୍କର ଉଚ୍ଚ ପ୍ରଶଂସା ଶୁଣି ଦୁର୍ଯ୍ୟୋଧନ ହିଂସାରେ ଜଳିବାକୁ ଲାଗିଲେ । ତାଙ୍କୁ କିଛି ଭଲ ଲାଗିଲା ନାହିଁ । ପାଣ୍ଡବମାନଙ୍କୁ ଶେଷ କରିଦେଇ ସେମାନଙ୍କର ରାଜ୍ୟ ଓ ଧନ ସଂପଦ ନିଜର କରିନେବା ପାଇଁ ସେ ଉପାୟ ଚିନ୍ତା କରିବାରେ ଲାଗିଲେ । ମାମୁଁ ଶକୁନୀ ଦୁର୍ଯ୍ୟୋଧନଙ୍କ ହିଂସା



ଶକୁନି ଓ ଦୁର୍ଯ୍ୟୋଧନଙ୍କ ମନ୍ତ୍ରଣା

ନିଆଁରେ ଘିଅ ଢାଳିବାକୁ ଲାଗିଲେ । ଶେଷକୁ କଥା ହେଲା, "ଯୁଦ୍ଧ କରି ସେମାନଙ୍କୁ ହରାଇବା ସହଜ କଥା ନୁହେଁ । କୌଶଳ କରି ସେମାନଙ୍କ ରାଜ୍ୟ ସହିତ ସମସ୍ତ ଧନ ସଂପତ୍ତି ହାତକୁ ଆଣିବାକୁ ହେବ । ପାଣ୍ଡବମାନେ ଜଣେ ଜଣେ କରି ମରିବେ ।"

ମାମୁଁ ଶକୁନୀ କହିଲେ, "ଯୁଧିଷ୍ଠିର ଭାରି ପଶା ଖେଳ ପ୍ରିୟ; ମାତ୍ର ଆଦୌ ଭଲ ଖେଳାଳୀ ନୁହନ୍ତି । ରାଜାଙ୍କୁ ରାଜି କରାଇ ପାରିଲେ ମୁଁ ଯୁଧିଷ୍ଠିରଙ୍କୁ ପଶାରେ ହରାଇ ତାଙ୍କୁ ଦାଣ୍ଡର ଭିକାରୀ କରିଦେବି ।"

ଦୁର୍ଯ୍ୟୋଧନ ମନକୁ କଥାଟା ପାଇଲା । ସେ ମାମୁଁଙ୍କ ସହିତ କରିଥିବା ମନ୍ତ୍ରଣା କଥାକହି ଯୁଧିଷ୍ଠିରଙ୍କୁ ପଶାଖେଳ ପାଇଁ ଡାକିବାକୁ ଧୃତରାଷ୍ଟ୍ରଙ୍କୁ କହିଲେ । ଧୃତରାଷ୍ଟ୍ର କହିଲେ - "ପଶା ଖେଳ ଭଲ ଖେଳ ନୁହେଁ । ଏଥିରେ ବିବାଦ ଲାଗେ, ଅଶାନ୍ତି ବଢ଼େ । ତୁମର କେଉଁ କଥାରେ ଅଭାବ ଅଛି ? ଅନ୍ୟର ଧନ ସଂପତ୍ତିକୁ ଆଖିଦେବା ପାପ । ବିଶେଷ କରି ପାଣ୍ଡବମାନେ ତୁମର ଭାଇ, ସେମାନଙ୍କ ସୁଖରେ ସୁଖୀ ନହୋଇ ତୁମେ ସର୍ବଦା ତାଙ୍କର ଅନିଷ୍ଟ ଚିନ୍ତା କରୁଛ କାହିଁକି ?" ଦୁର୍ଯ୍ୟୋଧନ କହିଲେ, "ନ୍ୟାୟ, ଅନ୍ୟାୟ, ପାପ, ପୁଣ୍ୟ ବିଷୟ ଶୁଣିବା ପାଇଁ ମୁଁ ଆପଣଙ୍କ ପାଖକୁ ଆସିନାହିଁ । ପାଣ୍ଡବମାନେ ମୋର ଶତ୍ରୁ । ମୁଁ ସେମାନଙ୍କୁ ଭାଇ ଭାବରେ ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହେଁ । ସେ ଶତ୍ରୁତାକୁ ମୂଳରୁ ଶେଷ କରିଦେବା ଉଚିତ । ମୋତେ ଅଯଥା କଥାଗୁଡ଼ାଏ ଶୁଣାଇ ବିରକ୍ତ କରନ୍ତୁ ନାହିଁ । କୌଶଳରେ ପାଣ୍ଡବମାନଙ୍କର ସମସ୍ତ ସମ୍ପତ୍ତି ହାତକରି ସେମାନଙ୍କୁ କଷ୍ଟ ଦେବା ପାଇଁ ମୁଁ ନିଶ୍ଚୟ ଚେଷ୍ଟା କରିବି ।"

ଧୃତରାଷ୍ଟ୍ର କହିଲେ, "ଏ ବିଷୟରେ ମନ୍ତ୍ରୀ ବିଦୁରଙ୍କ ସହିତ ପରାମର୍ଶ କରିବା ଉଚିତ ।" ଦୁର୍ଯ୍ୟୋଧନ ରାଗି ଉଠି କହିଲେ, "ରାଜା ତୁମେ ନା ବିଦୁର ? ମୁଁ ଭଲକରି ଜଣେ ବିଦୁର ଏଥିରେ ଆଦୌ ରାଜି ହେବେ ନାହିଁ । ସେ ସର୍ବଦା ପାଣ୍ଡବମାନଙ୍କ ପକ୍ଷରେ କାର୍ଯ୍ୟ କରି ଆସୁଛନ୍ତି । ଆପଣ ପଶାଖେଳ ପାଇଁ ଅନୁମତି ନଦେଲେ ମୁଁ ଆତ୍ମହତ୍ୟା କରିବି ।" ଧୃତରାଷ୍ଟ୍ରଙ୍କ ମୁଣ୍ଡ ବୁଲାଇ ହୋଇଗଲା । ପୁତ୍ର ସ୍ନେହରେ ଅନ୍ଧ ହୋଇ ସେ ଭଲ ମନ୍ଦ ବିଚାର କରିବା ଶକ୍ତି ହରାଇ ବସିଥିଲେ । ଦୁର୍ଯ୍ୟୋଧନଙ୍କ ଧମକ ଶୁଣି ସେ କହିଲେ, "ବିଦୁରଙ୍କୁ କହ, ସେ ପଶାଖେଳ ପାଇଁ ଯୁଧିଷ୍ଠିରଙ୍କୁ ନିମନ୍ତ୍ରଣ କରନ୍ତୁ ।" ଦୁର୍ଯ୍ୟୋଧନଙ୍କ ଇଚ୍ଛା ପୂର୍ଣ୍ଣ ହେଲା । ସେ ଆନନ୍ଦରେ ନାଚି ଉଠିଲେ ।

ଆଗରୁ ଦୁର୍ଯ୍ୟୋଧନ ଇନ୍ଦ୍ରପ୍ରସ୍ଥରେ ଦେଖି ଆସିଥିବା ସଭାଗୃହ ପରି ଏକ ସୁନ୍ଦର ସଭାଗୃହର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ଦେଇଥିଲେ । ଏଥର ସେ ଦିନରାତି କାରିଗର ଲଗାଇ ସଭାଗୃହର କାର୍ଯ୍ୟ ଶେଷ କରିବାରେ ଲାଗିଲେ ।

ମନ୍ତ୍ରୀ ବିଦୁର ପଶାଖେଳ କଥା ଶୁଣି ଧୃତରାଷ୍ଟ୍ରଙ୍କୁ କହିଲେ, "ମହାରାଜ, ଏହି ଜୁଆଖେଳ କୁରୁବଂଶ ବିନାଶର କାରଣ ହେବ । ପ୍ରାର୍ଥନା କରୁଛି, ଆପଣ ଦୁର୍ଯ୍ୟୋଧନଙ୍କୁ ବୁଝାଇ ଦିଅନ୍ତୁ । ବଂଶନାଶକାରୀ ଏହି ଖେଳ ବନ୍ଦ କରାଯାଉ ।"

ଧୃତରାଷ୍ଟ୍ର ବାରମ୍ବାର 'ନିମନ୍ତ୍ରଣ କରିବାକୁ ଯାଅ' ବୋଲି କହିବାରୁ ବିଦୁର ବାଧ୍ୟ ହୋଇ ଇନ୍ଦ୍ରପ୍ରସ୍ଥ ଗଲେ ।

ମହାରାଜା ଯୁଧିଷ୍ଠିର, ଭୀମ, ଅର୍ଜୁନ, ସହଦେବ ଓ ନକୁଳ ପାଞ୍ଚଭାଇ ସ୍ତ୍ରୀ ଦ୍ରୌପଦୀଙ୍କ ସହିତ ହସ୍ତିନାପୁର ଆସିଲେ । କୌରବ ଓ ପାଣ୍ଡବମାନେ ନିଜ ନିଜ ଭିତରେ ଖୁବ୍ ଖୁସିରେ ମିଳାମିଶା କଲେ । ଦୁର୍ଯ୍ୟୋଧନ ମହାରାଜା ଯୁଧିଷ୍ଠିରଙ୍କୁ ସଙ୍ଗରେ ନେଇ ନିଜର ସୁନ୍ଦର ସଭାଗୃହଟିକୁ ଦେଖାଇବାରେ ଲାଗିଲେ । ପରେ ପରେ ପଶାଖେଳ କଥା ମଧ୍ୟ କହିଲେ । ଯୁଧିଷ୍ଠିର ଖେଳ ପାଇଁ ବିଶେଷ ଆଗ୍ରହୀ ଥିବାର ଲକ୍ଷ୍ୟ କରି ଶକୁନି କହିଲେ, "ରାଜାପିଲା ପଶା ଖେଳିବେ ନାହିଁ ତ ଆଉ କି ଖେଳ ଖେଳିବେ ? ପଶା ହିଁ ରାଜାଙ୍କ ଯୋଗ୍ୟ ଖେଳ । ଯୁଧିଷ୍ଠିର ସଙ୍ଗେ ସଙ୍ଗେ ଖେଳିବା ପାଇଁ ରାଜି ହୋଇଗଲେ । ଦୁଃଶାସନ କହିଲେ, "ଏ ଖେଳ ମହାରାଜ ଦୁର୍ଯ୍ୟୋଧନ ଓ ମହାରାଜ ଯୁଧିଷ୍ଠିରଙ୍କ ମଧ୍ୟରେ ହେବ; କିନ୍ତୁ ଦୁର୍ଯ୍ୟୋଧନ ନିଜେ ଖେଳିବେ ନାହିଁ । ତାଙ୍କ ପକ୍ଷରୁ ମାମୁଁ ଶକୁନୀ ପଶାକାଠି ଗଡ଼ାଇବେ । ଖେଳରେ ହାରିବା ଜିଣିବା ଦୁର୍ଯ୍ୟୋଧନଙ୍କର ହେବ ।"

ତହିଁ ଆରଦିନ ଖେଳ ଆରମ୍ଭ ହେଲା । ସଭାଗୃହରେ ଖେଳ ଦେଖିବା ପାଇଁ ଏତେ ଲୋକଙ୍କ ଭିଡ଼ ହେଲା ଯେ, ସୋରିଷ ପକାଇବାକୁ ସ୍ଥାନ୍ ରହିଲା ନାହିଁ । ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ, ବିଦୁର, ଧୃତରାଷ୍ଟ୍ର ଆଦି ଗୁରୁଜନମାନେ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ସର୍ବପ୍ରଥମେ ମହାରାଜ ଯୁଧିଷ୍ଠିର ତାଙ୍କର ଏକ ବହୁମୁଲ୍ୟ ରତ୍ନହାରକୁ ବାଜି ରଖି ପଶା ଗଡ଼ାଇଲେ । ଦୁର୍ଭାଗ୍ୟକୁ ସେଇଟି ଶକୁନି ଜିଣିନେଲେ । ଏହାପରେ ସୁନା ରୁପା ଆଦି ବହୁମୂଲ୍ୟ ପଦାର୍ଥ ବାଜି ରଖି ଖେଳ ଆରମ୍ଭକଲେ । ତାହା ମଧ୍ୟ ଶକୁନିଙ୍କ ହାତକୁ ଚାଲିଗଲା । ଏହାପରେ ଘୋଡ଼ା ଓ ରଥୀମାନଙ୍କୁ ପଣ ରଖି ଖେଳ ହେଲା । ଯୁଧିଷ୍ଠିର ଏଥିର ମଧ୍ୟ ହାରିଗଲେ । ଏହାପରେ ଇନ୍ଦ୍ରପ୍ରସ୍ଥର ସମସ୍ତ ଚାକର ଚାକରାଣୀଙ୍କୁ ବାଜି ରଖାଗଲା । ସେ ସମସ୍ତଙ୍କୁ ହାରିଯିବା ପରେ ମହାରାଜ ତାଙ୍କର ସେନା ଓ ସେନାପତିମାନଙ୍କୁ ବାଜି ରଖି ହାରମାନିଲେ । ପ୍ରତିଥର ହାରୁଥିବା ବେଳେ କୌରବମାନେ ଆନନ୍ଦରେ ହସି ଉଠୁଥିଲେ ଓ ଭୀମ, ଅର୍ଜୁନ ଆଦି ପାଣ୍ଡବମାନଙ୍କ ମୁହଁ ଶୁଖି ଯାଉଥିଲା । ଏ ପ୍ରକାର ଖେଳ ଦେଖି ଭୀଷ୍ମ ଓ ବିଦୁର ଚିନ୍ତା କଲେ "ବର୍ତ୍ତମାନ ଯୁଧିଷ୍ଠିର ଖେଳ ବନ୍ଦ କରିଦେବା ଉଚିତ ।" ମାତ୍ର ତାହା ହୋଇପାରିଲା ନାହିଁ । ଏଥର ମହାରାଜ ନିଜ ରାଜ୍ୟକୁ ବାଜି ରୂପେ ରଖି ଖେଳିବସିଲେ । କିନ୍ତୁ ହାୟ, କପଟୀ ଶକୁନିଙ୍କର ହିଁ ଜୟ ହେଲା । ଖେଳରେ ବାରମ୍ବାର ହାରି ଯୁଧିଷ୍ଠିରଙ୍କ ମନ ଭାଙ୍ଗି ପଡ଼ିଥାଏ । ଲଜ୍ଜା ଓ ଅପମାନରେ ସେ ମନେ ମନେ ଜଳି ଯାଉଥାନ୍ତି । ଏଥର ସେ ନିଜ ସହିତ ଅନ୍ୟ ଚାରି ଭାଇଙ୍କୁ ପଣ ରୂପେ ରଖି ଖେଳ ଆରମ୍ଭ କରିଦେଲେ ।

ଭାଗ୍ୟର ବିଡ଼ମ୍ବନାକୁ କିଏ ବଦଳାଇ ପାରିବ ? ଶକୁନି ହିଁ ଜିଣିଗଲେ । ପାଣ୍ଡବମାନଙ୍କ ଅବସ୍ଥା ଦେଖି ଦୁର୍ଯ୍ୟୋଧନ ଆନନ୍ଦରେ ଅଧୀର ହୋଇ ଉଠିଲେ । ଯୁଧିଷ୍ଠିର କହିଲେ, "ମୁଁ ଖେଳରେ ସବୁ ହାରି ସାରିଲିଣି । ଏପରିକି ପ୍ରାଣଠାରୁ ଅଧିକ ପ୍ରିୟ ମୋ ଭାଇମାନଙ୍କୁ ମଧ୍ୟ ହାରିଯାଇଛି । ଏବେ ବାଜି ରୂପେ ରଖି ଖେଳିବା ପାଇଁ ମୋ ପାଖରେ ଆଉ କିଛିନାହିଁ ।

ଶକୁନି ସଙ୍ଗେ ସଙ୍ଗେ କହିଲେ, "କିଏ କହିଲା ତୁମ ପାଖରେ କିଛି ନାହିଁ ବୋଲି ? ତୁମର ସ୍ତ୍ରୀ ଦ୍ରୌପଦୀ ତ ଅଛନ୍ତି । ତାଙ୍କୁ ବାଜି ରଖି ଖେଳ । ଯଦି ଏଥର ଜିଣିଯାଅ, ତେବେ ଆଗରୁ ଯେତେ ଯାହା ହାରିଛ, ସେ ସବୁ ପୁଣି ତୁମ ନିକଟକୁ ଫେରିଯିବ । ଏ ସୁଯୋଗ ଛାଡ଼ିବାର ନୁହେଁ ।"

ଯୁଧିଷ୍ଠିର ଆଗପଛ ନବିଚାରି ଦ୍ରୌପଦୀଙ୍କୁ ବାଜି ରଖିଦେଲେ । ଏକଥା ଶୁଣିବା ମାତ୍ରେ "ଘୋର ପାପ, ଘୋର ପାପ" ବୋଲି ସଭାରେ ଅନେକ ଲୋକ ପାଟି କରିବାରେ ଲାଗିଲେ ।" ନିଜେ ଯୁଧିଷ୍ଠିର କହିଲେ, "ହାୟ ମୁଁ କଅଣ କରିପକାଇଲି । କୌରବମାନେ ଆନନ୍ଦରେ ନାଚିବାରେ ଲାଗିଲେ । କେବଳ ଦୁର୍ଯ୍ୟୋଧନଙ୍କ ଭାଇ ଯୁଯୁତ୍ସୁ ଦୁଃଖରେ ମୁଣ୍ଡପାତି ବସିଲେ । ଶକୁନି ପଶାକାଠି ଗଡ଼ାଇ କହିଲେ, "ନିଅ, ଏ ବାଜି ମଧ୍ୟ ମୁଁ ଜିଣିଗଲି ।" ଯୁଧିଷ୍ଠିର ଦ୍ରୌପଦୀଙ୍କୁ ମଧ୍ୟ ହାରିଗଲେ ।

## ଦ୍ରୌପଦୀଙ୍କୁ ଅପମାନ

ଦ୍ରୌପଦୀଙ୍କୁ ଜିଣିଯିବା ପରେ ଦୁର୍ଯ୍ୟୋଧନଙ୍କ ଆନନ୍ଦର ସୀମା ରହିଲା ନାହିଁ । କୌରବମାନେ ଗର୍ବରେ ଫୁଲିଉଠି ପାଗଳପରି ହେବାରେ ଲାଗିଲେ । ଦୁର୍ଯ୍ୟୋଧନ ବିଦୂରଙ୍କୁ ଡାକି କହିଲେ, "ଯୁଧିଷ୍ଠିର ଖେଳରେ ହାରିଯାଇଥିବା ଖବର ଦ୍ରୌପଦୀଙ୍କୁ ଦେଇ କହିବ, ସେ ଆଜିଠାରୁ ଆମର ଦାସୀ ରୂପେ କାର୍ଯ୍ୟକରିବେ । ଆମ ରାଜପୁରୀରେ ଝାଡୁ ଦେଇ ଘରଦ୍ୱାର ସଫା କରିବା କାମରେ ତାଙ୍କୁ ନିଯୁକ୍ତ କରାଯିବ । ଏବେ ତାଙ୍କୁ ରାଜସଭାକୁ ଅଣାଯିବ ।"

ବିଦୂର ରାଗି ଉଠି କହିଲେ, "ଶୋଇଥିବା ସିଂହକୁ ଛାଟମାରି ଉଠାଅ ନାହିଁ । ବାରମ୍ବାର ପାଣ୍ଡବମାନଙ୍କୁ ବିପଦରେ ପକାଇବାର ଫଳ ତୁମକୁ ଅବଶ୍ୟ ଭୋଗ କରିବାକୁ ପଡ଼ିବ । ସେମାନେ ସରଳ ଆଉ ନିର୍ଦ୍ଦୋଷ । ତୁମେ ତାଙ୍କ ସରଳତାର ସୁଯୋଗ ନେଇ ଅଳ୍ପସମୟ ପାଇଁ ଆନନ୍ଦ ପାଇପାର; ମାତ୍ର ଶେଷ ଫଳ ବଂଶନାଶ ବୋଲି ମନେରଖ । ଦ୍ରୌପଦୀ ସାଧାରଣ ନାରୀ ନୁହନ୍ତି । ସେ କୁଳବଧୂ, ବଂଶର ମର୍ଯ୍ୟାଦା । ସେ ସଭାକୁ ଆସିପାରିବେ ନାହିଁ ।"

ଦୁର୍ଯ୍ୟୋଧନ କାହାରି କଥା ଶୁଣିବାରେ ନଥିଲେ । ସେ ବିଦୂରଙ୍କ ଆଡ଼କୁ କଟମଟ କରି ଚାହିଁ ସାରଥୀ ପ୍ରାତିକାମୀଙ୍କୁ କହିଲେ, "ଦ୍ରୌପଦୀ ବର୍ତ୍ତମାନ ଆମର ଦାସୀ । ତାଙ୍କୁ ମୋ ଆଦେଶ ଜଣାଇ ଶୀଘ୍ର ସଭାକୁ ଆସିବାକୁ କହ ।"

## ପ୍ରାତିକାମୀ ଓ ଦ୍ରୌପଦୀ

ପ୍ରାତିକାମୀ ଦ୍ରୌପଦୀଙ୍କୁ ସାକ୍ଷାତ କରି କହିଲା, "ଦେବୀ, ମହାରାଜ ଯୁଧିଷ୍ଠିର ପଶାଖେଳରେ ଆପଣଙ୍କୁ ବାଜି ରଖି ହାରିଯାଇଛନ୍ତି । ଦୁର୍ଯ୍ୟୋଧନ ଆଦେଶରେ ମୁଁ ଆପଣଙ୍କୁ ସଭାକୁ ନେବାକୁ ଆସିଛି ।"

ଦ୍ରୌପଦୀ ଆଶ୍ଚର୍ଯ୍ୟ ହୋଇ କହିଲେ, "ପ୍ରାତିକାମୀ, ଏ କି ଅସମ୍ଭବ କଥା ମୁଁ ଶୁଣୁଛି ? ନିଜ ସ୍ତ୍ରୀକୁ କେହି କେବେ କୌଣସି ଖେଳରେ ବାଜି ରଖିବା ଶୁଣିଛ କି ? ପୁଣି ମହାରାଜାଙ୍କର କ'ଣ ଧନ ସମ୍ପତ୍ତିର ଅଭାବ ଥିଲା ଯେ, ସେ ନିଜ ଭାର୍ଯ୍ୟାକୁ ପଣ ରଖିବାକୁ ଗଲେ ? ନିଶ୍ଚୟ ମହାରାଜ ତାଙ୍କର ବିଚାରବୁଦ୍ଧି ହରାଇ ଏପରି କରିପକାଇଛନ୍ତି ।"

ପ୍ରାତିକାମୀ କହିଲେ, "କି ଦୁଃଖ କହିବି ଦେବୀ, ମହାରାଜ ଆପଣଙ୍କୁ ପଣ ରଖିବା ଆଗରୁ ସମସ୍ତ ଧନ, ସଂପତ୍ତି ଏପରିକି ମହା ଧନୁର୍ଦ୍ଧର ଭାଇମାନଙ୍କ ସହିତ ନିଜକୁ ମଧ୍ୟ ହରାଇ ବସିଥିଲେ ।"

ଦ୍ରୌପଦୀ କହିଲେ, "ପ୍ରାତିକାମୀ, ଯୁଧିଷ୍ଠିର ପ୍ରଥମେ ମୋତେ ନାଁ ନିଜକୁ ହାରିଛନ୍ତି ? ଯଦି ସେ ନିଜକୁ ଆଗ ପଣରଖି ହାରିଥିବେ, ତେବେ ମୋ ଉପରେ ତାଙ୍କର ଆଉ କୌଣସି ଅଧିକାର ନଥିଲା । ତେଣୁ କେଉଁ ଅଧିକାର ବଳରେ ସେ ମୋତେ ପଣ ରୂପେ ରଖି ପଶାଖେଳିଲେ ? ଏକଥା ମହାରାଜଙ୍କୁ ପଚାରି ଆସି ମୋତେ ଜଣାଅ ।"

ପ୍ରାତିକାମୀ ସଭାକୁ ଆସି ଦ୍ରୌପଦୀ ପଚାରିଥିବା ପ୍ରଶ୍ନ ଯୁଧିଷ୍ଠିରଙ୍କୁ ଜଣାଇଲେ । ମାତ୍ର ଯୁଧିଷ୍ଠିର କୌଣସି ଉତ୍ତର ନଦେଇ ନୀରବ ରହିଲେ । ଦୁର୍ଯ୍ୟୋଧନ କହିଲେ, "ସାରଥୀ, ତୁମେ ଦ୍ରୌପଦୀଙ୍କୁ ସଭାକୁ ନେଇଆସ । ତାଙ୍କର ଯଦି କିଛି ବୁଝିବାର ଥାଏ, ସେ ଏଠାକୁ ଆସି ପଚାରନ୍ତୁ ।"

ପ୍ରାତିକାମୀ ପୁଣି ଫେରି ଆସିବା ଦେଖି ଦୁର୍ଯ୍ୟୋଧନ ସାନ ଭାଇ ଦୁଃଶାସନଙ୍କୁ କହିଲେ, "ପ୍ରାତିକାମୀ ଭୀମ ଭୟରେ କିଛି କରିପାରୁ ନାହିଁ । ତୁ ତୁରନ୍ତ ଦ୍ରୌପଦୀଙ୍କୁ ଏଠାକୁ ନେଇଆ' ।"

ଦୁଃଶାସନ ପବନ ବେଗରେ ଯାଇ ଦ୍ରୌପଦୀଙ୍କୁ କହିଲେ, "ସବୁ ଖବର ପାଇସାରିଛ । ଆଉ ବିଳମ୍ବ କାହିଁକି ? ଶୀଘ୍ର ମୋ ସହିତ ସଭାକୁ ଚାଲିଆସ ।"

ଦୁଃଶାସନର କଥା ଶୁଣି ଦ୍ରୌପଦୀ ଅନ୍ତଃପୁରକୁ ଦୌଡ଼ି ପଳାଇଗଲେ । ଦୁଃଶାସନ ପଛେ ପଛେ ଗୋଡ଼ାଇ ଯାଇ ତାଙ୍କ ମୁକୁଳା କେଶକୁ ଧରି ପକାଇଲା । ଦ୍ରୌପଦୀ ବିନୟ ହୋଇ ଯେତେ ଯାହା କହିଲେ ମଧ୍ୟ ସେ କିଛି ଶୁଣିଲା ନାହିଁ । ପାପୀ ଦୁଃଶାସନ ଦ୍ରୌପଦୀଙ୍କ କେଶ ଧରି ଭିଡ଼ି ଭିଡ଼ି ଆଣି ସଭା ମଧ୍ୟରେ କଚାଡ଼ିଦେଲା । ଦ୍ରୌପଦୀଙ୍କ ଏ ଦଶା ଦେଖି ଭୀଷ୍ମ, ଦ୍ରୋଣ, ବିଦୁର, କୃପାଚାର୍ଯ୍ୟ ଆଦି ଗୁରୁଜନମାନେ ଲଜ୍ଜାରେ ମଥା ତଳକୁ କରିବସିଲେ । ଦ୍ରୌପଦୀ ଅତି ବିକଳ ହୋଇ କାନ୍ଦୁଥିବାର ଦେଖି ଭୀମ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସେ ସିଂହ ପରି ଗର୍ଜି ଉଠି କହିଲେ, "ହେ ସୂର୍ଯ୍ୟ, ହେ ଦେବତାଗଣ, ମୁଁ ପ୍ରତିଜ୍ଞା କରୁଛି ଏ ଦୁଷ୍ଟ ଦୁଃଶାସନ ଯେଉଁ ହାତରେ ଦ୍ରୌପଦୀଙ୍କ କେଶକୁ ଧରି ଏଠାକୁ ଭିଡ଼ି ଆଣିଛି, ମୁଁ ଯୁଦ୍ଧ କରି ସେ ପାପୀର ସେଇ ହାତକୁ ଉପାଡ଼ି ଫିଙ୍ଗିଦେବି । ଆପଣମାନେ ସାକ୍ଷୀ ରହିଲେ । ମୁଁ ଏ ପ୍ରତିଜ୍ଞା ନିଶ୍ଚୟ ପୂରଣ କରିବି ।"

ଭୀମର ଗର୍ଜନରେ କୌରବମାନଙ୍କ ଛାତି ଥରି ଉଠିଲା । କିନ୍ତୁ ଦୁର୍ଯ୍ୟୋଧନ ଭୀମଙ୍କୁ ଅଧିକ ରଗାଇବା ପାଇଁ ନିଜ ଜଙ୍ଘରେ ଦ୍ରୌପଦୀଙ୍କୁ ବସାଇବା ପାଇଁ ସଙ୍କେତ ଦେଲା । ଭୀମଙ୍କ ରାଗ ବହୁଗୁଣରେ ବଢ଼ିଗଲା । ସେ ଗର୍ଜି ଉଠି କହିଲେ, "ରେ ପାପୀ, ରେ ଅଧମ ଦୁର୍ଯ୍ୟୋଧନ, ଯେଉଁ ଜଙ୍ଘ ଉପରେ ତୁ ଦ୍ରୌପଦୀଙ୍କୁ ବସାଇବା ପାଇଁ ସଙ୍କେତ ଦେଉଛୁ, ମୁଁ ଗଦା ପ୍ରହାର କରି ସେ ଜଙ୍ଘକୁ ନିଶ୍ଚୟ ଚୂନା କରିଦେବି ।"

## ସଭାରେ ଦ୍ରୌପଦୀ

ଦୁଃଶାସନ ଅତି ଅସଭ୍ୟ ଭାବରେ ଦ୍ରୌପଦୀଙ୍କୁ ଆଣି ସଭାରେ କଚାଡ଼ିଦେଲା । ତାଙ୍କର ମୁଣ୍ଡବାଳ ମୁକୁଳା, ଦେହର ପିନ୍ଧା ଲୁଗା ଅସ୍ତବ୍ୟସ୍ତ ସେ ଗୁରୁଜନମାନଂକ ଆଗରେ ନିଜକୁ ଖୁବ୍ ଅପମାନିତ ମନେ କଲେ ମଧ୍ୟ ଉଚ୍ଚ ସ୍ୱରରେ କାନ୍ଦି କାନ୍ଦି କହିଲେ, "ମୋର ଗୁରୁଜନ, ପଣ୍ଡିତ, ପୁରୋହିତ ଓ ବହୁ ଶାସ୍ତ୍ରଜ୍ଞମାନେ ଏଠାରେ ଉପସ୍ଥିତ ଥାଇ କଅଣ ଦେଖୁଛନ୍ତି ? ମୁଁ ମହାରାଜ ଧୃତରାଷ୍ଟ୍ରଙ୍କର କୁଳବଧୂ । ଜଣେ କୁଳବଧୂର ଏପରି ଦୁର୍ଦ୍ଦଶା ଦେଖି କେହି ପଦେ ପ୍ରତିବାଦ କରିପାରୁନାହାନ୍ତି । ଏଥିପାଇଁ ମୁଁ ଆପଣମାନଙ୍କ ବୀରତ୍ୱ, ପଣ୍ଡିତ ପଣିଆ ଓ ମହତ୍ତ୍ୱକୁ ଧିକ୍କାର କରୁଛି । ଏ ସଭାରେ ଅନେକ ଗୁଡ଼ିଏ ଭୀରୁ ଓ କାପୁରୁଷ କେବଳ ଉପସ୍ଥିତ ଅଛନ୍ତି । ଏ ନାରୀ ନିର୍ଯ୍ୟାତାନାର କୁଫଳ ଆପଣମାନଙ୍କୁ ଭୋଗ କରିବାକୁ ପଡ଼ିବ । ଆପଣ ମାନଙ୍କର ମାଆ, ଭଉଣୀ, ଭାର୍ଯ୍ୟା ଓ ଝିଅ ଅଛନ୍ତି । ସେମାନଙ୍କ ପ୍ରତି ଏପରି ବ୍ୟବହାର ହେଲେ ଆପଣମାନେ ହସି ହସି ନିଶ୍ଚୟ ସହ୍ୟ କରିଯିବେ । ଧିକ୍ ଆପଣମାନଙ୍କର ଜନ୍ମ ।"

ଭୀଷ୍ମ ମୁଣ୍ଡ ତଳକୁ କରି କହିଲେ, "କଲ୍ୟାଣୀ, ତୁମେ କରିଥିବା ପ୍ରଶ୍ନ ମୁଁ ଶୁଣିଛି । ଯେଉଁ ଜିନିଷ ନିଜର ନୁହେଁ, ତା'କୁ ପଣ ରଖାଯାଇପାରିବ ନାହିଁ । ପୁଣି ସ୍ତ୍ରୀ ସବୁବେଳେ ସ୍ୱାମୀର ଅଧୀନ । ତୁମ ପ୍ରଶ୍ନର ଉତ୍ତର ଦେବା ସହଜନୁହେଁ । ଯେତେବେଳେ ଯୁଧିଷ୍ଠିର ନୀରବ ରହୁଛନ୍ତି, ସେତେବେଳେ ତୁମ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ଇଚ୍ଛା କରୁନାହିଁ ।"

ଏଥର ଭୀମ ଯୁଧିଷ୍ଠିରଙ୍କୁ ଲକ୍ଷ୍ୟ କରି କହିଲେ, "ଯେଉଁମାନେ ଅତ୍ୟନ୍ତ ପଶାଖେଳ ପ୍ରିୟ, ସେମାନେ ମଧ୍ୟ ନିଜର ଦାସୀ ବା ରକ୍ଷିତା ବେଶ୍ୟାଙ୍କୁ ମଧ୍ୟ ପଣ ରଖିବା କେଉଁଠି ଦେଖା ଯାଇନାହିଁ । ତୁମେ ଆଜି ସମସ୍ତଙ୍କଠାରୁ ହୀନ ହୋଇଗଲ । ତୁମର ଉଚ୍ଚ ବିଚାର ବୁଦ୍ଧି ଏବେ କୁଆଡ଼େ ଗଲା ? ଭାଇମାନଙ୍କୁ ପଣରେ ହାରିଗଲ । ସେଥିରେ ମୋର ଆପତ୍ତି ନାହିଁ । ମାତ୍ର ଆମ ସମସ୍ତଙ୍କ ଆଗରେ ଆମ ସ୍ତ୍ରୀ ସୁକୁମାରୀ ଦ୍ରୌପଦୀଙ୍କୁ କୁଳାଙ୍ଗାର ଦୁଃଶାସନ ଯେଉଁ ଅସଭ୍ୟ ବ୍ୟବହାର ଦେଖାଉଛି, ସେଥିପାଇଁ ତୁମେ ଏକମାତ୍ର ଦାୟୀ । ଯେଉଁ ହାତରେ ପଶା ଖେଳି ତୁମ ଆମ ସମସ୍ତଙ୍କ ସହ ଦ୍ରୌପଦୀଙ୍କୁ ଘୋର ଅପମାନ ଦେଲ, ସେହି ହାତକୁ ମୁଁ ଆଜି ପୋଡ଼ି ଦେବି ।"

ଭୀମ କ୍ରୋଧରେ ଥରୁଥିବା ଦେଖି ଅର୍ଜୁନ କହିଲେ, "ଶାନ୍ତ ହୁଅ । ଆଗରୁ ତ କେବେ ତୁମେ ଏପରି କଥା କହିବା ମୁଁ ଶୁଣିନାହିଁ । ବଡ଼ଭାଇ ପିତା ସମାନ । ତାଙ୍କୁ ଅପମାନ ଦେଇ ତୁମେ ଘୋର ପାପ ଅର୍ଜି ସାରିଲଣି । ଅଧିକରେ ତୁମ କଥା ଶୁଣି ଆମର ଶତ୍ରୁମାନେ ଆନନ୍ଦିତ ହେଉଛନ୍ତି । ବଡ଼ ଭାଇ କୌଣସି ଅନ୍ୟାୟ କରିନାହାନ୍ତି, ମୋ କଥାମାନି ଶାନ୍ତ ହୋଇଯାଅ ।"

## ପଙ୍କ ପୋଖରୀରେ ପଦ୍ମ

ଧୃତରାଷ୍ଟ୍ରଙ୍କ ପୁଅମାନଙ୍କ ମଧ୍ୟରୁ ବିକର୍ଣ୍ଣ ଥିଲେ ସମ୍ପୂର୍ଣ୍ଣ ଅଲଗା । ସେ କୌଣସି ଅନ୍ୟାୟକୁ ସହିବା ଲୋକ ନଥିଲେ । ଶହେ କୁଳାଙ୍ଗାରଙ୍କ ଭିତରେ ସେ ଥିଲେ ଏକ ଅମୂଲ୍ୟ ହୀରା । ସଭାରେ ଦ୍ରୌପଦୀଙ୍କ ଅପମାନ ସହି ନପାରି ସେ କହିଲେ, "ଗୁରୁଜନମାନେ ଦ୍ରୌପଦୀଙ୍କ ପ୍ରଶ୍ନର ଉଚିତ ବିଚାର କରି ତାଙ୍କୁ ଉତ୍ତର ଦିଅନ୍ତୁ ।" କେହି କିଛି ନ କହିବାରୁ ଯୁବକ ବିକର୍ଣ୍ଣ କହିଲେ, "ଆପଣମାନେ ଦୀର୍ଘ ସମୟ ନିରବ ରହିବା ଦେଖି ମୁଁ ବିଚାରୁଛି, ଆପଣମାନେ କିଛି ଭୟ କରୁଛନ୍ତି । ମାତ୍ର ମୋତେ ଯାହା ନ୍ୟାୟ ବୋଲି ଦେଖାଯାଉଛି, ମୁଁ ତାହା ପ୍ରକାଶ କରିବାକୁ ଆଦୌ ଭୟ କରୁନାହିଁ । ପ୍ରଥମ କଥା, ଖେଳାଳୀ ନିଜ ଇଚ୍ଛାରେ ପଣ ରଖନ୍ତି । ଯୁଧିଷ୍ଠିରଙ୍କୁ ଶକୁନୀ ମତାଇ ଦ୍ରୌପଦୀଙ୍କୁ ପଣରଖିବା ଅନ୍ୟାୟ । ଦ୍ୱିତୀୟରେ, ଦ୍ରୌପଦୀ ଯୁଧିଷ୍ଠିରଙ୍କର ଏକା ନୁହନ୍ତି । ପାଞ୍ଚଭାଇଙ୍କର ପତ୍ନୀ । ଏଣୁ ଯୁଧିଷ୍ଠିର ଏକାକୀ ତାଙ୍କୁ ପଣ ରଖି ପାରିବେ ନାହିଁ । ତୃତୀୟରେ, ଯୁଧିଷ୍ଠିର ଦ୍ରୌପଦୀଙ୍କୁ ପଣ ରଖିବା ପୂର୍ବରୁ ନିଜକୁ ହରାଇ ସାରିଥିଲେ । ତେଣୁ ପଣ ରଖିବା ବେଳକୁ ଦ୍ରୌପଦୀଙ୍କ ଉପରେ ତାଙ୍କର କୌଣସି ଅଧିକାର ନଥିଲା । ଏଣୁ ଦ୍ରୌପଦୀଙ୍କୁ ଆମେ ଜିଣିଥିବା କଥା ଆଦୌ ନ୍ୟାୟସଂଗତ ନୁହେଁ ।"

ଦୁର୍ଯ୍ୟୋଧନଙ୍କର ଜଣେ ସହୋଦର ଭାଇ ମୁହଁରୁ ଏପରି କଥା ଶୁଣି ସମସ୍ତେ ବିକର୍ଣ୍ଣଙ୍କ ଉଚ୍ଚପ୍ରଶଂସା କରିବା ସଙ୍ଗେ ସଙ୍ଗେ କପଟୀ ଶକୁନୀଙ୍କୁ ଘୋର ନିନ୍ଦାକଲେ ।

ହଠାତ୍ କର୍ଣ୍ଣ ନିଜ ଆସନରୁ ଉଠି ବିକର୍ଣ୍ଣଙ୍କୁ ଶାସନ କଲା ଭଙ୍ଗୀରେ କହିଲେ, "ତୁମେ ଜଣେ ବାଳକ । ସଭାରେ ପାଗଳଙ୍କ ପରି ଏଣୁ ତେଣୁ କହୁଛ କାହିଁକି ? ଯୁଧିଷ୍ଠିର ନିଜେ ପଣ ରଖି ଦ୍ରୌପଦୀଙ୍କୁ ହାରିଯାଇଛନ୍ତି । ଏହାକୁ ଅନ୍ୟାୟ ବୋଲି କୁହାଯିବ କାହିଁକି ? ଗୋଟିଏ ପୁରୁଷ ଗୋଟିଏ ସ୍ତ୍ରୀକୁ ବିବାହ କରିବା କଥା ଶାସ୍ତ୍ରରେ ଅଛି । ସ୍ଥଳ ବିଶେଷରେ ପୁରୁଷ ଏକରୁ ଅଧିକ ସ୍ତ୍ରୀ ବିବାହ କରିପାରେ । ମାତ୍ର ଗୋଟିଏ ସ୍ତ୍ରୀ ପାଞ୍ଚଜଣଙ୍କୁ ବିଭା ହେବା କଥା କୌଣସିଠାରେ ଦେଖାନାହିଁ । ଦ୍ରୌପଦୀ ପାଞ୍ଚଜଣଙ୍କୁ ବିବାହ କରିଥିବାରୁ ସେ କୁଳବଧୂ ନୁହନ୍ତି । ବରଂ ତାଙ୍କୁ ଜଣେ ବେଶ୍ୟା ବୋଲି କହିବା ଠିକ୍ ହେବ । ତେଣୁ ଗୋଟିଏ ବେଶ୍ୟାକୁ ସଭାକୁ



ଦ୍ରୌପଦୀଙ୍କ ବସ୍ତ୍ରହରଣ

ଆଣିବା କିମ୍ବା ତାକୁ ଲଙ୍ଗଳା କରିଦେବାରେ ଭୁଲ୍ ରହିଲା କେଉଁଠି ? ପାଣ୍ଡବମାନେ ଆଜିଠାରୁ କୌରବମାନଙ୍କର ଦାସ ଓ ଦ୍ରୌପଦୀ ଦାସୀ ରୂପେ ଖଟିବାକୁ ବାଧ୍ୟ । ଦୁଃଶାସନ, ତୁମେ ବାଳକ ବିକର୍ଣ୍ଣର କଥାକୁ କାନ ନଦେଇ ପ୍ରଥମେ ପାଣ୍ଡବମାନଙ୍କଠାରୁ ମୂଲ୍ୟବାନ ବସ୍ତ୍ର ଓ ଅଳଙ୍କାରମାନ କାଢ଼ିନିଅ । ଦ୍ରୌପଦୀଙ୍କ ଦେହରୁ ବସ୍ତ୍ର ବାହାରକରି ତାଙ୍କୁ ସଭାରେ ସମ୍ପୂର୍ଣ୍ଣ ଉଲଗ୍ନ କରିଦିଅ ।"

## ଯାହାକୁ ରଖିବେ ଅନନ୍ତ

ପାଣ୍ଡବମାନେ ନିଜ ନିଜ ଦେହରୁ ବହୁ ମୂଲ୍ୟ ବସନ ଓ ଅଳଙ୍କାରମାନ ବାହାର କରିଦେଲେ । ଦୁଃଶାସନକୁ ଚାହିଁ କର୍ଣ୍ଣ କହିଲେ, "ଆଉ ବିଳମ୍ବ କାହିଁକି ? ଏଥର ଦ୍ରୌପଦୀଙ୍କୁ ଉଲଗ୍ନ କରି ପାଣ୍ଡବମାନେ ନିଜ ଧର୍ମପତ୍ନୀଙ୍କ ଅବସ୍ଥା ଭଲକରି ଦେଖିନିଅନ୍ତୁ ।

ଏହି ସମୟରେ ଦ୍ରୌପଦୀଙ୍କ ମନର ଅବସ୍ଥା କିଏ ବର୍ଣ୍ଣନା କରିବ । ସେ ଆକୁଳ ହୋଇ ସଭାରେ ବସିଥିବା ଗୁରୁଜନ ଓ ନିଜର ବୀର ସ୍ୱାମୀମାନଙ୍କ ଆଡ଼କୁ ଚାହିଁ ରହିଲେ । ଦୁଃଶାସନକୁ ବାଧା ଦେବା ତ ଦୂରର କଥା, କେହି ପଦେହେଲେ କହିଲେ ନାହିଁ । ସମସ୍ତେ ନୀରବ ଭାବରେ କାଠ ପିତୁଳା ପରି ବସିରହିଥାନ୍ତି । ରାଜା ତ ନିଜେ ଅନ୍ଧ । ଭୀଷ୍ମ, ଦ୍ରୋଣ, କୃପ ପ୍ରଭୃତି ମହାତ୍ମାମାନେ ମଧ୍ୟ ମୁଣ୍ଡ ପୋତି ବସିଥିବା ଦେଖି ଦ୍ରୌପଦୀ କହିଲେ, "ଯେଉଁମାନଙ୍କର ଶକ୍ତି ଅଛି, ଯେଉଁମାନେ ଏ ଅନ୍ୟାୟର ପ୍ରତିବାଦ କରିପାରନ୍ତେ ସେମାନେ କାହାକୁ ଭୟ କରୁଛନ୍ତି ମୁଁ ଜାଣି ପାରୁନାହିଁ । ଏକାକୀ ଭୀଷ୍ମ ଆଦେଶ ଦେଇ ନିଜ ପୁତ୍ରବଧୂକୁ

ବିପଦରୁ ରକ୍ଷା କରିପାରନ୍ତେ । କାହା ଭୟରେ ସେ ଏପରି ଅନୀତିକୁ ମୁଣ୍ଡପାତି ସହି ଯାଉଛନ୍ତି ମୁଁ ଭାବି ପାରୁନାହିଁ । ମୋ ସ୍ୱାମୀମାନେ ସହଜେ କୌରବମାନଙ୍କ ଦାସତ୍ୱ ସ୍ୱୀକାର କରିସାରିଲେଣି । ଆଉ ବା କାହାକୁ କହିବି ? ହେ ଦୟାମୟ, ଦୀନବନ୍ଧୁ ଅଗତିର ଗତି; ମୁଁ ବର୍ତ୍ତମାନ ଅଗାଧ ସମୁଦ୍ରରେ ଭାସିଯାଉଛି ପ୍ରଭୁ ! ଆଜି ମାତୃଜାତି ପ୍ରତି ଏ ପାପୀ ଦୁଃଶାସନ ଯେଉଁ ଅପମାନ ଦେବାକୁ ଯାଉଛି ତାହା କୌଣସି ଅସଭ୍ୟ ବ୍ୟକ୍ତି ମଧ୍ୟ ଦେଖି ସ୍ଥିର ହୋଇ ରହିପାରିବ ନାହିଁ । ମୋତେ ଏ ବିପଦରୁ ଉଦ୍ଧାର ନକଲେ ଆପଣଙ୍କ ବାନାର ନିନ୍ଦା ହେବ । ଆପଣ ସର୍ବଦା ନାରୀର ସମ୍ମାନ ରକ୍ଷାକରିବା ପାଇଁ ଆଗେଇ ଆସିଛନ୍ତି । ମୋ ପାଇଁ ଆପଣଙ୍କ କୃପା ସିଂହାସନ ନ ଟଳିଲେ ସମଗ୍ର ମାତୃଜାତି ଅପମାନ ଚିରଦିନ ପାଇଁ ଆଖି ଖୋଲି ଦେଖି ନିଅ ।" ଏହିପରି କହି ଦ୍ରୌପଦୀ ଉଚ୍ଚ ସ୍ୱରରେ କ୍ରନ୍ଦନ କରିବାରେ ଲାଗିଲେ ।

ଠିକ୍ ଏହି ସମୟରେ ଶ୍ରୀକୃଷ୍ଣ ଦ୍ୱାରିକାରେ ରାଣୀମାନଙ୍କ ସହିତ ପଶା ଖେଳୁଥିଲେ । ହଠାତ୍ ଚମକି ପଡ଼ିବାରୁ ରୁକ୍ମିଣୀ ପଚାରିଲେ, "ପ୍ରଭୁ, ଆପଣ ଏପରି ବିଚଳିତ ହୋଇଉଠିଲେ କାହିଁକି ?" ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ନାଁ ସେ କିଛି ନୁହେଁ, ତୁମେ ଦାନ ଚଳାଅ ।" ମାତ୍ର ରୁକ୍ମିଣୀ ସହଜରେ ଛାଡ଼ିବାର ପାତ୍ର ନୁହନ୍ତି । ପ୍ରକୃତ ଘଟଣା ଜାଣିବା ପାଇଁ ବାରମ୍ବାର ଅଳି କଲେ ।

ଶ୍ରୀକୃଷ୍ଣ ଅତ୍ୟନ୍ତ ଗମ୍ଭୀର ହୋଇ କହିଲେ, "ଦେବୀ, କୌରବମାନଙ୍କୁ ଆଜିଠାରୁ ଧର୍ମ ଛାଡ଼ିଲା । ମାତୃଜାତିର ଅପମାନ ଲାଗି ଅଳ୍ପଦିନ ମଧ୍ୟରେ କୁରୁବଂଶ ଧ୍ୱଂସ ହେବ । ଶୁଣ, କୌରବମାନେ କପଟ ପଶା ଖେଳରେ ଯୁଧିଷ୍ଠିରଙ୍କ ସହିତ ଅନ୍ୟ ଭାଇମାନଙ୍କୁ ଜିଣିନେଲେ । ଏବେ ଗର୍ବୀ ଦୁର୍ଯ୍ୟୋଧନ ଓ ଅହଂକାରୀ କର୍ଣ୍ଣର ଅଦେଶରେ ପାପିଷ୍ଠ ଦୁଃଶାସନ ସତୀ ଦ୍ରୌପଦୀଙ୍କୁ ବିରାଟ କୁରୁ ସଭା ଆଗରେ ଭୀଷ୍ମ, ଦ୍ରୋଣ, କୃପ ଆଦି ଗୁରୁଜନଙ୍କ ସମ୍ମୁଖରେ ଉଲଗ୍ନ କରିବାକୁ ଯାଉଛି । ଅନ୍ୟ ଉପାୟ ନପାଇ ଦ୍ରୌପଦୀ ଆକୁଳ ହୋଇ ମୋର ସାହାଯ୍ୟ ପ୍ରାର୍ଥନା କରୁଥିବା ଜାଣି ମୁଁ ହଠାତ୍ ବିଚଳିତ ହୋଇପଡ଼ିଥିଲି ।"

ରୁକ୍ମିଣୀ, ସତ୍ୟଭାମା ଓ ଅନ୍ୟ ରାଣୀମାନେ ଏକ ସ୍ୱରରେ କହିଲେ "ପ୍ରଭୁ, ଆଉ ବିଳମ୍ବ କାହିଁକି ? ତୁରନ୍ତ ମାତୃଜାତିର ସମ୍ମାନ ରକ୍ଷା କରିବା ପାଇଁ ଆଗେଇ ଯାଆନ୍ତୁ । ଦ୍ରୌପଦୀର ଅପମାନ ସମଗ୍ର ମାତୃଜାତି ମୁହଁରେ କାଳି ବୋଳି ଦେବ ।"

ଶ୍ରୀକୃଷ୍ଣ କହିଲେ, "ହଉ, ଏ ବାଜିଟା ସରିଯାଉ । ଠିକଣା ବେଳରେ ମୁଁ ନିଶ୍ଚୟ ଯିବି ।" ସତ୍ୟଭାମା କହିଲେ, "ପ୍ରଭୁ ଏ କି ମାୟା ? ଛାର ପଶା ଖେଳରେ ମାତି ଆପଣ କ'ଣ କରିବା ଉଚିତ୍ ତାହା ମଧ୍ୟ ଭୁଲିଯିବେ । ହୁଏତ ଦ୍ରୌପଦୀ ଉଲଗ୍ନ ହୋଇ ଠିଆ ହୋଇଥିବେ । ତା'ପରେ ଆପଣ ଯାଇ କରିବେ କଅଣ ? ଉଲଗ୍ନ ଦ୍ରୌପଦୀଙ୍କୁ ଦେଖି ଆପଣ ଧୈର୍ଯ୍ୟ ଧରି ରହି ପାରିବେ ତ ? ମା ଧରିତ୍ରୀ, ଏ ଦୃଶ୍ୟ ଦେଖି ତୁ ଫାଟିଯା । ସତୀ ଦ୍ରୌପଦୀ ଉଲଗ୍ନ ହେବା ପୂର୍ବରୁ ତୁ ତାଙ୍କୁ ତୋ କୋଳରେ ଆଶ୍ରୟ ଦେଇ ଦେ ।"

ଶ୍ରୀକୃଷ୍ଣ କହିଲେ, "ଆରେ, ଏପରି ବ୍ୟସ୍ତ ହେଉଛ କାହିଁକି ? କାଠି ଗଡ଼ାଅ କହିଲି ପରା । ଠିକଣା ସମୟରେ ମୁଁ ଦ୍ରୌପଦୀର ଲଜ୍ଜା ନିଶ୍ଚୟ ନିବାରଣ କରିବି ।

ରୁକ୍ମିଣୀ କହିଲେ, "ନାଁ ଖେଳ ଏହିଠାରୁ ବନ୍ଦ ରହିଲା । ଆପଣ ତୁରନ୍ତ ହସ୍ତିନା ଗମନ କରନ୍ତୁ । ଦ୍ରୌପଦୀଙ୍କ ମହତ ଶେଷ ପାଇଯିବା ପରେ ଆପଣ ଯାଇ ଆଉ କଅଣ କରିବେ ? ତାଙ୍କ କଟା ଘାଆରେ ଲୁଣ ଛିଟା ମାରି ଆହୁରି ଜଳାଇବାକୁ ଇଚ୍ଛା କରିଛନ୍ତି କି ?"

ଶ୍ରୀକୃଷ୍ଣ ହସି ହସି କହିଲେ, "ଦେଖୁଛି, ଦ୍ରୌପଦୀଙ୍କ ପାଇଁ ତୁମେ ସମସ୍ତେ ବ୍ୟାକୁଳ ହୋଇ ଉଠିଲଣି । ଶୁଣ, ଏବେ ମଧ୍ୟ ଦ୍ରୌପଦୀଙ୍କର ନିଜ ଉପରେ ଭରସା ଅଛି । ସେ ଦୁଃଶାସନକୁ ବାଧା ଦେଇ ଚାଲିଛନ୍ତି । ଗୋଟିଏ ହାତରେ ନିଜ ପିନ୍ଧା ଲୁଗାକୁ ଜାବୁଡ଼ି ଧରି ଅନ୍ୟ ହାତ ଟେକି ମୋତେ ଡାକୁଛନ୍ତି । ଯେତେବେଳେ ନିଜ ଉପରୁ ତାଙ୍କ ଭରସା ତୁଟିଯିବ ଓ ସେ ଦୁଇ ହାତ ଟେକି ମୋର ସାହାଯ୍ୟ ଲୋଡ଼ିବେ, ମୁଁ ଠିକ୍ ସେହି ମୁହୂର୍ତ୍ତରେ ତାଙ୍କ ଲଜ୍ଜା ନିବାରଣ କରିବି । ହଜାରେ ଦୁଃଶାସନ ହେଲେ ମଧ୍ୟ ଦ୍ରୌପଦୀଙ୍କୁ ଉଲଗ୍ନ କରିପାରିବେ ନାହିଁ ।"

ରାଣୀମାନେ କିଛି କହିବା ପୂର୍ବରୁ ଶ୍ରୀକୃଷ୍ଣ ପଶାକାଠି ଫିଙ୍ଗି ଦେଲେ ଓ 'ରଖିଲି', 'ରଖିଲି' ବୋଲି ପାଟି କରି ଚାଲିଗଲେ ।

ଏହି ସମୟରେ କୁରୁସଭାରେ ଏକ ଅଦ୍ଭୁତ ଦୃଶ୍ୟ ଦେଖାଗଲା । ଦୁଃଶାସନ ଦ୍ରୌପଦୀଙ୍କ ଦେହରୁ ଗୋଟାକ ପରେ ଗୋଟାଏ ଲୁଗା ବାହାର କରି ତଳେ ଥୋଇଲା ବେଳକୁ ତାଙ୍କ ଦେହରେ ଆଉ ଗୋଟାଏ ଲୁଗା ଆପେ ଆପେ ଘୋଡ଼ାଇ ହୋଇଯାଉଥାଏ । ଲୁଗା ବାହାର କରି ଦୁଃଶାସନ ପର୍ବତ ପ୍ରମାଣେ ଗଦା କରି ସାରିଲେଣି । ଦେହରୁ ଗମ୍ ଗମ୍ ଝାଳ ବହିଯାଉଛି । ଦ୍ରୌପଦୀଙ୍କ ଦେହରୁ ଲୁଗା ସରୁନାହିଁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଦ୍ରୌପଦୀ ସ୍ଥିର ହୋଇ ଠିଆ ହୋଇଥାନ୍ତି । ଦୁଃଶାସନ ଆଉ ଲୁଗା ବାହାର କରିବାକୁ ସାହସ କଲାନାହିଁ । ନିଜକୁ ଘୋର ଲଜ୍ଜାରୁ ଉଦ୍ଧାର କରିଥିବାରୁ ଦ୍ରୌପଦୀ ଗଦ୍ ଗଦ୍ କଣ୍ଠରେ କହିଲେ, "ପ୍ରଭୁ, ଆପଣ ବାସ୍ତବରେ ଅନାଥର ନାଥ । ବିପଦର ବନ୍ଧୁ । କିଭଳି ଭାବରେ ମୁଁ ଆପଣଙ୍କୁ ମୋ କୃତଜ୍ଞତା ଜଣାଇବି ? ଧନ୍ୟ ତୁମେ ! ଧନ୍ୟ ତୁମର ମହିମା । ଆପଣ ସାହାଯ୍ୟ କରିନଥିଲେ ମୁଁ ଆଜି କୁରୁସଭାରେ ଉଲଗ୍ନ ଅବସ୍ଥାରେ ହିଁ ଆତ୍ମହତ୍ୟା କରିଥାନ୍ତି । ମୋର କୃତଜ୍ଞତା ସ୍ୱୀକାର କରନ୍ତୁ ପ୍ରଭୁ ।"

ଦୁଃଶାସନ ହାଲିଆ ହୋଇ ବସି ପଡ଼ିଲେ । ଏତିକିବେଳେ ଭୀମ ଠିଆ ହୋଇଗଲା । ତାଙ୍କ ଆଖିରୁ ନିଆଁ ବାହାରୁ ଥିବାପରି ଦେଖାଯାଉଥିଲା । ସେ ଦାନ୍ତରେ ଓଠ ଚାପି କହିଲେ, "ସଭାରେ ଯେତେ ଲୋକ ଉପସ୍ଥିତ ଅଛନ୍ତି, ସେମାନେ ସମସ୍ତେ ଭୀରୁ, କାପୁରୁଷ । ସତ୍ୟ ଓ ନ୍ୟାୟ ପ୍ରତି କାହାର ଆଦର ନାହିଁ । ସମସ୍ତେ ଦୁର୍ଯ୍ୟୋଧନର ପୋଷା ଚାକରଠାରୁ ହୀନ । ଏଠାରେ ଯାହା ସବୁ ଅଘଟଣ ଘଟିଗଲା, ତାହା ସମସ୍ତେ ବୋକାଙ୍କ ପରି ଦେଖିଛନ୍ତି । ମାତ୍ର କାହା ପାଟିରୁ ପଦେ ହେଲେ କଥା ବାହାରିଲା ନାହିଁ । ଏବେ ମୋର ପ୍ରତିଜ୍ଞାକୁ ମନ ଦେଇ ଶୁଣନ୍ତୁ ।"

"ଯେତେଦିନ ଯାଏ ମୁଁ ଏ କୁଳକଳଙ୍କ ପାପୀ ଦୁଃଶାସନ ଛାତିର ରକ୍ତ ନ ପିଇଛି, ସେତେଦିନ ଯାଏ ସଂସାର ଛାଡ଼ି ପିତୃ ଲୋକକୁ ମଧ୍ୟ ଯିବି ନାହିଁ । ସେ ପାପିଷ୍ଠ ଯେଉଁ ହାତରେ ଦ୍ରୌପଦୀଙ୍କ ମୁକୁଳା କେଶକୁ ଧରି ଭିଡ଼ି ଆଣିଥିଲା । ମୁଁ ତା'ର ସେଇ ହାତକୁ ଉପାଡ଼ି ଫିଙ୍ଗିଦେବି । ଦ୍ରୌପଦୀଙ୍କ କେଶ ଆଜିଠାରୁ ମୁକୁଳା ରହିଲା । ଦୁଃଶାସନ ଛାତିର ତାଜା ରକ୍ତ ବୋଳି ମୁଁ ସତୀ ଦ୍ରୌପଦୀଙ୍କ ବେଣୀ ନିଜ ହାତରେ ବନ୍ଧନ କରିବି । ଏହା ମୋର ତ୍ରିବାର ସତ୍ୟ ।"

ଭୀମର ଏ ଭୀଷଣ ପ୍ରତିଜ୍ଞା ଶୁଣି ସଭାରେ ଥିବା ଲୋକମାନେ ଭୟରେ କମ୍ପି ଉଠିଲେ ।

## ଧୃତରାଷ୍ଟ୍ର ଦୋଷ ମାନିଲେ

ଧୃତରାଷ୍ଟ୍ର ଅତି ଦୁର୍ବଳ ପ୍ରକୃତିର ରାଜା ଥିଲେ । ସେ ନାମକୁ ମାତ୍ର ସିଂହାସନରେ ବସିଥିଲେ ସିନା ଦୁର୍ଯ୍ୟୋଧନ ହିଁ ପ୍ରକୃତରେ ରାଜତ୍ୱ କରୁଥିଲେ । ଦୁର୍ଯ୍ୟୋଧନର ଅନ୍ୟାୟ କାର୍ଯ୍ୟକୁ ସେ ଭୟରେ ବାଧା ଦେବାକୁ ସାହସ କରିପାରୁନଥିଲେ ।

କୁରୁସଭାରେ ଭୀମର ପ୍ରତିଜ୍ଞା ଶୁଣିବା ପରେ ସେ ସ୍ଥିର କରିନେଲେ ଯେ ତାଙ୍କ ବଂଶର ଧ୍ୱଂସ ସମୟ ଆରମ୍ଭ ହୋଇଗଲା । ଅବସ୍ଥାକୁ ଶୀଘ୍ର ସମ୍ଭାଳି ନ ପାରିଲେ ନାନା ଅଘଟଣ ଘଟିବ ଓ କୁଳନାଶ ହେବ । ତେଣୁ ସେ ଦ୍ରୌପଦୀଙ୍କୁ ପାଖକୁ ଡାକି କହିଲେ, "ତୁ ମୋ ବୋହୂମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଦୁର୍ଯ୍ୟୋଧନ ମହାପାପୀ । ଜୀବନରେ କୌଣସି ଭଲ କାମ ସେ କରିନାହିଁ କି ଭବିଷ୍ୟତରେ ମଧ୍ୟ କରିପାରିବ ନାହିଁ । ସବୁବେଳେ ପାଣ୍ଡବମାନଙ୍କୁ ହିଂସା କରି ମୋ ବଂଶ ବୁଡ଼ାଇ ମାରିବ । ସଭାରେ ଯାହା ସବୁ ଘଟିଗଲା, ଦେଖି ନ ପାରିଲେ ମଧ୍ୟ ଶୁଣି ତ ପାରିଲି । ଅଧିକ କଅଣ କହିବି ? ସବୁ ଦୋଷ ମୋର । ସେଥିପାଇଁ ଦୁଃଖ ନ କରି

ମୋତେ କ୍ଷମା କରିଦେ ମା' । ଭଗବାନ ତୋ'ର ମଙ୍ଗଳ କରିବେ । ଏହା ହିଁ ମୋର ଅନୁରୋଧ ।" ଦ୍ରୌପଦୀଙ୍କ ପାଟିରୁ କଥା ବାହାରୁ ନ ଥାଏ । ରାଗ, ଦୁଃଖ ଆଉ ଅପମାନରେ ତାଙ୍କ ଦେହ ଥରୁଥାଏ । ସେ କେବଳ କଇଁ କଇଁ ହୋଇ କାନ୍ଦିବାରେ ଲାଗିଥାନ୍ତି ।

ଏହାପରେ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ପାଖକୁ ଡାକି କହିଲେ, "ବାବୁ । ତୋ ହୃଦୟ ଅତ୍ୟନ୍ତ ଉଦାର । ତୁ କ୍ରୋଧକୁ ଜୟ କରିଛୁ । କପଟୀ ଶକୁନି ଓ ପାପୀ ଦୁର୍ଯ୍ୟୋଧନ ଯୋଗୁ ଆଜି ମୋ ବଂଶର ମାନ ମହତ, ବଡ଼ପଣିଆ ସବୁ ମାଟିରେ ମିଶିଗଲା । ଏ ସବୁ ଶୁଣିବା ଆଗରୁ ମୋର ମୃତ୍ୟୁ ହୋଇଯିବା ଉଚିତ ଥିଲା । ଦୁର୍ଯ୍ୟୋଧନର ନିଷ୍ଠୁର ଓ ନିର୍ଲଜ୍ଜ ବ୍ୟବହାର ମନରୁ ପୋଛିଦିଅ । ମୁଁ ତୁମର ରାଜ୍ୟ ସହିତ ସମସ୍ତ ଧନ ସମ୍ପତ୍ତି ଫେରାଇ ଦେଉଛି । ତୁମ୍ଭେମାନେ ଇନ୍ଦ୍ରପ୍ରସ୍ଥ ଫେରିଯାଇ ପୂର୍ବ ପରି ଆନନ୍ଦରେ ରାଜତ୍ୱ କର ।"

ଧୃତରାଷ୍ଟ୍ରଙ୍କ କୋମଳ କଥା ଓ ମଧୁର ବ୍ୟବହାରରେ ପାଣ୍ଡବମାନେ ସନ୍ତୁଷ୍ଟ ହେଲେ । ସେମାନେ ଭୀଷ୍ମ, ଦ୍ରୋଣ ଓ କୃପାଚାର୍ଯ୍ୟ ଆଦି ଗୁରୁଜନମାନଙ୍କଠାରୁ ବିଦାୟ ନେଇ ଦ୍ରୌପଦୀଙ୍କ ସହ ଇନ୍ଦ୍ରପ୍ରସ୍ଥ ଆଡ଼କୁ ଆସିଲେ ।

## ଦ୍ୱିତୀୟ ଥର ପାଇଁ ପଶାଖେଳ

ଧୃତରାଷ୍ଟ୍ର ଯାହା ସବୁ କରିଦେଲେ, ସେଥିରେ ଦୁର୍ଯ୍ୟୋଧନ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇପଡ଼ିଲେ । ତାଙ୍କର ସମସ୍ତ ଯୋଜନା ଦଣ୍ଡକେ ପଣ୍ଡ ହୋଇଗଲା । ସେ ମାମୁଁ ଶକୁନି, ସଖା କର୍ଣ୍ଣ ଓ ଭାଇ ଦୁଃଶାସନ ସହିତ ପରାମର୍ଶ କରିବାରେ ଲାଗିଲେ । କଳେ, ବଳେ, କୌଶଳେ ଯେପରି ହେଉ ପାଣ୍ଡବମାନଙ୍କର ଅନିଷ୍ଟ କରିବା ଏହି ମନ୍ତ୍ରଣାର ଏକମାତ୍ର ଉଦ୍ଦେଶ୍ୟ ଥିଲା । ନୂତନ ଯୋଜନାଟି ସ୍ଥିର କରି ଦୁର୍ଯ୍ୟୋଧନ ପିତା ଧୃତରାଷ୍ଟ୍ରଙ୍କୁ କହିଲେ, "ଆପଣ ଆଜି ଏକ ମସ୍ତବଡ଼ ଭୁଲ କରିବସିଛନ୍ତି । ଆମେ ସଭାରେ ପାଣ୍ଡବମାନଙ୍କ ପ୍ରତି ଯେପରି ବ୍ୟବହାର ଦେଖାଇଛୁ, ବିଶେଷ କରି ଦ୍ରୌପଦୀଙ୍କୁ ଯେଉଁ ଅପମାନ ଦେଇଛୁ, ସେ କଥା ପାଣ୍ଡବମାନେ ଆଦୌ ଭୁଲିପାରିବେ ନାହିଁ । ଆପଣ ତାଙ୍କୁ ରାଜ୍ୟ, ଧନ ସହିତ ସମସ୍ତ ସୁଖସୁବିଧା ଦେଲେ ମଧ୍ୟ ସେ କଦାପି ଆମକୁ କ୍ଷମା କରିବେ ନାହିଁ । ଇନ୍ଦ୍ରପ୍ରସ୍ଥରେ ପହଞ୍ଚିବା ମାତ୍ରେ ଆମକୁ ଶେଷ କରିଦେବା ପାଇଁ ନାନା ଉପାୟ କରିବେ । ଆପଣଙ୍କର ପାଣ୍ଡବମାନଙ୍କ ପ୍ରତି ଦୟା ଆମ ବଂଶ ନାଶର କାରଣ ହେବ । ଏବେ ମଧ୍ୟ ସମୟ ଅଛି, ଆପଣ ରାଜି ହେଲେ, ମୁଁ ଆମର ପ୍ରଧାନ ଶତ୍ରୁ ପାଣ୍ଡବମାନଙ୍କୁ ବିନାଶ କରିବାର ଉପାୟ କରିଦେବି । କଥା କ'ଣ କି ଆପଣ ଆଉ ଥରେ ପଶା ଖେଳିବା ପାଇଁ ଅନୁମତି ଦିଅନ୍ତୁ । ଏଥର ଧନ, ସମ୍ପତ୍ତି ଆଦି କିଛି ପଣ ରଖାଯିବ ନାହିଁ । କେବଳ ପଣ ରହିବ-ଯେ ହାରିବ, ସେ ରାଜ୍ୟତ୍ୟାଗ କରି ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବ । ମାମୁଁଙ୍କ ସହିତ ପଶା ଖେଳି ଇନ୍ଦ୍ର ମଧ୍ୟ ହାରିବେ । ଏଥର ପଶାରେ ହାରି ପାଣ୍ଡବମାନେ ବଣକୁ ଗଲେ ତାଙ୍କର ସମସ୍ତ ଧନ, ସମ୍ପତ୍ତି ଓ ରାଜ୍ୟ ଆପେ ଆପେ ଆମ ହାତକୁ ଆସିଯିବ । ତେରବର୍ଷ ବଣରେ ବୁଲିବା ପରେ ପାଣ୍ଡବମାନଙ୍କ ଦେହର ଶକ୍ତି ଓ ମନର ବଳ ଆଉ ନଥିବ । ସେମାନେ ଆମର ଅନିଷ୍ଟ କରିବା ତ ଦୂରର କଥା, ଯଦି ଜୀବନରେ ବଞ୍ଚି ରହିଥିବେ, ତେବେ ଆମରି ପାଖରେ ଆସି ଭିକ୍ଷା ମାଗିବେ । ଏହାହିଁ ଶତ୍ରୁନାଶ କରିବାର ସବୁଠାରୁ ଭଲ ଉପାୟ । ଏ ସୁଯୋଗ ଛାଡ଼ନ୍ତୁ ନାହିଁ । ଶୀଘ୍ର ଯୁଧିଷ୍ଠିରଙ୍କୁ ପଶା ଖେଳ ପାଇଁ ଡକାଇ ଆଣନ୍ତୁ । କୌଣସି କ୍ଷତ୍ରିୟ ପଶାଖେଳକୁ ନାହିଁ କରନ୍ତି ନାହିଁ । ତେଣୁ ସେ ନିଶ୍ଚୟ ଆସିବେ ।"

ଦୁର୍ଯ୍ୟୋଧନର କଥା ଶୁଣି ଧୃତରାଷ୍ଟ୍ର ମନେ ମନେ ଖୁବ୍ ଦୁଃଖିତ ହେଲେ ସିନା, ମୁହଁ ଖୋଲି ପ୍ରତିବାଦ କରିବାକୁ ସାହସ କରିପାରିଲେ ନାହିଁ । ଭୀଷ୍ମ, ଦ୍ରୋଣ ଆଦି ଦ୍ୱିତୀୟଥର ପଶା ଖେଳ ନହେବା ପାଇଁ ବାରଣ କଲେ । ଏକଥା ଶୁଣି ଗାନ୍ଧାରି କାନ୍ଦି କାନ୍ଦି କହିଲେ "ମହାରାଜ, ଆପଣ ନିଜର ବିବେକ ହରାଇ ବସିଲେଣି । ଦୁର୍ଯ୍ୟୋଧନ କଥାରେ ଚାଳିତ ହୋଇ ଆପଣ ଯାହା କରିବାକୁ ଯାଉଛନ୍ତି, ତା'ର ଫଳ ହେବ କୁରୁବଂଶର ଧ୍ୱଂସ । ଆଉ ସେ ଧ୍ୱଂସ ପାଇଁ ସମସ୍ତେ ଆପଣଙ୍କୁ ହିଁ ଦାୟୀ କରିବେ ।"

ସମସ୍ତଙ୍କ କଥା ଶୁଣି ମଧ୍ୟ ଦୁର୍ବଳ ଧୃତରାଷ୍ଟ୍ର ଦ୍ୱିତୀୟଥର ପଶା ଖେଳିବାକୁ ଅନୁମତି ଦେଲେ ।

ପୁଣି ପଶା ଖେଳର ନିମନ୍ତ୍ରଣ ପାଇ ଯୁଧିଷ୍ଠିର ହସ୍ତିନା ଆସିଲେ । ଆଉଥରେ ପଶା ନ ଖେଳିବା ପାଇଁ ସମସ୍ତେ ଯୁଧିଷ୍ଠିରଙ୍କୁ ବାରଣ କଲେ । ମାତ୍ର ଭାଗ୍ୟ ଲେଖାକୁ ବଦଳାଇବାର ଶକ୍ତି କାହାର ? ଯୁଧିଷ୍ଠିର ସବୁ ବୁଝିଥିଲେ ମଧ୍ୟ କହିଲେ, "ପଶାଖେଳ ଅନ୍ୟାୟ, ଏକଥା ମୁଁ ଜାଣେ । ତଥାପି ମୁଁ ଖେଳିବାକୁ ନାହିଁ କରିପାରିବି ନାହିଁ । ଯାହା ଯୋଗଥିବ ତାହା ହିଁ ଘଟିବ ।"

ଭାଗ୍ୟ ମନ୍ଦ ଥିଲେ ପଣ୍ଡିତ ବ୍ୟକ୍ତିଙ୍କର ମଧ୍ୟ ବୁଦ୍ଧି, ବିବେକ ନଷ୍ଟ ହୋଇଯାଏ । ରାମଚନ୍ଦ୍ରଙ୍କ ପରି ଅବତାର ପୁରୁଷ ସୁନାମୃଗ ପଛରେ ଗୋଡ଼ାଇବା ଏହାର ପ୍ରମାଣ । ଯୁଧିଷ୍ଠିର ନିଜର ବିବେକ ହରାଇ ଦ୍ୱିତୀୟ ଥର ପଶା ଖେଳରେ ବସିଲେ । ଏଥର ମଧ୍ୟ ଦୁର୍ଯ୍ୟୋଧନଙ୍କ ପାଇଁ ମାମୁଁ ଶକୁନି ପଶା ଗଡ଼ାଇବାର ସ୍ଥିର ହେଲା । ଖେଳ ଆରମ୍ଭ ହେବା ପୂର୍ବରୁ ଶକୁନି କହିଲେ, "ଧନ, ସମ୍ପତ୍ତି ବା ରାଜ୍ୟ ଏଥର ପଣ ରୂପେ ରଖାଯିବ ନାହିଁ । କେବଳ ଯେଉଁ ପକ୍ଷ ହାରିବ, ସେ ବାରବର୍ଷ ବନବାସ ଓ ବର୍ଷଟିଏ ଅଜ୍ଞାତବାସ କରିବ । ଅଜ୍ଞାତବାସ ସମୟରେ ଧରାପଡ଼ିଲେ ପୁଣି ବାରବର୍ଷ ବନବାସ କରିବାକୁ ହେବ ।"

ଯୁଧିଷ୍ଠିର କିଛି ନ ଭାବି ସମସ୍ତ ସର୍ତ୍ତରେ ରାଜି ହୋଇ ଖେଳ ଆରମ୍ଭ କରିଦେଲେ । ପଶାରେ ବା ଶକୁନିଙ୍କୁ ହରାଇବ କିଏ ? ଅଳ୍ପ ସମୟ ଖେଳ ପରେ ଯୁଧିଷ୍ଠିର ହାରିଗଲେ ।

କୌରବମାନଙ୍କ ଚକ୍ରାନ୍ତ ସଫଳ ହେଲା । ଯୁଧିଷ୍ଠିର ହାରିଯିବା ଦେଖି ଦୁଃଶାସନ ଥଟ୍ଟାକରି କହିଲେ, "ହାୟ, ହାୟ ସମସ୍ତ ଧନ, ସମ୍ପତ୍ତି ଓ ରାଜ୍ୟ ଫେରି ପାଇ ମଧ୍ୟ ଅଯୋଗ୍ୟ ପାଣ୍ଡବମାନେ ସେ ସବୁକୁ ପୁଣି ହରାଇ ବସିଲେ । ରାଜ ଭୋଗ ଛାଡ଼ି ତେରବର୍ଷ ବଣରେ କଟାଇବା ଯାଏ ଏମାନେ କ'ଣ ସତରେ ବଞ୍ଚିଥିବେ ? ଦ୍ରୌପଦୀଙ୍କ ପରି ରାଜରାଣୀ ପାଣ୍ଡବଙ୍କ ସହିତ ଆଦୌ ବଣରେ ବୁଲିପାରିବେ ନାହିଁ । ତାଙ୍କ କୋମଳ ଅଙ୍ଗକୁ ଭାରି ବାଧିବ । ବରଂ ସେ ସଭାରେ ଉପସ୍ଥିତ ଥିବା ଯେ କୌଣସି ଯୋଗ୍ୟ ବ୍ୟକ୍ତିକୁ ଆଦରି ନେଇଯାଆନ୍ତୁ । ପାଞ୍ଚଜଣ ସ୍ୱାମୀଙ୍କ ପରେ ଆଉ ଜଣକୁ ଷଷ୍ଠ ସ୍ୱାମୀ ରୂପେ ଗ୍ରହଣ କରିବାରେ ତାଂକର ଆପତ୍ତି କରିବାର କିଛି ନାହିଁ ।"

ଦୁଃଶାସନର କଟୁକଥା ପାଣ୍ଡବମାନଙ୍କ ଦେହରେ ଛୁରୀ ଚଳାଇ ଦେଲାପରି ଲଗିଲା । ଭୀମ ଗର୍ଜନ କରି କହିଲେ, "ହେ କୁରୁକୁଳ କଳଙ୍କ ଦୁଃଶାସନ, ତୋ ଗର୍ବ ବେଶୀଦିନ ରହିବ ନାହିଁ । ସଭାରେ ଉପସ୍ଥିତ ଥିବା ସମସ୍ତ ଗୁରୁଜନ ଓ ରାଜ୍ୟବାସୀଙ୍କୁ ମୁଁ ପୁଣିଥରେ ମୋ ପ୍ରତିଜ୍ଞା ସ୍ମରଣ କରାଇ ଦେଉଛି । କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ନିଶ୍ଚୟ ଯୁଦ୍ଧ ହେବ । ବିନା ଯୁଦ୍ଧରେ ମୋ ହୃଦୟ ଶାନ୍ତି ପାଇବ ନାହିଁ । ଯୁଦ୍ଧ ସମୟରେ ମୁଁ ଆଗରୁ କରିଥିବା ପ୍ରତିଜ୍ଞାମାନ ପାଳନ କରିବି । ଏ ନିର୍ଲଜ ଦୁଃଶାସନର ଛାତିକୁ ଚିରି ଝରିଆସୁଥିବା ଉଷ୍ଣରକ୍ତ ପାନ କରି ମୋର ତୃଷ୍ଣା ମେଣ୍ଟାଇବି । ଏହା ମୋର ତ୍ରିବାର ସତ୍ୟ ।"

ପାଣ୍ଡବମାନେ ସବୁ ଛାଡ଼ି ବନବାସ କରିବାର କଥା ହେଲା । ଯୁଧିଷ୍ଠିର ସଭାରେ ଉପସ୍ଥିତ ଥିବା ଗୁରୁଜନ ଏପରିକି ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କଠାରୁ ବିଦାୟ ନେଲେ । ଲଜ୍ଜା ଘୃଣାରେ ଗୁରୁଜନମାନେ ମୁହଁ ତଳକୁ କରି ବସିରହିଲେ ।

# ବନପର୍ବ

## ପାଣ୍ଡବମାନଙ୍କର ବନ-ଗମନ

ପଶା ଖେଳରେ ସର୍ତ୍ତ ଅନୁସାରେ ପାଣ୍ଡବମାନେ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବା କଥା । ମାତା କୁନ୍ତୀ ଦେବୀ ଅତ୍ୟନ୍ତ ବୃଦ୍ଧା ହୋଇ ଯାଇଥିଲେ । ବନବାସର ଦାରୁଣ କଷ୍ଟ ସେ ସହ୍ୟ କରିପାରିବେ ନାହିଁ । ଏଣୁ ଯୁଧିଷ୍ଠିର ତାଙ୍କୁ ବହୁତ ବୁଝାଇ ଶୁଝାଇ ବିଦୁରଙ୍କ ଘରେ ରଖାଇବାର ବନ୍ଦୋବସ୍ତ କଲେ । ଅଭିମନ୍ୟୁ ସହିତ ଦେବୀ ସୁଭଦ୍ରା ଦ୍ୱାରିକା ଗଲେ । ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କୁ ନେଇ ଧୃଷ୍ଟଦ୍ୟୁମ୍ନ ପାଞ୍ଚାଳ ଚାଲିଗଲେ । ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ପାଣ୍ଡବମାନେ ପୁରୋହିତ ଧୌମ୍ୟଙ୍କ ସହିତ ବଣକୁ ବାହାରିଲେ ।



ପାଣ୍ଡବଙ୍କର ବନଗମନ

ପାଣ୍ଡବମାନଙ୍କର ବନଗମନ ସଂବାଦ ଶୁଣି ହସ୍ତିନାବାସୀ ଦୁର୍ଯ୍ୟୋଧନ ଓ ରାଜା ଧୃତରାଷ୍ଟ୍ରଙ୍କୁ ବହୁ ନିନ୍ଦା କରିବାରେ ଲାଗିଲେ । ଅନେକ ନଗରବାସୀଙ୍କ ସହିତ ବହୁ ବ୍ରାହ୍ମଣ ଯୁଧିଷ୍ଠିରଙ୍କ ସହିତ ବଣକୁ ଯିବା ପାଇଁ ଅନୁରୋଧ କଲେ । ଯୁଧିଷ୍ଠିର ସେମାନଙ୍କୁ ବନବାସରେ ଅସହ୍ୟ ଯନ୍ତ୍ରଣା କଥା ଜଣାଇ ବନକୁ ନଯିବା ପାଇଁ ବାରମ୍ବାର ବାରଣ କଲେ । ନଗରବାସୀମାନେ ଅତ୍ୟନ୍ତ ଦୁଃଖିତ ହୋଇ ଫେରି ଆସିଲେ । ମାତ୍ର ବ୍ରାହ୍ମଣମାନେ କୌଣସି କଥା ଶୁଣିଲେ ନାହିଁ । ସେମାନେ ପାଣ୍ଡବମାନଙ୍କ ସହ ବଣକୁ ଗଲେ ।

ସାଥୀରେ ଅନେକ ଗୁଡ଼ିଏ ବ୍ରାହ୍ମଣଙ୍କୁ ଦେଖି ଧୌମ୍ୟ କହିଲେ, "ବଣରେ ଏତେ ସଂଖ୍ୟକ ଲୋକଙ୍କୁ ଖାଦ୍ୟ ଯୋଗାଇବା ଏକ ଦୂରୁହ ବ୍ୟାପାର ହୋଇପଡ଼ିବ । ଏଣୁ ଆପଣ ସୂର୍ଯ୍ୟଦେବତାଙ୍କୁ ପୂଜାରେ ସନ୍ତୁଷ୍ଟ କରନ୍ତୁ । ସେ ସନ୍ତୁଷ୍ଟ ହେଲେ ହଜାର ହଜାର ଲୋକଙ୍କୁ ଖାଦ୍ୟ ଯୋଗାଇବାରେ କୌଣସି ଅସୁବିଧା ହେବ ନାହିଁ ।"

ପୁରୋହିତ ଧୌମ୍ୟଙ୍କ ପରାମର୍ଶ ଅନୁସାରେ ଯୁଧିଷ୍ଠିର ସୂର୍ଯ୍ୟଙ୍କୁ ପୂଜା କରିବାରେ ଲାଗିଲେ । କଠୋର ତପସ୍ୟା ଓ ନିଷ୍ଠା ବଳରେ ଅସାଧ୍ୟ କାର୍ଯ୍ୟ ମଧ୍ୟ ସାଧିତ ହୋଇଥାଏ । ଦିନେ ସୂର୍ଯ୍ୟଦେବତା ଯୁଧିଷ୍ଠିରଙ୍କୁ ଦେଖାଦେଇ କହିଲେ, "ବତ୍ସ, ଉଠ, ମୁଁ ତୁମ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଏ ଅକ୍ଷୟ ପାତ୍ର ପ୍ରଦାନ କରୁଛି, ଗ୍ରହଣ କର । ଏ ପାତ୍ରରୁ ଯେତେ ଖାଦ୍ୟ ଖର୍ଚ୍ଚ ହେଲେ ମଧ୍ୟ ଏହା ସର୍ବଦା ପୂର୍ଣ୍ଣ ହୋଇ

ରହିଥିବ । ଏହି ପାତ୍ରଟି ଯୋଗୁଁ ବ୍ରାହ୍ମଣମାନଙ୍କୁ ଖାଦ୍ୟ ଯୋଗାଇବାରେ ତୁମର କୌଣସି ଅସୁବିଧା ହେବନାହିଁ । କିନ୍ତୁ ମନେରଖ, ଖାଦ୍ୟ ରାନ୍ଧି ସାରି ଦ୍ରୌପଦୀ ପ୍ରଥମେ ବ୍ରାହ୍ମଣମାନଙ୍କୁ ଖୁଆଇବେ । ତା ପରେ ତୁମେ ଭାଇମାନେ ଭୋଜନ କରିବ । ସବା ଶେଷରେ ଦ୍ରୌପଦୀ ନିଜେ ଭୋଜନ କରିବେ । ଦ୍ରୌପଦୀ ଖାଇସାରିବା ପରେ ସେଦିନ ପାଇଁ ପାତ୍ରଟିରୁ ଆଉ ଖାଦ୍ୟ ବାହାରିବ ନାହିଁ ।" ସୂର୍ଯ୍ୟଦେବତା ଅଦୃଶ୍ୟ ହୋଇଗଲେ । ଏପରି ଏକ ଖାଦ୍ୟ ପାତ୍ର ପାଇ ଯୁଧିଷ୍ଠିରଙ୍କ ମନ ଆନନ୍ଦରେ ପୂରି ଉଠିଲା ।

ଖାଦ୍ୟ ସମସ୍ୟା ହିଁ ବଣରେ ପ୍ରଧାନ ସମସ୍ୟା । ସେ ଅସୁବିଧା ଦୂର ହୋଇ ଯିବାରୁ ପାଣ୍ଡବମାନେ ନିଶ୍ଚିନ୍ତ ମନରେ ଗୋଟିଏ ବଣରୁ ଅନ୍ୟ ବଣକୁ ଯିବାରେ ଲାଗିଲେ । ଦିନେ ସେମାନେ ସରସ୍ୱତୀ ନଦୀ କୂଳରେ ଥିବା କାମ୍ୟକ ବନରେ ପହଞ୍ଚିଲେ । ସେ ବନର ଶୋଭା ଅତ୍ୟନ୍ତ ଆକର୍ଷଣୀୟ ଥିଲା । ପାଣ୍ଡବମାନେ ସେଠାରେ କିଛିଦିନ ରହିବା ପାଇଁ ମନସ୍ଥ କଲେ । ସାଥୀରେ ଆସିଥିବା ବ୍ରାହ୍ମଣମାନେ ମଧ୍ୟ ପାଣ୍ଡବମାନଙ୍କ ସହିତ ସେଠାରେ ରହିଲେ ।

## କାମ୍ୟକ ବନ୍‌ରେ ସାକ୍ଷାତ

ପାଣ୍ଡବମାନଙ୍କ ବନବାସ କଥା ଚାରିଆଡ଼େ ପ୍ରଚାର ହୋଇଗଲା । ମହାରାଜା ଦ୍ରୁପଦ, ଅନ୍ୟ କେତେକ ରାଜା ଓ ନିଜେ ଶ୍ରୀକୃଷ୍ଣ ଆସି କାମ୍ୟକ ବନରେ ପାଣ୍ଡବମାନଙ୍କୁ ଦେଖାକଲେ । ଶ୍ରୀକୃଷ୍ଣ ଦୁଃଖିତ ହୋଇ ଯୁଧିଷ୍ଠିରଙ୍କୁ କହିଲେ, "ହସ୍ତିନାରେ ପଶାଖେଳ ହେଉଥିବା ସମୟରେ ମୁଁ ଶୌଭ ନଗରର ରାଜା ଶାଲ୍ୱଙ୍କ ସହିତ ଯୁଦ୍ଧ କରିବାକୁ ଯାଇଥିଲି । ପଶାଖେଳ ବିଷୟରେ ସୂଚନା ମାତ୍ର ପାଇଥିଲେ, ମୁଁ ତାହା ଆଦୌ କରାଇ ଦେଇନଥାନ୍ତି । ପଶା, ମୃଗୟା ଆଉ ମଦ୍ୟପାନ ଦ୍ୱାରା ମଣିଷ ନିଜର ବୁଦ୍ଧି, ବିବେକ ହରାଇ ନାନା ବିପଦକୁ ଡାକି ଆଣିଥାଏ । ଆପଣଙ୍କ ପରି ବିଚାରବନ୍ତ ଲୋକ ଥରେ ପଶାରେ ହାରି ପୁଣି ଦ୍ୱିତୀୟ ଥର ପାଇଁ ଖେଳିବାକୁ ଯିବା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏକଥା ସତ ଯେ, କେହି ନିଜର ଭାଗ୍ୟ ବଦଳାଇ ପାରନ୍ତି ନାହିଁ । ଆପଣଙ୍କ କ୍ଷେତ୍ରରେ ସେଇଆ ହିଁ ଘଟିଛି । ମୋର ପ୍ରିୟ ବନ୍ଧୁମାନଙ୍କର ଦାରୁଣ ଅବସ୍ଥା ଦେଖି ମୁଁ ଖୁବ୍ ଦୁଃଖିତ ।

ଶ୍ରୀକୃଷ୍ଣଙ୍କୁ ନିଜ ପାଖରେ ପାଇ ଦ୍ରୌପଦୀଙ୍କ ଦୁଃଖ ବହୁ ଗୁଣ ବଢ଼ିଗଲା । ଗଲାଦିନର କଥାଗୁଡ଼ିକ ମନେପକାଇ ସେ କାନ୍ଦି କାନ୍ଦି କହିଲେ, "ମୁଁ ମହାରାଜ ଦ୍ରୁପଦଙ୍କ ଝିଅ, ମହାବୀର ଧୃଷ୍ଟଦ୍ୟୁମ୍ନଙ୍କ ଭଉଣୀ, ମୁଁ ଯେଉଁପରି ବୀରମାନଙ୍କୁ ବିବାହ କରିଛି ସେମାନେ ଏକା ଏକା ପୃଥିବୀ ଜୟ କରିପାରନ୍ତି । ଏପରି ଗୌରବର ଅଧିକାରିଣୀ ହୋଇ ମୁଁ କୁରୁସଭାରେ ଯେପରି ଅପମାନ ପାଇଲି, ସେକଥା ମନେପଡ଼ିଗଲେ ମୋ ଛାତି ଫାଟିଯାଉଛି । ପାପୀ ଦୁଃଶାସନ ମୋ ମୁଣ୍ଡବାଳକୁ ଝିଙ୍କି ଆଣି ମୋତେ ସଭାଗୃହରେ ସମସ୍ତଙ୍କ ଆଗରେ କଚାଡ଼ି ଦେଲା । ଖାଲି ସେତିକି ନୁହେଁ ସେ ଅସଭ୍ୟ ମୋତେ ସଭା ମଧ୍ୟରେ ଲଙ୍ଗଳା ମଧ୍ୟ କରିବାରେ ଲାଗିଲା । ଆଶ୍ଚର୍ଯ୍ୟର କଥା, ସମସ୍ତ ଗୁରୁଜନ ଓ ମୋର ପରାକ୍ରମୀ ସ୍ୱାମୀମାନେ ନିର୍ଲଜଙ୍କପରି ଚାହିଁରହିଥାନ୍ତି । କାପୁରୁଷମାନଙ୍କ ପାଟିରୁ ପଦେ କଥା ବି ବାହାରିଲା ନାହିଁ । ଯେଉଁ ଭୀଷ୍ମ ସାମାନ୍ୟ ଦୃଷ୍ଟି ଦେଇଥିଲେ ଏ ଅଘଟଣ ଘଟି ନଥାନ୍ତା, ସେ ମଧ୍ୟ ନୀରବ ହୋଇଗଲେ । ସେ କୁରୁ ପାଣ୍ଡବମାନଙ୍କର ପିତାମହ । ତାଙ୍କ ଆଦେଶକୁ ଅମାନ୍ୟ କରିବାର ଶକ୍ତି କାହାର ଥିଲା ? ମାତ୍ର ମୋ ଭାଗ୍ୟକୁ ଭୀଷ୍ମପରି ମହାପୁରୁଷ ମଧ୍ୟ ମୋର ସେ ଦୁର୍ଦ୍ଦଶା ଦେଖି ପଦେ ହେଲେ କିଛି କହିଲେ ନାହିଁ । ସ୍ତ୍ରୀ ଜାତିର ରକ୍ଷା କରିବା ଦିଗରେ ସମସ୍ତେ ଆଖି ବୁଜି ରହିବା ଦେଖି ମୁଁ ସମସ୍ତଙ୍କ ବୁଦ୍ଧି, ବିବେକ ଓ ବୀରତ୍ୱକୁ ଧିକ୍କାର କରୁଛି ।" ଏହିପରି କହି ରାଗ, ଦୁଃଖ ଓ ଘୃଣାରେ ସେ ଅଧୀର ହୋଇ କାନ୍ଦିବାରେ ଲାଗିଲେ ।

କୃଷ୍ଣ ଦ୍ରୌପଦୀଙ୍କୁ ଶାନ୍ତ କରାଇ କହିଲେ, "ଭାଗ୍ୟର ଲେଖାକୁ ବଦଳାଇବାର ଶକ୍ତି କାହାର ନାହିଁ । ମନୁଷ୍ୟ ନିଜ ଇଚ୍ଛାରେ କିଛି କରିପାରେ ନାହିଁ । ଅଦୃଷ୍ଟ ବା ଭାଗ୍ୟ ହିଁ ସବୁଠାରୁ ବଳବାନ । ତୁମେ ଧୈର୍ଯ୍ୟ ଧରି ଅପେକ୍ଷା କର । ଦେଖିବ ଯେଉଁମାନେ ତୁମ ପ୍ରତି ଏପରି ନିର୍ଲ୍ଲଜ ବ୍ୟବହାର କରିଛନ୍ତି, ସେଇମାନଙ୍କ ସ୍ତ୍ରୀମାନେ ନିଜ ନିଜର ସ୍ୱାମୀଙ୍କ ମୃତ ଦେହକୁ କୋଳରେ ଧରି ତୁମଠାରୁ

ଶହେ ଗୁଣରୁ ଅଧିକ ଶୋକ କରିବେ । ତୁମେ ସବୁ ବିପଦରୁ ରକ୍ଷାପାଇ ରାଜରାଣୀ ହେବ । ଏକଥା କଦାପି ମିଥ୍ୟା ହେବନାହିଁ । ମୁଁ ସର୍ବଦା ପାଣ୍ଡବମାନଙ୍କ ସପକ୍ଷରେ ଅଛି ।"

## ଧୃତରାଷ୍ଟ୍ରଙ୍କ କ୍ରୋଧ

ପାଣ୍ଡବମାନେ ବଣକୁ ଯିବା ପରେ ମଧ ଧୃତରାଷ୍ଟ୍ରଙ୍କ ମନରେ ଶାନ୍ତି ନଥାଏ । ସେମାନେ କେତେବେଳେ କି ଅନିଷ୍ଟ କରିବେ, ଏଇ ଚିନ୍ତାରେ ତାଙ୍କ ଆଖିକୁ ନିଦ ଆସୁ ନ ଥାଏ । ପୁତ୍ର ଦୁର୍ଯ୍ୟୋଧନ ଯେଉଁ ମନ୍ଦ କାର୍ଯ୍ୟ କରି ବସିଲା, ତା'ର ଶେଷ ଫଳ କଅଣ ହେବ, ଏଇ କଥା ଭାବି ସେ ଅସ୍ଥିର ହୋଇ ଉଠୁଥାନ୍ତି । ଧୃତରାଷ୍ଟ୍ରଙ୍କ ମନକଥା ଜାଣିପାରି ବିଦୂର କହିଲେ, "ମହାରାଜ, ଆପଣଙ୍କ ମନକଥା ମୁଁ ବେଶ୍ ବୁଝିପାରିଛି । ଯୁଧିଷ୍ଠିରଙ୍କ ସରଳତାର ସୁଯୋଗ ନେଇ ତାଙ୍କୁ ଆପଣ ଦାଣ୍ଡର ଭିକାରୀ କରିଦେଲେ । ପୁଅମାନଙ୍କୁ ପାପକାର୍ଯ୍ୟ ନକରିବା ପାଇଁ ଆପଣ ତ ବାଧା ଦେଇ ପାରିଥାନ୍ତେ ! କିନ୍ତୁ କଅଣ କଲେ ? ଦୁର୍ଯ୍ୟୋଧନଙ୍କ ସବୁ ଅନ୍ୟାୟ କାର୍ଯ୍ୟକୁ ଆପଣ ଅନୁମତି ଦେବାରେ ଲାଗିଲେ । ଏବେ ଆଉ ଆଗକୁ କଅଣ ଘଟିବ ବୋଲି ଆଖିକୁ ନିଦ ଆସୁନାହିଁ କାହିଁକି ? ମୁଁ ଜାଣେ, ଏହାର ଫଳ କୁରୁବଂଶର ଧ୍ୱଂସ । ମହାରାଜ, କିଛି ବଳେଇଯାଇନାହିଁ । ଯଦି ଆପଣ ରାଜ୍ୟର ଓ ନିଜ ବଂଶର ମଙ୍ଗଳ ଚାହାଁନ୍ତି, ତେବେ ପାଣ୍ଡବମାନଙ୍କୁ ବଣରୁ ଫେରାଇଆଣନ୍ତୁ । ରାଜ୍ୟ ଫେରାଇ ଦେଇ ସେମାନଙ୍କ ସହିତ ବନ୍ଧୁ ଭାବରେ ରହନ୍ତୁ । ମୁଁ ଜାଣେ, ଆପଣ କହିବେ ଦୁର୍ଯ୍ୟୋଧନ ଏଥିରେ ବାଧାଦେବେ । ମୁଁ ପଚାରୁଛି ଏ ରାଜ୍ୟର ରାଜା କିଏ ? ଆପଣ ନା ଦୁର୍ଯ୍ୟୋଧନ ? ରାଜା ହୋଇ ଆପଣ ଏପରି ଭୟାଳୁ ହେବା ଉଚିତ ନୁହେଁ । ଯଦି ଆପଣଙ୍କ କଥାକୁ ଦୁର୍ଯ୍ୟୋଧନ ଗ୍ରହଣ ନକରନ୍ତି ତେବେ ଆପଣ ତାଙ୍କୁ ଶାସନ କରନ୍ତୁ, ଦଣ୍ଡ ଦିଅନ୍ତୁ । ତାହେଲେ ଆପଣଙ୍କର ଓ ହସ୍ତିନା ସିଂହାସନର ମର୍ଯ୍ୟାଦା ବଢ଼ିବ ।"

ଧୃତରାଷ୍ଟ୍ର ଜାଣନ୍ତି, ବିଦୂର ତାଙ୍କଠାରୁ ଅଧିକ ବୁଦ୍ଧିମାନ ଓ ଧାର୍ମିକ । ସେ ସବୁବେଳେ ଉଚିତ ପରାମର୍ଶ ଦେଇଥାନ୍ତି । କିନ୍ତୁ ବାରମ୍ବାର ନିଜ ପୁଅମାନଙ୍କ ନିନ୍ଦା ଓ ନିଜର ଦୁର୍ବଳତା କଥା ଶୁଣି ଶୁଣି ସେ ବିରକ୍ତ ହୋଇ କହିଲେ, "ବିଦୂର, ତୁମେ ସର୍ବଦା ପାଣ୍ଡବମାନଙ୍କ ସପକ୍ଷରେ କହିଆସିଛ । କୌରବ ପରିବାରକୁ ତୁମେ ଭଲପାଅ ନାହିଁ । ମନେରଖ, ଦୁର୍ଯ୍ୟୋଧନ ମୋର ବଡ଼ପୁଅ । ହସ୍ତିନାର ଯୁବରାଜ । ମୁଁ ତାକୁ କି ଦଣ୍ଡ ଦେବି ? ସବୁବେଳେ ଗୁଡ଼ାଏ ଏଣୁ ତେଣୁ କହି ତୁମେ ମୋତେ ବିବ୍ରତ କରିବାରେ ଲାଗିଛ । ମୋର ତୁମ ଉପରେ ଆଉ ବିଶ୍ୱାସ ନାହିଁ । ଆଜିଠାରୁ ତୁମେ ମୋ ପାଖରୁ ଚାଲିଯାଅ । ଇଚ୍ଛା କଲେ ତୁମେ ତୁମର ପ୍ରିୟ ପାଣ୍ଡବମାନଙ୍କ ନିକଟକୁ ଯାଇପାର ।" ଏତିକି କହି ଧୃତରାଷ୍ଟ୍ର, ଭିତରକୁ ଚାଲିଗଲେ ।

ବିଦୂରଙ୍କୁ ମହାରାଜଙ୍କ କଥା ବଡ଼ ବାଧିଲା । ସେ ଆଉ ବିଳମ୍ବ ନକରି କାମ୍ୟକ ବନକୁ ଚାଲିଗଲେ । ପାଣ୍ଡବମାନେ ଅତ୍ୟନ୍ତ ଆଦରରେ ତାଙ୍କୁ ପାଛୋଟି ନେଲେ । ବିଦୂର ସେଠାରେ ଅତି ଆନନ୍ଦରେ ଦିନ କାଟିବାକୁ ଲାଗିଲେ ।

## ଧୃତରାଷ୍ଟ୍ର ପୁଣି ବିଦୂରଙ୍କୁ ଡକାଇ ପଠାଇଲେ

ବିଦୂର ଚାଲିଯିବା ପରେ ଧୃତରାଷ୍ଟ୍ର ମହାଚିନ୍ତାରେ ପଡ଼ିଲେ । ତାଙ୍କୁ କିଛି ଭଲଲାଗିଲା ନାହିଁ । ସେ ମନେ ମନେ କହିବାରେ ଲାଗିଲେ, "ମୁଁ ଚଣ୍ଡାଳ କଅଣ କଲି ? ବିଦୂରଙ୍କ ପରି ବିଚକ୍ଷଣ ମନ୍ତ୍ରୀଙ୍କୁ ମୋର ଶତ୍ରୁ ପାଣ୍ଡବମାନଙ୍କ ପାଖକୁ ପଠାଇଦେଲି । ଏବେ ପାଣ୍ଡବମାନଙ୍କର ବଳ ବଢ଼ିବ ସିନା, ମୋର କି ଲାଭ ହେବ ? କୌଣସି ପ୍ରକାରେ ବିଦୂରଙ୍କୁ ହସ୍ତିନା ଫେରାଇ ଆଣିବାକୁ ହେବ ।" ଏହିପରି ଭାବି ସେ ସଞ୍ଜୟଙ୍କୁ କହିଲେ, "ବିଦୂର ବର୍ତ୍ତମାନ କାମ୍ୟକ ବନରେ ପାଣ୍ଡବମାନଙ୍କ ପାଖରେ ଅଛନ୍ତି । ତୁମେ ତାଙ୍କ ନିକଟକୁ ଯାଇ କହିବ, ପୁତ୍ର ସ୍ନେହରେ ଅନ୍ଧ ହୋଇ ଧୃତରାଷ୍ଟ୍ର ତୁମ ପ୍ରତି ଦୁର୍ବ୍ୟବହାର କରିଥିବାରୁ ଦୁଃଖିତ । ସମସ୍ତ ପଛ କଥାକୁ ଭୁଲି ତାଙ୍କୁ କ୍ଷମା ଦେବା ପାଇଁ ଅନୁରୋଧ କରିଛନ୍ତି । ଆପଣ ଆଉ ବିଳମ୍ବ ନକରି ମୋ ସହିତ ହସ୍ତିନା ଫେରି ଆସିବାକୁ ସେ ସମ୍ବାଦ ଦେଇଛନ୍ତି ।"

ସଞ୍ଜୟ ହସ୍ତିନାରୁ ଆସି କାମ୍ୟକ ବନରେ ପହଞ୍ଚିଲେ । ସେଠାରେ ପାଣ୍ଡବମାନେ ଅରଣ୍ୟବାସୀ ଋଷିମାନଙ୍କ ସହିତ ରହିଥିବାର ଦେଖିଲେ । ବିଦୂରଙ୍କୁ ପାଣ୍ଡବମାନଙ୍କ ପାଖରେ ଦେଖି ସଞ୍ଜୟ କହିଲେ, "ଆପଣ ଚାଲିଆସିବା ପରେ ମହାରାଜ ପାଗଳଙ୍କ ପରି ପ୍ରଳାପ କରୁଛନ୍ତି । ଆପଣଙ୍କୁ ନପାଇଲେ ସେ ପ୍ରାଣତ୍ୟାଗ କରିଦେବେ । ପଛ କଥାମାନ ଭୁଲି ତାଙ୍କୁ କ୍ଷମା ଦେବାପାଇଁ ସେ ବାରମ୍ବାର ଅନୁରୋଧ କରିଛନ୍ତି ।"

ବିଦୂରଙ୍କ ହୃଦୟ ଅତ୍ୟନ୍ତ କୋମଳ । ଧୃତରାଷ୍ଟ୍ରଙ୍କ ପ୍ରକୃତି ତାଙ୍କୁ ଉତ୍ତମ ରୂପେ ଜଣା ଥିଲା । ସଞ୍ଜୟଙ୍କଠାରୁ ସବୁ ଶୁଣି ସେ କିଛି ସମୟ ଚିନ୍ତା କରିବାରେ ଲାଗିଲେ । ପାଣ୍ଡବମାନେ ବିଦୂରଙ୍କୁ ହସ୍ତିନା ଫେରିଯିବା ପାଇଁ ବହୁ ଅନୁରୋଧ କଲେ । ବିଦୂର ସବୁ ପଛ କଥା ଭୁଲି ସଞ୍ଜୟଙ୍କ ସହିତ ହସ୍ତିନା ଫେରିଆସିଲେ । ବିଦୂର ଫେରି ଆସିବାଥିବାରୁ ଧୃତରାଷ୍ଟ୍ର ଅଧୀର ହୋଇ ତାଙ୍କୁ କୁଣ୍ଢାଇ ପକାଇଲେ । ଦୁହିଁଙ୍କ ମଧ୍ୟରେ ପୂର୍ବର ସ୍ନେହମମତା ପୁଣି ଫେରିଆସିଲା ।

## ମୈତ୍ରେୟ ଓ ଧୃତରାଷ୍ଟ୍ର

ପାଣ୍ଡବମାନେ ବଣକୁ ଚାଲିଗଲେ । ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦରେ ହସ୍ତିନାରେ ନିଜର ପ୍ରଭୁତ୍ୱ ବିସ୍ତାର କରି ଶାସନ କରୁଥାନ୍ତି । ଅନ୍ଧ ଧୃତରାଷ୍ଟ୍ର ନାମକୁ ମାତ୍ର ରାଜା ବୋଲାଇ ସିଂହାସନରେ ବସନ୍ତି ।

ଦିନେ ଋଷି ମୈତ୍ରେୟ ଧୃତରାଷ୍ଟ୍ରଙ୍କ ରାଜସଭାରେ ଉପସ୍ଥିତ ହେଲେ । ରାଜା ତାଙ୍କୁ ଆଦରରେ ଅଭ୍ୟର୍ଥନା ଜଣାଇ ପାଛୋଟି ନେଲେ ।

ଋଷି ଆସନ ଗ୍ରହଣ କରିବା କରେ ଧୃତରାଷ୍ଟ୍ର ଅତି ବିନୀତ ଭାବରେ ପଚାରିଲେ, "ମହାଭାଗ, ମୋର ପ୍ରିୟପୁତ୍ର ପାଣ୍ଡବମାନଙ୍କୁ ଆପଣ ଦେଖିଛନ୍ତି କି ? ସେମାନେ ଆନନ୍ଦରେ ଅଛନ୍ତି ତ ?"

ମୈତ୍ରେୟ କହିଲେ, "ଦୈବାତ କାମ୍ୟକ ବନରେ ମୋର ଯୁଧିଷ୍ଠିରଙ୍କ ସହିତ ସାକ୍ଷାତ ହୋଇଥିଲା । ସେହି ସମୟରେ ଅନ୍ୟ ଋଷିମାନେ ମଧ୍ୟ ତାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । କଥା ପ୍ରସଙ୍ଗରେ ହସ୍ତିନାପୁରରେ ଘଟିଥିବା ପଶାଖେଳ ଓ ପାଣ୍ଡବମାନଙ୍କର ବନବାସ କଥା ସେଠାରୁ ଶୁଣିବାକୁ ପାଇଲି । ମହାରାଜ ଧୃତରାଷ୍ଟ୍ର ଆପଣଙ୍କ ଉପସ୍ଥିତିରେ ଓ କୁଳବୃଦ୍ଧ ଭୀଷ୍ମଙ୍କ ଆଖି ଆଗରେ ଯାହା ସବୁ ଘଟିଗଲା, ସେଥିପାଇଁ ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇଯାଉଛି । ଏହା ଘୋର ଲଜ୍ଜା ଓ ଅପମାନର କଥା ।"

ଦୁର୍ଯ୍ୟୋଧନଙ୍କୁ ସଭାରେ ଉପସ୍ଥିତ ଥିବା ଦେଖି ମୈତ୍ରେୟ ତାଙ୍କୁ ଉପଦେଶ ଦେବା ଛଳରେ କହିଲେ, "ବତ୍ସ, ପାଣ୍ଡବମାନଙ୍କ ସହିତ ଶତ୍ରୁତା ନୁହେଁ, ବନ୍ଧୁତା ସ୍ଥାପନ କରିବାକୁ ଚେଷ୍ଟାକର । ତା' ଦ୍ୱାରା ତୁମର ମଙ୍ଗଳ ହେବ । ମନେରଖ, ସେମାନେ କେବଳ ମହାବୀର ନୁହନ୍ତି, ଶ୍ରୀକୃଷ୍ଣ ଓ ମହାରାଜ ଦ୍ରୁପଦ ମଧ୍ୟ ତାଙ୍କର ବନ୍ଧୁ ।"

ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ଋଷିଙ୍କ ଆଡ଼କୁ ଚାହିଁ କେବଳ ଅଳ୍ପ ହସିଦେଲେ । ଋଷିଙ୍କୁ ପଦେ ହେଲେ ଉତ୍ତର ନଦେଇ ଗର୍ବୀ ଦୁର୍ଯ୍ୟୋଧନ ଅନ୍ୟ ଆଡ଼କୁ ମୁହଁ ବୁଲାଇ ବସିରହିଲେ ।

ଦୁର୍ଯ୍ୟୋଧନଙ୍କ ଏପରି ଉଦ୍ଧତ ବ୍ୟବହାର ଋଷିଙ୍କ କ୍ରୋଧ ବଢ଼ାଇବାରେ ଲାଗିଲା । ସେ ଉଚ୍ଚ ସ୍ୱରରେ କହିଲେ, "ହେ ପାପିଷ୍ଠ ଦୁର୍ଯ୍ୟୋଧନ, ମୁଁ ତୁମକୁ ହିତ ଉପଦେଶ ଦେଉଥିବାବେଳେ ତୁମେ ନିତାନ୍ତ ଅଭଦ୍ର ବ୍ୟବହାର ଦେଖାଇଲ । ଏହାର ପରିଣାମ ଭଲ ହେବନାହିଁ । ତୁମେ ଏ ପ୍ରକାର ବେଖାତିର ଭାବ ଦେଖାଇ ନିଜ ମୃତ୍ୟୁକୁ ଆମନ୍ତ୍ରଣ କରି ଆଣିଛ । ମନେରଖ, ଭୀମସେନ ତାଙ୍କ ବଜ୍ରସମ ଗଦାରେ ତୁମ ଜଙ୍ଘ ହାଡ଼ ଭାଙ୍ଗିଦେବେ ଓ ତୁମେ ଯୁଦ୍ଧ ଭୂମିରେ ମୃତ୍ୟୁବରଣ କରିବ ।"

ଏକଥା ଶୁଣିବା ମାତ୍ରେ ଧୃତରାଷ୍ଟ୍ର ଅଧୀର ହୋଇ ଋଷିଙ୍କ ପାଦତଳେ ପଡ଼ି କ୍ଷମାପ୍ରାର୍ଥନା କରିବାରେ ଲାଗିଲେ ।

ମୈତ୍ରେୟ କହିଲେ, "ଯଦି ତୁମ ପୁତ୍ର ହିଂସା ତ୍ୟାଗ କରି ପାଣ୍ଡବମାନଙ୍କ ସହିତ ମିତ୍ରତା ସ୍ଥାପନ କରିବ, ତେବେ ମୋ ଅଭିଶାପ ଅକାମୀ ହୋଇଯିବ । ନଚେତ୍ ଏହାର ବିଷମୟ ପରିଣାମ ଦୁର୍ଯ୍ୟୋଧନକୁ ନିଶ୍ଚୟ ଭୋଗ କରିବାକୁ ପଡ଼ିବ ।"

ଏତିକି କହି ମୈତ୍ରେୟ ସଭାଗୃହ ତ୍ୟାଗ କରି ଚାଲିଗଲେ ।

## ଅର୍ଜୁନଙ୍କ ତପସ୍ୟା ଓ ଦିବ୍ୟାସ୍ତ୍ର ଲାଭ

ପାଣ୍ଡବମାନେ କାମ୍ୟକ ବନରେ ରହୁଥିବା ସମୟରେ ଅନେକ ବନ୍ଧୁ, ବାନ୍ଧବ, ସଖା, ପ୍ରିୟଜନ ଆସି ଦେଖା କରୁଥାନ୍ତି । ସମସ୍ତେ ପାଣ୍ଡବମାନଙ୍କ ପ୍ରତି ହୋଇଥିବା ଅନ୍ୟାୟରେ ଦୁଃଖ ପ୍ରକାଶ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ସାନ୍ତ୍ୱନା ଦେଇ ଫେରି ଯାଉଥାନ୍ତି ।

ଦିନେ ବ୍ୟାସଦେବ ଆସି ଯୁଧିଷ୍ଠିରଙ୍କୁ କହିଲେ, "ବତ୍ସ, ବନବାସ ସମୟରେ ତୁମକୁ ଅନେକ ଶକ୍ତିଶାଳୀ ଅଦ୍ଭୁତ ଅସ୍ତ୍ର ସଂଗ୍ରହ କରିବାକୁ ପଡ଼ିବ । ଦେବତାମାନଙ୍କଠାରୁ ଏହି ସ୍ୱର୍ଗୀୟ ଅସ୍ତ୍ର ଶସ୍ତ୍ରମାନ ସଂଗ୍ରହ ନକଲେ ଭୀଷ୍ମ ଓ ଦ୍ରୋଣଙ୍କ ପରି ମହାବୀରମାନଙ୍କୁ ପରାସ୍ତ କରିବା ସମ୍ଭବ ହେବନାହିଁ । ଦିବ୍ୟାସ୍ତ୍ର ଲାଭ କରିପାରିଲେ ତୁମ ଆଗରେ କୌଣସି ଶତ୍ରୁ ଅଧିକ ସମୟ ଠିଆ ହୋଇପାରିବ ନାହିଁ । ପ୍ରଥମେ ତୁମେ ଶିବଙ୍କଠାରୁ ଏକ ମହାନ୍ ଅସ୍ତ୍ର ପାଇବା ପାଇଁ ଉଦ୍ୟମ କର ।" ଏହି ଉପଦେଶ ଦେଇ ବ୍ୟାସଦେବ ବିଦାୟ ଗ୍ରହଣ କଲେ ।

ମହର୍ଷିଙ୍କ ପରାମର୍ଶ ଅନୁସାରେ ଯୁଧିଷ୍ଠିର ଅର୍ଜୁନଙ୍କୁ କୈଳାସ ପର୍ବତକୁ ପଠାଇଲେ ଓ ତପସ୍ୟାରେ ମହାଦେବ ଶିବଙ୍କୁ ସନ୍ତୁଷ୍ଟ କରିବା ପାଇଁ ପରାମର୍ଶ ଦେଇ କହିଲେ, "ପ୍ରଥମେ ଶିବଙ୍କ କରୁଣାଲାଭ ପରେ ଇନ୍ଦ୍ର, ବରୁଣ, ଯମ ଓ ଅଗ୍ନି ଆଦି ଦେବତାମାନଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ସେମାନଙ୍କଠାରୁ ବହୁ ଅମୋଘ ଅସ୍ତ୍ର ମଧ୍ୟ ସଂଗ୍ରହ କରିବାକୁ ପଡ଼ିବ ।" ମନେରଖ ଅର୍ଜୁନ, "ଏହା ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଗଭୀର ଭକ୍ତି ଓ ଦୃଢ଼ନିଷ୍ଠା ବଳରେ ତୁମେ ଏ ଅସାଧ୍ୟ କାର୍ଯ୍ୟ କରିପାରିବ, ଏହା ମୋର ଦୃଢ଼ ବିଶ୍ୱାସ ।"

## ତପସ୍ୟା ପାଇଁ ଅର୍ଜୁନ ଗଲେ

ତପସ୍ୟା ବଳରେ ଦିବ୍ୟାସ୍ତ୍ର ଲାଭ କରିବା କଥା ଶୁଣି ଅର୍ଜୁନ ଆନନ୍ଦରେ ଅଧୀର ହୋଇଉଠିଲେ । ତାଙ୍କ ଶିରା, ପ୍ରଶିରାର ରକ୍ତ ଗରମ ହୋଇଆସିଲା । ସେ ଶିବଙ୍କୁ ଆରାଧନା କରିବା ପାଇଁ କୈଳାସ ପର୍ବତ ଆଡ଼କୁ ଅଗ୍ରସର ହେଲେ ।

କିଛିଦିନ ଚାଲିବା ପରେ ଅର୍ଜୁନ ଗନ୍ଧମାର୍ଦନ ପାର ହୋଇ କୈଳାସ ପର୍ବତରେ ପହଞ୍ଚିଲେ । ସେଠାରେ ଜଣେ ସନ୍ୟାସୀ ବସିଥିବାର ଦେଖି ଅର୍ଜୁନ ତାଙ୍କ ନିକଟକୁ ଯାଇ ପ୍ରଣାମ କଲେ । ସାଧୁ ଆଖି ଖୋଲି ଅର୍ଜୁନଙ୍କୁ କହିଲେ, "ଏ ଋଷିମାନଙ୍କ ତପସ୍ୟା ଭୂମି । ଏଠାରେ କୌଣସି ଲୋକ ଅସ୍ତ୍ର ଶସ୍ତ୍ର ଧରିବାକୁ ମନା । ତୁମେ କିଏ କୁହ ?"

ଅର୍ଜୁନ ବିନୟ ଭାବରେ କହିଲେ, "ମହାତ୍ମା, ମୁଁ ଜଣେ କ୍ଷତ୍ରିୟ, ଅସ୍ତ୍ର ଧରିବା କ୍ଷତ୍ରିୟର ଧର୍ମ । ମୁଁ ଅସ୍ତ୍ରତ୍ୟାଗ କରିବି କିପରି ?"

ଅର୍ଜୁନଙ୍କ ଉତ୍ତରରେ ସାଧୁ ସନ୍ତୁଷ୍ଟ ହୋଇ କହିଲେ, "ମୁଁ ଦେବରାଜ ଇନ୍ଦ୍ର । ସାଧୁ ବେଶରେ ତୁମକୁ ପରୀକ୍ଷା କରିବାପାଇଁ ଏଠାକୁ ଆସିଥିଲି । ତୁମ କଥା ଶୁଣି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ମନ ଇଚ୍ଛା ବର ମାଗ ।"

ଅର୍ଜୁନ ହାତଯୋଡ଼ି କହିଲେ, "ପ୍ରଭୁ, ଆପଣ ମୋତେ ଦିବ୍ୟାସ୍ତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକ କିପରି ବ୍ୟବହାର କରିବାକୁ ହେବ, ତାହା ଶିକ୍ଷା ଦିଅନ୍ତୁ ।" ଇନ୍ଦ୍ର କହିଲେ, "ଅର୍ଜୁନ, ତୁମେ ପ୍ରଥମେ ମହାଦେବଙ୍କୁ ସନ୍ତୁଷ୍ଟ କରି ତାଙ୍କ ଠାରୁ ପାଶୁପତ ଅସ୍ତ୍ର ଲାଭକର । ଏହାପରେ ଦେବତାମାନେ ତୁମକୁ ବହୁ ଦିବ୍ୟାସ୍ତ୍ର ପ୍ରଦାନ କରିବେ ।"

ଦିବ୍ୟାସ୍ତ୍ର ମନୁଷ୍ୟଙ୍କ ଉପରେ ପ୍ରୟୋଗ କରାନଯିବାକୁ ବାରଣ ଥିବାରୁ ଇନ୍ଦ୍ର ପଚାରିଲେ, "ତୁମେ ଏ ଅସ୍ତ୍ର ନେଇ କାହା ଉପରେ ପ୍ରୟୋଗ କରିବାକୁ ଇଚ୍ଛା କରୁଛ ?'' ଅର୍ଜୁନ କହିଲେ, "ମୁଁ ଏ ଅସ୍ତ୍ରଗୁଡ଼ିକର ଅଯଥା ବ୍ୟବହାର କଦାପି କରିବିନାହିଁ । କୌରବମାନେ କପଟ କରି ମୋ ଭାଇ ଯୁଧିଷ୍ଠିରଙ୍କଠାରୁ ଆମର ରାଜ୍ୟ ଛଡ଼ାଇନେଇ ଆମକୁ ବଣରେ ବୁଲାଉଛନ୍ତି । ଦରକାର ହେଲେ ମୁଁ ଆମର ପ୍ରଧାନ ଶତ୍ରୁ କୌରବ ପକ୍ଷକୁ ଏହି ଅସ୍ତ୍ରରେ ପରାସ୍ତ କରିବି ।'' ଇନ୍ଦ୍ରଦେବ ଅର୍ଜୁନଙ୍କୁ ଆଶୀର୍ବାଦ ଦେଇ କହିଲେ, "ତୁମେ ପୃଥିବୀର ଶ୍ରେଷ୍ଠ ବୀର ହେବ । ତୁମକୁ କେହି ଯୁଦ୍ଧରେ ଜୟ କରିପାରିବେ ନାହିଁ ।''

ଅର୍ଜୁନ ଶିବଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅତି କଠୋର ତପସ୍ୟାରେ ବୁଡ଼ି ରହିଲେ ।

## କିରାତ ଓ ଅର୍ଜୁନ

ଦିନେ ପ୍ରଭୁ ଶଙ୍କର ମା ପାର୍ବତୀଙ୍କ ସହିତ ଅରଣ୍ୟ ଭ୍ରମଣରେ ଆସିଥିଲେ । ସେତେବେଳକୁ ଅର୍ଜୁନଙ୍କ ତପସ୍ୟା ପାଞ୍ଚମାସ ପୂରି ଯାଇଥାଏ । ଅର୍ଜୁନ ଶିବଙ୍କ ପୂଜା ପାଇଁ ଅରଣ୍ୟରୁ ଫୁଲ ସଂଗ୍ରହ କରି ଫେରୁଥିବାବେଳେ ଦେଖିଲେ ହଠାତ୍ ବଣ ଭିତରୁ ଏକ ବିରାଟକାୟ ବରାହ ବାହାରି ପଡ଼ିଲା । ବରାହଟାକୁ ମାରିବା ପାଇଁ ସେ ପ୍ରସ୍ତୁତ ହେଉଥିବା ବେଳେ ଦେଖିଲେ ଜଣେ କିରାତ ସେଇ ବରାହକୁ ଶର ମାରିବାକୁ ଆଗେଇ ଆସୁଛି । ଅର୍ଜୁନ ବରାହକୁ ଲକ୍ଷ୍ୟ କରି ଶର ମାରିଦେଲେ । ସଂଗେ ସଂଗେ କିରାତ ମଧ୍ୟ ସେହି ବରାହ ଉପରକୁ ଶର ନିକ୍ଷେପ କଲେ । ଦୁଇ ବୀରଙ୍କ ଶର ଏକ ସମୟରେ ବରାହକୁ ଆଘାତ କରିବାରୁ ସେ ଅଳ୍ପ ସମୟ ମଧ୍ୟରେ ତଳେ ପଡ଼ି ମରିଗଲା ।

ଅର୍ଜୁନ ବିରକ୍ତ ହୋଇ କିରାତକୁ କହିଲେ, "ମୁଁ ବରାହକୁ ଶର ମାରୁଥିବା ଦେଖି ମଧ୍ୟ ତୁମେ କିପରି ତା ଉପରକୁ ଶର ପ୍ରୟୋଗ କଲ ?" କିରାତ ଠୋ ଠୋ ହୋଇ ହସି ଉଠି କହିଲା, "ସାବାସ ବୀର ! ମୁଁ ତ ପ୍ରଥମେ ବରାହକୁ ଶର ମାରିଥିଲି । ତୁମେ ଓଲଟା କଥା କହୁଛ କିପରି ? ଦେଖୁଛି, ତୁମେ ବଡ଼ ବାହାଦୂର ବୀର ।" ଛାର ବଣୁଆ ଶବରଟା ଅପମାନ ଦେଉଛି ଭାବି ଅର୍ଜୁନ ତା' ମୁହଁ ବନ୍ଦ କରିବାପାଇଁ ଏକ ଶର ମାରିଦେଲେ । ଆଶ୍ଚର୍ଯ୍ୟର କଥା, ଅର୍ଜୁନଙ୍କ ଶର କିରାତ ଦେହରେ ବାଜି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ଅର୍ଜୁନଙ୍କ କ୍ରୋଧର ସୀମା ରହିଲା ନାହିଁ । ସେ ଧନୁକୁ ଫିଙ୍ଗି ଦେଇ ଖଣ୍ଡାରେ କିରାତକୁ ଆକ୍ରମଣ କଲେ । କିରାତର କ୍ଷତି ଦେବା ଦୂରେ ଥାଉ ଖଣ୍ଡାଟି ମଧ୍ୟ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ଏହାପରେ ଅର୍ଜୁନ କିରାତ ସହିତ ମଲ୍ଲଯୁଦ୍ଧ କରିବାରେ ଲାଗିଲେ, ମାତ୍ର ଅଳ୍ପ ସମୟ ମଧ୍ୟରେ ଅଚେତ ହୋଇ ତଳେ ପଡ଼ିଗଲେ ।

କିରାତ ପୂର୍ବପରି ଠିଆ ହୋଇଥାଏ । ଚେତା ଫେରି ପାଇ ଅର୍ଜୁନ ଭାବିଲେ, "ଏ ପର୍ଯ୍ୟନ୍ତ ମୁଁ ମୋର ଇଷ୍ଟ ଦେବ ପ୍ରଭୁ ଶଙ୍କରଙ୍କ ପୂଜା କରିନାହିଁ । ଏହା ଏକ ଘୋର ଅପରାଧ । ପ୍ରଥମେ ପୂଜା ଶେଷକରି ପରେ ଏ କିରାତର କଥା ବୁଝିବି ।" ଏହାପରେ ସେ କିରାତକୁ ଚାହିଁ କହିଲେ, "ପଳାନା ! ମୁଁ ପୂଜା ଶେଷକରିବା ପର୍ଯ୍ୟନ୍ତ ଅପେକ୍ଷାକର । ଦେଖନ୍ତୁ ମୁଁ କିପରି ବୀର ! କିରାତ କହିଲା, "ମୁଁ ତ ସେଇଆ ଚାହୁଁଥିଲି । ତୁମେ ଆଗ ପୂଜା କରି ନିଜର ଶକ୍ତି ବଢ଼ାଇନିଅ । ତା'ପରେ ନିଶ୍ଚୟ ଶ୍ରେଷ୍ଠ ବୀର ବୋଲି ପ୍ରମାଣ ମିଳିଯିବ ।" କିରାତର ଥଟ୍ଟା କଥା ଅର୍ଜୁନଙ୍କୁ ବଡ଼ ବାଧିଲା । ସେ ପୂଜାରେ ମନଦେଲେ । ତାଙ୍କ ମନରେ ଏକ ଭାବନା ଆସିଲା, ଏ କିରାତ କିଏ ? ସାମାନ୍ୟ ବଣୁଆ ଲୋକଟାଠାରେ ଏ ଅଦ୍ଭୁତ ଶକ୍ତି ଆସିଲା କିପରି ? ସତେ କ'ଣ ପ୍ରଭୁ ଶଙ୍କର କିରାତ ବେଶରେ ଏଠାକୁ ଆସିଛନ୍ତି ?" ସେ ମନ୍ତ୍ର ଉଚ୍ଚାରଣ କରି ଶିବମୂର୍ତ୍ତିଙ୍କ ଗଳାରେ ମାଳା ପିନ୍ଧାଇଥିବା ମାଳ କିରାତ ବେକରେ

ଶୋଭାପାଉଛି । ତାଙ୍କ ଅନୁମାନ ସତ୍ୟ ହେଲା । ସେ ଆନନ୍ଦରେ ଅଧୀର ହୋଇ କିରାତ ବେଶରେ ଉଭା ହୋଇଥିବା ଶିବଙ୍କ ପାଦତଳେ ଲୋଟିଗଲେ । ଶିବ ଓ ପାର୍ବତୀ ଅର୍ଜୁନଙ୍କୁ ଆଶୀର୍ବାଦ କରିବା ପରେ ଶିବ କହିଲେ, "ମୁଁ ତୁମ ତପସ୍ୟାରେ ଅତ୍ୟନ୍ତ ପ୍ରୀତ ହୋଇଛି । ମନଇଚ୍ଛା ବର ପ୍ରାର୍ଥନା କର ।" ଅଭୀଷ୍ଟ ସିଦ୍ଧି ହେବା ଜାଣି ଅର୍ଜୁନ ଆନନ୍ଦରେ ଅଧୀର ହୋଇ ପାଶୁପତ ଅସ୍ତ୍ର ପାଇଁ ପ୍ରାର୍ଥନା କଲେ । ଶଙ୍କର ପାଶୁପତ ଅସ୍ତ୍ର ଦେଇ ତାହାର ବ୍ୟବହାର ବିଧି ଓ ମନ୍ତ୍ର ମଧ୍ୟ ପ୍ରଦାନ କଲେ ।

## ଅର୍ଜୁନ ଇନ୍ଦ୍ରଙ୍କ ନିକଟକୁ ଗଲେ

ଶିବଙ୍କଠାରୁ ପାଶୁପତ ଅସ୍ତ୍ର ଲାଭକରି ଅର୍ଜୁନ ଫେରିଆସୁଥିବା ବାଟରେ ଦେଖିଲେ ଇନ୍ଦ୍ରଙ୍କ ସାରଥୀ ମାତଳି ରଥ ରଖି ଅପେକ୍ଷା କରିଛନ୍ତି । ଅର୍ଜୁନଙ୍କୁ ଦେଖି ସେ କହିଲେ, "ଦେବରାଜ ଆପଣଙ୍କୁ ନେବା ପାଇଁ ମୋତେ ରଥ ଦେଇ ପଠାଇଛନ୍ତି । ସ୍ୱର୍ଗର ସମସ୍ତ ଦେବତା ଆପଣଙ୍କୁ ଅପେକ୍ଷା କରିଛନ୍ତି ।"

ସ୍ୱୟଂ ଦେବରାଜ ଇନ୍ଦ୍ରଙ୍କ ନିମନ୍ତ୍ରଣ ପାଇ ଅର୍ଜୁନ ଆନନ୍ଦରେ ରଥରେ ବସିଲେ । ମାତଳି ପବନ ବେଗରେ ରଥ ଚଳାଇ ଦେବଲୋକରେ ପହଞ୍ଚିଗଲେ । ସେଠାରେ ଇନ୍ଦ୍ର, ଯମ, ବରୁଣ, ଅଗ୍ନି ଆଦି ଦେବତାମାନେ ଅର୍ଜୁନଙ୍କୁ ଆଦରରେ ପାଛୋଟି ନେଲେ । ସ୍ୱର୍ଗରେ ଏକ ସୁନ୍ଦର ସ୍ଥାନରେ ତାଙ୍କର ରହିବା ବ୍ୟବସ୍ଥା କରାଗଲା ।

ଦେବତାମାନେ ଜଣକପରେ ଜଣେ ନିଜ ନିଜର ଦିବ୍ୟାସ୍ତ୍ରମାନ ଅର୍ଜୁନଙ୍କୁ ଦେଇ ତାହାର ବ୍ୟବହାର କୌଶଳ ମଧ୍ୟ ବତାଇଦେଲେ । ଅର୍ଜୁନ ସେହି ଅସ୍ତ୍ରଗୁଡ଼ିକ ସାହାଯ୍ୟରେ ଦେବତାମାନଙ୍କର ବହୁ ଶତ୍ରୁଙ୍କୁ ସଂହାର କରି ସ୍ୱର୍ଗରେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ଆନନ୍ଦରେ ରହିଲେ । ତାଙ୍କ ବୀରତ୍ୱ କାହାଣୀ ଚାରିଅଡ଼େ ବ୍ୟାପିଗଲା ।

ଦିନେ ଅର୍ଜୁନ ଶୋଇଥିବାବେଳେ ହଠାତ୍ ଦ୍ରୌପଦୀ ଓ ଭାଇମାନଙ୍କ କଥା ମନେ ପକାଇଲେ । ସ୍ୱର୍ଗର ସୁଖ ଓ ମର୍ତ୍ତ୍ୟର କଷ୍ଟକର ଜୀବନ ମଧ୍ୟରେ ଏତେ ପାର୍ଥକ୍ୟ କାହିଁକି -- ଏହି କଥା ଭାବୁଥିବାବେଳେ ସ୍ୱର୍ଗର ଶ୍ରେଷ୍ଠ ସୁନ୍ଦରୀ ଅପ୍ସରା ଉର୍ବଶୀ ଆସି ତାଙ୍କ ଶଯ୍ୟାର ଗୋଟିଏ ପାଖରେ ବସିପଡ଼ିଲେ । ଅର୍ଜୁନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ କିଛି କ୍ଷଣ ନୀରବ ହୋଇ ରହିବାପରେ ଅତ୍ୟନ୍ତ ବିନୟର ସହିତ କହିଲେ, "ମା, ଏ ଅସମୟରେ ଆପଣଙ୍କ ଆଗମନର କାରଣ କ'ଣ ?" ଉର୍ବଶୀ ଅର୍ଜୁନଙ୍କ ସୁନ୍ଦର ରୂପ ଓ ଅପୂର୍ବ ବୀରତ୍ୱରେ ମୁଗ୍ଧ ହୋଇ ତାଙ୍କୁ ବିବାହ କରିବାକୁ ଇଚ୍ଛା କରି ସୁଯୋଗ ଖୋଜୁଥିଲେ । ଆଜି ସେହି ଇଚ୍ଛା ପ୍ରକାଶ କରିବାକୁ ନିର୍ଜନ ରାତିରେ ଅର୍ଜୁନଙ୍କ ନିକଟକୁ ଆସିଛନ୍ତି । ହଠାତ୍ ଅର୍ଜୁନ ତାଙ୍କୁ ମାଆ ବୋଲି ସମ୍ବୋଧନ କରିବାରୁ ସେ ଖୁବ୍ ଅସୁବିଧାରେ ପଡ଼ିଗଲେ । ସେ ଅର୍ଜୁନଙ୍କୁ ଚାହିଁ କହିଲେ, "ତୁମେ ମୋତେ ମାଆ ବୋଲି କହି ଲଜ୍ଜା ଦିଅନାହିଁ । ମୁଁ ସ୍ୱର୍ଗର ରୂପସୀ ଅପ୍ସରା । ଅପ୍ସରାମାନେ କେବେ କାହାର ମାଆ ବା ଭଉଣୀ ହୋଇପାରନ୍ତି ନାହିଁ । ମୁଁ ତୁମକୁ ବିବାହ କରିବା ଆଶାରେ ଏଠାକୁ ଆସିଛି । ମୋତେ ନିରାଶ କରି ଫେରାଇ ଦିଅନାହିଁ ।"

ଅର୍ଜୁନଙ୍କୁ ବୁଦ୍ଧିବାଟ ଦିଶିଲା ନାହିଁ । ସେ ବ୍ୟାକୁଳ ହୋଇ କହିଲେ, "ମାତା, ଆପଣ ଦେବରାଜଙ୍କ ଅପ୍ସରା । ଇନ୍ଦ୍ର ମୋର ପିତା । ଆପଣଙ୍କ ଇଚ୍ଛା ପୂରଣ କରିବାକୁ ମୁଁ ସମ୍ପୂର୍ଣ୍ଣ ଅସମର୍ଥ । ଆପଣଙ୍କ କୃପାଦୃଷ୍ଟି ସର୍ବଦା ମୋ ଉପରେ ରହୁ, ଏହା ହିଁ ପ୍ରାର୍ଥନା କରୁଛି । ମୁଁ ଏଠାକୁ ନୃତ୍ୟ, ଗୀତ ଓ ଅସ୍ତ୍ର ବିଦ୍ୟା ଶିକ୍ଷା କରିବାକୁ ଆସିଛି । ବିଦ୍ୟା ଶିକ୍ଷା କରିବାକୁ ଆସିଥିବା ଛାତ୍ରର ଭୋଗ ନୁହେଁ, ସାଧନା ହିଁ ବ୍ରତ ହେବା ଉଚିତ । ଆପଣ ମଧ୍ୟ ନୃତ୍ୟ ଗୀତରେ ଅତ୍ୟନ୍ତ ବିଚକ୍ଷଣ । ଏଣୁ ଆପଣଙ୍କୁ ମୁଁ ମୋର ଗୁରୁ ରୂପେ ବରଣ କରୁଛି ।"

ଉର୍ବଶୀ ଅର୍ଜୁନଙ୍କ ମନ ଭୁଲାଇବା ପାଇଁ ଅନେକ ଚେଷ୍ଟା କଲେ । ମାତ୍ର ତାଙ୍କ ମନ କାହିଁରେ ହେଲେ ଭୁଲିଲା ନାହିଁ । ସେ ନିଜ କଥାରେ ଦୃଢ଼ ରହି ଉର୍ବଶୀଙ୍କୁ ଦେବୀ, ମାତା, ଜନନୀ ଆଦି କହି ବାରମ୍ବାର ତାଙ୍କ ଆଶୀର୍ବାଦ ଭିକ୍ଷା କରିବାରେ ଲାଗିଲେ ।

ଉର୍ବଶୀଙ୍କ ପରି ଅନିନ୍ଦ୍ୟ ସୁନ୍ଦରୀ ଅପ୍ସରା । ସେ ତାଙ୍କ ରୂପ ଲାବଣ୍ୟରେ ଶହ ଶହ ମୁନୀ ଋଷୀଙ୍କ ଯୋଗ ଭଗ୍ନ କରିଛନ୍ତି । ସାମାନ୍ୟ ମନୁଷ୍ୟ ଜଣେ ତାଙ୍କୁ ଏପରି ଅପମାନ ଦେଇ ଫେରାଇ ଦେଉଥିବାରୁ ତାଙ୍କ ମନରେ ଗଭୀର ଦୁଃଖ ଓ କ୍ରୋଧ ଜାତ ହେଲା । ସେ ଅର୍ଜୁନଙ୍କୁ ଅଭିଶାପ ଦେଇ କହିଲେ, "ତୁମେ ମୋ ଅନୁରୋଧ ରକ୍ଷା ନକରି ମୋତେ ଅପମାନ ଦେଇଛ । ମୋ ଅଭିଶାପରେ ତୁମେ ଏକ ବର୍ଷ ପର୍ଯ୍ୟନ୍ତ ନପୁଂସକ (ମାଇଚିଆ) ରୂପେ ରହିବ ।"

ଅର୍ଜୁନ ହାତଯୋଡ଼ି ଅତ୍ୟନ୍ତ ବିନୟର ସହିତ କହିଲେ, "ହେ ମହାମାତା, ବିନା ଦୋଷରେ ପୁତ୍ର ପ୍ରତି ଏ ଅବିଚାର କାହିଁକି ?"

ଉର୍ବଶୀଙ୍କ ମନରେ ଦୟା ହେଲା । ନିଜର ପାପ ଇଚ୍ଛା ପୂରଣ କରିବାରେ ଅକୃତକାର୍ଯ୍ୟ ହୋଇ ସେ ଖୁବ୍ ଅନ୍ୟାୟ କରି ପକାଇଛନ୍ତି ବୋଲି ବୁଝି ବହୁତ ଦୁଃଖ କରି କହିଲେ, "ବାବୁ, ମୋର ଏ ଅଭିଶାପ ତୁମର ବହୁ ଉପକାରରେ ଆସିବ । ଏକବର୍ଷ ଅଜ୍ଞାତବାସ ସମୟରେ ତୁମେ ନଂପୁସକ ରୂପେ ଯେ କୌଣସିଠାରେ ରହିଯାଇପାରିବ । କେହି ତୁମର ପ୍ରକୃତ ପରିଚୟ ପାଇପାରିବେ ନାହିଁ ।" ଏହିପରି ଅଭିଶାପକୁ ବର ରୂପେ ବଦଳାଇ ଦେଇ ଉର୍ବଶୀ ଅର୍ଜୁନଙ୍କ ନିକଟରୁ ଚାଲିଗଲେ ।

ଅନେକ ଦିନ ହେଲା ଅର୍ଜୁନ ଚାଲିଗଲେଣି, ଏପର୍ଯ୍ୟନ୍ତ ତାଙ୍କର କୌଣସି ଖବର ନପାଇ ଦ୍ରୌପଦୀ ଓ ପାଣ୍ଡବ ଭାଇମାନେ, ଚିନ୍ତିତ ହୋଇ ପଡ଼ିଥାନ୍ତି । ଅର୍ଜୁନଙ୍କ ବିନା ସମସ୍ତଙ୍କୁ ଚାରିଆଡ଼ ଶୂନ୍ୟ ଦେଖାଯାଉଥାଏ ।

ଦିନେ ଦେବର୍ଷି ନାରଦ ପାଣ୍ଡବମାନଙ୍କ ପାଖକୁ ଆସି କହିଲେ, "ମହର୍ଷି ଲୋମଶ ଇନ୍ଦ୍ରଲୋକରୁ ଅର୍ଜୁନଙ୍କ ଖବର ଆଣି ଆପଣମାନଙ୍କୁ ଦେବେ । ଅର୍ଜୁନ ସ୍ୱର୍ଗରେ ରହି ନାନା ବିଦ୍ୟା ଶିକ୍ଷା କରୁଛନ୍ତି ।"

କିଛି ଦିନ ପରେ ଲୋମଶ ଋଷି ଆସି ପାଣ୍ଡବମାନଙ୍କ ନିକଟରେ ପହଞ୍ଚିଲେ । ପାଣ୍ଡବମାନେ ଅତ୍ୟନ୍ତ ଭକ୍ତି ଓ ଶ୍ରଦ୍ଧାରେ ତାଙ୍କର ପାଦପୂଜା କଲେ । ଅର୍ଜୁନଙ୍କ ବିଷୟରେ ପଚାରିବାରୁ ଋଷି କହିଲେ, "ମହାଦେବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରି ଅର୍ଜୁନ ପାଶୁପତ ଅସ୍ତ୍ର ଲାଭକଲେ । ଦେବତାମାନେ ତାଙ୍କୁ ଅନେକ ଦିବ୍ୟଅସ୍ତ୍ର ପ୍ରଦାନ କରିସାରିଲେଣି । ଗନ୍ଧର୍ବ ଓ ଅପ୍ସରୀମାନେ ତାଙ୍କ ନୃତ୍ୟ ଓ ସଂଗୀତ ଶିକ୍ଷା ଦେଉଛନ୍ତି । ଅର୍ଜୁନ ଆପଣଙ୍କୁ ଓ ଭୀମଙ୍କୁ ପ୍ରଣାମ ଜଣାଇଛନ୍ତି । ନକୁଳ ଓ ସହଦେବଙ୍କୁ ସ୍ନେହ ଓ ଦ୍ରୌପଦୀଙ୍କୁ ପ୍ରେମ ଜଣାଇଛନ୍ତି ।"

ପାଣ୍ଡବମାନେ ଆନନ୍ଦିତ ହୋଇ କହିଲେ, "ମହର୍ଷି, ଅର୍ଜୁନ ଶିକ୍ଷା ଶେଷକରି ଫେରିଆସିବା ଯାଏ ଆପଣ ଆମ୍ଭମାନଙ୍କୁ ବିଭିନ୍ନ ତୀର୍ଥ ଦର୍ଶନ କରାଇ ଦେବାକୁ ପ୍ରାର୍ଥନା କରୁଛୁ । ନାରଦ ମଧ୍ୟ ଆମ୍ଭମାନଙ୍କୁ ଏ କଥା କହିଯାଇଛନ୍ତି ।" ପାଣ୍ଡବମାନଙ୍କ ମଧୁର ବ୍ୟବହାରରେ ଲୋମଶ ମୁନି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ସେ ତୀର୍ଥ ଦର୍ଶନ ପାଇଁ ପାଣ୍ଡବମାନଙ୍କୁ ନେଇ ନୈମିଶାରଣ୍ୟରେ ପହଞ୍ଚିଲେ । ଏଠାରେ ବହୁ ମୁନିଋଷି ଆଶ୍ରମ କରି ରହିଥାନ୍ତି । ନୈମିଶାରଣ୍ୟର ପ୍ରାକୃତିକ ଶୋଭା ଦେଖି ପାଣ୍ଡବମାନଙ୍କ ମନରେ ଅପୂର୍ବ ଆନନ୍ଦ ଜାତ ହେଲା । ଏହାପରେ ସେମାନେ ପ୍ରୟାଗ, ଗୟା ଓ ଆଉ ଅନେକ ତୀର୍ଥ ସ୍ଥାନ ମଧ୍ୟ ବୁଲି ଦେଖିଲେ । ବାଟରେ ଯାଉଥିବା ବେଳେ ଋଷିଙ୍କଠାରୁ ନାନା ଧର୍ମକଥା ଶୁଣୁଥାନ୍ତି । କିଛି ଦିନ ପରେ ପାଣ୍ଡବମାନେ ଗଙ୍ଗାସାଗର ତୀର୍ଥରେ ପହଞ୍ଚି ପ୍ରଭାସ ତୀର୍ଥକୁ ଗଲେ । ସେଠାରେ ଯାଦବମାନେ ପାଣ୍ଡବମାନଙ୍କୁ ଅତି ଆଦର ସମ୍ମାନ ଦେଖାଇଲେ ଓ ସୁଭଦ୍ରା ଅତି ଆନନ୍ଦରେ ଦ୍ରୌପଦୀଙ୍କୁ କୁଣ୍ଢାଇ ପକାଇଲେ । ଶ୍ରୀକୃଷ୍ଣ ଓ ବଳରାମ ପାଣ୍ଡବମାନଙ୍କୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଲେ । କିଛିଦିନ ଯାଦବମାନଙ୍କର ଅତିଥି ହେବାପରେ ପାଣ୍ଡବମାନେ ଅନ୍ୟ ଆଡ଼େ ଯିବାକୁ ବାହାରିଲେ । ଲୋମଶ ଋଷିଙ୍କ ସହିତ ସେମାନେ ସରସ୍ୱତୀ ନଦୀ ପାରିହୋଇ କାଶ୍ମୀରରେ ପହଞ୍ଚିଲେ । ପରେ ବିପାଶା ନଦୀ ପାରି ହୋଇ ହିମାଳୟ ଅଞ୍ଚଳର ସୁବାହୁ ରାଜ୍ୟକୁ ଗଲେ । ଏଠାର ରାଜାଙ୍କ ଅତିଥି ହେବାପରେ ପାଣ୍ଡବମାନେ ଗନ୍ଧମାର୍ଦ୍ଦନ ପର୍ବତ ଆଡ଼କୁ ଚାଲିଲେ ।

କିଛିଦିନ ଏଣେତେଣେ ବୁଲି ସେମାନେ ବଦରିକାର ନାରାୟଣାଶ୍ରମରେ ଉପସ୍ଥିତ ହେଲେ । ସ୍ଥାନଟିର ପ୍ରାକୃତିକ ଶୋଭା ଅତି ରମଣୀୟ ଥିବାରୁ ପାଣ୍ଡବମାନେ ସେଠାରେ ବିଶ୍ରାମ କରିବା ପାଇଁ ସ୍ଥିର କଲେ ।

## ଭୀମ ଓ ହନୁମାନ ଭେଟ

ପାଣ୍ଡବମାନେ କିଛି ଦିନ ଆନନ୍ଦରେ ନାରାୟଣାଶ୍ରମରେ ରହିଲେ । ଅର୍ଜୁନ ଫେରି ନଥିବାରୁ ସମସ୍ତେ ଚିନ୍ତିତ ହୋଇ ପଡ଼ିଥାନ୍ତି ।

ଦ୍ରୌପଦୀଙ୍କୁ କିଛି ଭଲ ଲାଗୁ ନଥାଏ । ଦିନେ ସେ ବାହାରେ ବସିଥିବା ବେଳେ ହଠାତ୍ ଗୋଟିଏ ପଦ୍ମଫୁଲ ପବନରେ ଉଡିଆସି ତାଙ୍କ ପାଖରେ ପଡ଼ିଗଲା । ଦ୍ରୌପଦୀ ସେଇଟିକୁ ଉଠାଇନେଇ ଦେଖିଲେ ଫୁଲଟି ଯେପରି ସୁନ୍ଦର, ତା'ର ସୁଗନ୍ଧ ମଧ୍ୟ ସେପରି ଚମକଦାର ଥିଲା । ଦ୍ରୌପଦୀଙ୍କର ଭାରି ଲୋଭ ହେଲା । ସେ ଭୀମଙ୍କ ନିକଟକୁ ଯାଇ କହିଲେ, "ଦେଖ, କି ସୁନ୍ଦର ଫୁଲଟିଏ ! ଏହାର ସୁଗନ୍ଧରେ ଚାରିଆଡ଼ ମହକି ଉଠୁଛି । ଏ ଫୁଲରୁ କିଛି ଆଣିଲେ ମୁଁ ମହାରାଜା ଯୁଧିଷ୍ଠିରଙ୍କୁ ଉପହାର ଦିଅନ୍ତି । ମୋ ଅନୁରୋଧ ରକ୍ଷା କରିବାକୁ ତୁମେ କେବେ ମନାକରିବ ନାହିଁ । ଏକଥା ମୁଁ ଜାଣେ । ଆଉ ବିଳମ୍ବ ନକରି ଶୀଘ୍ର ଫୁଲ ଆଣିଦେବାକୁ ବିନତି କରୁଛି ।"

ଦ୍ରୌପଦୀଙ୍କ ପ୍ରବଳ ଆଗ୍ରହ ଦେଖି ଭୀମ ସଙ୍ଗେ ସଙ୍ଗେ ଫୁଲ ଖୋଜିବା ପାଇଁ ବାହାରି ପଡ଼ିଲେ । ଯେଉଁ ଦିଗରୁ ଫୁଲଟି ଉଡ଼ି ଆସିଥିଲା, ଭୀମ ଠିକ୍ ସେହି ଦିଗକୁ ବାହାରିଲେ । ସେ ଏପରି ବେଗରେ ଯାଉଥିଲେ ଯେ ବଣର ପଶୁପକ୍ଷୀମାନେ ଭୟରେ ଏଣେତେଣେ ପଳାଇବାକୁ ଲାଗିଲେ । କିଛିବାଟ ଯିବାପରେ ଦେଖିଲେ ଠିକ ରାସ୍ତା ମଝିରେ ବୁଢ଼ା ମାଙ୍କଡ଼ଟାଏ ଶୋଇ ଆଖି ମିଟି ମିଟି କରୁଛି । ମାଙ୍କଡ଼କୁ ନ ଡେଇଁଲେ ଆଗକୁ ଯାଇହେବ ନାହିଁ । ତେଣୁ ଭୀମ ରାଗିଉଠି କହିଲେ, "ଶୋଇବା ପାଇଁ ତୋତେ ଆଉ କୋଉଠି ଜାଗା ମିଳିଲା ନାହିଁ ? ଠିକ୍ ଯିବା ଆସିବା ବାଟ ମଝିଟାରେ ଶୋଇ ପଡ଼ିଲୁ ? ଉଠ୍, ମୋତେ ବାଟ ଛାଡ଼ିଦେ । ମୁଁ ଆଗକୁ ଯିବି ।"

ମାଙ୍କଡ଼ଟା ଆଖି ମେଲାକରି କହିଲା, "ମୋ ଦେହ ଭଲ ନାହିଁ । ସହଜେ ତ ବୁଢ଼ା ହୋଇଗଲିଣି, ଅକାରଣଟାରେ ଏଡ଼େ ପାଟିକରି ମୋତେ ଉଠାଇଦେଲ କାହିଁକି ? ମୁଁ ଛାର ପଶୁଟାଏ, ତୁମେ ପରା ମଣିଷ । ଦେଖୁଛି, ତୁମର ଧର୍ମ ଅଧର୍ମ ଜ୍ଞାନ ନାହିଁ । ତମ ଶାସ୍ତ୍ରରେ ଅଛି ପଶୁପକ୍ଷୀଙ୍କ ପ୍ରତି ଦୟା ଦେଖାଇବା ଉଚିତ । ମୁଁ ତୁମର କି ଦୋଷ କରିଥିଲି ଯେ ତୁମେ ମେଘ ଘଡ଼ଘଡ଼ି କରି ଗର୍ଜନ କରି ମୋତେ ଚମକାଇଦେଲ । କି ଲାଭ ପାଇଲ ଏଥିରୁ ? ମୋ କଥା ମାନି ଆଉ ଆଗକୁ ଯାଅ ନାହିଁ । ଏଠାରୁ ସ୍ୱର୍ଗକୁ ଯିବାକୁ ରାସ୍ତା ପଡ଼ିଛି । ଯେଉଁବାଟରେ କି ମନୁଷ୍ୟ ପାଦ ଦେଇପାରିବ ନାହିଁ । ତୁମେ କ'ଣ ଏକଥା ଜାଣିନାହଁ ? ଯଦି ତୁମକୁ ଭଲ ଦଶା ଅଛି, ତେବେ ଏଠାରୁ ମନଇଚ୍ଛା ଫଳ ଖାଇ ଘରକୁ ଫେରିଯାଅ ।"

ମାଙ୍କଡ଼ର କଥା ଶୁଣି ଭୀମର ରାଗ ବହୁଗୁଣରେ ବଢ଼ିଗଲା । ସେ ପାଟି କରି କହିଲା, "ହେ ପଶୁ, ମୁଁ କିଏ ତୁ ଜାଣୁ ? ଆରେ ଶୁଣ୍, ମୁଁ ଜଣେ ବୀର କ୍ଷତ୍ରିୟ । ମୁଁ କୁରୁବଂଶର ରାଣୀ କୁନ୍ତୀଙ୍କ ପୁତ୍ର । ମନେରଖ, ମୁଁ ପବନ ଦେବତାଙ୍କ ପୁତ୍ର ଭୀମସେନ । କିଛି ନଜାଣି ବଡ଼ ବଡ଼ କଥା ଗୁଡ଼ାଏ କହୁଛୁ କାହିଁକି ? ମୋ ରାଗରୁ ରକ୍ଷା ପାଇବାକୁ ଇଚ୍ଛା ଥିଲେ ଭଲରେ ବାଟ ଛାଡ଼ି ଦେ' । ନହେଲେ ଫଳ ଭଲହେବ ନାହିଁ କହୁଛି ।"

ମାଙ୍କଡ଼ କହିଲା, "ମୋ ଅବସ୍ଥା ତ ଦେଖୁଛ । କଡ଼ ଲେଉଟାଇବାକୁ ବଳ ପାଉନାହିଁ । ଯଦି ତୁମେ ନିହାତି ଯିବାକୁ ଇଚ୍ଛା କରୁଛ, ତେବେ ମୋତେ ଡେଇଁପଡ଼ି ଚାଲିଯାଅ ।"

ଭୀମ କହିଲେ, "ଅଳ୍ପ ଟିକିଏ ଆଗରୁ ତୁ ଭାରି ଧର୍ମଶାସ୍ତ୍ର କଥା ଶୁଣାଉଥିଲୁ ପରା । ସବୁ ଜୀବଙ୍କ ଦେହରେ ଭଗବାନ ଅଛନ୍ତି । ତେଣୁ ପଶୁ ହେଉ ବା ମନୁଷ୍ୟ ହେଉ କାହାକୁ ଡେଇଁ ଯିବା ଏକ ଅପରାଧ । ନହେଲେ ବୀର ହନୁମାନ ସାଗର ଡେଇଁ ଗଲା ପରି ମୁଁ ତୋ ଦେହ ତ ଛାର, ଏ ପର୍ବତ ମଧ ଡେଇଁ ଚାଲିଯାଇ ପାରନ୍ତି ।"

ଏଥର ମାଙ୍କଡ଼ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ହେ ବୀରବର, ସେ ହନୁମାନ କିଏ ? ସେ କିପରି ସାଗର ଲଙ୍ଘିଥିଲେ ? ସେ କଥା ଜାଣିଥିଲେ ମୋତେ ଦୟାକରି ଶୁଣାଅ ।"

ଭୀମ ରାଗିଉଠି କହିଲେ, "କଅଣ ହେଲା, ତୁ ମୋ ବଡ଼ଭାଇ ବୀରଶ୍ରେଷ୍ଠ ହନୁମାନଙ୍କ ବିଷୟରେ କିଛି ଜାଣିନାହୁଁ । ଆରେ ସେ ପ୍ରଭୁ ରାମଚନ୍ଦ୍ରଙ୍କର ଶ୍ରେଷ୍ଠ ଭକ୍ତ । ତାଙ୍କ ସ୍ତ୍ରୀ ସୀତା ଦେବୀଙ୍କୁ ଠାବ କରିବା ପାଇଁ ସେ ଏକା ଡିଆଁକେ ସମୁଦ୍ର ପାରହୋଇ ଲଙ୍କାରେ ପହଞ୍ଚି ଯାଇଥିଲେ । ମୁଁ ସେଇ ବୀରଶ୍ରେଷ୍ଠ ହନୁମାନଙ୍କ ସାନଭାଇ । ଠିକ୍ ତାଙ୍କ ପରି ବଳୁଆ ମଧ । ବହୁତ ହୋଇଗଲା । ଏଥର ଉଠି ମୋତେ ବାଟ ଛାଡ଼ିଦେ । ତୋର ଅନିଷ୍ଟ କରିବାକୁ ମୋତେ ବାଧ୍ୟ କରନା ।"

ମାଙ୍କଡ଼ କହିଲା, "ହେ ବୀରଶ୍ରେଷ୍ଠ, ଶାନ୍ତ ହୁଅ । ବୃଦ୍ଧ ଓ ଦୁର୍ବଳ ପ୍ରାଣୀମାନଙ୍କ ପ୍ରତି ଦୟାଳୁ ହୁଅ । ଦେଖୁଛ, ଉଠି ବସିବାକୁ ମୋ ଦେହରେ ବଳ ନାହିଁ । ଯଦି ଡେଇଁକରି ନଯିବ, ତେବେ ଦୟାକରି ମୋ ଲାଙ୍ଗୁଳଟାକୁ ଅଡ଼େଇଦେଇ ତୁମ ଯିବା ପାଇଁ ବାଟ କରିଦିଅ । ମୁଁ ଜମା ଉଠି ପାରିବି ନାହିଁ ।"

ଛାର ମାଙ୍କଡଟାଏ ଭୀମଙ୍କ ପରି ବୀରକୁ ତା ଲାଙ୍ଗୁଳଟାକୁ ଟେକିବାକୁ କହୁଛି, ଏଥିର ତାଙ୍କର ଭାରି ରାଗହେଲା । ମାଙ୍କଡ଼ଟାର ଲାଙ୍ଗୁଳକୁ ଧରି ବୁଲାଇ ବୁଲାଇ ଫିଙ୍ଗିଦେବା ପାଇଁ ଇଚ୍ଛା କରି ସେ ଖପ୍ କରି ଲାଙ୍ଗୁଳକୁ ଧରି ପକାଇଲେ । ମାତ୍ର ଲାଙ୍ଗୁଳଟା ଟିକିଏ ହେଲେ ଚହଲିଲା ନାହିଁ । ଭୀମ ଦୁଇହାତ ଲଗାଇଲେ । ଆଣ୍ଠୋଇପଡ଼ି ନିଜର ସମସ୍ତ ବଳଖଟାଇ ଟେକିବାକୁ ଚେଷ୍ଟା କଲେ । ଆଶ୍ଚର୍ଯ୍ୟର କଥା, ଟେକିବା ଦୂରେ ଥାଉ, ଲାଙ୍ଗୁଳଟା ଟିକିଏ ହେଲେ ଘୁଞ୍ଚିଲା ନାହିଁ । ଲଜ୍ଜାରେ ଭୀମଙ୍କ ମୁଣ୍ଡ ତଳକୁ ହୋଇଗଲା । ସେ ବିନୟ ହୋଇ କହିଲେ, "ଆପଣ ନିଶ୍ଚୟ ଜଣେ ଦେବତା । ଏଠାରେ ବାନର ରୂପରେ ଶୋଇ ରହିଛନ୍ତି । ମୁଁ ନଜାଣି ଅନେକ କଟୁ କଥା କହି ପକାଇଛି । ଦୟାକରି ମୋତେ କ୍ଷମା କରିଦିଅନ୍ତୁ । ହେ ମହାପୁରୁଷ, ମୋତେ ଆପଣଙ୍କ ପ୍ରକୃତ ପରିଚୟ ଦେଇ ସୁଖୀ କରନ୍ତୁ ପ୍ରଭୁ ।"

ଏଥର ହନୁମାନ କହିଲେ, "ହେ ବୀର ପାଣ୍ଡବ, ମୁଁ ତୁମର ସେଇ ବଡ଼ଭାଇ ହନୁମାନ । ଯାହାଙ୍କ ବିଷୟରେ ତୁମେ ଅଳ୍ପ ସମୟ ଆଗରୁ କହୁଥିଲ । ଯେଉଁ ବାଟରେ ତୁମେ ଯିବା ପାଇଁ ବାହାରିଥିଲ, ସେ ବାଟ ସ୍ୱର୍ଗକୁ ପଡ଼ିଛି । ତୁମକୁ ବହୁ ବିପଦ ପଡ଼ିବ ଜାଣି ମୁଁ ଆଗରୁ ବାଟ ଓଗାଳି ଶୋଇଥିଲି ।"

ଏଥର ଭୀମ ଆନନ୍ଦ ଗଦ୍‌ଗଦ୍ କଣ୍ଠରେ କହିଲେ, "ମୁଁ ଆଜି ମୋର ବଡ଼ଭାଇଙ୍କ ସାକ୍ଷାତ ଲାଭକରି କୃତାର୍ଥ ହୋଇଗଲି । ସଂସାରରେ ମୁଁ ନିଜକୁ ଶ୍ରେଷ୍ଠ ଭାଗ୍ୟବାନ ବୋଲି ମନେକରୁଛି । ଭୀମସେନ ହନୁମାନଙ୍କ ପାଦତଳେ ପଡ଼ି ପ୍ରାର୍ଥନା କଲେ, "ପ୍ରଭୁ, ସମୁଦ୍ର ଲଙ୍ଘିବା ସମୟରେ ଆପଣ ଯେଉଁ ରୂପ ଧରିଥିଲେ, ସେହି ବିରାଟ ରୂପକୁ ଥରେ ଦେଖିବା ପାଇଁ ମୋର ପ୍ରବଳ ଆଗ୍ରହ ହେଉଛି ।"

ହନୁମାନ ହସି ଦେଇ ନିଜ ଦେହକୁ ବଢ଼ାଇବାରେ ଲାଗିଲେ । କ୍ରମେ କ୍ରମେ ତାଙ୍କ ଶରୀର ଏପରି ବିରାଟ ଆକାର ଧାରଣ କଲା, ଯାହାକୁ ଦେଖି ଭୀମ ଭୟରେ ଥରିବାକୁ ଲାଗିଲେ । ହନୁମାନଙ୍କ ଦେହରୁ ବାହାରୁଥିବା ତେଜରେ ତାଙ୍କ ଆଖି ଝଲସି ଉଠିଲା । ହନୁମାନ କହିଲେ, "ବାବୁ, ଶତ୍ରୁମାନଙ୍କ ଆଗରେ ମୋର ଶରୀର ଆହୁରି ବିରାଟ, ଆହୁରି ଭୟଙ୍କର ହୋଇଥାଏ ।"

ହନୁମାନ ତାଙ୍କ ପୂର୍ବ ରୂପକୁ ଫେରିଆସି ଭୀମଙ୍କୁ ଆଲିଙ୍ଗନ କଲେ । ସଂଗେ ସଂଗେ ଭୀମଙ୍କ ଶକ୍ତି ବହୁଗୁଣରେ ବଢ଼ିଯାଇଥିଲା ।

ଭୀମ ଏହା ଅନୁଭବ କରି ଯେତିକି ଆଶ୍ଚର୍ଯ୍ୟ ହେଲେ ତା'ଠାରୁ ବେଶୀ ଆନନ୍ଦିତ ହେଲେ ।

ହନୁମାନ କହିଲେ, "ଭୀମ, ତୁମେ ମନଇଚ୍ଛା ବର ମାଗିନିଅ ।"

ଭୀମ କହିଲେ, "ପାଣ୍ଡବମାନେ ଆପଣଙ୍କ ଆଶୀର୍ବାଦରୁ ଶତ୍ରୁମାନଙ୍କୁ ପରାସ୍ତ କରି ଜୟଯୁକ୍ତ ହେବେ -- ଏହି ବର ପ୍ରଦାନ କରନ୍ତୁ ।"

ହନୁମାନ କହିଲେ, "ତୁମେ ଯୁଦ୍ଧଭୂମିରେ ଯେତେବେଳେ ସିଂହନାଦ କରିବ, ମୋର ଗର୍ଜନ ତା ସହିତ ମିଶି ଶତ୍ରୁମାନଙ୍କ ହୃଦୟରେ ଅତିଶୟ ଭୟଜାତ କରିବ । ମୁଁ ତୁମଭାଇ ଅର୍ଜୁନଙ୍କ ପତାକାରେ ରହିବି । ତା'ର ନାମ କପିଧ୍ୱଜ ହେବ । ତୁମ୍ଭେମାନେ ନିଶ୍ଚୟ ବିଜୟଲାଭ କରିବ ।"

ହନୁମାନ ଭୀମଙ୍କୁ ସୌଗନ୍ଧିକ ପଦ୍ମ ମିଳୁଥିବା ସ୍ଥାନ କଥା ଜଣାଇଦେଲେ । ଭୀମ ଫୁଲ ପାଇଁ ଆସିଛନ୍ତି, ଏକଥା ତାଙ୍କର ଆଦୌ ମନେନଥିଲା । ହନୁମାନ ମନେପକାଇଦେବା ପରେ ଦ୍ରୌପଦୀ ତାଙ୍କ ବାଟକୁ ଚାହିଁ ବସିଥିବା କଥା ମନେପଡ଼ିଗଲା । ସେ ଅନେକ ଗୁଡ଼ିଏ ସୌଗନ୍ଧିକ ପଦ୍ମ ଆଣି ଦ୍ରୌପଦୀଙ୍କୁ ଦେବା ପାଇଁ ଶୀଘ୍ର ଶୀଘ୍ର ଯିବାକୁ ଲାଗିଲେ ।

## ଦୁର୍ଯ୍ୟୋଧନଙ୍କ ଘୋଷ ଯାତ୍ରା

ପାଣ୍ଡବମାନେ ଦ୍ୱୈତ ବନରେ ରହିଥିବା ସମୟରେ ଅର୍ଜୁନ ଆସି ସେମାନଙ୍କୁ ସେଠାରେ ଭେଟିଲେ । କିଛି ଦିନ ପରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ଦେଖାକରିବାକୁ ଆସିଥିଲେ । ଅର୍ଜୁନ ତପସ୍ୟା ଦ୍ୱାରା ଦିବ୍ୟ ଅସ୍ତ୍ରମାନ ଲାଭ କରିଥିବା ଶୁଣି ସେ ଖୁସି ହେଲେ ଓ ଦ୍ରୌପଦୀଙ୍କୁ ବହୁତ ସାନ୍ତ୍ୱନା ଦେଇ ଦ୍ୱାରିକା ଫେରିଗଲେ । ଅର୍ଜୁନ ଫେରିଆସିବାରୁ ପାଣ୍ଡବମାନଙ୍କ ମନର ସମସ୍ତ ଦୁଃଖ ଦୂର ହୋଇ ଯାଇଥିଲା ।

ବଣରେ ପାଣ୍ଡବମାନେ ଅତି ଦରିଦ୍ର ଜୀବନଯାପନ କରୁଥିବା କଥା ଶୁଣି ଦୁର୍ଯ୍ୟୋଧନ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହେଉଥାନ୍ତି । ଦିନେ ଦୁଷ୍ଟ ଶକୁନି କର୍ଣ୍ଣଙ୍କ ସହିତ ଆସି ଦୁର୍ଯ୍ୟୋଧନଙ୍କୁ କହିଲେ, "ବଣରେ ପାଣ୍ଡବମାନେ ବକଳ ପିନ୍ଧି ସନ୍ନ୍ୟାସୀ ପରି ଦିନ କାଟୁଛନ୍ତି । ଏତିକିବେଳେ ତୁମେ ତୁମର ଅମାପ ଧନ ସଂପତ୍ତି ଦେଖାଇ ସେମାନଙ୍କ ମନରେ ଆହୁରି ଦୁଃଖ ଦେବା ଉଚିତ ।"

ଦୁର୍ଯ୍ୟୋଧନ କହିଲେ, "ମାମୁଁ, ମୁଁ ବହୁଦିନରୁ ସେ କଥା ଚିନ୍ତା କରିଆସୁଛି । ମାତ୍ର ମହାରାଜା ଆଦୌ ଅନୁମତି ଦେବେ ନାହିଁ । କି ଉପାୟରେ ତାଙ୍କୁ ରାଜି କରାଇହେବ, ସେଇ କଥା ଚିନ୍ତା କରନ୍ତୁ ।"

ଶକୁନି ସହିତ କର୍ଣ୍ଣ ମିଶି ଉପାୟ ସ୍ଥିର କରିନେଲେ । ଦୁହେଁ ମହାରାଜଙ୍କୁ କହିଲେ, "ଦ୍ୱୈତବନ ନିକଟରେ ଥିବା ଘୋଷପଲ୍ଲୀରେ ଆମର ଗାଈମାନେ ରହୁଛନ୍ତି । ସେମାନଙ୍କୁ ଦେଖିବା ଓ ଗଣତି କରି ହିସାବ ଆଣିବାପାଇଁ ବର୍ତ୍ତମାନ ଉପଯୁକ୍ତ ସମୟ । ଆହୁରି ମଧ ଅନେକ ଦିନରୁ ଶିକାରକୁ ଯାଇ ନଥିବାରୁ ଦୁର୍ଯ୍ୟୋଧନ ବଣକୁ ଯିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ଏଣୁ ଘୋଷପଲ୍ଲୀ ଯିବା ପାଇଁ ଅନୁମତି ଦିଅନ୍ତୁ ।"

ଧୃତରାଷ୍ଟ୍ର କହିଲେ, "ଶୁଣୁଛି, ପାଣ୍ଡବମାନେ ଘୋଷପଲ୍ଲୀ ନିକଟରେ ରହୁଛନ୍ତି । କାଳେ କିଛି ବିପଦ ଘଟିପାରେ ସେଥିପାଇଁ ସେଠାକୁ ଯିବାକୁ ମୁଁ ଅନୁମତି ଦେବି ନାହିଁ । ଗାଈଗୋରୁଙ୍କ ଖବର ନେବା ପାଇଁ ମୁଁ ଅନ୍ୟ ଲୋକ ପଠାଇଦେବି ।"

ଚତୁର ଶକୁନି କହିଲେ, "ଆପଣ ଚିନ୍ତା କରନ୍ତୁ ନାହିଁ । ପାଣ୍ଡବଙ୍କ ସହିତ ଦେଖା କରିବା ଆମର ଆଦୌ ଇଚ୍ଛା ନାହିଁ । ପୁଣି

ଧାର୍ମିକ ଯୁଧିଷ୍ଠିରଙ୍କ ପରି ଶାନ୍ତଶିଷ୍ଟ ଧାର୍ମିକ ଲୋକଙ୍କଠାରୁ ବିପଦ ଆଶା କରିବା ବୃଥା । ଆପଣ ଅନ୍ୟ କିଛି ନଭାବି ଅନୁମତି ଦିଅନ୍ତୁ ।”

ଅନ୍ଧରାଜା ଶକୁନିଙ୍କ ଚତୁର କଥାରେ ଭୁଲି ଘୋଷଯାତ୍ରା ପାଇଁ ଅନୁମତି ଦେଇଦେଲେ । ଦୁର୍ଯ୍ୟୋଧନ ଏ ସଂବାଦ ପାଇବା ମାତ୍ରେ ତାଙ୍କ ଗୋଡ଼ ତଳେ ଲାଗିଲା ନାହିଁ ।

## ଘୋଷଯାତ୍ରା ଓ ଦୁର୍ଯ୍ୟୋଧନଙ୍କ ଗର୍ବ ହରଣ

ମହାରାଜାଙ୍କଠାରୁ ଅନୁମତି ମିଳିଯିବା ପରେ ଦୁର୍ଯ୍ୟୋଧନଙ୍କୁ ଆଉ ନିଦ ଲାଗିଲା ନାହିଁ । ସେ ଦିନରାତି ନିଜର ବିଭବ କିପରି ଭାବରେ ଦେଖାଇଲେ ପାଣ୍ଡବମାନେ ଜଳି ପୋଡ଼ି ମରିବେ ସେଇ ଚିନ୍ତା କରିବାକୁ ଲାଗିଲେ ।

ସୁନା, ରୂପା, ହୀରା, ମୋତିମାନ ଖଞ୍ଜା ରଥଟିଏ କରାଗଲା । ହାତୀମାନଙ୍କ ଉପରେ ରତ୍ନ ଖଞ୍ଜା ଯାଇଥିବା ହାଉଦାମାନ ପଡ଼ିଲା । କର୍ଣ୍ଣ ଓ ଶକୁନୀଙ୍କ ସହିତ ଦୁର୍ଯ୍ୟୋଧନ କୌରବ ଅନ୍ତଃପୁରର ରାଣୀମାନଙ୍କୁ ବହୁମୂଲ୍ୟ ଅଳଂକାରରେ ସଜାଇ ଦ୍ୱୈତବନରେ ପହଞ୍ଚିଲେ । ଦୁର୍ଯ୍ୟୋଧନ ଦ୍ୱୈତବନକୁ ଆସିଥିବା ଖବର ପାଣ୍ଡବମାନଙ୍କୁ ମିଳିଗଲା । ଲୋକମାନେ ଆସି କୌରବମାନଙ୍କର ଅମାପ ଧନ ସଂପତ୍ତି କଥା କହି ପ୍ରଶଂସା କରିବାରେ ଲାଗିଲେ । ଯୁଧିଷ୍ଠିର ସବୁକଥା ଶୁଣି ନୀରବ ରହିଥିଲେ ।

ଦ୍ୱୈତବନର ଏକ ପଡ଼ିଆରେ କୌରବ ରାଜପରିବାର ତମ୍ବୁ ପକାଇ ରହିଲେ । ନିକଟରେ ଏକ ସୁନ୍ଦର ପୁଷ୍କରିଣୀ ଥିଲା । ପୁଷ୍କରିଣୀର ଆରପାଖରେ ପାଣ୍ଡବମାନେ କୁଡ଼ିଆ କରି ରହିଥାନ୍ତି । ଦିନେ ଦୁର୍ଯ୍ୟୋଧନ ରାଣୀମାନଙ୍କୁ ନେଇ ସେଇ ପୁଷ୍କରିଣୀରେ ସ୍ନାନ କରିବାକୁ ଇଚ୍ଛା କଲେ । ପୋଖରୀଟି ଗନ୍ଧର୍ବରାଜ ଚିତ୍ରସେନଙ୍କର । ତାଙ୍କ ଲୋକେ ଦୁର୍ଯ୍ୟୋଧନ ଲୋକଙ୍କୁ କହିଲେ, “ଯେ ପର୍ଯ୍ୟନ୍ତ ଆମ୍ଭେମାନେ ଏଠାରେ ଅଛୁ, ସେ ପର୍ଯ୍ୟନ୍ତ ଏଠାକୁ ଅନ୍ୟ କେହି ଆସି ପାରିବେ ନାହିଁ । ଶୀଘ୍ର ଚାଲିଯାଅ ।”

ଗନ୍ଧର୍ବମାନେ କହିଥିବା କଥା ଶୁଣି ଦୁର୍ଯ୍ୟୋଧନ ରାଗରେ ଜଳି ଉଠିଲେ । ସେ ସଙ୍ଗେ ସଙ୍ଗେ ନିଜର ସୈନ୍ୟମାନଙ୍କୁ ପଠାଇ ଦେଲେ । କେତେକ ସୈନିକ ଗନ୍ଧର୍ବରାଜଙ୍କୁ କହିଲେ, “ମହାରାଜା ଦୁର୍ଯ୍ୟୋଧନ ବର୍ତ୍ତମାନ ଏହି ପୁଷ୍କରିଣୀରେ ସ୍ନାନ କରିବା ପାଇଁ ଆସିବେ । ତୁମେ ଶୀଘ୍ର ଏ ସ୍ଥାନ ଛାଡ଼ିଦିଅ ।” ଏ ଘଟଣା ଶୁଣିବାରୁ ଦୁର୍ଯ୍ୟୋଧନଙ୍କ ଦେହ ରାଗରେ ଥରିବାକୁ ଲାଗିଲା । ସେ ଶକୁନି ଓ କର୍ଣ୍ଣଙ୍କୁ ସଂଗରେ ନେଇ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । କର୍ଣ୍ଣଙ୍କ ଶରରେ ଗନ୍ଧର୍ବମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଚିତ୍ରସେନ ଏକଥା ଦେଖି ସଂଗେ ସଂଗେ ଯୁଦ୍ଧ ସ୍ଥାନରେ ପହଞ୍ଚିଗଲେ ଓ କୌରବ ସୈନ୍ୟମାନଙ୍କ ଉପରେ ତୁହାକୁ ତୁହା ବାଣ ବର୍ଷା କରିବାର ଲାଗିଲେ । କୌରବମାନଙ୍କୁ ବୁଦ୍ଧିବାଟ ଦିଶିଲା ନାହିଁ । ଏତିକିବେଳେ ଚିତ୍ରସେନ ଏପରି ଏକ ଶର ମାରିଲେ ଯେ କୌରବ ପକ୍ଷର ସମସ୍ତେ ଅଚେତ ହୋଇଗଲେ । ସେ ଆଉ ଏକ ଶରମାରି କର୍ଣ୍ଣଙ୍କ ରଥକୁ ଖଣ୍ଡ ଖଣ୍ଡ କରି ଦେବାରୁ କର୍ଣ୍ଣ ଅନ୍ୟ ରଥରେ ବସି ଯୁଦ୍ଧ ସ୍ଥାନରୁ ପଳାଇଗଲେ । ଚିତ୍ରସେନ ଦୁର୍ଯ୍ୟୋଧନଙ୍କୁ ଦଉଡ଼ିରେ ବାନ୍ଧି ପକାଇଲେ । କୌରବ ରାଣୀମାନଙ୍କୁ ମଧ୍ୟ ବନ୍ଦୀ କରି ରଥରେ ଅଟକାଇ ରଖିଲେ ।

ଏସବୁ ଦେଖି ଦୁର୍ଯ୍ୟୋଧନଙ୍କ ମୁଣ୍ଡ ତଳକୁ ହୋଇଗଲା । ରାଣୀମାନେ ବିକଳରେ “ହେ ଯୁଧିଷ୍ଠିର, ହେ ଭୀମ ଆମ୍ଭମାନଙ୍କୁ ଏ ବିପଦରୁ ରକ୍ଷା କର” ବୋଲି ଚିତ୍କାର କରିବାରେ ଲାଗିଲେ ।

ଯୁଧିଷ୍ଠିର ନାରୀମାନଙ୍କର ଚିତ୍କାର ଶୁଣୁଥିବାବେଳେ ଦୁର୍ଯ୍ୟୋଧନଙ୍କ ମନ୍ତ୍ରୀ କୌରବମାନଙ୍କ ବିପତ୍ତି କଥା ବର୍ଣ୍ଣନା କରି ଶୀଘ୍ର ସେମାନଙ୍କୁ ଉଦ୍ଧାର କରିବା ପାଇଁ ପ୍ରାର୍ଥନା କଲେ । ଯୁଧିଷ୍ଠିର ଅସ୍ଥିର ହୋଇଉଠିଲେ । ନିଜ ଭାଇ ଓ କୌରବ ରାଣୀମାନଙ୍କୁ ଉଦ୍ଧାର କରିବା ପାଇଁ ଭାଇମାନଙ୍କୁ ଡାକିଲେ । ଭୀମ ତାଳିମାରି କହିଲେ, “ଚିତ୍ରସେନ ଗର୍ବୀ ଦୁର୍ଯ୍ୟୋଧନଙ୍କୁ ଉଚିତ ଦଣ୍ଡ ଦେଇଛନ୍ତି ।

ଦ୍ୱୈତବନ ଆସି ଆମକୁ ବିଭବ ଦେଖାଉଥିଲା । ଏବେ ଗନ୍ଧର୍ବଙ୍କ ଦ୍ୱାରା ରଥ ଖୁଣ୍ଟରେ ବନ୍ଧା ହୋଇଛି । ଗନ୍ଧର୍ବ ବନ୍ଧୁମାନଙ୍କୁ ଆମେ ଧନ୍ୟବାଦ ଦେବା ଉଚିତ । ରାଣୀମାନେ ମଧ ରଥରେ ବନ୍ଧା ହୋଇ ରଡ଼ି ଛାଡୁଛନ୍ତି । ବେଶ୍ ଭଲ ହୋଇଛି । ପାପର ଫଳ ଠିକ୍ ଫଳିଛି ।" ଯୁଧିଷ୍ଠିର କହିଲେ, "କୌରବମାନେ ଆମର ଭାଇ । ବାହାର ଲୋକ ତାଙ୍କୁ ଅପମାନ ଦେଲେ ଆମକୁ ଅପମାନ ହେବ ନାହିଁ କି ? ଆମ ବୋହୂମାନଙ୍କୁ ଅନ୍ୟ ଲୋକ ଅପମାନିତ କରୁଥିବା ବେଳେ ସେମାନଙ୍କ ମହତ୍ତ୍ୱ ରକ୍ଷା କରିବା ଆମର ଧର୍ମ । ବର୍ତ୍ତମାନ ଆନନ୍ଦିତ ହେବାର ସମୟ ନୁହେଁ । ବଂଶର ମାନ ରକ୍ଷା କରିବା ପାଇଁ ଆମେ ତୁରନ୍ତ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧ କରି କୁରୁବଂଶର ରକ୍ଷା କରିବା ଉଚିତ ।"

ଭୀମଙ୍କ ମନକୁ ଏସବୁ ପାଇଲା ନାହିଁ । ସେ କହିଲେ, "ଯେଉଁ ପାପୀ ଆମକୁ ଜଉଘରେ ଜୀଅନ୍ତା ପୋଡ଼ିଦେବା ପାଇଁ ଚେଷ୍ଟା କରିଥିଲା, ମୋତେ ବିଷଲଡ଼ୁ ଖୁଆଇ ହାତ ଗୋଡ଼ ବାନ୍ଧି ନଈରେ ଫିଙ୍ଗି ଦେଇଥିଲା, ତା ପାଇଁ ଆମେ ଦୁଃଖ କରିବୁ କାହିଁକି ? ଯେଉଁ ଦୁଃଶାସନ ଦ୍ରୌପଦୀଙ୍କ ବାଳ ଝିଙ୍କି ଆଣି ସଭାରେ ଅସଭ୍ୟ ବ୍ୟବହାର ଦେଖାଇଥିଲା, ସେ ଆମର କିପରି ଭାଇ ? ତା' ପ୍ରତି ଆମର ହୃଦୟ କାନ୍ଦି ଉଠିବାର କାରଣ କଅଣ ?"

ଏତିକିବେଳେ ଦୁର୍ଯ୍ୟୋଧନର ବିକଳ ଚିତ୍କାର ଶୁଣି ଯୁଧିଷ୍ଠିର ବିଚଳିତ ହୋଇଉଠିଲେ । ସେ ଭୀମଙ୍କ କଥାରେ କର୍ଣ୍ଣପାତ ନକରି ଶୀଘ୍ର କୌରବ ପରିବାରଙ୍କୁ ଉଦ୍ଧାର କରିବା ପାଇଁ ଭାଇମାନଙ୍କୁ ଆଦେଶ ଦେଲେ । ସଂଗେ ସଂଗେ ଭୀମ ଓ ଅର୍ଜୁନ ଯାଇ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ଚିତ୍ରସେନଙ୍କର ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିବାର ଆଦୌ ଇଚ୍ଛା ନଥିଲା । ହଠାତ୍ ଅର୍ଜୁନ ଦିଗ ବନ୍ଧନ ଶର ମାରି ଚିତ୍ରସେନଙ୍କ ରଥକୁ ଅଟକାଇ ଦେବାରୁ ସେ ଭୀଷଣ ରାଗିଗଲେ ଓ ଅର୍ଜୁନଙ୍କ ଉପରକୁ ବଛାବଛା ଶର ମାରିବାରେ ଲାଗିଲେ । କିନ୍ତୁ ସେ ସବୁ ଶରରେ ଅର୍ଜୁନଙ୍କର କଛି କ୍ଷତି ହେଲା ନାହିଁ । ଅର୍ଜୁନ ମହାକର୍ଷଣ ଶର ମାରିଦେବାରୁ ଚିତ୍ରସେନ ଆକାଶରୁ ତଳକୁ ଖସିବାକୁ ବାଧ୍ୟ ହେଲେ । ଅର୍ଜୁନ ସ୍ୱର୍ଗରେ ରହି ଅସ୍ତ୍ର ଶିକ୍ଷାରେ ପ୍ରବୀଣ ହୋଇ ଯାଇଥିଲେ । ଚିତ୍ରସେନ ଅର୍ଜୁନଙ୍କ ଅପୂର୍ବ ଯୁଦ୍ଧ କୌଶଳ ଦେଖି ଡରିଗଲେ । ଏତିକି ବେଳେ ଭୀମ କୌରବ ନାରୀମାନଙ୍କ ସହିତ ଦୁର୍ଯ୍ୟୋଧନଙ୍କୁ ବନ୍ଧନ ଫିଟାଇ ରଥରୁ ନେଇଆସିଲେ । ଚିତ୍ରସେନ ଯୁଦ୍ଧ ବନ୍ଦ କରି ଅର୍ଜୁନଙ୍କ ସହିତ ବନ୍ଧୁତା ସ୍ଥାପନ କଲେ । ଅର୍ଜୁନ ସ୍ୱର୍ଗରେ ଥିବାବେଳେ ଚିତ୍ରସେନଙ୍କଠାରୁ ସଙ୍ଗୀତ ବିଦ୍ୟା ଶିକ୍ଷା କରିଥିଲେ । ଏବେ ପରିଚୟ ପାଇ ସେ ଖୁବ୍ ଲଜ୍ଜିତ ହେଲେ । ଚିତ୍ରସେନ ଦୁର୍ଯ୍ୟୋଧନଙ୍କୁ ମୂର୍ଖ, ପାପୀ ଓ ଗର୍ବୀ ବୋଲି କହି ବହୁତ ଅପମାନ ଦେଲେ । ଦୁର୍ଯ୍ୟୋଧନଙ୍କ ପାଟିରୁ କଥା ବାହାରୁ ନଥାଏ । ସେ ମୁଣ୍ଡପୋତି ହସ୍ତିନା ଲେଉଟି ଆସିଲେ ।

ବାଟରେ ଆସିଲାବେଳେ ଦୁର୍ଯ୍ୟୋଧନ କହିଲେ, "ଯୁଦ୍ଧରେ ମରିଯାଇଥିଲେ କୋଟି ଗୁଣରେ ଭଲ ହୋଇଥାନ୍ତା । ଶତ୍ରୁମାନଙ୍କ ଦ୍ୱାରା ଜୀବନ ବଞ୍ଚାଇ ମୁଁ ହସ୍ତିନାରେ କାହାକୁ ଏ ନିର୍ଲଜ ମୁହଁ ଦେଖାଇବି ? ନା ଉପବାସ ରହି ମୁଁ ମରିବାକୁ ସ୍ଥିର କରିଛି । ସେ ଦୁଃଶାସନକୁ ପାଖକୁ ଡାକି କହିଲେ, "ଭାଇ ମୁଁ ଆଜିଠାରୁ ଏ ଜୀବନ ରଖିବି ନାହିଁ । ଆଜିଠାରୁ ତୁ ରାଜ ମୁକୁଟ ପିନ୍ଧି ହସ୍ତିନାର ରାଜଗାଦିରେ ବସିବୁ । ମୋ ଶତ୍ରୁମାନେ ମୋତେ ଉପହାସ କରିବେ, ଏକଥା ମୁଁ ଆଦୌ ସହି ପାରିବି ନାହିଁ ।"

ଦୁଃଶାସନ ତାଙ୍କ ପାଦ ଧରି କହିଲେ, "ଭାଇ ମୁଁ ରାଜା ହୋଇ ପାରିବି ନାହିଁ ।" ଏତିକି କହି ସେ ଭୋ ଭୋ ହୋଇ କାନ୍ଦିଉଠିଲେ । କର୍ଣ୍ଣ ଦୁଇ ଭାଇଙ୍କ ଅବସ୍ଥା ଦେଖି ଦୁଃଖରେ ମୁଣ୍ଡ ତଳକୁ କରିଦେଲେ । କିଛି ସମୟ ଚିନ୍ତା କରିବା ପରେ କହିଲେ, "କୁରୁବଂଶକୁ ଏ ପ୍ରକାର ଦୁର୍ବଳତା ଶୋଭାପାଏ ନାହିଁ । ପାଣ୍ଡବମାନେ ଏତେ ଦୁଃଖ ପାଇ ଦିନେ ହେଲେ ଉପବାସ କରି ନାହାନ୍ତି ?"

ଏତିକି ବେଳେ ଶକୁନି କହିଲେ, "ଯଦି ତୁମେ ଜୀବନ ରଖିବ ନାହିଁ ବୋଲି ଭାବିଥିଲ, ତେବେ ପାଣ୍ଡବମାନଙ୍କର ରାଜ୍ୟ

ଆଣିଲ କାହିଁକି ? ଯଦି ତୁମେ ଅନୁତାପ କରୁଥାଅ, ତେବେ ପାଣ୍ଡବମାନଙ୍କୁ ଭାଇ ବୋଲି ଡାକିଆଣ ଓ ତାଙ୍କ ରାଜ୍ୟ ତାଙ୍କୁ ଫେରାଇ ଦିଅ । ବେଶ୍ ଭଲ ହେବ । ସେମାନେ ତୁମର ଆଉ କିଛି ଅନିଷ୍ଟ କରିବାର ଭୟ ରହିବ ନାହିଁ ।"

ଶକୁନିଙ୍କ କଥା ଶୁଣି ଦୁର୍ଯ୍ୟୋଧନଙ୍କ ପାପବୁଦ୍ଧି ପୁଣି ଜାଗି ଉଠିଲା । "ବରଂ ହଜାର ଥର ପରାସ୍ତ ହେବି ପଛେ ପାଣ୍ଡବମାନଙ୍କୁ କଦାପି ରାଜ୍ୟ ଫେରାଇବା କଥା ହୋଇପାରିବ ନାହିଁ । ମୁଁ ନିଶ୍ଚୟ ପାଣ୍ଡବମାନଙ୍କୁ ଜୟ କରିବି ।"

କର୍ଣ୍ଣ କହିଲେ, "ଜଣେ ରାଜାଙ୍କୁ ଏପରି କଥା ଶୋଭାପାଏ ନାହିଁ । ଉପବାସ କରି ମରିଯିବା ଦ୍ୱାରା କୌଣସି କଥାର ସମାଧାନ ହୁଏ ନାହିଁ । ବଞ୍ଚିରହି କିଛି କରି ଦେଖାଇ ଦେବା ହିଁ ପୁରୁଷ ପଣିଆ । ଅପେକ୍ଷା କର ।"

କର୍ଣ୍ଣ କହିଲେ, "ତେର ବର୍ଷ ବନବାସ ପୂର୍ଣ୍ଣ ହୋଇଯାଉ । ଖଣ୍ଡା ଛୁଇଁ ଶପଥ କରୁଛି ମୁଁ ଯୁଦ୍ଧରେ ଅର୍ଜୁନଙ୍କୁ ନିଶ୍ଚୟ ହତ୍ୟା କରିବି । ତୁମେ ନିଶ୍ଚିନ୍ତ ମନରେ ରାଜଧାନୀକୁ ଚାଲ ।" ଶକୁନୀ, ଦୁଃଶାସନ ଓ ଦୁର୍ଯ୍ୟୋଧନ କର୍ଣ୍ଣଙ୍କ ସହିତ ହସ୍ତିନା ଫେରିଆସିଲେ ।

## ଦୁର୍ଯ୍ୟୋଧନଙ୍କ ବୈଷ୍ଣବ ଯଜ୍ଞ

ପାଣ୍ଡବମାନେ ଅତି ଦୁଃଖରେ ଦିନ କାଟୁଥିବାବେଳେ ଦୁର୍ଯ୍ୟୋଧନ ଆଡ଼ମ୍ବରପୂର୍ଣ୍ଣ ଏକ ରାଜସୂୟ ଯଜ୍ଞର ଆୟୋଜନ କଲେ । ବ୍ରାହ୍ମଣ ଓ ପଣ୍ଡିତମାନେ କହିଲେ, "ଧୃତରାଷ୍ଟ୍ର ଓ ଯୁଧିଷ୍ଠିର ଜୀବିତଥିବା ପର୍ଯ୍ୟନ୍ତ ତୁମେ ଏ ପ୍ରକାର ଯଜ୍ଞ କରିବା ବିଧି ସଂଗତ ହେବ ନାହିଁ । ବରଂ ରାଜସୂୟ ଯଜ୍ଞ ପରିବର୍ତ୍ତେ ତୁମେ ବୈଷ୍ଣବ ଯଜ୍ଞ କରିବା ଠିକ୍‌ହେବ ।" ଦୁର୍ଯ୍ୟୋଧନ ପଣ୍ଡିତମାନଙ୍କ ପରାମର୍ଶ ଅନୁସାରେ ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ବୈଷ୍ଣବ ଯଜ୍ଞ କରାଇଲେ ।

ଯଜ୍ଞ ସରିଲା । ନଗରବାସୀମାନେ କୁହାକୁହି ହେଲେ, "ମହାରାଜା ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ତୁଳନାରେ ଏ ଯଜ୍ଞ କିଛି ନୁହେଁ ।" ଅନ୍ୟପକ୍ଷରେ ଦୁର୍ଯ୍ୟୋଧନଙ୍କ ବନ୍ଧୁ ଓ ତୋଷାମଦକାରୀମାନେ କହିଲେ, "ଯଯାତି, ମାନ୍ଧାତା ଓ ଭରତ ଆଦି ମହାରାଜାମାନେ କରିଥିବା ଯଜ୍ଞ କଥା ଆମେ ଶୁଣିଛୁ । ଆପଣଙ୍କ ଏ ଯଜ୍ଞ ତାଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ ।" କର୍ଣ୍ଣ କହିଲେ, "ବନ୍ଧୁ ଦୁର୍ଯ୍ୟୋଧନ, ପ୍ରସ୍ତୁତ ଥାଅ । ପାଣ୍ଡବମାନେ ଗୋଟି ଗୋଟି ହୋଇ ଯୁଦ୍ଧରେ ମରିବାପରେ ତୁମେ ରାଜସୂୟ ଯଜ୍ଞ ନିଶ୍ଚୟ କରିବ । ଅର୍ଜୁନଙ୍କୁ ହତ୍ୟା କରିବା ଦାୟିତ୍ୱ ମୋର । ପ୍ରତିଜ୍ଞା କରୁଛି, ଅର୍ଜୁନଙ୍କୁ ହତ୍ୟା ନ କରିବା ପର୍ଯ୍ୟନ୍ତ ମୁଁ ମଦ୍ୟ ବା ମାଂସ ସ୍ପର୍ଶ ମଧ୍ୟ କରିବି ନାହିଁ ।"

କୌରବମାନେ କର୍ଣ୍ଣଙ୍କ ପ୍ରତିଜ୍ଞା ଶୁଣି ଆନନ୍ଦରେ ନାଚି ଉଠିଲେ । ସେମାନେ ଏପରି କଥା ଭାଷା କଲେ ସତେ ଯେପରି ପାଣ୍ଡବମାନେ ମରିସାରିଲେଣି ।

କର୍ଣ୍ଣ ଜଣେ ଅସାମାନ୍ୟ ବୀର । ଜନ୍ମ ସମୟରୁ ତାଙ୍କୁ ସ୍ୱର୍ଗୀୟ କବଚ କୁଣ୍ଡଳ ମିଳିଥିବାରୁ ସେ ଅଜେୟ । ଏହିପରି ଜଣେ ଅଦ୍ୱିତୀୟ ବୀରପୁରୁଷଙ୍କ ପ୍ରତିଜ୍ଞା ଶୁଣି ଯୁଧିଷ୍ଠିର ଘୋର ଚିନ୍ତାମଗ୍ନ ହୋଇ ପଡ଼ିଲେ । ତାଙ୍କୁ କୌଣସି କଥା ଭଲ ଲାଗିଲା ନାହିଁ ।

ଦିନେ ଯୁଧିଷ୍ଠିର ସ୍ୱପ୍ନରେ ଦେଖିଲେ, ଜଙ୍ଗଲର ପଶୁମାନେ ଏକତ୍ରିତ ହୋଇ ଯୁଧିଷ୍ଠିରଙ୍କୁ କହିଲେ, "ମହରାଜ, ଦୈନିକ ବହୁ ସଂଖ୍ୟକ ପଶୁହତ୍ୟା କରି ଆପଣମାନେ ଅଳ୍ପ ଦିନରେ ଏ ବନକୁ ପଶୁ-ଶୂନ୍ୟ କରି ପକାଇବେ । ପ୍ରାର୍ଥନା କରୁଛୁ ଆପଣମାନେ ଅନ୍ୟ ବନକୁ ଗମନ କଲେ ଆମ୍ଭମାନଙ୍କ ବଂଶର ରକ୍ଷା ହୋଇପାରନ୍ତା । ଦୟାକରି ଆମ୍ଭମାନଙ୍କର ବିନୀତ ପ୍ରାର୍ଥନା ଗ୍ରହଣ କରନ୍ତୁ ।"

ଯୁଧିଷ୍ଠିରଙ୍କ ହୃଦୟ ଦୟାରେ ତରିଳିଗଲା । ସେ ଭାଇମାନଙ୍କ ସହିତ ଅନ୍ୟ ଏକ ଅରଣ୍ୟକୁ ଚାଲିଗଲେ ।

ପୂର୍ବ ପୁରୁଷମାନେ ବଣ୍ୟ ଜୀବଙ୍କୁ ସୁରକ୍ଷା ପାଇଁ ସର୍ବଦା ଚିନ୍ତା କରୁଥିଲେ । ପଶୁମାନଙ୍କ ରକ୍ଷାନିମିତ୍ତ ଉପଯୁକ୍ତ ଧ୍ୟାନ ଦେବାପାଇଁ ଏପରି ସ୍ୱପ୍ନ ଦେଖିଥିଲେ ବୋଲି ଯୁଧିଷ୍ଠିରଙ୍କ ଧାରଣା ହେଲା ।

## କୃଷ୍ଣଙ୍କ କ୍ଷୁଧା

ଦିନେ ମହର୍ଷି ଦୁର୍ବାସା ତାଙ୍କର ଦଶହଜାର ଶିଷ୍ୟଙ୍କୁ ସଙ୍ଗରେ ନେଇ ଦୁର୍ଯ୍ୟୋଧନଙ୍କ ନିକଟରେ ପହଞ୍ଚିଲେ । ରାଗୀ ଦୁର୍ବାସାଙ୍କ କଥା ଉତ୍ତମ ରୂପେ ଜାଣିଥିଲେ । ତେଣୁ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଯେତେ ଯାହା କରାଯାଇପାରେ ତାହା କରିବାରେ ଲାଗି ପଡ଼ିଲେ । ଦୁର୍ବାସା ଦୁର୍ଯ୍ୟୋଧନଙ୍କ ଅତିଥି ଚର୍ଚ୍ଚାରେ ଅତ୍ୟନ୍ତ ଖୁସି ହୋଇ କହିଲେ, "ମନ ଇଚ୍ଛା ବର ମାଗି ନିଅ ।"

ଦୁର୍ଯ୍ୟୋଧନଙ୍କ ମନ ଖୁସି ହୋଇଗଲା । ଋଷିଙ୍କ ଦ୍ୱାରା ପାଣ୍ଡବମାନଙ୍କୁ ଭସ୍ମ କରିଦେବା ପାଇଁ ସେ ମନେ ମନେ ଉପାୟ ଚିନ୍ତା କରି କହିଲେ, "ମୋର ଭାଇ ପାଣ୍ଡବମାନେ ଏବେ ବଣରେ ରହୁଛନ୍ତି । ଏଠାରେ ଥିଲେ ଆପଣ ଓ ଆପଣଙ୍କ ଶିଷ୍ୟମାନଙ୍କର ସେବାକରି ଆନନ୍ଦିତ ହୋଇଥାନ୍ତେ । ଦୟା କରି ଦିନେ ସେମାନଙ୍କ ନିକଟକୁ ଯାଆନ୍ତୁ । ଆପଣଙ୍କୁ ଚର୍ଚ୍ଚାକରି ସେମାନେ ମଧ୍ୟ ମୋପରି ଆନନ୍ଦିତ ହେବେ । ଆପଣ ଏପରି ସମୟରେ ସେମାନଙ୍କ ନିକଟରେ ପହଞ୍ଚିବେ, ଯେତେବେଳକୁ ସମସ୍ତେ ଖାଇ ସାରିଥିବେ । ଅଜଣା ଅତିଥି ଆସିବା ପାଇଁ କୌଣସି ଖାଦ୍ୟ ମଧ୍ୟ ନଥିବ । ଏହି ବର ମୋତେ ପ୍ରଦାନ କରନ୍ତୁ ।"

ସବୁବେଳେ ମନୁଷ୍ୟଙ୍କୁ ପରୀକ୍ଷା କରିବା ଦୁର୍ବାସାଙ୍କର ପ୍ରକୃତି । ସେ ଦୁର୍ଯ୍ୟୋଧନଙ୍କ କଥାରେ ରାଜିହୋଇ ଚାଲିଗଲେ ।

ଦୁର୍ଯ୍ୟୋଧନ ଭାବିଲେ, "ବଣରେ ଖାଇବାକୁ ପାଉନଥିବା ପାଣ୍ଡବମାନେ ଦୁର୍ବାସା ଓ ତାଙ୍କ ଦଶହଜାର ଶିଷ୍ୟଙ୍କ ଉପଯୁକ୍ତ ଚର୍ଚ୍ଚା ତ କରି ପାରିବେ ନାହିଁ; ବରଂ ଋଷିଙ୍କ ଭୟଙ୍କର ଅଭିଶାପର ଶିକାର ହେବେ । ଏପରି ହେଲେ ମୁଁ ଅତ୍ୟନ୍ତ ଆନନ୍ଦିତ ହେବି । ମୋର ଅନ୍ୟ ବର ଆବଶ୍ୟକ ନଥିଲା ।"

ଦୁର୍ଯ୍ୟୋଧନ କହିବା ଅନୁସାରେ ଦୁର୍ବାସା ତାଙ୍କର ଶିଷ୍ୟମାନଙ୍କ ସହିତ ପାଣ୍ଡବମାନଙ୍କ ନିକଟରେ ପହଞ୍ଚିଗଲେ । ସେତେବେଳେକୁ ସମସ୍ତେ ଖାଇସାରି ବିଶ୍ରାମ କରୁଥିଲେ । ମହର୍ଷିଙ୍କୁ ଦେଖି ପାଣ୍ଡବମାନେ ଉପଯୁକ୍ତ ଅଭ୍ୟର୍ଥନା ସହ ସମସ୍ତଙ୍କୁ ପାଛୋଟି ନେଲେ । ଶୀଘ୍ର ଖାଦ୍ୟ ପ୍ରସ୍ତୁତ କରିବାକୁ କହି ଋଷି ଶିଷ୍ୟମାନଙ୍କୁ ନେଇ ସ୍ନାନ କରିବାକୁ ଚାଲିଗଲେ । ହଠାତ୍ ଦଶହଜାର ଲୋକଙ୍କ ପାଇଁ ଖାଦ୍ୟ ପ୍ରସ୍ତୁତ କରିବା ସହଜ ନୁହେଁ । ବିଶେଷ କରି ଦ୍ରୌପଦୀ ଭୋଜନ କରି ସାରିବା ପରେ ଅକ୍ଷୟ ପାତ୍ର ଶୂନ୍ୟ ହୋଇଯାଇଛି । କି ଉପାୟରେ ଋଷିଙ୍କୁ ସନ୍ତୁଷ୍ଟ କରାଯିବ, କେହି ଚିନ୍ତା କରିପାରିଲେ ନାହିଁ । ଦ୍ରୌପଦୀ ଅନ୍ୟ ଉପାୟ ନ ଦେଖି ବିପଦର ବନ୍ଧୁ, ଅନାଥର ନାଥ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରି କହିଲେ, "ହେ ବିପଦ ବାନ୍ଧବ, ଆପଣ ମୋର ଲଜ୍ଜା ନିବାରଣ କରିଛନ୍ତି । ଏବେ ମୋ ସ୍ୱାମୀଙ୍କର ମାନ ରକ୍ଷାକରି ଏ ସଂକଟରୁ ଉଦ୍ଧାର କରନ୍ତୁ । ଆପଣଙ୍କ ବ୍ୟତୀତ ଆମର ଅନ୍ୟ ଭରସା ନାହିଁ ।"

ବାରମ୍ବାର ଦ୍ରୌପଦୀଙ୍କ ଆକୁଳ ପ୍ରାର୍ଥନା ଶ୍ରୀକୃଷ୍ଣଙ୍କୁ ଅଥୟ କରି ପକାଇଲା । ସେ ଦ୍ୱୈତବନରେ ପହଞ୍ଚିଗଲେ । ପାଣ୍ଡବମାନେ ଉପସ୍ଥିତ ବିପଦରୁ ରକ୍ଷା ପାଇବା ପାଇଁ କୃଷ୍ଣଙ୍କୁ ପ୍ରାର୍ଥନା କଲେ । ମାତ୍ର ସେ କିଛି ନଶୁଣିଲା ପରି ଭାବ ଦେଖାଇ କହିଲେ, "ଦ୍ରୌପଦୀ, ଭାରି ଭୋକ । ପ୍ରଥମେ ମୋତେ କିଛି ଖାଇବାକୁ ଦିଅ । ତା'ପରେ ମୁଁ ତୁମ କଥା ଶୁଣିବି ।"

ଦ୍ରୌପଦୀଙ୍କ ଚିନ୍ତା ଆହୁରି ବଢ଼ିଗଲା । ସେ ହାତ ଯୋଡ଼ି କହିଲେ, "ପ୍ରଭୁ, ମୁଁ ଖାଇ ସାରିଛି । ତେଣୁ ଆଜି ଦିନକ ପାଇଁ ଅକ୍ଷୟ ପାତ୍ରରୁ ଆଉ ଖାଦ୍ୟ ବାହାରିବ ନାହିଁ । ବର୍ତ୍ତମାନ ଆପଣଙ୍କୁ କଅଣ ଦେବି ?"

ଶ୍ରୀକୃଷ୍ଣ ଗମ୍ଭୀର ହୋଇ କହିଲେ, "ଏ ଥଟ୍ଟା ଖେଳିବାର ବେଳ ନୁହେଁ । ଭୋକରେ ମୋ ପେଟ ଜଳୁଛି । ଶୀଘ୍ର କିଛି ଖାଇବାକୁ ଆଣ ।"

ଦ୍ରୌପଦୀ ଡରି ଡରି କହିଲେ, "ମୋତେ ବିଶ୍ୱାସ କରନ୍ତୁ ପ୍ରଭୁ, ମୁଁ ଅକ୍ଷୟ ପାତ୍ରକୁ ସଫା କରି ରଖି ଦେଇଛି । ଖାଦ୍ୟ ଆସିବ କେଉଁଠୁ ?"

ଶ୍ରୀକୃଷ୍ଣ କହିଲେ, "ତଥାପି ମୋର ବିଶ୍ୱାସ ହେଉ ନାହିଁ । ଅକ୍ଷୟ ପାତ୍ରକୁ ଶୀଘ୍ର ମୋତେ ଦେଖାଅ ।"

ବାଧ୍ୟ ହୋଇ ଦ୍ରୌପଦୀ ଅକ୍ଷୟ ପାତ୍ରଟି କୃଷ୍ଣଙ୍କ ହାତକୁ ବଢ଼ାଇଦେଲେ । ପାତ୍ରର ଧାରରେ ଏତେ ଟିକିଏ ଅନ୍ନ ଓ ଅତି ଅଳ୍ପ ଶାଗ ଲାଗିରହିଥିଲା । ଶ୍ରୀକୃଷ୍ଣ ଓଁ ଶ୍ରୀହରି କହି ଅନ୍ନ କଣିକାଟି ପାଟିକୁ ପକାଇ ଦେଲେ । ପାତ୍ରଟିକୁ ଉତ୍ତମ ରୂପେ ପରିଷ୍କାର କରିପାରି ନଥିବାରୁ ଦ୍ରୌପଦୀ ଲଜ୍ଜିତ ହେଲେ । ଏଥର କୃଷ୍ଣ ଭୀମଙ୍କୁ କହିଲେ, "ଯାଅ, ଋଷି ଓ ଶିଷ୍ୟମାନଙ୍କୁ ନଦୀ କୂଳରୁ ଡାକି ଆଣି ଭୋଜନ ପ୍ରସ୍ତୁତ ବୋଲି ଜଣାଇ ଦେବ ।" ଭୀମ କିଛି ବୁଝି ପାରିଲେ ନାହିଁ । କେବଳ ଶ୍ରୀକୃଷ୍ଣ କହୁଥିବାରୁ ସେ ବାଧ୍ୟ ହୋଇ ଗଲେ । ମନରେ ନାନା ଆଶଙ୍କା ତାଙ୍କୁ ବିଚଳିତ କରି ପକାଉଥାଏ ।

ଦୁର୍ବାସା ଶିଷ୍ୟମାନଙ୍କ ସହିତ ସ୍ନାନ କରୁଥିବା ବେଳେ ହଠାତ୍ ସମସ୍ତଙ୍କ ପେଟ ଖାଦ୍ୟରେ ପୂର୍ଣ୍ଣ ହୋଇଗଲା ପରି ଲାଗିଲା । ଦୁର୍ବାସା ଶିଷ୍ୟମାନଙ୍କୁ କହିଲେ, "ଆମେ ଖାଦ୍ୟ ପ୍ରସ୍ତୁତ କରିବାକୁ କହି ଆସିଥିଲେ । ପାଣ୍ଡବମାନେ ଆମ ବାଟକୁ ଚାହିଁ ବସିଥିବେ । ଏବେ ପେଟ ଏପରି ପୂର୍ଣ୍ଣ ହୋଇ ଗଲାଣି ଯେ ମୁଠାଏ ହେଲେ ଅନ୍ନ ଭିତରକୁ ଯାଇପାରିବ ନାହିଁ । ଆମ ଯୋଗୁଁ ପାଣ୍ଡବମାନଙ୍କର ଅନେକ ଖାଦ୍ୟ ନଷ୍ଟ ହେଲା । ଆମେ ଯାଇ ଯୁଧିଷ୍ଠିରଙ୍କୁ କଅଣ କହିବା ? ନା, ଚାଲ, ଏଠାରୁ ପଳାଇ ଯିବା ।" ଶିଷ୍ୟମାନଙ୍କ ପେଟ ପୂରି ଫାଟି ଗଲା ପରି ଲାଗୁଥାଏ । ସେମାନେ ସମସ୍ତେ ଦୁର୍ବାସାଙ୍କ ସହିତ ଚାଲିଗଲେ ।

ଭୀମ ନଦୀ କୂଳରେ ଦୁର୍ବାସା ଓ ତାଙ୍କ ଶିଷ୍ୟମାନଙ୍କୁ ଦେଖିବାକୁ ପାଇଲେ ନାହିଁ । ପାଖରେ ଥିବା ଅନ୍ୟ ଋଷିଙ୍କଠାରୁ ଦୁର୍ବାସା ଓ ତାଙ୍କ ଶିଷ୍ୟମାନେ ପଳାଇ ଯାଇଥିବା ଶୁଣି ଭୀମ ଫେରିଆସିଲେ । ପାଣ୍ଡବମାନେ ଏଥିରୁ କିଛି ବୁଝି ନପାରି କୃଷ୍ଣଙ୍କ ଆଡ଼କୁ ଚାହିଁ ରହିଲେ । କୃଷ୍ଣ ଅଳ୍ପ ହସି କହିଲେ, "-ଦ୍ରୌପଦୀଙ୍କ ପ୍ରାର୍ଥନା ଶୁଣି ମୁଁ ଆସିଛି । ସବୁ କଥା ତ ଶୁଣିଥିଲି । ଅକ୍ଷୟ ପାତ୍ରରୁ ଅନ୍ନ କଣିକାଟି ମୁଁ ଖାଇଥିବା ସମସ୍ତେ ଦେଖିଛ । ସେତିକିରେ ଦୁର୍ବାସା ଓ ତାଙ୍କ ଶିଷ୍ୟମାନଙ୍କ ପେଟ ଭରିଗଲା । ଏଠାକୁ ଆସି ସେମାନେ ଆଉ କଅଣ ଖାଇ ଥାଆନ୍ତେ ? ବରଂ ଆପଣଙ୍କର ବହୁ ଖାଦ୍ୟ ନଷ୍ଟ କରିଥିବାରୁ ଲଜ୍ଜିତ ହୋଇଥାନ୍ତେ । ତେଣୁ ପଳାଇ ଗଲେ । ବର୍ତ୍ତମାନ ଆଉ କୌଣସି ବିପଦ ନାହିଁ । ଦୁଷ୍ଟବୁଦ୍ଧି ଦୁର୍ଯ୍ୟୋଧନର ମନ୍ଦ ଉଦ୍ଦେଶ୍ୟ ପୂରଣ ହୋଇପାରିଲା ନାହିଁ ।"

ଶ୍ରୀକୃଷ୍ଣ ଦ୍ୱାରିକା ଫେରିଗଲେ ।

## ଜୟଦ୍ରଥର ଦ୍ରୌପଦୀ ହରଣ

ଜୟଦ୍ରଥ ସିନ୍ଧୁ ଦେଶର ରାଜା । ସେ ମହାରାଜ ଧୃତରାଷ୍ଟ୍ରଙ୍କର ଏକମାତ୍ର କନ୍ୟା ଦୁଃଶୀଳାକୁ ବିବାହ କରିଥିଲେ । ଦିନେ ସେ ମୃଗୟା ଉଦ୍ଦେଶ୍ୟରେ ଯାଇ ପାଣ୍ଡବମାନେ ରହୁଥିବା ବଣରେ ପହଞ୍ଚିଲେ । ସେତେବେଳକୁ ଦ୍ରୌପଦୀ ଏକୁଟିଆ ଆଶ୍ରମରେ ଥାଆନ୍ତି । ପାଣ୍ଡବମାନେ ଶିକାର କରିବା ପାଇଁ ବଣକୁ ଯାଇଥାନ୍ତି । ଆଶ୍ରମ ଦୁଆରେ ବସିଥିବା ଅପୂର୍ବ ସୁନ୍ଦରୀ ସ୍ତ୍ରୀ ଲୋକଟି ଉପରେ ଜୟଦ୍ରଥଙ୍କ ଦୃଷ୍ଟି ପଡ଼ିବା ମାତ୍ରେ ସେ ଆଶ୍ଚର୍ଯ୍ୟ ହୋଇଗଲେ । ସ୍ତ୍ରୀ ଲୋକଟିର ପରିଚୟ ଜାଣିବାପାଇଁ ଜଣେ ଲୋକ ପଠାଇଲେ ।

ଲୋକଟି ପଚାରିବାରୁ ଦ୍ରୌପଦୀ କହିଲେ, "ଆଶ୍ରମରେ ମୋ ବ୍ୟତୀତ ଆଉ କେହି ନଥିବାରୁ ମୁଁ ଉତ୍ତର ଦେବାକୁ ବାଧ୍ୟ ହେଉଛି । ନ ହେଲେ ଜଣେ ଅଜଣା ପୁରୁଷ ଲୋକ ସହିତ କଥା ଭାଷା କରିନଥାନ୍ତି । ମୁଁ ଦ୍ରୁପଦ ରାଜାଙ୍କ କନ୍ୟା ଓ ପାଣ୍ଡବମାନଙ୍କ ପତ୍ନୀ ଦ୍ରୌପଦୀ । ମୋର ସ୍ୱାମୀମାନେ ଶିକାର କରିବା ପାଇଁ ଅରଣ୍ୟ ମଧ୍ୟକୁ ଯାଇଛନ୍ତି ।" ଏତିକି କହି ଦ୍ରୌପଦୀ ଆଶ୍ରମ ଭିତରକୁ ଚାଲିଗଲେ ।

ଦ୍ରୌପଦୀଙ୍କ ପରିଚୟ ପାଇ ଜୟଦ୍ରଥ ତାଙ୍କ ନିକଟକୁ ଗଲେ ଓ କୁଶଳ ପ୍ରଶ୍ନ କଲେ । ଦ୍ରୌପଦୀ "ସମସ୍ତ କୁଶଳ" କହି ଆସନରେ ବସାଇଲେ । ଜୟଦ୍ରଥଙ୍କ ଉଦ୍ଦେଶ୍ୟ ମନ୍ଦ । ସେ ଦ୍ରୌପଦୀଙ୍କୁ ଏକୁଟିଆ ଦେଖି କହିଲେ, "ପାଣ୍ଡବମାନେ ରାଜ୍ୟ ହରାଇଲେ । ଏବେ ବଣକୁ ବଣ ବୁଲିବାରେ ଲାଗିଛନ୍ତି । ତାଙ୍କଠାରୁ ତୁମେ ଆଉ କି ସୁଖ ଆଶା କରୁଛ ? ଜାଣି ଜାଣି ତୁମର ଏ ସୁନ୍ଦର ରୂପକୁ ନଷ୍ଟ କରୁଛ କାହିଁକି ? ଆଗରେ ମୋର ରଥ ଥୁଆ ହୋଇଛି । ଆସ, ମୋତେ ବିବାହ କରି ସିନ୍ଧୁ ରାଜ୍ୟର ପାଟରାଣୀ ହେବାର ସୌଭାଗ୍ୟ ଲାଭ କର ।"

ଦ୍ରୌପଦୀଙ୍କ ଦେହରେ ନିଆଁ ଲାଗିଗଲା । ସେ କହିଲେ, "ନିର୍ଲ୍ଲଜ, ଏପରି ପାପକଥା କହିବା ପୂର୍ବରୁ ତୋ ଜିଭ ଛିଣ୍ଡି ପଡ଼ିଲା ନାହିଁ କାହିଁକି ? ତୁ କଅଣ ମୋ ସ୍ୱାମୀମାନଙ୍କ ବୀରତ୍ୱ ବିଷୟରେ କିଛି ହେଲେ ଜାଣି ନାହୁଁ ମୂର୍ଖ ? କିମ୍ବା ମୃତ୍ୟୁ ତୋତେ ନିମନ୍ତ୍ରଣ କରିଥିବାରୁ ତୋ ତୁଣ୍ଡରୁ ଏପରି କଥା ବାହାରୁଛି ? ଜାଣିଶୁଣି ନାଗ ସାପ ଗାତରେ ହାତ ପୂରାଇବାର ଦୁଃସାହସ କରୁଛୁ କାହିଁକି ? ଶୀଘ୍ର ମୋ ଆଗରୁ ଚାଲିଯା' କହୁଛି ।"

ଜୟଦ୍ରଥ କହିଲେ, "ତୁମ ସ୍ୱାମୀମାନଙ୍କ ବୀରତ୍ୱ ପଶା ଖେଳରୁ ବେଶ୍ ଜଣା ପଡ଼ିଯାଇଛି । ବୃଥାରେ ବଡ଼ ବଡ଼ କଥା ନକହି ଶୀଘ୍ର ରଥରେ ବସ । ନିଜ ଇଚ୍ଛାରେ ନଆସିଲେ ଟେକି ନେଇ ରଥରେ ବସାଇଦେବାକୁ ମୋତେ ବେଶୀ ସମୟ ଲାଗିବ ନାହିଁ ।"

ଦ୍ରୌପଦୀ କହିଲେ, "ମୋତେ ସାଧାରଣ ସ୍ତ୍ରୀ ଲୋକ ବିଚାରି ଯଦି ତୁ କିଛି ଅନ୍ୟାୟ କରୁ ତେବେ ତା'ର ଫଳ ହାତେ ହାତେ ପାଇଯିବୁ । ମନେରଖ ମୋର ପରାକ୍ରମୀ ସ୍ୱାମୀମାନଙ୍କ ସହିତ ସ୍ୱୟଂ ଶ୍ରୀକୃଷ୍ଣ ମୋର ରକ୍ଷାକର୍ତ୍ତା । ତୋ ପରି ନରକର କୀଟ ମୋର କିଛି ହେଲେ କ୍ଷତି କରିପାରିବ ନାହିଁ ।"

ଦ୍ରୌପଦୀଙ୍କ କଥାକୁ କାନ ନଦେଇ ଜୟଦ୍ରଥ ତାଙ୍କୁ ରଥକୁ ଟାଣି ନେଇଗଲା । ବହୁ ଚେଷ୍ଟାକରି ମଧ୍ୟ ଦ୍ରୌପଦୀ କିଛି କରିପାରିଲେ ନାହିଁ । ତାଙ୍କ ଚିତ୍କାର ଶୁଣି ପୁରୋହିତ ଧୌମ୍ୟ ପାଟି କରି କହିଲେ, "ଏ ପାପିଷ୍ଠର ମୃତ୍ୟୁ ନିକଟ ହୋଇଗଲା ।" ସେ ଜୟଦ୍ରଥର ରଥ ପଛେ ପଛେ ଧାଇଁବାରେ ଲାଗିଲେ ।

ଏହି ସମୟରେ ପାଣ୍ଡବମାନେ ବଣରୁ ଫେରୁଥିବା ଦେଖି ଧୌମ୍ୟ ସେମାନଙ୍କୁ ସମସ୍ତ ଘଟଣା ଜଣାଇଦେଲେ । ଭୀମ ଓ ଅର୍ଜୁନ ପବନ ବେଗରେ ଯାଇ ଜୟଦ୍ରଥକୁ ଅଟକାଇ ଦେଲେ । ଅଳ୍ପ ସମୟ ଯୁଦ୍ଧ ପରେ ଜୟଦ୍ରଥଙ୍କ ସାଥୀରେ ଆସିଥିବା ସୈନ୍ୟମାନେ ମରି ତଳେ ପଡ଼ିଗଲେ । ଅର୍ଜୁନ ହାତରୁ ରକ୍ଷା ପାଇବାର ଉପାୟ ନଦେଖି ଜୟଦ୍ରଥ ବରଡ଼ାପତ୍ରପରି ଥରିବାକୁ ଲାଗିଲା । ଜୀବନ ବଞ୍ଚାଇବା ପାଇଁ ସେ ଦ୍ରୌପଦୀଙ୍କୁ ଓହ୍ଲାଇ ଦେଇ ପଳାଇଗଲା ।

ଭୀମ ଯୁଧିଷ୍ଠିରଙ୍କୁ କହିଲେ, "ଭାଇ, ଆପଣ ଦ୍ରୌପଦୀଙ୍କୁ ନେଇ ଆଶ୍ରମକୁ ଫେରିଯାଆନ୍ତୁ । ମୁଁ ଜୟଦ୍ରଥକୁ ହତ୍ୟା କରି ଶୀଘ୍ର ଫେରିଆସିବି ।"

ଯୁଧିଷ୍ଠିର କହିଲେ, "ଜୟଦ୍ରଥ ଘୋର ଅନ୍ୟାୟ କରିଛି, ଏଥିରେ ସନ୍ଦେହ ନାହିଁ । ମାତ୍ର ଦୁଃଶୀଳା ପରା ଆମର ଭଉଣୀ । ଜୟଦ୍ରଥର ମୃତ୍ୟୁ ପରେ ଆମ ଭଉଣୀର ଅବସ୍ଥା କଅଣ ହେବ ? ମାତା ଗାନ୍ଧାରୀ ଏ ଦୁଃଖ ସହି ପାରିବେ ତ ? ଜୟଦ୍ରଥକୁ ଅନ୍ୟ ଦଣ୍ଡ ଦିଅ; ମାତ୍ର ହତ୍ୟା କର ନାହିଁ । ଦ୍ରୌପଦୀ ରାଗରେ ଥରି ଉଠି କହିଲେ, "ନାଁ ନାଁ ସେ ଅଧମ ପ୍ରତି ଦୟା ଦେଖାଇବାର କିଛି କାରଣ ନାହିଁ । ମୃତ୍ୟୁ ହିଁ ତା'ର ଉପଯୁକ୍ତ ଶାସ୍ତି ।"

ଜୟଦ୍ରଥ ପ୍ରାଣ ବିକଳରେ ପଳାଉଥିବା ବେଳେ ଭୀମ ତାକୁ ମାଡ଼ି ବସିଲେ । ମାଡ଼ ଦେଇ ତାଙ୍କୁ ଅଚେତାପରି କରିଦେବା ପରେ ମୁଣ୍ଡ ବାଳକୁ ଥାକ ଥାକ କରି କାଟି ବିକୃତ କରି ପକାଇଲେ । ଶେଷକୁ ତା'ର ଗୋଡ଼ହାତ ବାନ୍ଧି ଯୁଧିଷ୍ଠିରଙ୍କ ପାଖକୁ ନେଇଗଲେ । ନଜ ଭିଣୋଇର ଏ ଅବସ୍ଥା ଦେଖି ଯୁଧିଷ୍ଠିର ବହୁତ ଦୁଃଖ କଲେ ଓ ନିଜ ହାତରେ ବନ୍ଧନ ଖୋଲିଦେଲେ ।

ଜୟଦ୍ରଥର ଶୋଚନୀୟ ଅବସ୍ଥା ଓ ବିକୃତ ରୂପ ଦେଖି ଦ୍ରୌପଦୀ ହସି ଦେଇ କହିଲେ, "ମହାବୀର ସିନ୍ଧୁରାଜ, ପାଣ୍ଡବମାନଙ୍କ ବୀରତ୍ୱ କଥା ଅନୁଭବ କରିପାରିଲେ ତ ? ତୁମକୁ ହତ୍ୟା କରିବା ମୋର ଇଚ୍ଛା ଥିଲା । ତୁମ ପରି ପାପୀ ସଂସାରରେ ରହିଲେ ଝିଅ ବୋହୂମାନେ ନିଜକୁ ନିରାପଦ ମନେକରିବେ ନାହିଁ । ତଥାପି ତୁମର ଏ ସୁନ୍ଦର ରୂପକୁ ଥରେ ଦୁଃଶୀଳା ଦେଖିବା ପାଇଁ ତୁମକୁ ମୁକ୍ତ କରିଦିଆଯିବ । ମନେରଖ, ପର ସ୍ତ୍ରୀ ପ୍ରତି ପାପ ଆଶା ବିନାଶର କାରଣ ହୁଏ ।"

## କର୍ଣ୍ଣଙ୍କ ବରଲାଭ

ଚିତ୍ରସେନଙ୍କ ଦ୍ୱାରା ପରାସ୍ତ ହେବା ପରେ ପାଣ୍ଡବମାନଙ୍କ ଉପରେ କର୍ଣ୍ଣ ଅଧିକ ରାଗି ଉଠିଲେ । ସେ ଅର୍ଜୁନଙ୍କୁ ପରାସ୍ତ କରିବା ପାଇଁ କଠୋର ତପସ୍ୟାରେ ମଗ୍ନ ରହିଲେ । କର୍ଣ୍ଣଙ୍କ କଠୋର ତପସ୍ୟା ଦେଖି ଦେବରାଜ ଇନ୍ଦ୍ର ବିଚଳିତ ହୋଇ ଉଠିଲେ । ସେ ମନେ ମନେ ଚିନ୍ତା କଲେ, କର୍ଣ୍ଣ ମହାଦାନୀ । ଯଦି ମୁଁ ବ୍ରାହ୍ମଣ ବେଶରେ ଯାଇ ତାଙ୍କର କବଚ ଓ କୁଣ୍ଡଳ ମାଗିଆଣି ପାରିବି, ତେବେ ଅର୍ଜୁନ ରକ୍ଷା ପାଇଯିବେ । କବଚ କୁଣ୍ଡଳ କର୍ଣ୍ଣ ନିକଟରେ ଥିବା ପର୍ଯ୍ୟନ୍ତ ତାଙ୍କୁ କେହି ମାରିପାରିବେ ନାହିଁ ।" ଏପରି ଭାବି ସେ କର୍ଣ୍ଣଙ୍କ ନିକଟକୁ ଗଲେ ।

କର୍ଣ୍ଣ ସୂର୍ଯ୍ୟଙ୍କ ପୁଅ । ସୂର୍ଯ୍ୟ ଭାବିଲେ - ଯଦି ଇନ୍ଦ୍ର କବଚ, କୁଣ୍ଡଳ ମାଗି ନିଅନ୍ତି, ତେବେ କର୍ଣ୍ଣଙ୍କ ପରାଜୟ ସୁନିଶ୍ଚିତ । ଏଣୁ ସେ ଇନ୍ଦ୍ରଙ୍କ ଆସିବା ଆଗରୁ କର୍ଣ୍ଣଙ୍କୁ ସବୁକଥା କହି ସାବଧାନ କରାଇ ଦେଲେ । ମାତ୍ର କର୍ଣ୍ଣ କହିଲେ, "ମୁଁ ଆପଣଙ୍କ କଥା ରକ୍ଷା କରିପାରିବି ନାହିଁ । ଦାନ ମାଗୁଥିବା ଲୋକକୁ ଫେରାଇ ନ ଦେବା ପାଇଁ ମୁଁ ପ୍ରତିଜ୍ଞା କରିଛି । କବଚ, କୁଣ୍ଡଳ ତ ଛାର, ଯଦି କେହି ଜୀବନ ଭିକ୍ଷା କରେ, ତେବେ ମୁଁ ହସି ହସି ତାହା ଦାନ କରିଦେବି ।" ସୂର୍ଯ୍ୟ କର୍ଣ୍ଣଙ୍କୁ କଲ୍ୟାଣ କରି ଅତି ଦୁଃଖରେ ଫେରିଗଲେ ।

ସୂର୍ଯ୍ୟ ଫେରିଯିବାପରେ ଇନ୍ଦ୍ର ବ୍ରାହ୍ମଣ ବେଶରେ ଆସି କର୍ଣ୍ଣଙ୍କୁ କବଚ ଆଉ କୁଣ୍ଡଳ ଭିକ୍ଷା ମାଗିଲେ । କର୍ଣ୍ଣ କପଟ ବେଶ ଧରିଥିବା ଇନ୍ଦ୍ରଙ୍କୁ ଚାହିଁ ଅଳ୍ପ ହସି ଦେଲେ । ନିଜ ଦେହରୁ କବଚ, କୁଣ୍ଡଳ କାଟି ଇନ୍ଦ୍ରଙ୍କୁ ଦେଇଦେଲେ । ଏହି କବଚ ଓ କୁଣ୍ଡଳ ଜନ୍ମ ସମୟରୁ କର୍ଣ୍ଣଙ୍କ ଦେହରେ ଲାଗି ରହିଥିଲା । ଇନ୍ଦ୍ର କର୍ଣ୍ଣଙ୍କର ଏ ଅସାଧାରଣ ଦାନ ଦେବା ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ତୁମେ ଧନ୍ୟ ! ମୁଁ ଦେବତାମାନଙ୍କର ରାଜା ଇନ୍ଦ୍ର । ତୁମଠାରୁ ଦାନ ଗ୍ରହଣ କରିବା ପାଇଁ ଛଦ୍ମ ବେଶରେ ଆସିଥିଲି । ତୁମ ଦାନରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ମୋର ପ୍ରଧାନ ଅସ୍ତ୍ର ବଜ୍ରକୁ ଛାଡ଼ି ତୁମେ ଅନ୍ୟ ଯେ କୌଣସି ବର ମାଗିନିଅ ।" କର୍ଣ୍ଣ ଇନ୍ଦ୍ରଙ୍କଠାରୁ ଅମୋଘଶକ୍ତି ପ୍ରାର୍ଥନା କଲେ । ଇନ୍ଦ୍ର ସେ ଶକ୍ତି ପ୍ରଦାନ କରି କର୍ଣ୍ଣଙ୍କୁ କହିଲେ, "ଏ ଶକ୍ତି ଯାହା ଉପରେ ପ୍ରୟୋଗ କରିବ, ସେ ନିଶ୍ଚୟ ମରିବ; ମାତ୍ର ଏହା ପରେ ଶକ୍ତିଟି ମୋ ପାଖକୁ ଫେରିଆସିବ । ତୁମେ ତାକୁ ଦ୍ୱିତୀୟ ଥର ପାଇଁ ପ୍ରୟୋଗ କରିପାରିବ ନାହିଁ ।" ଏତିକି କହି ଇନ୍ଦ୍ର ଦେବଲୋକକୁ ଫେରିଗଲେ ।

## ଯକ୍ଷର ପ୍ରଶ୍ନ

ବାରବର୍ଷ ବନବାସ ପୂରି ଆସିବାକୁ ଆଉ ଅଳ୍ପଦିନ ଥାଏ । ଏହାପରେ ଏକବର୍ଷ ଅଜ୍ଞାତବାସ କରିବାକୁ ହେବ । କିପରି ଓ କେଉଁଠି ବର୍ଷଟିଏ କଟାଇବାକୁ ହେବ, ଯୁଧିଷ୍ଠିର ସେ ବିଷୟ ସ୍ଥିର କରିବା ପାଇଁ ଦ୍ରୌପଦୀ ଓ ଭାଇମାନଙ୍କ ସହିତ ଆଲୋଚନା କରୁଥିଲେ । ଏହି ସମୟରେ ଜଣେ ବ୍ରାହ୍ମଣ କାନ୍ଦି କାନ୍ଦି ଆସି ପାଣ୍ଡବମାନଙ୍କ ପାଖରେ ପହଞ୍ଚିଲେ । କାହିଁକି କାନ୍ଦୁଛ ବୋଲି ଯୁଧିଷ୍ଠିର ପଚାରିବାରୁ ବ୍ରାହ୍ମଣ କହିଲେ, "କୁଡ଼ିଆ ଦୁଆରେ ମୁଁ ଅରଣୀ କାଠ ରଖିଦେଇଥିଲି । ଅଳ୍ପ ସମୟ ପରେ ସେଥିରୁ ନିଆଁ ବାହର କରି ହୋମ କରିଥାନ୍ତି । ହରିଣଟାଏ ଆସି ସେ ଅରଣୀ କାଠରେ ଦେହ ଘଷି ହେଲାବେଳେ ଅରଣୀଟି ତା ଶିଙ୍ଗରେ ଛନ୍ଦି ହୋଇଗଲା । ହରିଣଟି ଭୟପାଇ ବଣ ଭିତରକୁ ପଳାଇଲା । ଏବେ ମୁଁ ହୋମ କରିବାପାଇଁ ନିଆଁ ପାଇବି କୋଉଠୁଁ ?"

ଆଗେ ଦିଆସିଲିର ପ୍ରଚଳନ ନଥିଲା । କାଠକୁ କାଠରେ ଘଷି ନିଆଁ ବାହାର କରାଯାଉଥିଲା । ଅରଣୀ ଏପରି କାଠ, ଯାହକୁ ଆଉ ଖଣ୍ଡେ ଅରଣୀ କାଠ ଦେହରେ ଜୋର୍‌ରେ ଘଷିଲେ ନିଆଁ ବାହାରିଥାଏ ।

ପାଣ୍ଡବମାନେ ବ୍ରାହ୍ମଣଙ୍କ ଅରଣୀ କାଠ ଆଣିବା ପାଇଁ ହରିଣକୁ ଖୋଜିବା ପାଇଁ ବଣକୁ ଦୌଡ଼ିଲେ । ହରିଣ ଅତି ବେଗରେ ଧାଇଁବାରେ ଲାଗିଲା । ଅନେକଦୂର ଯିବା ପରେ ହରିଣଟି କୁଆଡ଼େ ଅଦୃଶ୍ୟ ହୋଇଗଲା । ପାଣ୍ଡବମାନେ ଦୌଡ଼ି ଦୌଡ଼ି ହାଲିଆ ହୋଇପଡ଼ିଲେ । ଶୋଷରେ ହାଲିଆ ହୋଇ ସମସ୍ତେ ଏକ ବରଗଛ ତଳେ ବସିପଡ଼ିଲେ । ବ୍ରାହ୍ମଣଙ୍କର ସାମାନ୍ୟ କାମଟି କରି ପାରିନଥିବାରୁ ପାଣ୍ଡବମାନେ ଲଜ୍ଜିତ ହୋଇପଡ଼ିଥାନ୍ତି । ଏଣେ ଶୋଷରେ ତଣ୍ଟି ଶୁଖି ଯାଉଥାଏ । ଯୁଧିଷ୍ଠିର ପାଣି ଆଣିବା ପାଇଁ ନକୁଳଙ୍କୁ ପଠାଇଲେ । କିଛି ଦୂର ଯିବାପରେ ସେ ଏକ ପୁଷ୍କରିଣୀ ନିକଟରେ ପହଞ୍ଚିଲେ । ପୋଖରୀଟି ପାଣିରେ ପୂରି ରହିଥିଲା । ନକୁଳ ପୋଖରୀ କୂଳକୁ ଯାଉଥିବା ବେଳେ ଶୁଣିଲେ, "ହେ ମାଦ୍ରୀ ପୁତ୍ର । ଏ ପୋଖରୀଟି ମୋର । ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦେଇ ପରେ ମନଇଚ୍ଛା ପାଣି ପିଅ । ନହେଲେ ତୁମର ମୃତ୍ୟୁ ହେବ ।"

ନକୁଳ ଚମକି ପଡ଼ି ଚାରିଆଡ଼କୁ ଚାହିଁଲେ । ମାତ୍ର ତାଙ୍କୁ ଏପରି ଶୋଷ ହେଉଥିଲା ଯେ, କିଏ କଅଣ କହୁଛି ସେ କଥାକୁ କାନ ନଦେଇ ପାଣି ପିଇବାରେ ଲାଗିଲେ । ସଂଗେ ସଂଗେ ତାଙ୍କ ମୁଣ୍ଡ ବୁଲାଇହେଲା ଓ ସେ ତଳେ ପଡ଼ିଗଲେ ।

ନକୁଳ ଆସିବାରେ ବିଳମ୍ବ ହେବାରୁ ଯୁଧିଷ୍ଠିର ସହଦେବଙ୍କୁ ପଠାଇଲେ । କିନ୍ତୁ ନକୁଳ ଯେଉଁ ଦଶା ଭୋଗିଥିଲେ ସହଦେବ ମଧ୍ୟ ସେଇ ଦଶା ଭୋଗି ତଳେ ପଡ଼ିରହିଲେ ।

ସହଦେବ ନ ଫେରିବାରୁ ଅର୍ଜୁନ ସେହି ପୋଖରୀ ପାଖକୁ ଗଲେ । ସେଠାରେ ନକୁଳ ଓ ସହଦେବଙ୍କ ଅବସ୍ଥା ଦେଖି ଭାବିଲେ, ନିଶ୍ଚୟ କୌଣସି ଗୁପ୍ତ ଶତ୍ରୁ ସେ ଦୁହିଁଙ୍କୁ ହତ୍ୟା କରିଛି । ଅର୍ଜୁନଙ୍କ ମନରେ ଗଭୀର ଦୁଃଖ ହେଲା । ସେ ପ୍ରତିଶୋଧ ନେବା ପାଇଁ ଶବ୍ଦଭେଦୀ ବାଣ ଚଳାଇ ଦେଲେ । ମାତ୍ର କିଛି ହେଲେ ଫଳ ହେଲା ନାହିଁ । ଶୋଷରେ ଅସ୍ଥିର ହୋଇ ଅର୍ଜୁନ ପାଣି ପିଇଦେଲେ । ଅଳ୍ପ ସମୟ ମଧ୍ୟରେ ସେ ମଧ୍ୟ କୂଳରେ ମରିପଡ଼ିଲେ ।

ଅର୍ଜୁନ ନଫେରିବାରୁ ଯୁଧିଷ୍ଠିରଙ୍କ ଚିନ୍ତା ବହୁତ ବଢ଼ିଗଲା । ସେ ଭୀମଙ୍କୁ ଡାକି କହିଲେ, "ଭାଇ, ମହାବୀର ଅର୍ଜୁନ ମଧ୍ୟ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ । ନିଶ୍ଚୟ, ଆମ ଭାଇମାନଙ୍କୁ କୌଣସି ବିପଦ ପଡ଼ିଛି । ଶୀଘ୍ର ଯାଇ ସେମାନଙ୍କର ଖବର ଆଣ । ଶୋଷରେ ମୁଁ ଅସ୍ଥିର ହୋଇ ପଡ଼ିଲିଣି । ଶୀଘ୍ର ପାଣି ଆଣି ମୋତେ ଦିଅ ।"

ଭୀମ ପୋଖରୀ କୂଳରେ ଭାଇମାନଙ୍କ ଶୋଚନୀୟ ଅବସ୍ଥା ଦେଖି ଭାବିଲେ, "ନିଶ୍ଚୟ କୌଣସି ଯକ୍ଷ ଏ କାଣ୍ଡ କରି ବସିଛି । ଆଚ୍ଛା ଆଗ ପାଣି ପିଇସାରେ । ତାପରେ ଦେଖିବି କିଏ ମୋ ପାଖକୁ ଆସୁଛି ।" ଏହିପରି ଭାବି ଭୀମ ପାଣିରେ ଗୋଡ଼ ଦେବାମାତ୍ରେ ସେହି ଶବ୍ଦ ଶୁଣାଗଲା, "ଭୀମ, ମୋ ପ୍ରଶ୍ନର ଉତ୍ତର ନଦେଇ ପାଣିରେ ହାତ ଦେବାକୁ ସାହସ କରନାହିଁ । ନଚେତ୍ ଶୀଘ୍ର ତୁମେ ତୁମ ଭାଇମାନଙ୍କ ଦଶା ଭୋଗିବ ।" "ମୋତେ ରୋକିବାକୁ ତୁ କିଏ ?" ଏତିକି କହି ଭୀମ ପାଣି ପିଇଦେଲେ । ଚାହୁଁ ଚାହୁଁ ସେ ମଧ୍ୟ କୂଳରେ ଟଳିପଡ଼ିଲେ ।

ଚାରିଭାଇଯାକ ନଫେରିବାରୁ ଯୁଧିଷ୍ଠିର ଖୁବ୍ ଚିନ୍ତିତ ହୋଇପଡ଼ିଲେ । ଶୋଷର ତଣ୍ଟି ଶୁଖିଯାଉଛି । ଦୁଃଖରେ ଛାତି ଫାଟିଗଲା ପରି ଲାଗୁଥାଏ । ସେ ଆଉ ସମ୍ଭାଳି ନପାରି ଭାଇମାନଙ୍କୁ ଖୋଜିବାକୁ ବାହାରିଲେ । କିଛି ସମୟ ପରେ ଭାଇମାନେ ମରିପଡ଼ିଥିବା ପୋଖରୀ ନିକଟରେ ପହଞ୍ଚିଲେ । ସେଠାରେ ଭାଇମାନଙ୍କ ଶୋଚନୀୟ ଅବସ୍ଥା ଦେଖି ସେ ଅସ୍ଥିର ହୋଇଉଠିଲେ । ମନେ ମନେ ଭାବିଲେ, ମୋ ଭାଇମାନଙ୍କୁ ମାରିବାକୁ ପୃଥିବୀରେ ବୀର ଜନ୍ମ ହୋଇନାହାନ୍ତି । କେହି ଯୁଦ୍ଧ କରିଥିଲେ ଭାଇମାନଙ୍କ ଦେହରେ

ଶର, ଖଣ୍ଡା ବା ଅନ୍ୟ ଅସ୍ତ୍ରଶସ୍ତ୍ରର ଚିହ୍ନ ଥାଆନ୍ତା । ତା' ମଧ୍ୟ ନାହିଁ । ମୁହଁଗୁଡ଼ିକ ଶାନ୍ତରେ ଶୋଇଥିବା ମଣିଷଙ୍କ ପରି ଦେଖାଯାଉଛି । ପୁଣି ଏଠାରେ ଶତ୍ରୁର ପାଦ ଚିହ୍ନ ମଧ୍ୟ ପଡ଼ିନାହିଁ । ନାଁ ନିଶ୍ଚୟ ଏହା ଏକ ଯାଦୁ ବିଦ୍ୟାର ଫଳ ବୋଲି ମୁଁ ଅନୁମାନ କରୁଛି । ହୋଇପାରେ, ଏହା ଦୁର୍ଯ୍ୟୋଧନର ଏକ ଷଡ଼ଯନ୍ତ୍ର । ହୁଏତ ସେ ଏ ପୋଖରୀ ପାଣିରେ ବିଷ ମିଶାଇ ଦେଇଥିବ । ଯୁଧିଷ୍ଠିର ପାଣି କୂଳକୁ ଯିବାମାତ୍ରେ ଶୁଣାଗଲା, "ତୁମ ଭାଇମାନେ ମୋ କଥା ନଶୁଣି ଏ ଅବସ୍ଥା ଭୋଗ କରିଛନ୍ତି । ତୁମେ ତାଙ୍କ ପରି କରନାହିଁ । ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦେଇ ପରେ ଜଳପାନ କର ।"

ଯୁଧିଷ୍ଠିର ଜାଣିଗଲେ, ଏହା ନିଶ୍ଚୟ କୌଣସି ଯକ୍ଷଙ୍କ ସ୍ୱର । ତେଣୁ ସେ କହିଲେ, "ହେ ଅଦୃଶ୍ୟ ଶକ୍ତି, ଆପଣଙ୍କର କଅଣ ପଚାରିବାର ଅଛି ଶୀଘ୍ର ପଚାରନ୍ତୁ ।"

ଯକ୍ଷ ପଚାରିଲେ :

ପ୍ରଶ୍ନ:- ମନୁଷ୍ୟର ସାଥୀ କିଏ ?

ଉତ୍ତର:- ଧୈର୍ଯ୍ୟ ହିଁ ମନୁଷ୍ୟର ଶ୍ରେଷ୍ଠ ସାଥୀ ।

ପ୍ରଶ୍ନ:- କି ଉପାୟରେ ମନୁଷ୍ୟ ଯଶ ଲାଭ କରିପାରେ ?

ଉତ୍ତର:- ଦାନ ଓ ସତ୍‌କାର୍ଯ୍ୟ ଦ୍ୱାରା ।

ପ୍ରଶ୍ନ:- କାହାର ଗତି ପବନଠାରୁ ଅଧିକ ।

ଉତ୍ତର:- ମନର ।

ପ୍ରଶ୍ନ:- ବିଦେଶରେ ମନୁଷ୍ୟର ପ୍ରଧାନ ବନ୍ଧୁ କିଏ ?

ଉତ୍ତର:- ବିଦ୍ୟା ହିଁ ବିଦେଶରେ ପ୍ରଧାନ ବନ୍ଧୁ ।

ପ୍ରଶ୍ନ:- କଅଣ ତ୍ୟାଗ କଲେ ମନୁଷ୍ୟ ସମସ୍ତଙ୍କର ମିତ୍ର ହୋଇଥାଏ ?

ଉତ୍ତର:- ମୁଁ ବଡ଼, ଏଥିରୁ ଗର୍ବ ଜନ୍ମ ନିଏ । ଯେଉଁ ଲୋକ ଗର୍ବ ତ୍ୟାଗ କରେ ସେ ସମସ୍ତଙ୍କର ପ୍ରିୟ ଓ ମିତ୍ର ହୋଇଥାଏ ।

ପ୍ରଶ୍ନ:- କେଉଁ ଜିନିଷ ହଜାଇଲେ ମନୁଷ୍ୟର ଦୁଃଖ ହୁଏ ନାହିଁ ?

ଉତ୍ତର:- ରାଗ ବା କ୍ରୋଧ ।

ପ୍ରଶ୍ନ:- କି ଉପାୟରେ ମନୁଷ୍ୟ ଜୀବନ ସୁଖମୟ ହୁଏ ?

ଉତ୍ତର:- ଉତ୍ତମ ସ୍ୱଭାବ ହିଁ ମନୁଷ୍ୟକୁ ସୁଖୀ କରିଥାଏ ।

ପ୍ରଶ୍ନ:- ସବୁଠାରୁ ମନୁଷ୍ୟର ବଡ଼ ଲାଭ କଅଣ ?

ଉତ୍ତର:- ରୋଗଶୂନ୍ୟ ସୁସ୍ଥ ଶରୀର ।

ପ୍ରଶ୍ନ:- ଧର୍ମଠାରୁ ବଳି ସଂସାରରେ ଆଉ କଅଣ ଅଛି ?

ଉତ୍ତର:- ଉଦାରତା ।

ପ୍ରଶ୍ନ:- କେଉଁ ଲୋକ ସହିତ କରିଥିବା ବନ୍ଧୁତା ଆଦୌ ପୁରୁଣା ହୁଏ ନାହିଁ ?

ଉତ୍ତର:- ଉତ୍ତମ ଲୋକ ସହିତ ଥିବା ମିତ୍ରତା ।

ପ୍ରଶ୍ନ:- ଏ ସଂସାରରେ ଆଶ୍ଚର୍ଯ୍ୟ କଅଣ ?

ଉତ୍ତର:- ପ୍ରତିଦିନ ହଜାର ହଜାର ଲୋକ ମରୁଛନ୍ତି । ଏସବୁ ଦେଖି ମଧ୍ୟ ମନୁଷ୍ୟ ଅନନ୍ତକାଳ ଅର୍ଥାତ୍ ସବୁଦିନ ପାଇଁ ବଞ୍ଚି ରହିବାକୁ ଇଚ୍ଛା କରେ । ଏହାଠାରୁ ଆଉ ବଡ଼ ଆଶ୍ଚର୍ଯ୍ୟ କଥା କିଛି ନାହିଁ ।

ପ୍ରଶ୍ନ:- କେଉଁ ଲୋକ ବଞ୍ଚିଥିଲେ ମଧ୍ୟ ମଲା ସଂଗେ ସମାନ ?

ଉତ୍ତର:- ଯେଉଁ ଲୋକ ଦେବତା, ଅତିଥି, ଶରଣପ୍ରାର୍ଥୀଙ୍କୁ ଆଦର ନକରେ ।

ପ୍ରଶ୍ନ:- ପୃଥିବୀଠାରୁ ବଡ଼ ଓ ଆକାଶଠାରୁ ଉଚ୍ଚ କିଏ ?

ଉତ୍ତର:- ମାଆ ପୃଥିବୀଠାରୁ ବଡ଼ ଓ ପିତା ଆକାଶଠାରୁ ଉଚ୍ଚ ଅଟନ୍ତି ।

ପ୍ରଶ୍ନ:- ଶୋଇଥିବା ବେଳେ ମଧ୍ୟ କାହାର ଆଖି ବୁଜି ହୋଇ ନଥାଏ ?

ଉତ୍ତର:- ମାଛର ଆଖି ଶୋଇଥିବା ବେଳେ ମଧ୍ୟ ଖୋଲାଥାଏ ।

ପ୍ରଶ୍ନ:- କେଉଁ ଧର୍ମ ଶ୍ରେଷ୍ଠ ?

ଉତ୍ତର:- ଅହିଂସା ହିଁ ଶ୍ରେଷ୍ଠ ଧର୍ମ ।

ପ୍ରଶ୍ନ:- ମୃତ ପୁରୁଷ ଓ ମୃତ ରାଷ୍ଟ୍ର କାହାକୁ କୁହାଯାଏ ?

ଉତ୍ତର:- ଦରିଦ୍ର ପୁରୁଷକୁ ମୃତ ଓ ଅରାଜକ ରାଜ୍ୟକୁ ମୃତ ରାଷ୍ଟ୍ର କୁହାଯାଏ ।

ପ୍ରଶ୍ନ:- କେଉଁ ରୋଗର ଔଷଧ ନାହିଁ ?

ଉତ୍ତର:- ଲୋଭ ପରି ରୋଗର ଔଷଧ ନଥାଏ ।

ପ୍ରଶ୍ନ:- ସଂସାରରେ ସୁଖୀ କିଏ ?

ଉତ୍ତର:- ଯେଉଁ ଲୋକ ଋଣ କରିନାହିଁ, ପରିବାର ପୋଷିବା ପାଇଁ ଯାହାକୁ ବିଦେଶ ଯିବାକୁ ପଡ଼େ ନାହିଁ, ଯେ ନିଜ ଶାଗ ପଖାଳ ଖାଇ ଆନନ୍ଦ ମନରେ ରହେ, ସେଇ ଲୋକ ହିଁ ପ୍ରକୃତରେ ସୁଖୀ ।

ଏହିପରି ଯକ୍ଷ ଅନେକ ଗୁଡ଼ିଏ ପ୍ରଶ୍ନ କଲେ ଓ ଯୁଧିଷ୍ଠିର ସେ ସବୁର ଠିକ୍ ଠିକ୍ ଉତ୍ତର ଦେଲେ । ଏହାପରେ ଯକ୍ଷ କହିଲେ, "ରାଜା, ମୁଁ ତୁମ ଉତ୍ତରରେ ସନ୍ତୁଷ୍ଟ । ଏଥର କହ ମରିପଡ଼ିଥିବା ଭାଇମାନଙ୍କ ମଧ୍ୟରୁ କାହାକୁ ବଞ୍ଚାଇ ଦେଲେ ତୁମେ ସୁଖୀ ହେବ ?"

ଯୁଧିଷ୍ଠିର କହିଲେ, "ହେ ମହାତ୍ମା, ସବୁ ଭାଇ ନ ବଞ୍ଚିବା ଯାଏ ମୁଁ କଦାପି ସୁଖୀ ହୋଇପାରିବି ନାହିଁ । ଯଦି ନିତାନ୍ତ ଗୋଟିଏ ମାତ୍ର ଭାଇକୁ ବଞ୍ଚାଇବା ପାଇଁ ଆପଣଙ୍କ ଦୟା ହୁଏ, ତେବେ ନକୁଳକୁ ହିଁ ଜୀବନ ଦାନ କରନ୍ତୁ ।"

ଯୁଧିଷ୍ଠିରଙ୍କ ତୁଣ୍ଡରୁ ଏପରି କଥା ଶୁଣି ଯକ୍ଷ ତାଙ୍କ ଆଗରେ ଉଭା ହୋଇ କହିଲେ, "ଯୁଧିଷ୍ଠିର, ଦଶହଜାର ହାତୀର ବଳ ଥିବା ଭୀମକୁ ଛାଡ଼ି ତୁମେ ନକୁଳକୁ ବଞ୍ଚାଇବା ପାଇଁ କାହିଁକି କହୁଛ ? ଭୀମ ନହେଲା, ଯେଉଁ ଅର୍ଜୁନର ରଣକୌଶଳ ଅତି ଅସାଧାରଣ ଓ ଯେ ସବୁବେଳେ ତୁମକୁ ରକ୍ଷା କରି ଆସିଛି ତାକୁ ବଞ୍ଚାଇବାକୁ ନ କହିବାରୁ ମୁଁ ଆଶ୍ଚର୍ଯ୍ୟ ହୋଇଯାଉଛି । ମୋ କଥାର ଉତ୍ତର ଦିଅ ।"

ଯୁଧିଷ୍ଠିର ହାତଯୋଡ଼ି କହିଲେ, "ଭଗବାନ, ଭୀମ ବା ଅର୍ଜୁନ କେହି ମନୁଷ୍ୟଙ୍କୁ ରକ୍ଷା କରନ୍ତି ନାହିଁ । କେବଳ ଧର୍ମ ହିଁ ମନୁଷ୍ୟର ଏକମାତ୍ର ରକ୍ଷାକାରୀ । ଧର୍ମରୁ ଅଲଗା ହୋଇଗଲେ ଅର୍ଥାତ ଅଧର୍ମ ଆଚରଣ କଲେ ମନୁଷ୍ୟର ବିନାଶ ହୁଏ । ମୋ ପିତାଙ୍କର ଦୁଇ ପତ୍ନୀଙ୍କ ମଧ୍ୟରୁ କୁନ୍ତୀଙ୍କ ପୁତ୍ର ମୁଁ ବଞ୍ଚିଛି । ଇଚ୍ଛା କରୁଛି ମାଦ୍ରୀଙ୍କର ମଧ୍ୟ ଗୋଟିଏ ପୁଅ ବଞ୍ଚିରହୁ ।"

ଏହି ଯକ୍ଷ ନିଜେ ଧର୍ମ ଦେବତା । ଯୁଧିଷ୍ଠିରଙ୍କ ପିତା । ସେ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ, "ବତ୍ସ । ତୁମଠାରୁ ଆଦୌ ପକ୍ଷପାତ ଦୋଷ ନଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହେଲି । ମୁଁ ହରିଣ ରୂପ ହୋଇ ବ୍ରାହ୍ମଣଙ୍କ ଅରଣୀ କାଠ ନେଇଯାଉଥିଲି । ଆଜି ତୁମକୁ ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ । ବର୍ତ୍ତମାନ ତୁମର ଚାରିଭାଇ ଜୀଇ ଉଠିବେ । ଆନନ୍ଦରେ ସେମାନଙ୍କ ସହିତ ଆଶ୍ରମକୁ ଯାଅ । ଅଜ୍ଞାତବାସ ସମୟରେ ଶତ୍ରୁମାନେ ତୁମକୁ ଚିହ୍ନିପାରିବେ ନାହିଁ ।"

ଏତିକି କହି ଯମରାଜ ଅଦୃଶ୍ୟ ହୋଇଗଲେ ।

# ବିରାଟ ପର୍ବ

## ଅଜ୍ଞାତବାସ ପୂର୍ବ କଥା

ବାରବର୍ଷ ବନବାସ ପୂରି ଆସୁଥାଏ । ଦିନେ ଯୁଧିଷ୍ଠିର ତାଙ୍କ ସହିତ ବନକୁ ଆସିଥିବା ବ୍ରାହ୍ମଣମାନଙ୍କୁ ଡାକି କହିଲେ, "ଆପଣମାନେ ଆମକୁ ଯେଉଁ ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ଦେଖାଇ ନିଜେ ଅତ୍ୟନ୍ତ ଦୁଃଖ ଭୋଗ କରିଛନ୍ତି, ତାହାର ତୁଳନା ନାହିଁ । ଆପଣମାନଙ୍କ ଆଶୀର୍ବାଦ ପାଇ ଆମେ ବାରବର୍ଷ ବନବାସକୁ ହସିଖେଳି କଟାଇ ଦେଇଛୁ । ବର୍ତ୍ତମାନ ଅଜ୍ଞାତବାସର ସମୟ ଆସିଗଲା । ଏ ବାରମାସ ଆମେ ଏପରି ଭାବରେ ରହିବୁ, ଯେପରି ଆମକୁ ଦୁର୍ଯ୍ୟୋଧନର ଲୋକମାନେ ଚିହ୍ନିପାରିବେ ନାହିଁ । ଯିବା ପୂର୍ବରୁ ଆଶୀର୍ବାଦ କରନ୍ତୁ, ଯେପରି ଆମେ ନିର୍ବିଘ୍ନରେ ଏ ବର୍ଷଟି କଟାଇ ଦେଇପାରିବୁ ।" ଏକଥା କେଇପଦ କହିଲା ବେଳେ ଯୁଧିଷ୍ଠିରଙ୍କ କଣ୍ଠ ଥରି ଉଠୁଥାଏ ଓ ଆଖି ଛଳ ଛଳ ହୋଇ ଯାଉଥାଏ ।

ପୁରୋହିତ ଧୌମ୍ୟ ଆଶୀର୍ବାଦ ଦେଇ କହିଲେ, "-ଅଜ୍ଞାତବାସ ସମୟରେ କେହି ଆପଣମାନଙ୍କ ସନ୍ଧାନ ପାଇ ପାରିବେ ନାହିଁ । ଶେଷରେ ଆପଣମାନେ ଶତ୍ରୁ ଜୟକରି ରାଜ୍ୟଭୋଗ କରିବେ ।" ବ୍ରାହ୍ମଣମାନଙ୍କଠାରୁ ବିଦାୟ ନେଇ ପାଣ୍ଡବମାନେ ଅରଣ୍ୟର ଏକ ସ୍ଥାନରେ ବସି ଆସନ୍ତା ବର୍ଷଟି କିପରି କଟାଇବେ ତାହାର ଆଲୋଚନା କଲେ ।

ଯୁଧିଷ୍ଠିର ମୁହଁ ଶୁଖାଇ ଅର୍ଜୁନଙ୍କୁ କହିଲେ, "ତୁମେ ପୃଥିବୀର ବହୁ ସ୍ଥାନ ବୁଲି ଦେଖିଛ । କେଉଁ ସ୍ଥାନରେ ଅଜ୍ଞାତବାସର ଏକବର୍ଷ କଟାଇଲେ ସୁବିଧା ହେବ ଚିନ୍ତାକରି କହ ।"

ଅର୍ଜୁନ କହିଲେ, "ହେ ମହାରାଜ, ଧର୍ମଦେବତା ଆମ୍ଭମାନଙ୍କୁ ଆଶୀର୍ବାଦ ଦେଇ କହିଛନ୍ତି, ଆମ୍ଭେମାନେ ଅଜ୍ଞାତବାସର ସମୟ ଅତି ସହଜରେ କଟାଇପାରିବା ଓ ଆମକୁ କେହି ଚିହ୍ନିପାରିବେ ନାହିଁ । ବହୁ ସୁନ୍ଦର ରାଜ୍ୟର ନାମ କହୁଛି । ସେଥି ମଧ୍ୟରୁ କେଉଁଟି ଆମ ପାଇଁ ସୁବିଧା ହେବ ସ୍ଥିର କରନ୍ତୁ । ପାଞ୍ଚାଳ, ମତ୍ସ୍ୟ, ଶାଲ୍ୱ, ବିଦେହ, ବହ୍ଲିକ, ଦଶାର୍ଣ୍ଣ, ମରୁସେନ, କଳିଙ୍ଗ ଓ ମଗଧ ମଧ୍ୟରୁ ଆପଣ କାହାକୁ ବାଛିବେ ବାଛନ୍ତୁ । ଯଦି ମୋର ମତ ନିଆଯାଏ, ତେବେ, ମତ୍ସ୍ୟ ଦେଶର ରାଜା ବିରାଟଙ୍କ ରାଜ୍ୟକୁ ମୁଁ ସବୁଠାରୁ ଉତ୍ତମ ମନେକରୁଛି ।"

ଯୁଧିଷ୍ଠିର କହିଲେ, "ବାସ୍ତବିକ, ମତ୍ସ୍ୟ ଦେଶର ରାଜା ବିରାଟ ବଡ଼ କ୍ଷମତାଶାଳୀ । ସେ ଆମ୍ଭମାନଙ୍କୁ ବହୁତ ଶ୍ରଦ୍ଧା କରନ୍ତି ଓ ଦୁର୍ଯ୍ୟୋଧନକୁ ଆଦୌ ଭୟ କରନ୍ତି ନାହିଁ । ଆମେ ବିରାଟଙ୍କ ରାଜ୍ୟରେ ଛଦ୍ମ ବେଶରେ ରହିଲେ ଖୁବ୍ ଭଲହେବ ବୋଲି ମୁଁ ବିଚାରୁଛି ।"

ଅର୍ଜୁନ ପଚାରିଲେ, "ମହାରାଜ, ଆପଣ ବିରାଟଙ୍କ ନିକଟରେ କି କାର୍ଯ୍ୟ କରିବା ପାଇଁ ସ୍ଥିର କରୁଛନ୍ତି ?" ଏତିକି ପଚାରିଦେବା ପରେ ଅର୍ଜୁନ ଦୁଃଖରେ ଭାଙ୍ଗି ପଡ଼ିଲେ । ଯେଉଁ ମହାରାଜା ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିଥିଲେ, ଆଜି ସେ ଛଦ୍ମ ବେଶରେ ଅନ୍ୟ ନିକଟରେ ଦାସତ୍ୱ କରିବେ - ଏହା ହିଁ ଥିଲା ତାଙ୍କ ଦୁଃଖର କାରଣ ।

ଯୁଧିଷ୍ଠିର କହିଲେ, "ରାଜସଭାରେ ସଭାସଦ ରୂପେ ରଖିବା ପାଇଁ ମୁଁ ବିରାଟଙ୍କୁ ଅନୁରୋଧ କରିବି । ନାନା ଶାସ୍ତ୍ର, ବେଦ, ବେଦାନ୍ତ, ଜ୍ୟୋତିଷ ଆଦିର ଆଲୋଚନା ସହିତ ମୁଁ ପଶାଖେଳ ଦ୍ୱାରା ମହାରାଜାଙ୍କ ମନ ଖୁସିରଖିବି । ସନ୍ୟାସୀର ପୋଷାକ ପିନ୍ଧି ତାଙ୍କୁ କହିବି, ମୁଁ ମହାରାଜ ଯୁଧିଷ୍ଠିରଙ୍କ ଅତ୍ୟନ୍ତ ପ୍ରିୟ ବନ୍ଧୁଥିଲି ।"ଏହାପରେ ସେ ଭୀମଙ୍କୁ ଲକ୍ଷ୍ୟ କରି କହିଲେ, "ହେ ମହାପରାକ୍ରମୀ, ତୁମେ ବିରାଟଙ୍କ ନିକଟରେ କେଉଁ କାର୍ଯ୍ୟ କରିବା ପାଇଁ କହିବ ? ଅତୀତରେ ତୁମେ ବକାସୁର ଓ ଜଟାସୁରକୁ ମାରି ଆମକୁ ରକ୍ଷା କରିଛ । କେଉଁ ଛଦ୍ମ ବେଶ ଏ ଅସୀମ ପରାକ୍ରମକୁ ଲୁଚାଇ ମତ୍ସ୍ୟ ଦରବାରରେ ତୁମକୁ ନିରାପଦ ରଖିବ ?" ଏପରି କହୁଥିବା ବେଳେ ଯୁଧିଷ୍ଠିରଙ୍କ ଆଖିରୁ ଧାର ଧାର ଲୁହ ବହି ଯାଉଥାଏ ।

ଭୀମ ହସି ହସି କହିଲେ, "ମହାରାଜ, ମୁଁ ବିରାଟଙ୍କ ନିକଟରେ ପୂଜାରୀ ରୂପେ ରହିବାକୁ ମନେ ମନେ ସ୍ଥିର କରିଛି । ଆପଣ ଜାଣନ୍ତି ମୁଁ ବହୁତ ଭୋଜନ କରେ ଓ ଅତି ଚମତ୍କାର ରୋଷେଇ କରି ଜଣେ । ମୁଁ ଏପରି ସୁସ୍ୱାଦୁ ରନ୍ଧନ କରିବି, ଯାହା ବିରାଟ ଆଗରୁ କେବେ ଚାଖି ମଧ ନଥିବେ ।"

ଏହାପରେ ଯୁଧିଷ୍ଠିର ଅର୍ଜୁନଙ୍କୁ ପଚାରିଲେ, "ତୁମେ ମତ୍ସ୍ୟରାଜଙ୍କ ଦରବାରରେ କେଉଁ କାର୍ଯ୍ୟରେ ନିଯୁକ୍ତ ହେବା ପାଇଁ ସ୍ଥିର କରୁଛ ?"

ଅର୍ଜୁନ କହିଲେ, "ଭାଇ, ମୁଁ ଗୋଟିଏ ମାଇଚିଆ ବେଶରେ ରହି ଅନ୍ତଃପୁରରେ ଥିବା ସ୍ତ୍ରୀ ଲୋକମାନଙ୍କର ସେବା କରିବି । ମୁଁ ହାତରେ ଶଙ୍ଖ ତିଆରି କାଚ ପିନ୍ଧି ସ୍ତ୍ରୀଲୋକମାନଙ୍କ ପରି ବେଣୀ ପକାଇ ଶାଢ଼ୀ ପିନ୍ଧିବି । ରାଜପୁରୀର ନାରୀମାନଙ୍କୁ ନୃତ୍ୟ ଓ ଗୀତ ଶିକ୍ଷା ଦେବି । ମୁଁ ଯୁଧିଷ୍ଠିର ମହାରାଜାଙ୍କ ଇନ୍ଦ୍ରପ୍ରସ୍ଥରେ ଦ୍ରୌପଦୀଙ୍କ ନିକଟରେ ଚାକିରି କରିଥିଲି ବୋଲି ବିରାଟଙ୍କୁ ଜଣାଇବି ।"

ଯୁଧିଷ୍ଠିର ପୁଣି କାନ୍ଦି ପକାଇଲେ । ମନେ ମନେ କହିଲେ, "ଭାଗ୍ୟ କଅଣ କରି ନପାରେ ? ଯେ ବଳ ପରାକ୍ରମରେ ଶ୍ରୀକୃଷ୍ଣଙ୍କ ସହିତ ସମାନ ସେ ଆଜି ମାଇଚିଆ ବେଶରେ ଶାଢ଼ି ପିନ୍ଧି ବିରାଟ ରାଜାଙ୍କ ରାଣୀହଂସପୁରରେ ଚାକିରୀ ଖୋଜିବ ? ଧନ୍ୟରେ ନିୟତି ।"

ନକୁଳ କହିଲେ, "ମୁଁ ସବୁବେଳେ ଘୋଡ଼ାମାନଙ୍କୁ ଶିକ୍ଷା ଦେବାକୁ ଭଲପାଏ ଓ ପଶୁରୋଗର ଚିକିତ୍ସା ମୋତେ ଉତ୍ତମ ରୂପେ ଜଣାଅଛି । ମୁଁ ପାଣ୍ଡବମାନଙ୍କ ଘୋଡ଼ା ଦାୟିତ୍ୱରେ ଥିଲି ବୋଲି ଶୁଣିଲେ ବିରାଟ ଖୁସିରେ ମୋତେ ନିଯୁକ୍ତି ଦେବେ ।"

ସହଦେବ କହିଲେ, "ମୁଁ ଗାଇମାନଙ୍କ ଯତ୍ନ ନେବାକୁ ଭଲପାଏ, ବିରାଟଙ୍କ ଗାଈପଲର ତତ୍ତ୍ୱ ନେବା ଓ ସେମାନଙ୍କୁ ହିଂସ୍ରଜନ୍ତୁମାନଙ୍କ ଦାଉରୁ ରକ୍ଷା କରିବା ଦାୟିତ୍ୱ ନେବା ପାଇଁ ମୁଁ ବିରାଟଙ୍କୁ ଅନୁରୋଧ କରିବି ।"

ଲଜ୍ଜା ଓ ଦୁଃଖରେ ଯୁଧିଷ୍ଠିରଙ୍କ ପାଟିରୁ କଥା ବାହାରିଲା ନାହିଁ ।

ଦ୍ରୌପଦୀ ଯୁଧିଷ୍ଠିରଙ୍କ ମନର ଅବସ୍ଥା ଉତ୍ତମ ରୂପେ ବୁଝି ସାହସର ସହିତ କହିଲେ, "ମହାରାଜ, ମୋ ବିଷୟରେ ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ମୁଁ ବିରାଟ ରାଜାଙ୍କ ଅନ୍ତଃପୁରରେ ଦାସୀ ରୂପେ କାର୍ଯ୍ୟ କରିବାପାଇଁ ସ୍ଥିର କରିଛି । ଆଗରୁ ମୁଁ ରାଣୀ ଦ୍ରୌପଦୀଙ୍କ ନିକଟରେ ଦାସୀରୂପେ ଥିବା କଥା ଶୁଣିଲେ ବିରାଟ ମୋତେ ନିଶ୍ଚୟ ଚାକିରି ଦେବେ ଓ ଏହି ଉପାୟରେ ମୁଁ ନିଜକୁ ଲୁଚାଇ ରଖି ପାରିବି ।"

ସମସ୍ତଙ୍କଠାରୁ ବୁଝିସାରିବା ପରେ ଯୁଧିଷ୍ଠିର କହିଲେ, "ମୁଁ ସନ୍ୟାସୀ ବ୍ରାହ୍ମଣ ବେଶରେ ଆଶ୍ରୟ ମାଗିବି । ମୋର ନାମ ହେବ କଙ୍କ । ତାପରେ ଭୀମଙ୍କୁ କହିଲେ, "ତୁମେ ବହ୍ଲଭ ପଣ୍ଡା ନାମରେ ବିରାଟଙ୍କ ରୋଷେୟା ରୂପେ ରହିବା ପାଇଁ କହିବ । ଅର୍ଜୁନ ସ୍ତ୍ରୀ ବେଶ ପିନ୍ଧି ବିରାଟ ରାଜ-କୁମାରୀଙ୍କୁ ନୃତ୍ୟ, ଗୀତ ଶିକ୍ଷା ଦେବା ପାଇଁ ପ୍ରାର୍ଥନା କରିବେ । ତାଙ୍କ ନାଁ ବୃହନ୍ନଳା ହେବ । ନକୁଳଙ୍କ ନାମ ଗ୍ରନ୍ଥିକ ଓ ସହଦେବଙ୍କ ନାମ ତନ୍ତୀପାଳ ରଖାଯିବ ।" ଦ୍ରୌପଦୀଙ୍କ ନାମ ହେବ ସୈରିନ୍ଧ୍ରୀ । ସେ ଅନ୍ତଃପୁର ରାଣୀ ଓ ରାଜକନ୍ୟାଙ୍କୁ ସଜାଇବା, ମୁଣ୍ଡ କୁଣ୍ଡାଇଦେବା ଓ ସେମାନଙ୍କ ପାଇଁ ମାଳ ଗୁନ୍ଥିବା କାମ ଦେବାକୁ ବିରାଟଙ୍କୁ ଅନୁରୋଧ କରିବେ ।" ଯୁଧିଷ୍ଠିରଙ୍କ କଥା ସମସ୍ତଙ୍କ ମନକୁ ପାଇଲା ।

ସବୁ ସ୍ଥିର ହୋଇଯିବା ପରେ ପାଣ୍ଡବମାନେ ଏକ ନିଛାଟିଆ ସ୍ଥାନକୁ ଗଲେ । ସେଠାରେ ଏକ ବିରାଟ ଶମୀ ଗଛର ଉଚ୍ଚ ଶାଖାରେ ସମସ୍ତ ଅସ୍ତ୍ରଶସ୍ତ୍ର ଲୁଚାଇଦେଲେ । ପ୍ରତ୍ୟେକେ ନିଜ ନିଜର ବେଶ ବଦଳାଇ ଅଲଗା ଅଲଗା ବାଟରେ ଯାଇ ବିରାଟ ନଗରରେ ପହଞ୍ଚିଲେ । ପାଣ୍ଡବମାନଙ୍କୁ ଦେଖି ରାଜାଙ୍କ ମନରେ ନାନା ସନ୍ଦେହ ସୃଷ୍ଟି ହେଲା । ମାତ୍ର ପାଣ୍ଡବମାନେ ନିଜ ନିଜ କାମ ବିଷୟରେ ଏପରି ସୁନ୍ଦର ବର୍ଣ୍ଣନାମାନ ଦେଲେ, ଯହିଁରେ ବିରାଟ ସମ୍ପୂର୍ଣ୍ଣ ବିଶ୍ୱାସ କରିଗଲେ । ଶେଷରେ ସେ ସମସ୍ତଙ୍କୁ କାର୍ଯ୍ୟରେ ନିଯୁକ୍ତ କରିଦେଲେ । ଦ୍ରୌପଦୀ ପାଣ୍ଡବମାନଙ୍କ ସହିତ ନଯାଇ ରାସ୍ତାରେ ଏଣେତେଣେ ବୁଲୁଥିଲେ । ଦୂରରୁ ରାଣୀ ସୁଦେଷ୍ଣା ତାଙ୍କୁ ଦେଖି ଦାସୀ ହାତରେ ଡକାଇ ପଠାଇଲେ ।

ଦ୍ରୌପଦୀ ସୁଦେଷ୍ଣାଙ୍କୁ କହିଲେ, "ମୁଁ ଝିଅ ବୋହୂମାନଙ୍କ ମୁଣ୍ଡ ବାନ୍ଧିବା ଓ ସୁନ୍ଦର ଫୁଲମାଳ ତିଆରି କରିପାରେ । ଚାକିରି ଖୋଜିବା ଆଶାରେ ଏଠାକୁ ଆସିଛି ।"

ରାଣୀ ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ସ୍ୱର୍ଗର ଅପ୍ସରି ପରି ସୁନ୍ଦରୀ । ସତେ କଣ ତୁମେ ଚାକିରି କରିବାପାଇଁ ଆସିଛ ?" ଦ୍ରୌପଦୀ କହିଲେ, "କି ଦୁଃଖ କହିବି ? ମୋର ପାଞ୍ଚଜଣ ଗନ୍ଧର୍ବ ସ୍ୱାମୀ ଅଛନ୍ତି । ସେମାନେ ବର୍ତ୍ତମାନ ଖୁବ୍ ବିପଦରେ ପଡ଼ିଥିବାରୁ ମୁଁ ପରଦ୍ୱାରରେ ମୁଣ୍ଡ ଗୁଞ୍ଜିବା ଆଶାରେ ଏଣେତେଣେ ବୁଲୁଛି ।"

ସୁଦେଷ୍ଣା ଦ୍ରୌପଦୀଙ୍କ କଥାରେ ଭୁଲି ତାଙ୍କୁ ସଙ୍ଗେ ସଙ୍ଗେ ଅନ୍ତଃପୁରର ଦାସୀ ରୂପେ ରଖିଲେ । ଦ୍ରୌପଦୀ ହାତଯୋଡ଼ି କହିଲେ, "ମୁଁ କାହାର ଅଇଁଠା ଖାଏ ନାହିଁ କିମ୍ବା ପାଦ ଧୋଇବା କାର୍ଯ୍ୟ କରେ ନାହିଁ । ପ୍ରାର୍ଥନା କରୁଛି ମୋତେ ସେପରି କରିବା ପାଇଁ ବାଧ୍ୟ କରିବେ ନାହିଁ ।" ସୁଦେଷ୍ଣା ସେଥିରେ ରାଜି ହୋଇଗଲେ । ଏହିପରି ଭାବରେ ପାଣ୍ଡବମାନେ ଓ ଦ୍ରୌପଦୀ ବିରାଟ ନଗରରେ ଛଦ୍ମବେଶରେ ରହି ଦିନ କାଟିବାରେ ଲାଗିଲେ ।

## ପାଣ୍ଡବଙ୍କ ସହ କୀଚକର ସାକ୍ଷାତ

ପାଣ୍ଡବମାନେ ବିରାଟଙ୍କ ନିକଟରେ ଅଜ୍ଞାତବାସର ସମୟ କଟାଇବାରେ ଲାଗିଲେ । ମାତ୍ର ବର୍ଷଟିଏ ଭିତରେ ସେମାନେ ନାନା ଅସୁବିଧା ଭୋଗି ଦୁଃଖ ପାଇଛନ୍ତି ।

ବିରାଟ ରାଣୀଙ୍କ ନାମ ସୁଦେଷ୍ଣା । କୀଚକ ସୁଦେଷ୍ଣାଙ୍କର ଭାଇ । କୀଚକ ମହାପରାକ୍ରମଶାଳୀ ବୀର ଥିଲେ । ତାଙ୍କର ବୀରତ୍ୱ ଯୋଗୁଁ ବିରାଟ ଆନନ୍ଦରେ ରାଜତ୍ୱ କରୁଥାନ୍ତି । କୀଚକଙ୍କ ଭୟରେ କେହି ଶତ୍ରୁ ବିରାଟ ରାଜ୍ୟର ସୀମା ମାଡ଼ିବାକୁ ମଧ୍ୟ ସାହସ କରିନଥିଲେ । ତେଣୁ କଥାରେ କହନ୍ତି, 'କୀଚକ ବାହୁବଳେ ବିରାଟ ରାଜା ।' କୀଚକଙ୍କ ଆଦେଶରେ ରାଜ୍ୟର ଶାସନ ଚଳୁଥାଏ ।

ଦୈବାତ୍ ଦିନେ କୀଚକ ସୁଦେଷ୍ଣାଙ୍କ ଦାସୀ ସୈରିନ୍ଧ୍ରୀଙ୍କୁ ଦେଖି ତାଙ୍କ ଅପୂର୍ବ ରୂପରେ ମୁଗ୍ଧ ହୋଇଗଲେ । ସେ ଭଉଣୀ ସୁଦେଷ୍ଣାଙ୍କୁ ପଚାରିଲେ, "ଏ କେଉଁ ରାଜ୍ୟର ରାଜକୁମାରୀ ?" ସୁଦେଷ୍ଣା ନିଜ ଭାଇର ଖରାପ ପ୍ରକୃତି କଥା ଭଲରୂପେ ଜାଣିଥିଲେ ।

ସେ କଥାକୁ ବୁଲାଇ ଦେବା ପାଇଁ କହିଲେ, "ସେ ରାଜକୁମାରୀ ନୁହେଁ, ଆମ ଉଆସର ଦାସୀଟିଏ ।" କୀଚକ ଭଉଣୀର କଥାକୁ କାନ ନଦେଇ ଭାବିଲେ, "ଏପରି ସୁନ୍ଦରୀ ରାଣୀ ହେବାର ଯୋଗ୍ୟ ।" ସେ ଦ୍ରୌପଦୀଙ୍କ ନିକଟକୁ ଯାଇ କହିଲେ, "ମୁଁ ତୁମ ରୂପରେ ପାଗଳ ହୋଇଯାଇଛି । ତୁମେ ମୋତେ ବିବାହ କରି ରାଣୀରୂପେ ରହିବାକୁ ଅନୁରୋଧ କରୁଛି ।"

ଦ୍ରୌପଦୀଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସେ ଟିକିଏ ଚିନ୍ତା କରି କହିଲେ, "ମୁଁ ଛୋଟ କୁଳରେ ଜନ୍ମ । ଘର ଘର ବୁଲି ଝିଅ ବୋହୂମାନଙ୍କର ମୁଣ୍ଡବାନ୍ଧି ପେଟ ପୋଷିଥାଏ । ମୁଁ ବିବାହ ମଧ୍ୟ କରିଛି । ମୋର ପାଞ୍ଚଜଣ ଗନ୍ଧର୍ବ ସ୍ୱାମୀ ଅଛନ୍ତି । ପ୍ରାର୍ଥନା କରୁଛି, ଆପଣ ମୋ ପ୍ରତି ପାପ ଆଶା ରଖନ୍ତୁ ନାହିଁ ।"

କୀଚକ କହିଲେ, "ମୁଁ ଏ ମତ୍ସ୍ୟ ଦେଶର ସମ୍ରାଟ । ଆଜିଯାଏ ମୋ ଆଦେଶକୁ ଅମାନ୍ୟ କରିବାର ସାହସ କେହି କରିନାହାନ୍ତି । ଭଲ ଦଶା ଥିଲେ ମୋତେ ବିବାହକର । ନଚେତ ଫଳ ଭଲ ହେବନାହିଁ ।"

ଦ୍ରୌପଦୀ କହିଲେ, "ମୁଁ ଛାର ଦାସୀଟିଏ । ମୋ ପ୍ରତି ଦୟା କରନ୍ତୁ । ମୋର ସ୍ୱାମୀମାନେ ଏକଥା ଶୁଣିଲେ ଘୋର ଅନିଷ୍ଟ କରିବେ ।"

କୀଚକ ସୁଦେଷ୍ଣାଙ୍କୁ ବାରମ୍ବାର ନିଜ ମନକଥା କହି ବ୍ୟସ୍ତ କରିବାରେ ଲାଗିଲେ । କୀଚକ ଯୋଗୁଁ ସୁଦେଷ୍ଣା ବିରାଟର ରାଣୀ । ତାଙ୍କ କଥାକୁ ତଳେ ପକାଇବା ରାଣୀଙ୍କ ଶକ୍ତିର ବାହାରେ । କଅଣ କରିବେ, ତାଙ୍କୁ ବୁଦ୍ଧିବାଟ ଦିଶିଲା ନାହିଁ । କିଛି ସମୟ ଭାବିବା ପରେ ରାଣୀ କହିଲେ, "ତୁମେ ଗୋଟିଏ ଉତ୍ସବ କରିବା ଆଳରେ ନାନା ପ୍ରକାର ମଦ୍ୟ ତିଆରିର ବ୍ୟବସ୍ଥା କର । ମୁଁ ତୁମ ପାଖରୁ ମଦ ଆଣିବା ପାଇଁ ସୈରିନ୍ଧ୍ରୀକୁ ପଠାଇବି । ସେହି ସମୟରେ ବହୁ ପ୍ରଲୋଭନ ଦେଖାଇ ତୁମେ ତାକୁ ରାଜି କରାଇନେବ ।"

କଥାଟି କୀଚକର ମନକୁ ପାଇଲା । ସେ ଏକ ଭୋଜିର ଅୟୋଜନ କରି ନାନା ପ୍ରକାର ମଦ୍ୟ ପ୍ରସ୍ତୁତକଲେ । ସୁଦେଷ୍ଣା ସୈରିନ୍ଧ୍ରୀକୁ କହିଲେ, "ମଦ୍ୟପାନ କରିବାକୁ ମୋର ଭାରି ଇଚ୍ଛା ହେଉଛି । ତୁ କୀଚକ ପାଖରୁ ଏ ସୁବର୍ଣ୍ଣ ପାତ୍ରରେ କିଛି ମଦ ଆଣି ମୋତେ ଦେ ।"

ଦ୍ରୌପଦୀ ଦୁଃଖରେ କହିଲେ, "ମହାରାଣୀ, କୀଚକ ମୋ ଉପରେ ପାପ ଆଶା ରଖିଥିବା କଥା ଆପଣ ଜାଣିଛନ୍ତି । କାହାକୁ ପଠାଇ ମଦ୍ୟ ଆଣନ୍ତୁ ।" ସୁଦେଷ୍ଣା ରାଗିଉଠି କହିଲେ, "ନାଁ ତୋତେ ହିଁ ଯିବାକୁ ହେବ । ମୁଁ ଅନ୍ୟ କାହାକୁ ପଠାଇବି ନାହିଁ ।"

ଅନ୍ୟ ଉପାୟ ନଥିଲା । ଦ୍ରୌପଦୀ କୀଚକଙ୍କ ନିକଟକୁ ଯାଇ କହିଲେ, "ରାଣୀ ମୋତେ ଆପଣଙ୍କଠାରୁ କିଛି ମଦ ନେବା ପାଇଁ ପଠାଇଛନ୍ତି ।"

'ମୁଁ ସେ କାମ ଅନ୍ୟ ଦାସୀ ଦ୍ୱାରା କରାଇଦେବି' କହି କୀଚକ ଦ୍ରୌପଦୀଙ୍କ ହାତ ଧରି ଭିଡ଼ିନେଲା । ଦ୍ରୌପଦୀ ବିକଳରେ ଛାଟିପିଟି ହୋଇ ପଳାଇ ଯିବାରୁ କୀଚକ ତାଙ୍କ ଲୁଗାକୁ ଧରି ଟାଣିଲା । କୌଣସି ମତେ କୀଚକ ହାତରୁ ଖସି ଦ୍ରୌପଦୀ ଦୌଡ଼ି ପଳାଇ ଯିବାକୁ ଲାଗିଲେ । କୀଚକ ତାଙ୍କ ପଛେ ପଛେ ଗୋଡ଼ାଇ ଆସି ଗୋଇଠା ମାରି ତାଙ୍କୁ ତଳେ ପକାଇଦେଲା । ଏକଥା ଦେଖି ଭୀମଙ୍କ ରାଗ ଖୁବ୍ ବଢ଼ିଗଲା । ମାତ୍ର ଯୁଧିଷ୍ଠିର ତାଙ୍କୁ ଶାନ୍ତ କରାଇ ଅନ୍ୟଆଡ଼େ ପଠାଇ ଦେଲେ ।

ଦ୍ରୌପଦୀ ବିରାଟଙ୍କୁ ଲକ୍ଷ୍ୟ କରି କହିଲେ, "ମହାରାଜ, ଜଣେ ପର ସ୍ତ୍ରୀ ପ୍ରତି ଯେପରି ଅତ୍ୟାଚାର କରାଗଲା, ତାହା ଆପଣ ନିଜେ ଦେଖି ମଧ୍ୟ ନୀରବ ରହୁଛନ୍ତି କିପରି ?"

ବିରାଟ କହିଲେ, "ଘଟଣା ବିଷୟରେ ସବୁକଥା ନଜାଣି ମୁଁ କିପରି କଅଣ କହିବି ?" ଏତିକିବେଳେ କଙ୍କ ରୂପୀ ଯୁଧିଷ୍ଠିର ସୌରିନ୍ଧ୍ରୀଙ୍କୁ କହିଲେ, "ଧୈର୍ଯ୍ୟ ଧରି ଭିତରକୁ ଯାଅ । ତୁମ ସ୍ୱାମୀମାନେ ଠିକ୍ ସମୟରେ ଏହାର ଉପାୟ କରିବେ ।"

# ଭୀମ ଓ ଦ୍ରୌପଦୀଙ୍କ ମନ୍ତ୍ରଣା

ଯୁଧିଷ୍ଠିରଙ୍କ କଥା ଶୁଣି ଦ୍ରୌପଦୀ ରାଜସଭାରୁ ଚାଲି ଆସିଲେ ସତ, ମାତ୍ର ପାପୀ କୀଚକକୁ ଉପଯୁକ୍ତ ଶାସ୍ତି ଦେବାପାଇଁ ସେ ଉପାୟ ଚିନ୍ତା କରିବାରେ ଲାଗିଲେ । ଠିକ୍ ରାତି ଅଧ ବେଳକୁ ସେ ଲୁଚି ଲୁଚି ଯାଇ ଭୀମସେନଙ୍କ ପାଖରେ ପହଞ୍ଚିଲେ । ସେତେବେଳକୁ ଭୀମ ଗାଢ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥାନ୍ତି । ଦ୍ରୌପଦୀ ତାଙ୍କୁ ହଲାଇ ଦେଇ କହିଲେ, "ଉଠ, ଶତ୍ରୁ ମୋତେ ଅପମାନ ଦେଇଥିବା ଦେଖି ମଧ୍ୟ ଆପଣ ନିଶ୍ଚିନ୍ତ ନିଦରେ ଶୋଇ ପାରିଲେ ? ଏହାଠାରୁ ବଳି ବଡ଼ ଦୁର୍ଭାଗ୍ୟ ମୋର ଆଉ କଅଣ ହୋଇପାରେ । ମୁଁ ରାଜକନ୍ୟା, ପୁଣି ସର୍ବଶ୍ରେଷ୍ଠ ବୀରମାନଙ୍କୁ ପତି ରୂପେ ପାଇ ଦୁର୍ଯ୍ୟୋଧନ କୁରୁସଭାରେ ଆପଣମାନଙ୍କ ଆଖି ଆଗରେ ମୋତେ ଦାସୀ ବୋଲି କହିଲା । ଦୁଃଶାସନ ମୋତେ ଲଙ୍ଗଳା କରିବାକୁ ଚେଷ୍ଟା କଲା । କର୍ଣ୍ଣ ମୋତେ ବେଶ୍ୟା ବୋଲି କହି ଅପମାନ ଦେଲା । ଜୟଦ୍ରଥ ପରି କୁକୁର ମୋତେ ଆଶ୍ରମ ମଧ୍ୟରୁ ଟାଣି ଟାଣି ନେଇଗଲା । ଆଜି କୀଚକ ମୋତେ ଘୋଷାଡ଼ି ନେଇ ବିରାଟ ଦରବାରେ ଗୋଇଠା ମାରିବା ତୁମ ଆଖି ଦେଖିଛି । ଆହୁରି ଶୁଣନ୍ତୁ, ବଳକ୍ାର କରି ମୋତେ ବିବାହ କରିବାକୁ ପ୍ରତିଜ୍ଞା କରିଛି । ଦୁଃଖ ସହିବାର ସୀମା ଟପିଗଲାଣି । ମୁଁ ଭଲ ରୂପେ ଜାଣେ ବିରାଟ କୀଚକର ବାହୁବଳକୁ ଆଶ୍ରା କରି ଚଳନ୍ତି । ତାଙ୍କଠାରୁ କୌଣସି ନ୍ୟାୟ ଆଶା କରିବା ବୃଥା । ସେ ବା କୀଚକର ଅନ୍ୟାୟ ପାଇଁ କି ଦଣ୍ଡ ଦେଇପାରିବେ ? ମୋର ସ୍ୱାମୀମାନେ ମହା ପରାକ୍ରମୀ ହେଲେ ମଧ୍ୟ ଧର୍ମ, ସତ୍ୟ, ନ୍ୟାୟ ଓ ଅହିଂସାକୁ ଗଣ୍ଠିଧନ କରି ଯାବତୀୟ ଅନ୍ୟାୟ ଓ ଅତ୍ୟାଚାରକୁ ମୁଣ୍ଡପାତି ସହିନେବାର ଅଭ୍ୟାସ ସେମାନଙ୍କର ହୋଇଗଲାଣି । ମାତ୍ର ମୁଁ ଆଉ ସହ୍ୟ କରିପାରିବି ନାହିଁ ।" ଏତିକି କହି ଦ୍ରୌପଦୀ କାନ୍ଦିବାରେ ଲାଗିଲେ ।

ଭୀମ ଦୁଃଖିତ ହୋଇ କହିଲେ, "କଲ୍ୟାଣି, ଆମ ଦୁର୍ଦ୍ଦଶା କଥା ତୁମକୁ ଅଜଣା ନାହିଁ । ତୁମପରି ଅଲିଅଳି ରାଜଜେମାଙ୍କୁ କେବଳ ଆମରି ଯୋଗୁଁ ଦାସୀ ରୂପେ ଖଟିବାକୁ ପଡ଼ିଲା । ନୀଚ ଲୋକମାନେ ବାରମ୍ବାର ତୁମ ପ୍ରତି ଅତି ଅଭଦ୍ର ବ୍ୟବହାର ଦେଖାଇଛନ୍ତି । ମୁଁ ଇଚ୍ଛା କରିଥିଲେ ବିରାଟଙ୍କ ସଭାରେ ହିଁ କୀଚକର ମୁଣ୍ଡ ଗଣ୍ଡି ଅଲଗା କରି ପାରିଥାନ୍ତି । ସୁନ୍ଦରୀ ! ଅଜ୍ଞାତବାସର ସମୟ ଶେଷ ପ୍ରାୟ । ମାତ୍ର ଆଉ ଏକ ମାସ ପରେ ଆମେ ତେର ବର୍ଷର ବନବାସ କଷ୍ଟ ଭୁଲିଯିବା । ମନେରଖ, ଏବେ ମଧ୍ୟ ଦୁର୍ଯ୍ୟୋଧନ, ଦୁଃଶାସନ ଓ ଶକୁନୀ ବଞ୍ଚିଛନ୍ତି ।"

ଦ୍ରୌପଦୀ କୌଣସି କଥା ନଶୁଣି କହିଲେ, "ବେଶ୍ ଭଲ କଥାତ ! ଏହି ପନ୍ଦରଦିନ ମଧ୍ୟରେ କୀଚକ ମୋ ପ୍ରତି ଅତ୍ୟାଚାର କରିବ । ଅଜ୍ଞାତବାସ ଆଳରେ ମୋ ସ୍ୱାମୀମାନେ ନିଜ ପତ୍ନୀକୁ ମଧ୍ୟ ପରହାତରେ ଟେକିଦେବାକୁ କୁଣ୍ଠିତ ହେବେନାହିଁ । ଏକଥା ମୋତେ ସବୁଠାରୁ ଦୁଃଖ ଦେଉଛି । ଆପଣ ଜୟଦ୍ରଥ ହାତରୁ ମୋତେ ରକ୍ଷା କରିଛନ୍ତି । ଏବେ କୀଚକ ହାତରୁ ରକ୍ଷା ନକଲେ, ମୁଁ ଆତ୍ମହତ୍ୟା କରିବି । ଏହା ହିଁ ମୋର ଶେଷକଥା ।"

ଭୀମ ଦ୍ରୌପଦୀଙ୍କୁ ବୋଧ ଦେଇ ତାଙ୍କ ଆଖିରୁ ଲୁହ ପୋଛି ଦେଲେ । କିଛି ସମୟ ଚିନ୍ତା କରି କହିଲେ, "ମୁଁ ନିଶ୍ଚୟ କୀଚକକୁ ହତ୍ୟା କରି ତୁମକୁ ଶାନ୍ତି ଦେବି । ଶୁଣ, ରାତି ଅଧେ ବେଳକୁ ବିରାଟ ରାଜାଙ୍କ ନୃତ୍ୟଶାଳା ନିର୍ଜନ ହୋଇଯାଏ, ତୁମେ କାଲି କୀଚକକୁ କହିବ, 'ସେନାପତି, ମୁଁ ଆପଣଙ୍କ କଥାରେ ରାଜି । ଆଜି ରାତି ଅଧରେ ତୁମ ସହିତ ନୃତ୍ୟଶାଳାରେ ମୁଁ ଦେଖାକରିବି ।' ମନେରଖ, ଅନ୍ୟ କେହି ଯେପରି ଏ କଥାର ଗନ୍ଧ ନ ପାଆନ୍ତି । ତା' ପରେ ଯାହା ହେବ ମୁଁ କରିବି । ଯାଅ, ନିଶ୍ଚିନ୍ତରେ ଶୋଇପଡ଼ ।"

# କୀଚକ ବଧ

ସକାଳ ହେଲା । ମନରେ ସାହସବାନ୍ଧି ଦ୍ରୌପଦୀ ଅତି ଗୋପନରେ କୀଚକକୁ ସାକ୍ଷାତ କରିବାକୁ ଗଲେ । କୀଚକର ମଦନିଶା କଟି ଯାଇଥିଲା । ସେ ଦ୍ରୌପଦୀଙ୍କୁ ଦେଖି କହିଲା, "କାଲି ରାଜାଙ୍କ ଆଗରେ ମୁଁ ତୋତେ ଗୋଇଠା ମାରିଥିଲି । ରାଜା ପାଟି ମଧ୍ୟ ଫିଟାଇ ପାରିଲେ ନାହିଁ । ଏଥିରୁ ବେଶ୍ ଜାଣିପାରୁଥିବୁ ମତ୍ସ୍ୟ ରାଜ୍ୟର ରାଜା ବିରାଟ ନା ମୁଁ । ଆଉ ଅବୁଝା ନହୋଇ ମୋ ପ୍ରସ୍ତାବରେ ରାଜି ହୋଇଯା । ରାଜରାଣୀ ହେବାର ସୁଖକୁ ଗୋଡ଼ରେ ଆଡ଼େଇ ଦେ' ନା ।"

ଦ୍ରୌପଦୀ କହିଲେ, "ଯାହା କହିଲେ ସେ ସବୁ ଅକ୍ଷରେ ଅକ୍ଷରେ ସତ । ମୁଁ ଆପଣଙ୍କ ପ୍ରସ୍ତାବରେ ରାଜି, ମାତ୍ର ଏକଥା ଅନ୍ୟ କେହି ଯେପରି ଜାଣି ନପାରନ୍ତି । ମୋର ଗନ୍ଧର୍ବ ସ୍ୱାମୀମାନେ ଏହାର ଗନ୍ଧ ପାଇବା ମାତ୍ରେ ଆଗ ମୋତେ ହାଣି ଖଣ୍ଡ ଖଣ୍ଡ କରିଦେବେ । ଶୁଣନ୍ତୁ, ରାଜାଙ୍କ ନାଚଘର ଅଧରାତି ବେଳକୁ ଶୂନଶାନ ହୋଇଯାଇଥାଏ । ମୁଁ ସୁବିଧାଦେଖି ଆଗରୁ ସେଠାରେ ଅପେକ୍ଷା କରିଥିବି । ଆପଣ ସେଠାକୁ ନିଶ୍ଚୟ ଯାଇ ମୋତେ ସାକ୍ଷାତ କରିବେ ।"

ଦ୍ରୌପଦୀଙ୍କ ତୁଣ୍ଡରୁ ଏତିକି ଶୁଣି କୀଚକ ଆନନ୍ଦରେ ଅଧୀର ହୋଇଉଠିଲା । ସ୍ୱର୍ଗର ଚାନ୍ଦ ତା ହାତ ମୁଠାରେ ରହିଥିବାପରି ଅନୁଭବ କରି କହିଲା, "ସୈରିନ୍ଧ୍ରୀ ତୁମେ କେବଳ ସୁନ୍ଦରୀ ନୁହଁ, ଅତ୍ୟନ୍ତ ବୁଦ୍ଧିମତୀ ମଧ୍ୟ । ତୁମଠାରୁ ମୁଁ ଏପରି ଉତ୍ତର ଆଶା କରୁଥିଲି । ମୁଁ ନିଶ୍ଚୟ ଠିକଣା ସ୍ଥାନରେ ଠିକ୍ ସମୟରେ ପହଞ୍ଚିବି ।" ଦ୍ରୌପଦୀ ଅଳ୍ପ ହସିଦେଇ ଚାଲି ଆସିଲେ ଓ ଭୀମଙ୍କୁ ସବୁ କଥା ଜଣାଇ ତାଙ୍କ ପାଖରୁ ଶୀଘ୍ର ଚାଲିଗଲେ ।

ରାତି ହେଲା । ସବୁ କାମସାରି ଭୀମ ଶାଢ଼ିଟିଏ ପିନ୍ଧି ନୃତ୍ୟଶାଳାର ଏକ କୋଣରେ ଶୋଇ ପଡ଼ିଲେ । କୀଚକ ପାଗଳଙ୍କ ପରି ହେଉଥାଏ । ଅଧରାତି ବେଳକୁ ସେ ଭଲ କରି ମଦ ପିଇଲେ । ଦେହରେ ନାନା ପ୍ରକାର ସୁଗନ୍ଧ ଦ୍ରବ୍ୟ ଲଗାଇ ନୃତ୍ୟଶାଳା ଆଡ଼କୁ ଗଲା । ଅଳ୍ପ ଆଲୋକରେ ଜଣେ ସ୍ତ୍ରୀ ଲୋକ ଶୋଇଥିବାର ଦେଖି ଭାବିଲା, "ସୈରିନ୍ଧ୍ରୀ ନିଶ୍ଚୟ ଆଗରୁ ଆସିଯାଇଛି । ସେ ଆସ୍ତେ ଆସ୍ତେ ସ୍ତ୍ରୀ ଲୋକଟିର ଦେହରେ ହାତ ବୁଲାଇଲେ । ଦେଖିଲେ ଏହା ସୈରିନ୍ଧ୍ରୀର କୋମଳ ଅଙ୍ଗ ନୁହେଁ । ବଜ୍ର ପରି କଠିନ ଏକ ପୁରୁଷର ଦେହପରି ଲାଗୁଛି । ଆଉ ଭାବିବାକୁ ସମୟ ନଦେଇ କୀଚକକୁ ମାଡ଼ି ବସି ସ୍ତ୍ରୀ ବେଶ ଧରିଥିବା ଭୀମ କହିଲେ, "ପାପୀ, ଏବେ ତୋର ଶେଷବେଳ ପହଞ୍ଚିଗଲା । ଶୀଘ୍ର ଇଷ୍ଟ ସୁମରଣା କର । ସିଂହ କେବେ ତା ଶିକାରକୁ ହାତଛଡ଼ା କରେ ନାହିଁ ।" ଏହିପରି ଭୀମ କୀଚକର ବାଳ ଧରି ତଳେ ପକାଇଦେଲେ । କୀଚକ ମଧ୍ୟ କମ୍ ବୀର ନଥିଲା । ସେ ଭୀମଙ୍କୁ ବାରମ୍ବାର ତଳେ କଚାଡ଼ି ଦେବା ପାଇଁ ଚେଷ୍ଟା କରୁଥାଏ । କିଛି ସମୟ ଲଢ଼େଇ ଚାଲିଲାପରେ ଭୀମ କୀଚକକୁ ଟେକି ଏପରି ଫିଙ୍ଗିଦେଲେ ଯେ ତା ପିଣ୍ଡରୁ ପ୍ରାଣ ଛାଡ଼ିଗଲା । କୀଚକ ମଲାପରେ ଭୀମ ଅତିଶୀଘ୍ର ଦେହରୁ ରକ୍ତ ଦାଗ ସବୁ ସଫା କରିଦେଲେ ଓ ଚୁପ୍ ଚାପ୍ ଶୋଇ ପଡ଼ିଲେ ।

ସକାଳ ହେଲା । ସୈରିନ୍ଧ୍ରୀର ଗନ୍ଧର୍ବ ସ୍ୱାମୀମାନେ ବୀର କୀଚକକୁ ହତ୍ୟା କରିଥିବା ଖବର ଚାରିଆଡ଼େ ବ୍ୟାପିଗଲା । ବିରାଟ ନଗରରେ ସୈରିନ୍ଧ୍ରୀଙ୍କ ପ୍ରତି ସମସ୍ତଙ୍କ ଭୟ ବଢ଼ିଗଲା ।

# ପୁଣି ଦ୍ରୌପଦୀଙ୍କ ବିପଦ

କୀଚକର ମୃତ୍ୟୁପରେ ସମଗ୍ର ବିରାଟ ନଗରରେ ଆତଙ୍କ ଖେଳିଗଲା । ଲୋକେ କହାକୁହି ହେଲେ, "ବର୍ତ୍ତମାନ ପ୍ରମାଣ ହୋଇଗଲା, ସୈରିନ୍ଧ୍ରୀ ଯେପରି ସୁନ୍ଦରୀ, ତାଠାରୁ ବଳି ଭୟଙ୍କର ମଧ୍ୟ । ତା' ଗନ୍ଧର୍ବ ସ୍ୱାମୀମାନଙ୍କ ଯୋଗୁଁ ତା ମନରେ ଭାରି ଗର୍ବ । ସେ ଏଠାରେ ଥିବାପର୍ଯ୍ୟନ୍ତ ରାଜପରିବାର ଓ ବିରାଟ ନଗର ପ୍ରତି ଘୋର ବିପଦର କାରଣ ହେବ । କ୍ରୋଧ ଶାନ୍ତି ପାଇଁ ସେ ତା' ଗନ୍ଧର୍ବ ସ୍ୱାମୀମାନଙ୍କ ଦ୍ୱାରା ଆହୁରି ଅନେକ କିଛି କରିବା ଅସମ୍ଭବ ନୁହେଁ ।"

କୀଚକର ବନ୍ଧୁମାନେ ଖୁବ୍ ଦୁଃଖିତ ହୋଇ ପଡ଼ିଥିଲେ । ସମସ୍ତଙ୍କ ରାଗ ଦ୍ରୌପଦୀଙ୍କ ଉପରେ ଠୁଳ ହୋଇଗଲା । ସେମାନେ କୀଚକର ଶବ ସହିତ ଦ୍ରୌପଦୀଙ୍କୁ ଜୀଅନ୍ତା ପୋଡ଼ି ଦେବାକୁ ସ୍ଥିରକଲେ । ବିଳମ୍ବ ନକରି ଦ୍ରୌପଦୀଙ୍କ ହାତଗୋଡ଼ ବାନ୍ଧି କୀଚକର କୋକେଇରେ ତାଙ୍କୁ ମଶାଣିକୁ ବୋହି ନେଇଗଲେ । ଦ୍ରୌପଦୀଙ୍କ ଛାତି ଫାଟିଗଲାପରି ଲାଗିଲା । ସେ ଅତି ବ୍ୟାକୁଳ କଣ୍ଠରେ ଡାକ ଛାଡ଼ିଲେ, ହେ ମୋର ଗନ୍ଧର୍ବ ସ୍ୱାମୀମାନେ, ବିନାଦୋଷରେ ଏମାନେ ମୋତେ ଜୀଅନ୍ତା ପୋଡ଼ିଦେବା ପାଇଁ ନେଇ ଯାଉଛନ୍ତି । ଶୀଘ୍ର ମୋତେ ଏ ବିପଦରୁ ଉଦ୍ଧାର କର ।"

ଭୀମ ନିଦରେ ଶୋଇଥିଲେ । ହଠାତ୍ ଦ୍ରୌପଦୀଙ୍କ ବିକଳ ଚିତ୍କାର ଶୁଣି ତାଙ୍କ ନିଦ ଭାଙ୍ଗିଗଲା । ସେ ବେଶ ବଦଳାଇ ଅନ୍ୟ ଏକ ବାଟରେ ଯାଇ ଶବ ପହଞ୍ଚିବା ଶ୍ମଶାନଠାରେ ପହଞ୍ଚିଗଲେ । ଶବ ବୋହି ନେଉଥିବା ଲୋକମାନେ ଶ୍ମଶାନରେ ପହଞ୍ଚିବା ମାତ୍ରେ ଭୀମ ଏକ ଶାଳ ଗଛ ଉପାଡ଼ି ସେମାନଙ୍କୁ ପିଟିବାରେ ଲାଗିଲେ । ଶବବାହକମାନେ ଭୀମଙ୍କୁ ସୈରିନ୍ଧ୍ରୀର ଗନ୍ଧର୍ବ ସ୍ୱାମୀ ମନେକରି କିଏ କୁଆଡ଼େ ପଳାଇଗଲେ । କେତେକ ଲୋକ ଭୀମଙ୍କ ମାଡ଼ରେ ମଲେ । ଶ୍ମଶାନଘାଟରେ ଆଉ ଜଣେ ହେଲେ ଲୋକ ଦେଖିବାକୁ ମିଳିଲେ ନାହିଁ । ଭୀମ ଅତିଶୀଘ୍ର ଦ୍ରୌପଦୀଙ୍କ ବନ୍ଧନ ଖୋଲିଦେଇ ତାଙ୍କୁ ନଅରକୁ ଫେରିଯିବା ପାଇଁ କହିଲେ । ଦ୍ରୌପଦୀ ଚାଲିଯିବା ପରେ ଭୀମ ଅନ୍ୟ ବାଟରେ ନଅରକୁ ଫେରିଆସିଲେ ।

ସେତିକିରେ ଦ୍ରୌପଦୀଙ୍କ ଦୁଃଖ ସରିଲା ନାହିଁ । ଅନ୍ତଃପୁରରେ ପହଞ୍ଚିବା ମାତ୍ରେ ସୁଦେଷ୍ଣା କହିଲେ, "ସୈରିନ୍ଧ୍ରୀ ତୋ ଲାଗି ମୋ ଭାଇ ମଲେ । ବିରାଟ ରାଜ୍ୟ ଆଜି ହତଶିରୀ ହୋଇଗଲା । ତୋ ଗନ୍ଧର୍ବ ସ୍ୱାମୀମାନଙ୍କ କଥା ଭାବି ମହାରାଜାଙ୍କର ମଧ ଭୟଜାତ ହେଲାଣି । ପୁଣି କେତେବେଳେ କି ଅନର୍ଥ ଘଟିବ, କିଏ କହିବ ? ଏଣୁ ତୁ ଅତି ଶୀଘ୍ର ଆମ ଅନ୍ତଃପୁର ଛାଡ଼ି ଅନ୍ୟଆଡ଼େ ଚାଲିଯା ।"

ହଠାତ୍ ଏପରି କଥା ଶୁଣି ଦ୍ରୌପଦୀଙ୍କ ମୁଣ୍ଡରେ ବଜ୍ରପାତ ହେଲାପରି ଲାଗିଲା । ସେ ହାତଯୋଡ଼ି କହିଲେ, "ମହାରାଣୀ, ଆପଣଙ୍କ ସାହାଯ୍ୟ ଜୀବନରେ ଭୁଲିପାରିବି ନାହିଁ । ମୋତେ ଅସମୟରେ ସାହାଯ୍ୟ ଓ ଆଶ୍ରୟ ଦେଇଥିବାରୁ ମୋ ସ୍ୱାମୀମାନେ ମହାରାଜାଙ୍କ ନିକଟରେ କୃତଜ୍ଞ । ତେଣୁ ମାତ୍ର ଆଉ ମାସଟିଏ ଆଶ୍ରୟ ଦେବାକୁ ଆପଣଙ୍କୁ ପ୍ରାର୍ଥନା କରୁଛି ।"

ସୁଦେଷ୍ଣା ଆଉ କିଛି କହିବେ ବୋଲି ଥତ ମତ ହେଉଥିଲେ । ମାତ୍ର ସୈରିନ୍ଧ୍ରୀ ଗନ୍ଧର୍ବ ସ୍ୱାମୀମାନଙ୍କ ଅସୀମ ପରାକ୍ରମ କଥା ସ୍ମରଣ କରି ଅଜଣା ଆଶଙ୍କାରେ ତାଙ୍କ ଛାତି ଥରିଉଠିଲା । ସେ ଆଉ କିଛି ନକହି ନୀରବ ହୋଇଗଲେ । ସୈରିନ୍ଧ୍ରୀ ପୁଣି ଅନ୍ତଃପୁରରେ ରହିଲେ ।

## କୌରବଙ୍କ ମତ୍ସ୍ୟଦେଶ ଆକ୍ରମଣ

ଅଜ୍ଞାତବାସ ଆରମ୍ଭ ଦିନରୁ ହିଁ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ଖୋଜି ବାହାର କରିବା ପାଇଁ ଚାରିଆଡ଼େ ଲୋକ ନିଯୁକ୍ତ କରିଥାନ୍ତି । ଅଜ୍ଞାତବାସର ସମୟ ପୂରି ଆସୁଥିଲେ ମଧ କୌଣସି ଆଡୁ କିଛି ଖବର ମିଳୁନଥାଏ । ଏହି ସମୟରେ ଶୁଣାଗଲା – ମହାପରାକ୍ରମୀ କୀଚକଙ୍କୁ ଜଣେ ଗନ୍ଧର୍ବ ହତ୍ୟା କରିଦେଇଛି । ଦୁର୍ଯ୍ୟୋଧନଙ୍କର ଆଗରୁ ବିରାଟରାଜାଙ୍କ ସହିତ ଶତ୍ରୁତା ଥିଲା । ମାତ୍ର ବୀରକୀଚକର ହତ୍ୟା ସଂବାଦରେ ସେ ଆନନ୍ଦିତ ନହୋଇ ଘୋର ଚିନ୍ତା ଓ ସନ୍ଦେହରେ ବୁଡ଼ିଗଲେ । କାରଣ କୀଚକ ପରି ଅସାଧାରଣ ବୀରକୁ ହତ୍ୟା କରିବା କେବଳ ବଳରାମ ବା ଭୀମଙ୍କ ପକ୍ଷରେ ସମ୍ଭବ । ସେ ଅନୁମାନ କଲେ – ଭୀମ ସେଇ ଗନ୍ଧର୍ବ ଓ ଯେଉଁ ସ୍ତ୍ରୀଟି ସୈରିନ୍ଧ୍ରୀ ନାମରେ କୀଚକ ମୃତ୍ୟୁର କାରଣ ହୋଇଛି, ସେ ନିଶ୍ଚୟ ଦ୍ରୌପଦୀ ।"

ସଭା ବସିଲା । ଦୁର୍ଯ୍ୟୋଧନ କହିଲେ, "ପାଣ୍ଡବମାନେ ମତ୍ସ୍ୟ ଦେଶରେ ଥିବା ମୋର ଅନୁମାନ । ଏହି ସୁଯୋଗରେ ଆମ୍ଭେମାନେ ମତ୍ସ୍ୟ ଦେଶ ଆକ୍ରମଣ କରି ତାଙ୍କର ସମସ୍ତ ଗୋଧନଙ୍କୁ ବଳପୂର୍ବକ ନେଇଆସିବା । ପାଣ୍ଡବମାନେ ସେଠାରେ ଆତ୍ମଗୋପନ କରିଥିବେ, ତେବେ ଅଜ୍ଞାତବାସର ସମୟ ପୂରିବା ଆଗରୁ ଚିହ୍ନା ପଡ଼ିଗଲେ ପୁଣି ବାରବର୍ଷ ବଣେ ବଣେ ବୁଲିବାକୁ ବାଧ୍ୟ ହେବେ । ଯଦି ପାଣ୍ଡବମାନେ ସେଠାରେ ନଥିବେ, ତା ହେଲେ ମଧ୍ୟ କିଛି କ୍ଷତି ନାହିଁ । ଆମେ ମତ୍ସ୍ୟ ଦେଶ ଆକ୍ରମଣ କରି ତାଙ୍କର ଅସୁମାରି ଗୋଧନକୁ ନେଇଆସିବା । ଏଥିରେ ଆମର ପ୍ରଚୁର ଲାଭ ମଧ୍ୟ ହେବ । ସଭାରେ ଉପସ୍ଥିତ ଥିବା ତ୍ରିଗର୍ତ୍ତ ଦେଶର ରାଜା ସୁଶର୍ମା କହିଲେ, "ବିରାଟ ରାଜା ମୋର ପ୍ରଧାନ ଶତ୍ରୁ । କୀଚକ ମୋତେ ନାନା ଭାବରେ ଅପମାନ ଦେଇଥିବା କଥା ମୁଁ କଦାପି ଭୁଲିପାରିବି ନାହିଁ । ବର୍ତ୍ତମାନ କୀଚକ ଆଉ ଜୀବନରେ ନାହିଁ । ଏହି ସୁଯୋଗରେ ମୁଁ ବିରାଟ ରାଜ୍ୟ ଆକ୍ରମଣ କରିବି ।"

ସୁଶର୍ମାଙ୍କ ପ୍ରସ୍ତାବକୁ କର୍ଣ୍ଣ ଅତି ଉତ୍ତମ ବୋଲି କହି ତାଙ୍କୁ ଉତ୍ସାହ ଦେବାରେ ଲାଗିଲେ । କଥା ହେଲା, ସୁଶର୍ମା ଉତ୍ତର ଦିଗରୁ ଆକ୍ରମଣ କଲେ ବିରାଟ ତାଙ୍କର ସୈନ୍ୟବଳ ଧରି ଉତ୍ତର ଦିଗକୁ ନିଶ୍ଚୟ ଚାଲିଆସିବେ । ଠିକ୍ ଏତିକିବେଳେ କୌରବ ସୈନ୍ୟ ଦକ୍ଷିଣ ଦିଗରୁ ବିରାଟ ରାଜ୍ୟକୁ ଘେରିଯିବେ । ଏପରି ହେଲେ ବିରାଟଙ୍କୁ ବୁଦ୍ଧିବାଟ ଦିଶିବ ନାହିଁ ।

ସୁଶର୍ମା ଚାଲିଗଲେ । ଦୁର୍ଯ୍ୟୋଧନ ଭୀଷ୍ମ, ଦ୍ରୋଣ, ଅଶ୍ୱତ୍ଥମା, କର୍ଣ୍ଣ ଓ କୃପାଚାର୍ଯ୍ୟ ଆଦିଙ୍କୁ ସଙ୍ଗରେ ନେଇ ବିରାଟ ରାଜ୍ୟ ଆକ୍ରମଣ କରିଦେଲେ । ଆଗରୁ ସୁଶର୍ମା ଆସି ବିରାଟଙ୍କ ଗାଈପଲ୍ଲଙ୍କୁ ନେଇ ଗଣ୍ଡଗୋଳ ଆରମ୍ଭ କରିଦେଇଥିଲେ । ବିରାଟ ଏ ଖବରପାଇ ମନେ ମନେ କୀଚକଙ୍କୁ ସ୍ମରଣ କରି କାନ୍ଦି ଉଠିଲେ । ଏହି ସମୟରେ କଙ୍କ (ଯୁଧିଷ୍ଠିର) କହିଲେ, "ମହାରାଜ, ବିପଦ ବେଳେ ଧୈର୍ଯ୍ୟ ଧରିବା ହିଁ ବୁଦ୍ଧିମାନ ଲୋକର କାର୍ଯ୍ୟ । ଆପଣଙ୍କର କେହି କିଛି କ୍ଷତି କରିପାରିବେ ନାହିଁ । ମୁଁ ସନ୍ୟାସୀ ସତ; ମାତ୍ର ଯୁଦ୍ଧ ବିଦ୍ୟାରେ ମୋର ଖୁବ୍ ଦକ୍ଷତା ଅଛି । ମୋତେ କିଛି ଅସ୍ତ୍ର ଶସ୍ତ୍ର ଓ ଗୋଟିଏ ରଥ ଦିଅନ୍ତୁ । ମୁଁ ଆପଣଙ୍କ ଶତ୍ରୁମାନଙ୍କୁ ସହଜରେ ପରାସ୍ତ କରି ଦେଇପାରିବି । ଖାଲି ସେତିକି ନୁହେଁ, ଆପଣଙ୍କ ପୂଜାରୀ ବଲ୍ଲଭ, ଗ୍ରନ୍ଥିନି ଓ ତନ୍ତୀପାଳ ମଧ୍ୟ ଆମକୁ ସାହାଯ୍ୟ କରିବାକୁ ଆଦେଶ ଦିଅନ୍ତୁ । ସେମାନେ ମଧ୍ୟ ଯୁଦ୍ଧବିଦ୍ୟା ଜାଣନ୍ତି ।"

ବିରାଟଙ୍କ ମନରେ ସାହସ ବଢ଼ିଗଲା । ସେ ଅର୍ଜୁନଙ୍କ ବ୍ୟତୀତ ଛଦ୍ମବେଶରେ ଥିବା ଅନ୍ୟ ଚାରି ପାଣ୍ଡବଙ୍କୁ ସଙ୍ଗରେ ନେଇ ଯୁଦ୍ଧକୁ ବାହାରିଲେ । ଭୟଙ୍କର ଯୁଦ୍ଧ ଲାଗିଗଲା । ଉଭୟ ପକ୍ଷରୁ ବହୁ ସୈନ୍ୟ ମଲେ । ଅନେକ ଖଣ୍ଡିଆ ଖାବରା ହୋଇ ଅକାମୀ ହୋଇପଡ଼ିଲେ । ସୁଶର୍ମାଙ୍କ ଗଦା ମାଡ଼ରେ ବିରାଟଙ୍କ ରଥ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ସେ ବିରାଟ ରାଜାଙ୍କୁ ବାନ୍ଧି କରି ନେଇଗଲେ ।

ପ୍ରଥମେ ପାଣ୍ଡବମାନେ ନିଜର ପରାକ୍ରମ ଦେଖାଇ ଯୁଦ୍ଧ କରୁନଥିଲେ । ମାତ୍ର ବିରାଟଙ୍କୁ ତ୍ରିଗର୍ତ୍ତ ବାନ୍ଧି ନେବା ଦେଖି ଯୁଧିଷ୍ଠିର କହିଲେ, "ଭୀମ, ଅତିଶୀଘ୍ର ବିରାଟଙ୍କୁ ମୁକ୍ତକରି ଆଣ ।" ଆଦେଶ ପାଇଲା ମାତ୍ରେ ଭୀମ ଏକ ପ୍ରକାଣ୍ଡ ଗଛ ଉପାଡ଼ିବାକୁ ଯାଉଥିବା ବେଳେ ଯୁଧିଷ୍ଠିର ବାରଣ କରି କହିଲେ, "ଅଜ୍ଞାତବାସର ସମୟ ପୂରି ନାହିଁ । ଗଛ ଉପାଡ଼ି ଯୁଦ୍ଧ କଲେ ତୁମେ ନିଶ୍ଚୟ ଚିହ୍ନା ପଡ଼ିଯିବ ଓ ଆମର ସବୁ ଚେଷ୍ଟା ବୃଥା ହୋଇଯିବ । ଯାଅ, ଧନୁ ଓ ଗଦା ନେଇ ଯୁଦ୍ଧ କର ।"

ଭୀମଙ୍କ ମନକୁ କଥାଟା ପାଇଲା । ସେ ଅଳ୍ପ ସମୟ ମଧ୍ୟରେ ତ୍ରିଗର୍ତ୍ତ ରାଜାଙ୍କୁ ବାନ୍ଧି କଙ୍କଙ୍କ ଆଗରେ ଠିଆ କରିଦେଲେ ଓ ବିରାଟଙ୍କ ବନ୍ଧନ ଖୋଲିଦେଲେ । ସମସ୍ତେ ବଲ୍ଲଭଙ୍କୁ ଧନ୍ୟ ଧନ୍ୟ କହିବାରେ ଲାଗିଲେ ।

ବିରାଟ ରାଜା ସୁଶର୍ମାଙ୍କୁ ପରାସ୍ତ କରିଥିବା ଖବର ପାଇ ବିରାଟଙ୍କ ନଗରରେ ଆନନ୍ଦର ଢେଉ ଖେଳିଗଲା । ରାଜାଙ୍କୁ ପାଛୋଟି ଆଣିବା ପାଇଁ ବହୁଲୋକ ପ୍ରସ୍ତୁତ ହେବାରେ ଲାଗିଲେ ।

# କୌରବମାନଙ୍କ ଗୋଧନ ହରଣ

ବିରାଟ ନଗରବାସୀ ରାଜାଙ୍କୁ ପାଛୋଟି ଆଣିବାକୁ ବାହାରିଥିବା ବେଳେ ହଠାତ୍ ଖବର ପହଞ୍ଚିଲା, "କୌରବମାନେ ବିରାଟଙ୍କ ଗୋରୁପଲଙ୍କୁ ଅଧିକାର କରିନେଲେ । ଗୋରୁ ରକ୍ଷକମାନେ ରାଜଧାନୀକୁ ପଳାଇ ଆସି ରାଜକୁମାର ଉତ୍ତରଙ୍କୁ କହିଲେ, "ବର୍ତ୍ତମାନ ରାଜା ଓ ସୈନ୍ୟମାନେ ତ୍ରିଗର୍ତ୍ତ ରାଜ୍ୟରୁ ଫେରିନାହାନ୍ତି । କୌରବମାନଙ୍କ ହାତରୁ ଆମର ଗୋ-ସମ୍ପଦ ଛଡ଼ାଇ ଆଣିବା ପାଇଁ ଆପଣଙ୍କ ବ୍ୟତୀତ ଉଆସରେ ଆଉ କେହି ନାହାନ୍ତି । ଶୀଘ୍ର କିଛି ବ୍ୟବସ୍ଥା କରି ଆମ ରାଜ୍ୟର ମହତ ରକ୍ଷାକରନ୍ତୁ ।"

ଅନ୍ତଃପୁରରେ ଏକଥା କହୁଥିଲାବେଳେ କେବଳ ସ୍ତ୍ରୀଲୋକମାନେ ଥିଲେ । ଉତ୍ତର ଖବ୍ ଦମ୍ଭର ସହ କହି ପକାଇଲେ, "କୌରବ ପକ୍ଷର ବୀର ଏପରିକି ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଓ ଦୁର୍ଯ୍ୟୋଧନ ଆଦିଙ୍କୁ ମୁଁ ସହଜରେ ପରାସ୍ତ କରିପାରେ । ଅସୁବିଧା ଏତିକି ଯେ ବର୍ତ୍ତମାନ ମୋ ରଥରେ ସାରଥୀ ହେବା ପାଇଁ ରାଜଧାନୀରେ କେହି ନାହାନ୍ତି । ସାରଥୀ ନଥାଇ ମୁଁ ଯୁଦ୍ଧ କରିବାକୁ ଯିବି କିପରି ?"

ଦ୍ରୌପଦୀ ଉତ୍ତରଙ୍କ କଥା ଶୁଣି ମନେ ମନେ ଖୁବ୍ ହସିଲେ । ସେ ରାଜକୁମାରୀ ଉତ୍ତରାଙ୍କୁ କହିଲେ, "ଦେବୀ; ଉତ୍ତରଙ୍କ୍ ରଥରେ ସାରଥୀ ହେବାକୁ ଲୋକ ନଥିବାରୁ ସେ ଯୁଦ୍ଧକୁ ଯାଇପାରୁ ନାହାନ୍ତି । ଯୁଦ୍ଧକୁ ନଗଲେ ଆମ ଗାଈଗୋଠକୁ କୌରବମାନେ ନିଶ୍ଚୟ ନେଇ ଚାଲିଯିବେ । ଆମକୁ ପରାଜୟର ଅପମାନ ଭୋଗିବାକୁ ପଡ଼ିବ । ରାଜା ଫେରିଲେ ଖୁବ୍ ଦୁଃଖିତ ହେବେ । ଆପଣଙ୍କ ଉଆସରେ ଥିବା ବୃହନ୍ନଳା ଅର୍ଜ୍ଜୁନଙ୍କ ରଥରେ ସାରଥୀ ହେବାର ମୁଁ ଦେଖିଛି । ସେତେବେଳେ ମୁଁ ଦ୍ରୌପଦୀଙ୍କ ଦାସୀ ରୂପେ କାର୍ଯ୍ୟ କରୁଥିଲି । ବୃହନ୍ନଳା ଅର୍ଜ୍ଜୁନଙ୍କଠାରୁ ଅସ୍ତ୍ର ବିଦ୍ୟା ମଧ୍ୟ ଶିକ୍ଷା କରିଥିବା କଥା ମୁଁ ଜାଣେ । ଆଉ ବିଳମ୍ବ ନକରି ବୃହନ୍ନଳାଙ୍କୁ ଉତ୍ତରଙ୍କ ରଥରେ ସାରଥୀ ହେବାପାଇଁ ଆଦେଶ ଦିଅନ୍ତୁ ।"

ରାଜକୁମାରୀ ବଡ଼ଭାଇ ଉତ୍ତରଙ୍କ ନିକଟକୁ ଯାଇ ସୈରିନ୍ଧ୍ରୀଙ୍କଠାରୁ ଯାହା ଶୁଣିଲେ ସବୁ କହିଲେ ।

ଉତ୍ତର ରାଜି ହେବାରୁ ଉତ୍ତରା ନୃତ୍ୟଶାଳାରେ ଥିବା ଅର୍ଜ୍ଜୁନ ରୂପୀ ବୃହନ୍ନଳାଙ୍କୁ କହିଲେ, "ତୁମ ବୀରତ୍ୱ କଥା ମୁଁ ସୈରିନ୍ଧ୍ରୀଙ୍କଠାରୁ ଶୁଣିଛି । ବର୍ତ୍ତମାନ ଭାଇଙ୍କ ରଥର ସାରଥୀ ହୋଇ ଆମ ରାଜ୍ୟକୁ ବିପଦରୁ ଉଦ୍ଧାର ନକଲେ ଆମର ଘୋର କ୍ଷତି ହେବ । ତୁମେ ଖାଲି ସାରଥୀ ନୁହଁ, ଯୁଦ୍ଧ ବିଦ୍ୟା ମଧ୍ୟ ଜାଣ ବୋଲି ସୈରିନ୍ଧ୍ରୀ କହୁଥିଲା । କିଛି ଭୟ ନକରି ଭାଇଙ୍କ ରଥର ସାରଥୀ ରୂପେ ଆମକୁ ସାହଯ୍ୟ କର । ଭାଇ ତୁମକୁ ସବୁମତେ ସାହାଯ୍ୟ କରିବେ ।"

ଉତ୍ତରାଙ୍କ ଅନୁରୋଧ ରକ୍ଷାକରି ବୃହନ୍ନଳା (ଅର୍ଜ୍ଜୁନ) ଉତ୍ତରଙ୍କ ନିକଟକୁ ଗଲେ । ସେଠାରେ ଉପସ୍ଥିତ ହୋଇ ସେ ଏପରି ମୁଖଭଙ୍ଗୀ କଲେ, ଯେପରି ସତେ ସେ ଯୁଦ୍ଧ ବିଷୟରେ କିଛି ଜାଣନ୍ତି ନାହିଁ । ଖାଲି ସେତିକି ନୁହେଁ ସାଞ୍ଜୁ ଆଦି ଯୁଦ୍ଧ ପୋଷାକ ପିନ୍ଧିଲା ବେଳେ ଆଗରୁ ଏ ସବୁ ଦେଖି ନଥିଲା ପରି ଛଳନା କଲେ । ଅନ୍ତଃପୁରର ସ୍ତ୍ରୀଲୋକମାନେ ଅର୍ଜ୍ଜୁନଙ୍କର ଏପରି ବେଶ ଦେଖି ହସି ହସି କହିଲେ, "ଉତ୍ତରଙ୍କ ସାଙ୍ଗରେ ଥିଲେ ତୁମର କୌଣସି କ୍ଷତି ହେବ ନାହିଁ । ଏପର ଡରି ଯାଉଛ କାହିଁକି ?" ଅର୍ଜ୍ଜୁନ କିଛି ସମୟ ଏ କୌତୁକ ଉପଭୋଗ କରିବା ପରେ ରଥ ଚଳାଇ ଯୁଦ୍ଧ କ୍ଷେତ୍ରକୁ ଗଲେ । ରଥ ନେଉଥିବା ବେଳେ ବୃହନ୍ନଳା ଅନ୍ତଃପୁରର ସ୍ତ୍ରୀଲୋକମାନଙ୍କୁ କହିଲେ, "ଉତ୍ତର ନିଶ୍ଚୟ ଜୟଲାଭ କରିବେ । ଆମେ କୌରବ ବୀରମାନଙ୍କ ସୁନାଜରି ଦିଆ ପୋଷାକମାନ ଆଣି ତୁମ୍ଭମାନଙ୍କୁ ଉପହାର ଦେବୁ ।"

## ଉତ୍ତରଙ୍କ ଯୁଦ୍ଧଯାତ୍ରା

ରଥରେ ବସିବା ମାତ୍ରେ ଉତ୍ତର କହିଲେ, "ବୃହନ୍ନଳା, ଅତିଶୀଘ୍ର ମୋତେ କୌରବ ସେନାମାନଙ୍କ ପାଖକୁ ନେଇଚାଲ ।

ଯେ ପର୍ଯ୍ୟନ୍ତ ଦୁଷ୍ଟ କୌରବମାନଙ୍କୁ ଉଚିତ ଶିକ୍ଷା ନଦେଇଛି, ସେପର୍ଯ୍ୟନ୍ତ ମୁଁ ସ୍ଥିର ହୋଇ ରହିପାରିବି ନାହିଁ ।" ଅର୍ଜୁନ ଅତି ବେଗରେ ରଥ ଚଳାଇବାରେ ଲାଗିଲେ । କୌରବ ପକ୍ଷର ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥମା ଆଦ ମହାବୀରମାନଙ୍କୁ ଦେଖି ଉତ୍ତରଙ୍କ ପୂର୍ବ ଦମ୍ଭ ଆଉ ରହିଲା ନାହିଁ । ସେ ଭୟରେ ଥରି ଥରି କହିଲେ, "ସାରଥି, ଏମାନଙ୍କ ସହିତ ମୁଁ ଆଦୌ ଯୁଦ୍ଧ କରିପାରିବି ନାହିଁ । କୌରବ ବୀରମାନଙ୍କ ସହିତ ଯୁଦ୍ଧ କରିବା ତ ଦୂରର କଥା, ତାଙ୍କୁ ଦେଖିବା ପରଠାରୁ ମୋ ଛାତି ଧଡ଼ଧଡ଼ ହେଲାଣି । ଦେହ ହାତ ଏପରି ଥରି ଉଠୁଛି ଯେ ଠିଆ ହୋଇ ଧନୁ ଧରିବା ମୋ ପକ୍ଷରେ ଅସମ୍ଭବ । ମୁଁ ଏକାକୀ ଯୁଦ୍ଧ କ୍ଷେତ୍ରକୁ ଆସି ବଡ଼ ଭୁଲ୍ କରି ପକାଇଛି । ଶୀଘ୍ର ରଥ ଲେଉଟାଇ ପଳାଇଯିବା । ଅଧିକ ବିଳମ୍ବ ହେଲେ ମୁଁ ଜୀବନ ନେଇ ଫେରିବା ସମ୍ଭବହେବ ନାହିଁ । ଆଉ ମୁହୂର୍ତ୍ତେ ମଧ ଏଠାରେ ରହିବାକୁ ମୁଁ ଚାହୁଁନାହିଁ ।"

ବୃହନ୍ନଳା ଅଳ୍ପ ହସି କହିଲେ, "ଏ କି କଥା କହୁଛନ୍ତି ରାଜପୁତ୍ର ? ଅଳ୍ପ ସମୟ ଆଗରୁ ଆପଣ ଅନ୍ତଃପୁରର ନାରୀମାନଙ୍କ ଆଗରେ ଖୁବ୍ ବୀରତ୍ୱ ଦେଖାଇଥିଲେ । ସେମାନେ ଆପଣଙ୍କଠାରୁ ବହୁମୂଲ୍ୟ ବସନଭୂଷଣ ପାଇବା ଆଶାରେ ଅପେକ୍ଷା କରି ବସିଥିବେ । ଯଦି ଆପଣ ଏଠାରୁ ଖାଲି ହାତରେ ଫେରିଯିବେ, ତେବେ ଶତ୍ରୁମାନଙ୍କ କଥା ଛାଡ଼, ଉଆସର ସ୍ତ୍ରୀଲୋକମାନେ ଯେପରି ଥଟ୍ଟା କଥା କହିବେ, ତାହା ସହିହେବ ନାହିଁ । ପୁଣି ମନେ ପକାନ୍ତୁ ସୈରିନ୍ଧ୍ରୀ ମୋର ଖୁବ୍ ପ୍ରଶଂସା କରିଛନ୍ତି । ଉତ୍ତରାଙ୍କ ଅନୁରୋଧ, ଆପଣଙ୍କ ଆଦେଶ ଓ ସୌରିନ୍ଧ୍ରୀଙ୍କ ପ୍ରଶଂସା ମୋତେ ରକ୍ଷା କରିବାକୁ ହେବ । ମୁଁ ଯୁଦ୍ଧ ନକରି ଏଠାରୁ ଫେରିପାରିବି ନାହିଁ ।" ଉତ୍ତର ବ୍ୟାକୁଳ ହୋଇ ଯୁଦ୍ଧକ୍ଷେତ୍ରରୁ ଫେରିଯିବା ପାଇଁ ବାରମ୍ବାର ଅନୁରୋଧ କଲେ । ଶେଷକୁ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ମାତ୍ର ଉତ୍ତରଙ୍କ କୌଣସି କଥା ନଶୁଣି ବୃହନ୍ନଳା କୌରବ ସେନାମାନଙ୍କ ଆହୁରି ପାଖକୁ ରଥ ଚଳାଇବାରେ ଲାଗିଲେ ।

ଉତ୍ତରଙ୍କ ଭୟର ସୀମା ରହିଲା ନାହିଁ । ସେ ଥରି ଥରି କହିଲେ, "ବୃହନ୍ନଳା, କୌରବମାନେ ଆମର ସବୁ ନେଇଯାଆନ୍ତୁ, ଅନ୍ତଃପୁରର ସ୍ତ୍ରୀଲୋକମାନେ ଯେତେ ଇଚ୍ଛା ଥଟ୍ଟା କରିବେ କରନ୍ତୁ, ବାପା ଯାହା କହିବାର କହନ୍ତୁ, ମୁଁ କଦାପି କୌରବ ବୀରମାନଙ୍କ ଆଗକୁ ଯାଇପାରିବି ନାହିଁ । ମୂର୍ଖଙ୍କ ପରି କଥା ନକହି ଶୀଘ୍ର ରଥ ଫେରାଅ । ନ ହେଲେ ମୁଁ ରଥରୁ ଡେଇଁ ପଡ଼ି ପଳାଇବି ।" ଅପେକ୍ଷା ନକରି ଉତ୍ତର ସତକୁ ସତ ରଥରୁ ଡେଇଁ ପଡ଼ି ପଳାଇବାରେ ଲାଗିଲେ ।

ଅର୍ଜୁନ ଅତି ବେଗରେ ତାଙ୍କ ପଛେ ପଛେ ଗୋଡ଼ାଇ ଅଧବାଟରେ ତାଙ୍କୁ ଧରି ପକାଇଲେ । ଉତ୍ତର ଥରିଥରି କହିଲେ, "ବୃହନ୍ନଳା, ମୋତେ ଛାଡ଼ିଦିଅ । ଚାଲ ଘରକୁ ପଳାଇଯିବା । ଯୁଦ୍ଧରେ ମରିବାଠାରୁ ବଞ୍ଚି ରହିବାକୁ ମୁଁ ବହୁତ ପସନ୍ଦ କରେ । ମୁଁ ତୁମକୁ ମନ ଇଚ୍ଛା ଧନରତ୍ନ ଦେବି । ମୋତେ ଶୀଘ୍ର ନେଇଚାଲ ।" ଉତ୍ତର ଆଉ କିଛି ନକହି କେବଳ କାନ୍ଦିବାରେ ଲାଗିଲେ । ଅର୍ଜୁନ ତାଙ୍କୁ ବହୁତ ବୁଝାଇ ରଥ ଉପରକୁ ଆଣିଲେ । ତାଙ୍କ ମନରେ ସାହସ ଦେଇ କହିଲେ, "ଆପଣ ଯୁଦ୍ଧ ନକଲେ ନାହିଁ । ମୁଁ ଯୁଦ୍ଧ କରିବି । ଆପଣ ସାରଥୀ ହୋଇ ରଥରେ ବସନ୍ତୁ । ମୁଁ କଅଣ କରିବି ଆପଣ ଦେଖିବେ ।"

ଉତ୍ତର ରଥରୁ ଡେଇଁ ପଳାଇବା, ତାଙ୍କ ପଛେ ପଛେ ବେଣୀ ଦୋହଲାଇ ପଣନ୍ତ ଉଡ଼ାଇ ବୃହନ୍ନଳା ଗୋଡ଼ାଇଥିବା ଦେଖି କୌରବମାନେ ହସି ହସି ଗଡ଼ିଗଲେ, ବୃହନ୍ନଳାକୁ ପାଖରୁ ଦେଖି କୌରବମାନେ ଭାବିଲେ, ଏ ଲୋକଟି କିଏ ? ଏହାର ଚେହେରା ଅନେକାଂଶରେ ଅର୍ଜୁନର ଚେହେରା ସହିତ ମିଳିଯାଉଛି । ଏ କ'ଣ ସତରେ ଛଦ୍ମବେଶୀ ଅର୍ଜୁନ ?

ଦ୍ରୋଣ କହିଲେ, "ସ୍ତ୍ରୀ ବେଶରେ ଅର୍ଜୁନ ନିଶ୍ଚୟ ଉତ୍ତରର ସାରଥୀ ସାଜି ଆସିଛି ।" କର୍ଣ୍ଣ କହିଲେ, "ଯଦି ସେ ଅର୍ଜୁନ ହୋଇଥାଏ, ତେବେ କଅଣ କରି ପକାଇବ ?" ଦୁର୍ଯ୍ୟୋଧନ କହିଲେ, "ଆମେ ଏବେ ଚିନ୍ତିତ ହେବା ଉଚିତ ନୁହେଁ । ଯଦି ସେ ପ୍ରକୃତରେ ଅର୍ଜୁନ ହୋଇଥାଏ, ତେବେ ତ ପାଣ୍ଡବମାନେ ଧରା ପଡ଼ିଯିବେ ଓ ପୁଣି ବାରବର୍ଷ ବଣରେ ରହିବେ । ଏଥିରେ ଆମର ଲାଭଛଡ଼ା କ୍ଷତି ଆଁଦୌ ନାହିଁ । ବୃଥାରେ ଆପଣ ଚିନ୍ତା କରୁଛନ୍ତି କାହିଁକି ?"

ଉତ୍ତରଙ୍କୁ ନେଇ ଅର୍ଜୁନ ଶ୍ମଶାନ ନିକଟରେ ଥିବା ଶମୀଗଛ ପାଖରେ ରଥ ରଖି କହିଲେ, "ଏ ଗଛରେ ଚଢ଼ି ଡାଳରେ ଝୁଲୁଥିବା ବିଡ଼ାଟି ତଳକୁ ଆଣ ।" ଉତ୍ତର କହିଲେ, "ବାପ୍‌ରେ ବାପ୍, ମୁଁ ସେଠାକୁ ଆଦୌ ଯିବିନାହିଁ । ସେ ଗଛରେ ଗୋଟାଏ ମୁର୍ଦ୍ଦାର ଝୁଲୁଥିବା କଥା ମୁଁ ଲୋକଙ୍କଠାରୁ ଶୁଣିଛି । ଜାଣି ମୁଁ ମୁର୍ଦ୍ଦାରଟାକୁ ଛୁଇଁବି କିପରି ?"

ଅର୍ଜୁନ କହିଲେ, "ମୁଁ ଭଲ କରି ଜାଣେ, ସେଇଟା ମୁର୍ଦ୍ଦାର ନୁହେଁ । ପାଣ୍ଡବମାନଙ୍କ ଅସ୍ତ୍ରଶସ୍ତ୍ର ଗୁଡ଼ିକ ବିଡ଼ା ବନ୍ଧା ହୋଇ ଗଛରେ ଝୁଲୁଛି । ଦୂରକୁ ମଣିଷଟାଏ ଗଛରେ ଝୁଲୁଥିବା ପରି ଦେଖାଯାଉଥିବାରୁ ଲୋକେ ସେପରି କହୁଥିବେ । ଆଉ ବିଳମ୍ବ ନକରି ସେ ବିଡ଼ାଟି ତଳକୁ ଆଣ ।"

ଇଚ୍ଛା ନଥିଲେ ମଧ୍ୟ ଉତ୍ତର ବାଧ୍ୟ ହୋଇ ଗଛରୁ ସେ ବିଡ଼ାଟି ଆଣିଲେ । ଅର୍ଜୁନ ପୁଡ଼ା ଫିଟାଇଦେବା ମାତ୍ରେ ଅସ୍ତ୍ରଶସ୍ତ୍ରର ତେଜରେ ଉତ୍ତରଙ୍କ ଆଖି ଝଲସି ଉଠିଲା । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ବୃହନ୍ନଳା, ତୁମେ ତ କହୁଛ, ଏ ଗୁଡ଼ିକ ପାଣ୍ଡବମାନଙ୍କର ଅସ୍ତ୍ରଶସ୍ତ୍ର । ସେମାନେ ରାଜ୍ୟ ହରାଇ ବଣରେ ବୁଲୁଥିବା କଥା ମୁଁ ଶୁଣିଛି । ଏବେ ସେମାନେ କେଉଁଠି ଅଛନ୍ତି ତୁମେ ଜାଣକି ?"

ଏଥର ଅର୍ଜୁନ କହିଲେ, "ମୁଁ ନିଜେ ଅର୍ଜୁନ । ମୋ ବଡ଼ଭାଇ ଯୁଧିଷ୍ଠିର କଙ୍କ ନାମରେ ତୁମ ରାଜସଭାରେ ଅଛନ୍ତି । ମହାବୀର ଭୀମ ବଲ୍ଲଭ ନାମରେ ତୁମର ରୋଷେୟା, ନକୁଳ ଅଶ୍ୱରକ୍ଷକ, ସହଦେବ ଗୋରକ୍ଷକ ଓ ଦ୍ରୌପଦୀ ସୈରିନ୍ଧ୍ରୀ ନାମରେ ତୁମ ଅନ୍ତଃପୁରରେ ଦାସୀ ଭାବରେ ଅଛନ୍ତି । ହେ ରାଜକୁମାର, ମନରୁ ଭୟ ଦୂର କରି ଦେଖ, ମୁଁ ଅତିଶୀଘ୍ର ସମସ୍ତ କୌରବ ବୀରଙ୍କୁ ପରାସ୍ତ କରିଦେବି । ଏକଥା ଅନ୍ୟ କେହି ଜାଣିପାରିବେ ନାହିଁ । ତୁମେ ଯଥେଷ୍ଟ ପ୍ରଶଂସା ପାଇବ ।"

ଉତ୍ତର ହାତଯୋଡ଼ି କହିଲେ, "ନଜାଣି ମୁଁ ଅନେକ କଟୁ କଥା କହି ପକାଇଛି, ଆପଣଙ୍କୁ ପାଇ ମୁଁ ଆଜି ଧନ୍ୟ । ସାମାନ୍ୟ ପିଲା ଭାବି ମୋତେ କ୍ଷମା କରିଦିଅନ୍ତୁ । ବର୍ତ୍ତମାନ ମୁ ଆପଣଙ୍କର ସାରଥୀ । କେଉଁ ଆଡ଼କୁ ରଥ ନେବି ଆଦେଶ ଦିଅନ୍ତୁ ।"

କୌରବ ସେନାମାନଙ୍କ ନିକଟରେ ଉପସ୍ଥିତ ହୋଇ ଅର୍ଜୁନ ରଥରୁ ଓହ୍ଲାଇ ପଡ଼ିଲେ । ପବନରେ ଏଣେତେଣେ ଉଡୁଥିବା ନିଜର ଲମ୍ବା ବାଳ ଗୁଡ଼ିକୁ ଭଲ କରି ବାନ୍ଧି ଦେଲେ । ପରେ ପରେ ରଥ ଉପରକୁ ଉଠି ଗାଣ୍ଡୀବ ଧନୁର ଗୁଣକୁ ବାରମ୍ବାର ଟଣଟଣ କରିବାରେ ଲାଗିଲେ ଓ ଦେବଦତ୍ତ ଶଙ୍ଖ ବଜାଇଲେ । ଏହା ନିଶ୍ଚୟ ଅର୍ଜୁନଙ୍କ ଯୁଦ୍ଧ ଡାକରା ଭାବି କୌରବମାନେ ଭୟରେ ଥରି ଉଠିଲେ ।

ଦ୍ରୋଣାଚାର୍ଯ୍ୟ କହିଲେ, "ମୋର ଅନୁମାନ ସତ୍ୟ । ଯେ ଶଙ୍ଖଧ୍ୱନୀ କରୁଛି, ସେ ଅର୍ଜୁନ ବ୍ୟତୀତ ଅନ୍ୟ କେହି ନୁହେଁ । ବିଳମ୍ବ ନକରି ସମସ୍ତେ ପ୍ରସ୍ତୁତ ହୋଇଯାଅ । ନହେଲେ ଗାଣ୍ଡୀବ ହାତରୁ କେହି ରକ୍ଷା ପାଇବ ନାହିଁ ।"

ଦ୍ରୋଣାଚାର୍ଯ୍ୟଙ୍କ କଥା ଦୁର୍ଯ୍ୟୋଧନଙ୍କୁ ଆଦୌ ଭଲ ଲାଗିଲା ନାହିଁ । ସେ କହିଲେ, "ଅର୍ଜୁନ ଆଚାର୍ଯ୍ୟଙ୍କର ଅତିପ୍ରିୟ । ସେ ସର୍ବଦା ଅର୍ଜୁନର ପ୍ରଶଂସା କରିବାରେ ବ୍ୟସ୍ତ ।"

କର୍ଣ୍ଣ କହିଲେ, "ଅର୍ଜୁନଙ୍କ ଗାଣ୍ଡୀବ ଶବ୍ଦ ଶୁଣି ଆମ ସୈନ୍ୟମନେ ଭୟରେ ଥରୁଛନ୍ତି । ମାତ୍ର ମୋର ସେଥିପ୍ରତି ଟିକେ ହେଲେ ଭୟ ନାହିଁ । ଅର୍ଜୁନ ତ ଅର୍ଜୁନ, ମହାପରାକ୍ରମୀ ଗୁରୁ ପର୍ଶୁରାମ ଆସି ଅର୍ଜୁନକୁ ସାହାଯ୍ୟ କଲେ ମଧ୍ୟ ମୁଁ ବିଜୟ ଲାଭ କରିବି ।"

କୃପାଚାର୍ଯ୍ୟ କହିଲେ, "କର୍ଣ୍ଣ ବହୁତ ବଡ଼ ବଡ଼ କଥା କହିଥାନ୍ତି । ବୀରତ୍ୱ ଅପେକ୍ଷା ତାଙ୍କଠାରେ ଗର୍ବର ମାତ୍ରା ଅଧିକ । ପାଣ୍ଡବମାନେ ବିରାଟ ନଗରରେ ଥିବା କଥା ଆଗରୁ ଜାଣିଥିଲେ, ମୁଁ ଏଠାକୁ ଆଦୌ ଆସି ନଥାନ୍ତି । ଆଉ ବେଳ ନାହିଁ । ଆମେ ସମସ୍ତେ ଏକାଠି ନହେଲେ କେହି ରକ୍ଷା ପାଇପାରିବା ନାହିଁ । ନିଜର ବଡ଼ପଣିଆ ଦେଖାଇ ହେବାର ଏ ସମୟ ନୁହେଁ ।"

ଅଶ୍ୱତ୍ଥମା କହିଲେ, "ଉତ୍ତମ ଶିଷ୍ୟ ପ୍ରତି ଗୁରୁଙ୍କର ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦ ରହିଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହା ନ୍ୟାୟ ଓ ଧର୍ମର କଥା । କପଟ ପଶା ଖେଳରେ ଅତି ଅନ୍ୟାୟ ଭାବରେ ଅନ୍ୟର ରାଜ୍ୟ ନିଜ ଅଧୀନକୁ ଆଣିବା ଏକ ସମ୍ମାନ ଜନକ କାର୍ଯ୍ୟ - ଏକଥା ମୁଁ କୌଣସି ଶାସ୍ତ୍ରରୁ ଖୋଜି ପାଉନାହିଁ । ତୁମେ ଏ ପର୍ଯ୍ୟନ୍ତ ଏପରି କୌଣସି ମହତ କାର୍ଯ୍ୟ କରିନାହଁ; ଯାହାକୁ ନେଇ ଗର୍ବ କରିହେବ । କପଟ ପଶାଖେଳରେ ତୁମେ ନିରୀହ ପାଣ୍ଡବମାନଙ୍କୁ ବଣେ ବଣେ ବୁଲାଇଲ, ତାହା ଆଦୌ ବୀରତ୍ୱ ବା କ୍ଷତ୍ରିୟର ଧର୍ମ ନୁହେଁ । ବରଂ ନୀଚତାର ପରିଚୟ କହିଲେ ଠିକ୍ ହେବ । ହେ ବୀରମାନେ, କେଉଁ ମହାଯୁଦ୍ଧରେ ଆପଣମାନେ ପାଣ୍ଡବମାନଙ୍କୁ ଜୟ କରିଥିଲେ ? ଦ୍ରୌପଦୀଙ୍କ ପରି ଦେବୀଙ୍କୁ କୁରୁସଭାରେ ଯେଉଁ ପରି ଅପମାନ ଦେଇଛ, ତାହା ଆଦୌ ଗୌରବ ନୁହେଁ । ଅପେକ୍ଷା କର । ପାଣ୍ଡବମାନେ କିଛି ଭୁଲି ଯାଇନାହାନ୍ତି । ଠିକଣା ବେଳରେ ସେମାନେ ପ୍ରତିଶୋଧ ନେବେ । ସେତେବେଳେ ମାମୁଁ ଶକୁନିଙ୍କ କୂଟବୁଦ୍ଧି କାମ ଦେଖାଇବ ନାହିଁ । ମନେରଖ, ଯୁଦ୍ଧଟା ପଶାଖେଳ ନୁହେଁ ।"

ପିତାମହ ଭୀଷ୍ମ କହିଲେ, "କୃପାଚାର୍ଯ୍ୟ ଓ ଅଶ୍ୱତ୍ଥମା ଠିକ୍ କହିଛନ୍ତି । ପଣ୍ଡିତ ଲୋକ ଗୁରୁଙ୍କୁ ଅପମାନ ଦିଅନ୍ତି ନାହିଁ । ବିପଦ ଆସିଯିବା ଦେଖି ମଧ୍ୟ ଯେଉଁମାନେ ସତର୍କ ନହୁଅନ୍ତି, ସେମାନଙ୍କୁ ମହାମୂର୍ଖ କୁହାଯାଏ ।" ଏହାପରେ ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ କହିଲେ, "ପାଣ୍ଡବମାନଙ୍କର ଏକ ବର୍ଷ ଅଜ୍ଞାତବାସ ଶେଷ ହୋଇଯାଇଛି । ତେଣୁ ଅର୍ଜୁନ ନିର୍ଭୟରେ ଆମ ଆଗକୁ ଆସି ଯାଇଛି । ଯଦି ପାଣ୍ଡବମାନଙ୍କ ସହିତ ବନ୍ଧୁତା ରଖିବାକୁ ଚାହଁ, ତେବେ ଏବେ ବି ସମୟ ଅଛି । ନାହିଁ ଯଦି ବଂଶ ନାଶକାରୀ ଯୁଦ୍ଧ ପାଇଁ ତୁମର ଆଗ୍ରହ, ତେବେ କଅଣ କରିବ, ଚିନ୍ତା କରି କହ ।"

ଦୁର୍ଯ୍ୟୋଧନ ଦଣ୍ଡେ ମାତ୍ର ଚିନ୍ତା ନକରି କହିଲେ, "ପିତାମହ, ପାଣ୍ଡବମାନେ ମୋର ପରମଶତ୍ରୁ । ସେମାନଙ୍କ ସହ ମିତ୍ରତା କରିବାକୁ ମୁଁ ଘୃଣା କରେ । ରାଜ୍ୟ ତ ଦୂରର କଥା । ମୁଁ ସେମାନଙ୍କୁ ଖଣ୍ଡିଏ ପଡ଼ା ମଧ୍ୟ ଦେବାକୁ ଇଚ୍ଛା କରୁ ନାହିଁ। ଆଉ ବିଳମ୍ବ ନକରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯିବା ।"

ଦ୍ରୋଣ କହିଲେ, "ଭଲ କଥା । ତେବେ ଦୁର୍ଯ୍ୟୋଧନ ଚାରି ଭାଗରୁ ଭାଗେ ସୈନ୍ୟ ସହ ହସ୍ତିନାକୁ ଫେରି ଯାଆନ୍ତୁ । ଭାଗେ ସୈନ୍ୟ ଗାଈମାନଙ୍କୁ ଘେରି ରହନ୍ତୁ । ଆଉ ଯେତେ ସୈନ୍ୟ ସେମାନଙ୍କୁ ନେଇ କର୍ଣ୍ଣ, କୃପ ଓ ମୁଁ ଅର୍ଜୁନ ସହିତ ଯୁଦ୍ଧ କରିବୁ ।"

ତାହା ହିଁ ହେଲା । ଦୁର୍ଯ୍ୟୋଧନ ହସ୍ତିନା ଆଡ଼କୁ ଚାଲିଲେ । ଯୁଦ୍ଧ କ୍ଷେତ୍ରରୁ ଦୁର୍ଯ୍ୟୋଧନ ଚାଲି ଯାଉଥିବା ଦେଖି ଅର୍ଜୁନ କହିଲେ, "ଉତ୍ତର, ଶୀଘ୍ର ଦୁର୍ଯ୍ୟୋଧନ ନିକଟକୁ ରଥ ଚଳାଇ ନିଅ ।" ଅର୍ଜୁନ କୁରୁସେନାଙ୍କୁ ଛାଡ଼ି ଦୁର୍ଯ୍ୟୋଧନ ପଛେ ପଛେ ଗୋଡ଼ାଇଲେ । ବାଟରେ ଗୁରୁଦ୍ରୋଣ ଓ ପିତାମହ ଭୀଷ୍ମଙ୍କୁ ସାମରିକ ସମ୍ମାନ ଦେଖାଇବା ପାଇଁ ଗାଣ୍ଡୀବରୁ ଶରମାରି ସେମାନଙ୍କ ପାଦ ବନ୍ଦନା କଲେ ।

ଅର୍ଜୁନ ପ୍ରଥମେ କୌରବ ସୈନ୍ୟମାନଙ୍କୁ ପରାସ୍ତ କରି ବିରାଟଙ୍କ ଗାଈପଲଙ୍କୁ ମୁକୁଳାଇ ଆଣିଲେ । ଏକଥା ଦେଖି କର୍ଣ୍ଣଙ୍କ ସହିତ ବହୁବୀର ମିଶି ଅର୍ଜୁନଙ୍କୁ ଆକ୍ରମଣ କରିବାରେ ଲାଗିଲେ । ମାତ୍ର ବହୁଦିନରୁ ଯୁଦ୍ଧ କରିନଥିବା ଅର୍ଜୁନଙ୍କ ଆଗରେ କେହି ଧନୁଧରି ଠିଆ ହୋଇପାରିଲେ ନାହିଁ । ଦ୍ରୋଣ ଓ ଅଶ୍ୱତ୍ଥମା ମଧ୍ୟ ତାଙ୍କ ଆଗରେ ଅଧିକ ସମୟ ରହିପାରିଲେ ନାହିଁ । ତେରବର୍ଷ ହେଲା ଗାଣ୍ଡୀବ ବ୍ୟବହାର କରିନଥିବାରୁ ରଣରଙ୍କ ଅର୍ଜୁନ ଭୀଷ୍ମ ଓ କୃପଙ୍କୁ ମଧ୍ୟ ତାଙ୍କ ବାଟରୁ ହଟାଇ ଦେଲେ । ଏ ଅପୂର୍ବ ଯୁଦ୍ଧ ଦେଖିବା ପାଇଁ ସ୍ୱର୍ଗରୁ ଦେବତାମାନେ ମଧ୍ୟ ମର୍ତ୍ତ୍ୟକୁ ଓହ୍ଲାଇ ଆସିଲେ ।

ଦୁର୍ଯ୍ୟୋଧନ ହସ୍ତିନାକୁ ଯାଇ ପାରିନଥିଲେ । ସବା ଶେଷରେ ଅର୍ଜୁନ ତାଙ୍କ ଆଗରେ ରଥ ରଖି ପ୍ରବଳ ଶରମାଡ଼ ଆରମ୍ଭ କରିଦେଲେ । ବାଣ ଆଘାତରେ ଅସ୍ଥିର ହୋଇ ଦୁର୍ଯ୍ୟୋଧନ ଯୁଦ୍ଧ ଭୂମି ଛାଡ଼ି ଚାଲିଯିବାକୁ ବାହାରିବାରୁ ଅର୍ଜୁନ ଏପରି କଟୁକଥାମାନ କହିଲେ, ଯହିଁରେ ଦୁର୍ଯ୍ୟୋଧନର ଦେହ ଜଳିଉଠିଲା । ସେ ଭୀଷ୍ମ, ଦ୍ରୋଣ, ଓ କର୍ଣ୍ଣ ଆଦି ମହାରଥୀଙ୍କୁ ସାଙ୍ଗରେ ନେଇ ଅର୍ଜୁନ

ଆଗକୁ ମାଡ଼ି ଆସିଲେ । ମାତ୍ର ଫଳ କିଛି ହେଲା ନାହିଁ । ଶେଷରେ ଅର୍ଜୁନ ଏପରି ଏକ ଶର ମାରିଲେ ଯେ କୌରବ ବୀରମାନେ ଅଚେତା ହୋଇ ତଳେ ଲୋଟିଗଲେ । ଏହି ସୁଯୋଗରେ ଉତ୍ତର କୌରବ ବୀରମାନଙ୍କ ବହୁମୂଲ୍ୟ ପୋଷାକ, ଅଳଂକାର ଓ ପଗଡ଼ିମାନ ବାହାର କରିନେଲେ । ସେ ଯୁଗରେ ଏହି କାର୍ଯ୍ୟ ବିଜୟର ଚିହ୍ନ ବୋଲି ଗଣା ଯାଉଥିଲା ।

ଅର୍ଜୁନ ଉତ୍ତରଙ୍କୁ କହିଲେ, "କୌରବ ବୀରମାନଙ୍କ ବହୁମୂଲ୍ୟ ବସ୍ତ୍ର ଓ ଭୂଷଣମାନ ସଙ୍ଗରେ ନିଅ । ଏଗୁଡ଼ିକୁ ଅନ୍ତଃପୁରର ନାରୀମାନଙ୍କୁ ଉପହାର ଦେବ ।" ଅର୍ଜୁନ ଅସ୍ତ୍ରଶସ୍ତ୍ର ଗୁଡ଼ିକ ଶ୍ମଶାନ ନିକଟ ଶମୀ ଗଛରେ ଝୁଲାଇ ଦେଇ ପୁଣି ସାରଥୀ ବେଶ ଧାରଣ କଲେ । ଉତ୍ତରକୁ କହିଲେ, "ଆମେ ବିରାଟ ନଗରରେ ଅଛୁ ବୋଲି କାହାକୁ କହିବ ନାହିଁ । ତୁମେ ଯୁଦ୍ଧରେ କୌରବମାନଙ୍କୁ ପରାସ୍ତ କରିଛ ବୋଲି ମୁଁ ନଗରକୁ ଖବର ପଠାଇ ଦେଇଛି ।"

ଉତ୍ତରଙ୍କୁ ସବୁ ଅଦ୍ଭୁତ ପରି ଜଣାଯାଉଥାଏ । ସେ ସାରଥୀଙ୍କ ସହିତ ବିରାଟ ନଗରକୁ ଫେରିଆସିଲେ ।

ଚେତା ଫେରି ପାଇବା ପରେ ଦୁର୍ଯ୍ୟୋଧନ ପୁଣି ଯୁଦ୍ଧ କରିବା ପାଇଁ କହିବାରୁ ଭୀଷ୍ମ ନାହିଁ କରିଦେଲେ । ଅନ୍ୟ ଉପାୟ ନ ଦେଖି କୌରବମାନେ ଲଜ୍ଜା ଓ ଅପମାନ ସହି ହସ୍ତିନା ଫେରିଆସିଲେ ।

## ବିରାଟ ଓ ଯୁଧିଷ୍ଠିର

ବିରାଟ ତ୍ରିଗର୍ତ୍ତ ରାଜାଙ୍କୁ ପରାସ୍ତ କରି ରାଜଧାନୀକୁ ଫେରି ଆସିଲେ । ରାଜକୁମାର ଉତ୍ତର ବୃହନ୍ନଳାକୁ ସାରଥୀ ରୂପେ ନେଇ କୌରବମାନଙ୍କ ସହିତ ଯୁଦ୍ଧ କରିବାକୁ ଯାଇଛି ଶୁଣି ସେ ଅତି ବ୍ୟାକୁଳ ହୋଇ କହିଲେ, "ହାୟ, ମୋର କି ଦୁର୍ଦ୍ଦଶା । ସତେ କ'ଣ ମୋର ପ୍ରିୟ ପୁତ୍ର ଏପର୍ଯ୍ୟନ୍ତ ଜୀବନରେ ଥିବ ? ମହାବୀର ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣଙ୍କ ପରି ଯୋଦ୍ଧାମାନଙ୍କ ଆଗରେ ସେ ଠିଆ ହୋଇପାରିବ ନାହିଁ । କଅଣ କରିବି, ମୋତେ ବୁଦ୍ଧି ଦେଖାଯାଉନାହିଁ ।" ସେ ମନ୍ତ୍ରୀ ଓ ସେନାପତିମାନଙ୍କୁ କହିଲେ, "ସଙ୍ଗରେ ଯେତେ ଇଚ୍ଛା ସୈନ୍ୟ ନେଇ ମୋ ପୁଅକୁ ରକ୍ଷାକର । ମୋର ରାଜ୍ୟ, ଧନ କିଛି ଆବଶ୍ୟକ ନାହିଁ । ହେ ପ୍ରଭୁ, ମୋ ପୁଅକୁ ମୋ ପାଖକୁ ଫେରାଇଆଣ । ମୋର ଏତିକି ମାତ୍ର ପ୍ରାର୍ଥନା ।

କଙ୍କ ବିରାଟଙ୍କୁ କହିଲେ, "ମହାରାଜ, ଆପଣ ଚିନ୍ତା କରନ୍ତୁ ନାହିଁ । ବୃହନ୍ନଳା ସାଙ୍ଗରେ ଥିବା ପର୍ଯ୍ୟନ୍ତ ରାଜକୁମାରଙ୍କର କୌଣସି ଅନିଷ୍ଟ ହେବ ନାହିଁ । କୌରବମାନେ ତ ଛାର ! ବୃହନ୍ନଳା ସାଥିରେ ଥିଲେ କୁମାର ଉତ୍ତର ଦେବତାମାନଙ୍କୁ ମଧ୍ୟ ପରାଜିତ କରିପାରିବେ ।"

ଏହି ସମୟରେ ସମ୍ବାଦ ଆସିଲା, "ରାଜକୁମାର ଉତ୍ତର ଯୁଦ୍ଧ ଜୟକରି ନଗର ଆଡ଼କୁ ଆସୁଛନ୍ତି । ଏକଥା ଶୁଣୁଶୁଣୁ ଯୁଧିଷ୍ଠିର କହିଲେ, "ଏବେ ମୋ କଥାରେ ବିଶ୍ୱାସ ହେଲା ତ ? ବୃହନ୍ନଳା ଯାହାର ସାରଥୀ, ତା'ର ବିଜୟ ସୁନିଶ୍ଚିତ ।"

ମହାରାଜ ବିରାଟ ମନ୍ତ୍ରୀ ଓ ସେନାପତିମାନଙ୍କୁ ଆଦେଶ ଦେଲେ, "ଯାଅ, ମହା ଆଡ଼ମ୍ବରରେ ମୋର ବୀରପୁତ୍ର ଉତ୍ତରକୁ ପାଛୋଟି ଆଣ । ଆନନ୍ଦ ଓ ଗର୍ବରେ ମୋ ଛାତି ଫୁଲି ଉଠୁଛି । ଧନ୍ୟ ପୁତ୍ର । ଧନ୍ୟ ତୋର ବୀରତ୍ୱ ।" ଏହାପରେ ସେ ସୈରିନ୍ଧ୍ରୀକୁ ଡାକି କହିଲେ, "ଆଜିପରି ଅପୂର୍ବ ଦିନରେ ପଶା ଖେଳି ଆନନ୍ଦ ଉପଭୋଗ କରିବାକୁ ମୋର ଭାରି ଇଚ୍ଛା । ଯାଅ, ଶୀଘ୍ର ପଶାପାଲି ଆଣ ।"

ଯୁଧିଷ୍ଠିର କହିଲେ, "ମହାରାଜ, ପଶା ଭଲ ଖେଳ ନୁହେଁ । ଶୁଣିଥିବେ ଯୁଧିଷ୍ଠିରଙ୍କ ପରି ଲୋକ ଏହି ପଶାଖେଳି ନିଜର ରାଜ୍ୟ, ଧନ ଏପରିକି ସ୍ତ୍ରୀ ଦ୍ରୌପଦୀଙ୍କୁ ମଧ୍ୟ ହରାଇଥିଲେ ।"

ବିରାଟ କହିଲେ, "ନା ନା ମୁଁ କିଛି ଶୁଣିବି ନାହିଁ । ଆଜି ମୋର ସବୁଠାରୁ ଆନନ୍ଦର ଦିନ । ମୋ ପୁଅ ଉତ୍ତର କୌରବ ପକ୍ଷର

ସମସ୍ତ ବୀରଙ୍କୁ ପରାସ୍ତ କରିପାରିଛି । ଏ କଅଣ କମ୍ ଗୌରବର କଥା । ଏପରି ଶୁଭ ଦିନରେ ଖେଳିବା ନାହିଁ ? ମଉଜ କରିବା ନାହିଁ ? ଆଉ କରିବା କେବେ ? ଏପରି ମୁହୂର୍ତ୍ତ ବାର ବାର ଆସେ ନାହିଁ । ଯାଅ, ପଶାପାଲି ଚଞ୍ଚଳ ଆଣ ।"

ଯୁଧିଷ୍ଠିର କହିଲେ, "ଆଗରୁତ କହିଛି, ବୃହନ୍ନଳା ଯାହାର ସାରଥୀ ତା'ର ବିଜୟରେ ସନ୍ଦେହ କରାଯାଇ ନପାରେ ।"

ବାରମ୍ବାର ଯୁଧିଷ୍ଠିରଙ୍କ ତୁଣ୍ଡରୁ ବୃହନ୍ନଳାର ପ୍ରଶଂସା ଶୁଣି ବିରାଟ ରାଗି ଉଠି କହିଲେ, "କଙ୍କ ! ସାବଧାନ, ତୁମେ ମୋର ବୀରପୁତ୍ର ଉତ୍ତରର ପ୍ରଶଂସା ନକରି ଛାର ଚାକରଟାର ପ୍ରଶଂସା କରିବାର ଲାଗିଛ ? ତୁମର ସାହସ ତ କମ୍ ନୁହେଁ ।"

ଯୁଧିଷ୍ଠିର କହିଲେ, "ଯାହା କହିଛି, ତା ଅକ୍ଷରେ ଅକ୍ଷରେ ସତ, ମହାରାଜ । ମୁଁ ବୃହନ୍ନଳାଙ୍କୁ ଉତ୍ତମ ରୂପେ ଜଣେ । ସେ ଅତି ଅସାଧାରଣ ବ୍ୟକ୍ତି । ଖାଲି ସାରଥୀ ନୁହେଁ, ସେ ବିଚକ୍ଷଣ ଯୋଦ୍ଧା ମଧ । ବୃହନ୍ନଳାଙ୍କ ପରି ପରାକ୍ରମୀ ବୀରର ସାହାଯ୍ୟ ପାଇଲେ ଯେ କୌଣସି ବ୍ୟକ୍ତି ବିଜୟ ଲାଭ କରିପାରନ୍ତି ।"

ଏଥର ବିରାଟ ଆଉ ସମ୍ଭାଳି ପାରିଲେ ନାହିଁ । ସେ ଅତି କ୍ରୋଧାନ୍ୱିତ ହୋଇ କହିଲେ, "ବାରମ୍ବାର ବାରଣ କଲେ ମଧ ତୁମେ ସାମାନ୍ୟ ମାଇଚିଆ ଲୋକଟାର ପ୍ରଶଂସା କରି ମୋ ପୁଅକୁ ହୀନ ମନେ କରୁଛ ?" ଏହା କହି ଧରିଥିବା ପଶା କାଠିକୁ ଯୁଧିଷ୍ଠିରଙ୍କ ମୁହଁକୁ ଫୋପାଡ଼ି ଦେଲେ । ପଶାକାଠି ମାଡ଼ରେ ଯୁଧିଷ୍ଠିରଙ୍କ ମୁଣ୍ଡରୁ ରକ୍ତ ଝରି ଆସିଲା ।

ପାଖରେ ସୈରିନ୍ଧ୍ରୀ ଠିଆ ହୋଇଥିଲେ, ଯୁଧିଷ୍ଠିରଙ୍କ କପାଳରୁ ବହି ଆସୁଥିବା ରକ୍ତକୁ ସେ ନିଜ ଶାଢ଼ୀ ଧାରରେ ପୋଛି ଗୋଟିଏ ସୁବର୍ଣ୍ଣ ପାତ୍ରରେ ଚିପୁଡ଼ି ଦେଲେ ।

ରାଜାଙ୍କ ରାଗ ଶାନ୍ତ ହୋଇନଥାଏ । ସେ ବିରକ୍ତ ହୋଇ କହିଲେ, "ଏ ସବୁ କ'ଣ ହେଉଛି ? କାହିଁକି ତୁ ସେ ରକ୍ତଗୁଡ଼ାକ ସାଇତି ରଖୁଛୁ ?"

ସୈରିନ୍ଧ୍ରୀ କହିଲେ, "ମହାରାଜ, ସନ୍ୟାସୀ କଙ୍କଙ୍କ ରକ୍ତ ମାଟିରେ ପଡ଼ିଲେ ରାଜ୍ୟର ମହା ଅନିଷ୍ଟ ଘଟିବ । ଯେତେବିନ୍ଦୁ ରକ୍ତ ମାଟିରେ ପଡ଼ିଥିବ, ସେତିକି ବର୍ଷଯାଏ ଆପଣଙ୍କ ରାଜ୍ୟରେ ବର୍ଷା ହେବ ନାହିଁ । ରାଜ୍ୟକୁ ଦୁର୍ଭିକ୍ଷ ଦାଉରୁ ରକ୍ଷା କରିବା ପାଇଁ ମୁଁ ସେ ରକ୍ତକୁ ତଳେ ନପକାଇ ପାତ୍ରରେ ରଖି ଦେଇଛି । ଆପଣ କଙ୍କଙ୍କ ବିଷୟରେ କିଛି ଜାଣି ନାହାନ୍ତି ବୋଲି ମୁଁ ଏବେ ବୁଝିଲି ।"

ଠିକ୍ ଏତିକି ବେଳେ ଉତ୍ତର ଆସି ପହଞ୍ଚିଗଲେ । ବିରାଟ ବିଜୟୀ ପୁତ୍ରକୁ ଭିତରକୁ ଆଣିବା ପାଇଁ ସମ୍ବାଦ ଯୁଧିଷ୍ଠିର ଦ୍ୱାର ପାଖକୁ ଯାଇ ଧୀର ସ୍ୱରରେ କହିଲେ, "କେବଳ ଉତ୍ତରଙ୍କୁ ଭିତରକୁ ଆଣ । ବୃହନ୍ନଳାଙ୍କୁ ଅଟକାଇ ବାହାରେ ରଖ ।"

ଉତ୍ତର ଭିତରକୁ ପଶି ଆସିଲେ । ଯୁଧିଷ୍ଠିରଙ୍କ ଅବସ୍ଥା ଦେଖି ପଚାରିଲେ, "କେଉଁ ମହାମୂର୍ଖ ଏ ମହାନ ସନ୍ୟାସୀଙ୍କ ଉପରକୁ ହାତ ଉଠାଇଛି ।"

ବିରାଟ କହିଲେ, "ତୁମେ କୌରବମାନଙ୍କୁ ପରାସ୍ତ କରିଥିବା ଖବର ପାଇ ମୁଁ ତୁମର ପ୍ରଶଂସା କଲାବେଳେ ଏ ସନ୍ୟାସୀ ସେ କଥାକୁ କାନ ନ ଦେଇ ବୃହନ୍ନଳା ଯୋଗୁଁ ସବୁ ସମ୍ଭବ ହୋଇଛି ବୋଲି ବାରମ୍ବାର କହିବାରୁ ମୁଁ ରାଗରେ ପଶାକାଠି ଫିଙ୍ଗି ତାଙ୍କୁ ଆଘାତ କରିଛି ।"

ଉତ୍ତର ବ୍ୟାକୁଳ ହୋଇ କହିଲେ, "ଓଃ କି ଦୁର୍ଯୋଗ ! ଆପଣଙ୍କ ଅନ୍ୟାୟ ସୀମା ଟପିଯାଇଛି । ଯାହା ହେବାର ତ ହୋଇ ସାରିଲାଣି । ଏବେ ସେ ମହାତ୍ମାଙ୍କ ପାଦଧରି କ୍ଷମା ପ୍ରାର୍ଥନା କରନ୍ତୁ । ତାଙ୍କ ମନରେ ପରିବର୍ତ୍ତନ ନଆସିଲେ ଏ ରାଜ୍ୟରେ ଆମର ଚିହ୍ନ ମଧ ରହିପାରିବ ନାହିଁ ।" ବିରାଟ ସଂଗେ ସଂଗେ ଯୁଧିଷ୍ଠିରଙ୍କୁ କ୍ଷମା ମାଗିଲେ । ଯୁଧିଷ୍ଠିରଙ୍କ ମନରୁ ଦୁଃଖ ଦୂର ହୋଇଯିବା ଦେଖି ବିରାଟ ଖୁସି ହୋଇ ପଚାରିଲେ, "ବତ୍ସ, ତୁ ସାମାନ୍ୟ ବାଳକ ମାତ୍ର । ଯୁଦ୍ଧକୁ ଯାଇଛୁ ଶୁଣି ମୁଁ ଭୟରେ ଥରି ଉଠିଥିଲି । କୌରବ ପକ୍ଷର ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣଙ୍କ ପରି ମହାବୀରମାନଙ୍କୁ ତୁ ଏକାକୀ କିପରି ପରାସ୍ତ କଲୁ ?"

ଉତ୍ତର ମୁହଁ ତଳକୁ କରି କହିଲେ "ଆପଣଙ୍କ ଅନୁମାନ ସତ୍ୟ ନୁହେଁ । ମୁଁ ଆଦୌ ଯୁଦ୍ଧ କରି ନାହିଁ । କୌରବ ବୀରମାନଙ୍କୁ ଦେଖିବା ମାତ୍ରେ ମୋ ଦେହ ବରଡ଼ା ପତ୍ର ପରି ଥରି ଉଠିଲା । ମୁଁ ରଥରୁ ଡେଇଁ ପଳାଇ ଆସୁଥିଲି । ଭାଗ୍ୟକୁ ଜଣେ ଦେବଦୂତ ଆସି ମୋ ଆଗରେ ଠିଆ ହୋଇ କହିଲେ, "ଚିନ୍ତା କର ନାହିଁ । ଦେଖ, ମୁଁ କଅଣ କରୁଛି । ମୁଁ ରଥ ଚଳାଇଲି । ସେ କୌରବମାନଙ୍କ ସହିତ ଯୁଦ୍ଧ କରି ଆମର ଗୋ ସମ୍ପଦ ଉଦ୍ଧାର କଲେ । ପରେ ପରେ କୌରବମାନଙ୍କୁ ଏପରି ଶିକ୍ଷା ଦେଲେ ଯେ ସେମାନେ କିଏ କୁଆଡ଼େ ଛିନ୍‌ଛତ୍ର ହୋଇ ପଳାଇଲେ ।"

ବିରାଟ ଆଶ୍ଚର୍ଯ୍ୟ ହୋଇ କହିଲେ, "ମୁଁ ତ ଏକଥାକୁ ବିଶ୍ୱାସ କରି ପାରୁନାହିଁ । ସେ ଦେବଦୂତ କିଏ ? ବର୍ତ୍ତମାନ ସେ କେଉଁଠି ଅଛନ୍ତି । ମୋତେ ତାଙ୍କ ନିକଟକୁ ନେଇ ଚାଲ । ତାଙ୍କ ଯୋଗୁ ମୋ ପୁଅର ଜୀବନ ଓ ରାଜ୍ୟର ସମ୍ମାନ ରକ୍ଷା ହୋଇଛି । ମୁଁ ତାଙ୍କୁ ଉପଯୁକ୍ତ ଅଭ୍ୟର୍ଥନା କରି କୃତଜ୍ଞତା ଜଣାଇବି ।"

ଉତ୍ତର କହିଲେ, "ସେ ଦେବଦୂତ ବର୍ତ୍ତମାନ ଆଉ ନାହାନ୍ତି । ଆସନ୍ତା କାଲି ଆମ ନଅରକୁ ଆସିବେ ବୋଲି କହି ଯାଇଛନ୍ତି ।" ସେତେବେଳକୁ ଅର୍ଜୁନ ବେଶ ବଦଳାଇ ପୁଣି ବୃହନ୍ନଳା ବେଶ ଗ୍ରହଣ କରି ସାରିଥିଲେ ।

## ପାଣ୍ଡବମାନେ ପରିଚୟ ଦେଲେ

ତହିଁ ପରଦିନ ମହାରାଜାଙ୍କ ବିଜୟ ଉତ୍ସବ ପାଳନ ପାଇଁ ଏକ ବଡ଼ ଧରଣର ସଭାର ଅୟୋଜନ କରାଗଲା । ମନ୍ତ୍ରୀ, ସେନାପତି ଓ ନଗରର ପ୍ରଧାନ ପ୍ରଧାନ ଲୋକଙ୍କ ଦ୍ୱାରା ସଭାଗୃହ ପୂର୍ଣ୍ଣ ହେବାରେ ଲାଗିଥାଏ । ରାଜା ଓ ରାଜପୁତ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ଆସନମାନ ପଡ଼ିଥାଏ । ଏହି ସମୟରେ ସନ୍ୟାସୀ କଙ୍କ, ପୂଜାରୀ ବହ୍ଲଭ, ବୃହନ୍ନଳା, ତନ୍ତୀପାଳ ଓ ଗ୍ରନ୍ଥୀକ ଆସି ରାଜାମାନଙ୍କ ପାଇଁ ପଡ଼ିଥିବା ଆସନରେ ବସିଲେ ।

କିଛି ସମୟ ପରେ ମହାରାଜା ବିରାଟ ସଭାକୁ ଆସିଲେ । ନିଜର ଚାକର ପୂଜାରୀମାନେ ସ୍ୱତନ୍ତ୍ର ଆସନରେ ବସିଥିବା ଦେଖି ସେ ବିରକ୍ତ ହୋଇ କହିଲେ, "ଏମାନଙ୍କୁ ଏ ସବୁ ଆସନରେ କିଏ ବସାଇଲା ? ଏ ଆସନରେ କେଉଁମାନେ ବସିବା କଥା, ସେମାନଙ୍କୁ କ'ଣ ଜଣାନାହିଁ ? ମହାରାଜାଙ୍କ କଥା ଶୁଣି ପାଣ୍ଡବମାନେ ଖୁବ୍ ଖୁସି ହେଉଥାନ୍ତି । ବିଳମ୍ବ ନକରି ସେମାନେ ନିଜ ନିଜର ପରିଚୟ ଦେଇ କହିଲେ, "ମହାରାଜ, ଆମେ ପାଣ୍ଡବ ପାଞ୍ଚ ଭାଇ ଦ୍ରୌପଦୀଙ୍କ ସହିତ ଆପଣଙ୍କ ନଅରରେ ଅଜ୍ଞାତବାସ କରିଥିଲୁ । ଏବେ ସେ ସମୟ କଟିଯାଇଥିବାରୁ ଆମ୍ଭେମାନେ ନିଜ ନିଜର ପ୍ରକୃତ ପରିଚୟ ଦେଲୁ ।"

ବିରାଟଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଲଜ୍ଜା ଓ ଭୟରେ ଅସ୍ଥିର ହୋଇ ଭାବିଲେ, "ମୁଁ କେଡ଼େବଡ଼ ଭୁଲ କରିବସିଲି । ପାଣ୍ଡବପୁତ୍ରମାନଙ୍କ ସହିତ ସ୍ୱୟଂ ଦ୍ରୌପଦୀଙ୍କୁ ମୁଁ ଦାସ ଦାସୀ ଭାବରେ ଖଟାଇଲି । ମୋ ଅପରାଧ ଗୁରୁତର ହୋଇଗଲା ।" ଏହିପରି ଭାବି ସେ କଙ୍କଙ୍କୁ କୁଣ୍ଢାଇ ପକାଇ କହିଲେ, "ମହାରାଜ ଧର୍ମପୁତ୍ର, ନଜାଣି ମୁଁ ଯେଉଁ ଦୋଷ କରିଛି ତାହା ଅତ୍ୟନ୍ତ ଗୁରୁତର । ଆପଣ ଉଦାର ଓ ଅତି ମହାନ୍ ବ୍ୟକ୍ତି । ଦୟାକରି ମୋ ଅପରାଧ କ୍ଷମା କରନ୍ତୁ । ମୁଁ ମୋର ରାଜ୍ୟ ଓ ଧନ ସଂପତ୍ତି ସମୁଦାୟ ଆପଣଙ୍କ ପାଦତଳେ ଅର୍ପଣ କରୁଛି ଏବଂ ମୋର ଅତି ସୁନ୍ଦରୀ କନ୍ୟା ଉତ୍ତରାଙ୍କୁ ଅର୍ଜୁନଙ୍କ ସହିତ ବିଭା ଦେବା ପାଇଁ ଅନୁରୋଧ କରୁଛି ।"

ଯୁଧିଷ୍ଠିର କହିଲେ, "ବର୍ଷଟିଏ ଆମକୁ ଆଶ୍ରୟ ଦେଇ ଆପଣ ଆମର ଅଶେଷ ଉପକାର କରିଛନ୍ତି । ତେଣୁ ଆମେ ଆପଣଙ୍କ ନିକଟରେ କୃତଜ୍ଞ । ଆପଣ କି ଦୋଷ କରିଛନ୍ତି ଯେ, ସେଥିପାଇଁ କ୍ଷମା ଚାହିଁବେ ?"

ଉତ୍ତରାଙ୍କ ବିବାହ କଥା ଶୁଣି ଅର୍ଜୁନ କହିଲେ, "ଆପଣଙ୍କ ପ୍ରସ୍ତାବ ଆଦୌ ଗ୍ରହଣଯୋଗ୍ୟ ନୁହେଁ । ନୃତ୍ୟ, ଗୀତ ଆଦି ଶିକ୍ଷା ଦେଇଥିବାରୁ ମୁଁ ଉତ୍ତରାଙ୍କ ଗୁରୁ ଓ ପିତାଙ୍କ ପରି ମାନ୍ୟ ବ୍ୟକ୍ତି । ବରଂ ମୋର ପୁତ୍ର ଅଭିମନ୍ୟୁ ସହିତ ଉତ୍ତରାଙ୍କ ବିବାହ ହେଲେ ମୁଁ ଆନନ୍ଦିତ ହେବି ।"

## ଦୁର୍ଯ୍ୟୋଧନଙ୍କ ଦୂତ ଓ ଯୁଧିଷ୍ଠିର

ବିରାଟଙ୍କ ସଭା ଚାଲିଥିବା ସମୟରେ ଦୁର୍ଯ୍ୟୋଧନଙ୍କର ଜଣେ ଦୂତ ଆସି କହିଲା, "ମହାରାଜ ଯୁଧିଷ୍ଠିର, ତେର ବର୍ଷ ନପୁରୁଣୁ ଆପଣମାନେ ଧରାପଡ଼ି ଯାଇଛନ୍ତି ଓ ପୁଣି ତେର ବର୍ଷ ବଣରେ କଟାଇ ଅତ୍ୟନ୍ତ ଦୁଃଖଭୋଗ କରିବେ ଏହି କଥା ଭାବି ଦୁର୍ଯ୍ୟୋଧନ ଅତ୍ୟନ୍ତ ଦୁଃଖିତ ହୋଇ ମୋତେ ଆପଣଙ୍କ ନିକଟକୁ ପଠାଇଛନ୍ତି ।"

ଦୂତଠାରୁ ଏକଥା ଶୁଣି ଯୁଧିଷ୍ଠିର ହସି ହସି କହିଲେ, "ଦୂତ ଆମ ଦୁଃଖରେ ଦୁଃଖିତ ହେବାର ଏକମାତ୍ର ଲୋକ ଦୁର୍ଯ୍ୟୋଧନ । ସେ ଆମର ଭାଇ । ଆମ ପାଇଁ ତାଙ୍କ ହୃଦୟ ନିଶ୍ଚୟ ଦୁଃଖିତ ହେଉଥିବ । ତାଙ୍କୁ କହିବ ଅଧିକ ଦୁଃଖ କରିବେ ନାହିଁ । ଆମେ ଆଉ ବଣରେ ନରହି ଶୀଘ୍ର ତାଙ୍କ ନିକଟକୁ ଯାଉଛୁ । ଆହୁରି କହିବ, ସବୁବେଳେ ତାଙ୍କର ଗଣନା ଭୁଲ ହୋଇଯାଉଥିବାରୁ ଯୁଧିଷ୍ଠିର ଦୁଃଖ ପ୍ରକାଶ କରି କହିଛନ୍ତି ଏବଂ ପିତାମହ ଭୀଷ୍ମଦେବଙ୍କ ନିକଟରେ ବସି ଆଉଥରେ ହିସାବ ବୁଝିନେବେ । ଠିକ୍ ତେରବର୍ଷ ପୂରିବା ପରେ ହିଁ ଅର୍ଜୁନ ଗାଣ୍ଡୀବ ଧରିଥିଲେ । ସେଇ ଗାଣ୍ଡୀବର ଟଙ୍କାର ଶୁଣି କୌରବମାନେ ପ୍ରାଣ ଭୟରେ ବିରାଟ ରାଜ୍ୟର ସୀମାପାର ହୋଇ ହସ୍ତିନା ପଳାଇ ଆସିଥିଲେ । ବିଳମ୍ବ ନକରି ତୁମ ମହାରାଜାଙ୍କୁ ମୋର ଏ ସଂବାଦ ଜଣାଇଦେବ ।"

## ଅଭିମନ୍ୟୁ ଓ ଉତ୍ତରାଙ୍କ ବିବାହ

ଅର୍ଜୁନଙ୍କ ପ୍ରସ୍ତାବରେ ବିରାଟ ରାଜି ହୋଇ ନିଜ କନ୍ୟା ଉତ୍ତରାଙ୍କୁ ଅଭିମନ୍ୟୁଙ୍କ ସହିତ ବିବାହ ଦେବାର ଅୟୋଜନ କଲେ । ପାଣ୍ଡବମାନେ ମତ୍ସ୍ୟ ଦେଶର ଉପପ୍ଳବ୍ୟ ନାମକ ନଗରରେ ଆସି ବାସକଲେ । ସେଠାରୁ ସେମାନେ ବନ୍ଧୁ ବାନ୍ଧବମାନଙ୍କ ପାଖକୁ ସମ୍ବାଦ ପଠାଇଲେ ।

ଦ୍ୱାରିକାରୁ ଶ୍ରୀକୃଷ୍ଣ, ବଳରାମ, ସୁଭଦ୍ରା ଓ ଅଭିମନ୍ୟୁ ଆସିଲେ । ପାଞ୍ଚାଳରାଜ ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ଓ କାଶୀରାଜ ଆଦି ପାଣ୍ଡବମାନଙ୍କର ବହୁ ବନ୍ଧୁବାନ୍ଧବ ଉପପ୍ଳବ୍ୟ ନଗରୀରେ ଠୁଳ ହେଲେ ।

ମହାଆଡ଼ମ୍ବରେ ଅଭିମନ୍ୟୁଙ୍କ ସହିତ ଉତ୍ତରାଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଗଲା ।

## ଉଦ୍ୟୋଗ ପର୍ବ

## ପୁଣି ରାଜ୍ୟ ଲାଭ ପାଇଁ ଉଦ୍ୟମ

ପାଣ୍ଡବମାନଙ୍କର ଏକବର୍ଷ ଅଜ୍ଞାତବାସ ପୂରି ଗଲାପରେ ସେମାନଙ୍କ ମନରେ ଅପୂର୍ବ ଆନନ୍ଦ ଓ ଉଲ୍ଲାସ ଖେଳିଗଲା । କିନ୍ତୁ ଏ ପର୍ଯ୍ୟନ୍ତ ଯେତେ ଯେତେ ଦୁଃଖ ଯନ୍ତ୍ରଣା ଭୋଗ କରି ଆସିଛନ୍ତି, ସେ ସବୁ ମନରୁ ପାଶୋରି ପାରୁନଥାନ୍ତି । ତେଣୁ କୌରବମାନଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ତାଙ୍କ ପ୍ରାଣ ବ୍ୟାକୁଳ ହୋଇ ଉଠୁଥାଏ ।

ବିରାଟ ରାଜାଙ୍କ ନଅରରେ ଉତ୍ତରାଙ୍କ ସହିତ ଅଭିମନ୍ୟୁଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଗଲା । ଉତ୍ସବରେ ଯୋଗଦେବା ପାଇଁ ବହୁ ରାଜ୍ୟର ରାଜାମାନେ ଆସିଥିଲେ । ଏହି ସୁଯୋଗରେ ଶ୍ରୀକୃଷ୍ଣ ସେମାନଙ୍କୁ କହିଲେ, "ଆପଣମାନଙ୍କୁ କୌଣସି କଥା ଅଜଣା ନାହିଁ । କପଟ ପଶା ଖେଳରେ କୌରବମାନେ ପାଣ୍ଡବଙ୍କୁ ହରାଇ ତେର ବର୍ଷକାଳ ବଣେବଣେ ବୁଲାଇଲେ । ପାଣ୍ଡବମାନେ ସତ୍ୟରକ୍ଷା କରି ଅସହ୍ୟ କଷ୍ଟ ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଏପରିକି ଅଜ୍ଞାତବାସ ସମୟରେ ବିରାଟ ରାଜାଙ୍କର ଚାକର ଭାବରେ ଖଟିବାକୁ କୁଣ୍ଠିତ ମଧ୍ୟ ହୋଇନାହାନ୍ତି । ବର୍ତ୍ତମାନ ପାଣ୍ଡବମାନେ ସେମାନଙ୍କ ରାଜ୍ୟ ଫେରିପାଇବା ହିଁ ଉଚିତ । ମହାରାଜା ଯୁଧିଷ୍ଠିର ସମସ୍ତଙ୍କଠାରୁ ବଡ଼ ଓ ସେ ଉତ୍ତରାଧିକାରୀ ଭାବେ ସିଂହାସନ ଲାଭ କରିଥିଲେ । ଦୁର୍ଯ୍ୟୋଧନ ଅତ୍ୟନ୍ତ ଅନ୍ୟାୟୀ ଓ ଅଧର୍ମ

କାର୍ଯ୍ୟ କରି ପାଣ୍ଡବମାନଙ୍କଠାରୁ ରାଜ୍ୟ ଛଡ଼ାଇ ନେଇଛି । ଏବେ ଆପଣମାନେ ଭାବିଚିନ୍ତି କହନ୍ତୁ – ପାଣ୍ଡବମାନେ ସେମାନଙ୍କ ରାଜ୍ୟ ଫେରି ପାଇବା ପାଇଁ ଉଦ୍ୟମ କରିବେ ନାଁ କୌରବମାନଙ୍କ ଅତ୍ୟାଚାରକୁ ମୁଣ୍ଡପାତି ସହୁଥିବେ ? ଆପଣମାନେ ନିଜ ନିଜର ମନକଥା ଖୋଲି କହନ୍ତୁ ।"

ଶ୍ରୀକୃଷ୍ଣ କହିବା ପରେ ମହାରାଜ ଦ୍ରୁପଦ କହିଲେ, "ଜ୍ଞାନ ଓ ଧର୍ମ କର୍ମ ଦୃଷ୍ଟିରୁ କୃଷ୍ଣ ହିଁ ସବୁଠାରୁ ବଡ଼ । ଯଦି ତାଙ୍କ ପରି ଜଣେ ମହାନ ବ୍ୟକ୍ତି ଧର୍ମର ସ୍ଥାପନ କରିବା ପାଇଁ ପାଣ୍ଡବମାନଙ୍କ ପକ୍ଷରେ ରହନ୍ତି; ତେବେ ଆମେ ସମସ୍ତେ ପାଣ୍ଡବଙ୍କୁ ସାହାଯ୍ୟ କରିବା ଉଚିତ ଓ କର୍ତ୍ତବ୍ୟ ବୋଲି ମନେ କରିବୁ । କୌରବମାନେ ଘୋର ଅତ୍ୟାଚାରୀ, ଏକଥା କାହାକୁ ବା ଅଜଣା ଅଛି ?"

ବିରାଟଙ୍କ କଥା ଶୁଣି ବଳରାମ ଖୁବ୍ ପ୍ରତିବାଦ କରି କହିଲେ, "ରାଜ୍ୟ ପ୍ରକୃତରେ ଧୃତରାଷ୍ଟ୍ରଙ୍କର ଥିଲା । ସେ ଅନ୍ଧଥିବାରୁ ପାଣ୍ଡୁଙ୍କୁ ରାଜ୍ୟଭାର ଦିଆଯାଇଥିଲା । ଏଣୁ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନ ହିଁ ରାଜ ସିଂହାସନର ପ୍ରକୃତ ଉତ୍ତରାଧିକାରୀ । ଦୁର୍ଯ୍ୟୋଧନ ରାଜ୍ୟ ପାଇବା ପାଇଁ କୌଣସି ଅନ୍ୟାୟ ମଧ୍ୟ କରିନାହାନ୍ତି । ସେ ପଶାଖେଳକୁ ଯୁଧିଷ୍ଠିରଙ୍କୁ ନିମନ୍ତ୍ରଣ କରିଥିଲେ । ଯୁଧିଷ୍ଠିର ଇଚ୍ଛା କରିଥିଲେ ପଶା ଖେଳି ନଥାନ୍ତେ । ଏଣୁ କୌଣସି ଲୋକକୁ ପଠାଇ ରାଜ୍ୟ ଫେରାଇବା ସଂପର୍କରେ ଦୁର୍ଯ୍ୟୋଧନଙ୍କ ମତାମତ ପ୍ରଥମେ ଜାଣିବା ଉଚିତ ।"

ବଳରାମଙ୍କ କଥା ଶୁଣି ସାତ୍ୟକୀ ଅତ୍ୟନ୍ତ ରାଗିଯାଇ କହିଲେ, "ଏହି ପଶାଖେଳକୁ ନ୍ୟାୟସଂଗତ ବୋଲି କହିବ କିଏ ? ଯୁଧିଷ୍ଠିର ପଶା ନଖେଳିବା ହିଁ ଠିକ୍ ହୋଇଥାନ୍ତା; ମାତ୍ର ଦୁର୍ଯ୍ୟୋଧନ ତାଙ୍କୁ ବାରମ୍ବାର ଉତ୍ତେଜିତ କରିବାରେ ଲାଗିଲେ । ସେ ନାହିଁ କରିବାର ବାଟ ଅଉ ନଥିଲା । ଦୁର୍ଯ୍ୟୋଧନ କହିବାରୁ ଯୁଧିଷ୍ଠିର ପଶାଖେଳି ସବୁକିଛି ହରାଇ ବସିଲେ । ଶେଷକୁ ଦ୍ରୌପଦୀଙ୍କୁ ମଧ ପଣ ରଖି ହାରିଗଲେ । ପାଣ୍ଡବମାନେ ସର୍ତ୍ତ ଅନୁସାରେ ତେରବର୍ଷ ବନବାସ ପୂର୍ଣ୍ଣ କରିସାରିଛନ୍ତି । ବର୍ତ୍ତମାନ ସେ ତାଙ୍କର ପୈତୃକ ରାଜ୍ୟର ପୂର୍ଣ୍ଣ ଅଧିକାରୀ । ତେଣୁ ରାଜ୍ୟ ମାଗିବା କଥା ଉଠିବ କାହିଁକି ? ବନବାସ ସମୟ ନପୁରୁଣୁ ପାଣ୍ଡବମାନେ ଧରାପଡ଼ିଯାଇଛନ୍ତି ବୋଲି ଏକ ମିଥ୍ୟା ପ୍ରଚାର ଆରମ୍ଭକରି ଦୁର୍ଯ୍ୟୋଧନ ସେମାନଙ୍କୁ ପୁଣି ବଣରେ ବୁଲାଇବା ପାଇଁ ଉଦ୍ୟମ ଆରମ୍ଭ କରିଦେଲାଣି । ଦୁର୍ଯ୍ୟୋଧନ ଘୋର ପାପୀ ଓ ଅଧର୍ମୀ ଅଟେ । ମୁଁ ଚାହେଁ ଯୁଦ୍ଧ । ଯୁଦ୍ଧ କରି କୌରବମାନଙ୍କୁ ନିପାତ ନ କଲାଯାଏ ମୋର ଶାନ୍ତି ନାହିଁ । ଦୁର୍ଯ୍ୟୋଧନ ନିଜେ ମହାରାଜ ଯୁଧିଷ୍ଠିରଙ୍କୁ ଡାକି ତାଙ୍କ ରାଜ୍ୟ ଫେରାଇ ଦିଅନ୍ତୁ । ନହେଲେ ଯୁଦ୍ଧକୁ ଆଗେଇ ଆସନ୍ତୁ । ଏହା ହିଁ ମୋର ମତ ।"

ମହାରାଜା ଦ୍ରୁପଦ କହିଲେ, "ସାତ୍ୟକୀଙ୍କ କଥା ଅକ୍ଷରେ ଅକ୍ଷରେ ସତ୍ୟ । କଅଁଳ କଥା କହି ଦୁର୍ଯ୍ୟୋଧନର ପଥର ହୃଦୟକୁ ତରଳାଇ ହେବନାହିଁ । ନିଜ ଭାଇମାନଙ୍କୁ ଡାକି ସେ କଦାପି ରାଜ୍ୟ ଫେରାଇବ ନାହିଁ । ଭୀଷ୍ମ, ଦ୍ରୋଣ, କୃପ ଆଦି ବ୍ୟକ୍ତିମାନେ ମହା ବିଚାରବନ୍ତ ହେଲେମଧ ଦୁର୍ଯ୍ୟୋଧନର ଲୁଣ ଖାଉଛନ୍ତି । ସେମାନେ କୌରବମାନଙ୍କ ଗୁଣ ଗାଇବେ । ତେଣୁ ଅଯଥା ସମୟ ନଷ୍ଟ ନକରି ଆମେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବା ଉଚିତ । କେବଳ ମହାତ୍ମା ବଳରାମଙ୍କ ପରାମର୍ଶ ଅନୁସାରେ ଦୁର୍ଯ୍ୟୋଧନଙ୍କ ପାଖକୁ ଦୂତ ପଠାଯାଉ । ତା' ସାଙ୍ଗେ ସାଙ୍ଗେ ଦେଶର ବିଭିନ୍ନ ରାଜାଙ୍କ ପାଖକୁ ଯୁଦ୍ଧ ନିମନ୍ତ୍ରଣ ମଧ ପଠାଯାଉ । ବିଳମ୍ବ କଲେ ଆମେ ଅନେକ୍ ରାଜ୍ୟରୁ ସାହାଯ୍ୟ ପାଇବାରେ ଅସୁବିଧା ହୋଇପାରେ । ଭାବୁଛି, ମୋ ପୁରୋହିତଙ୍କୁ ଦୂତ ରୂପେ ହସ୍ତିନା ପଠାଇଲେ କୌରବମାନଙ୍କ ମତିଗତି ସହଜରେ ଜାଣି ହୁଅନ୍ତା ।"

ଶ୍ରୀକୃଷ୍ଣ କହିଲେ, "ମୁଁ ଆପଣଙ୍କ ପ୍ରସ୍ତାବରେ ରାଜି । ପାଣ୍ଡବମାନଙ୍କ ପରି କୌରବମାନେ ମଧ ଆମର ବନ୍ଧୁ । ପାଞ୍ଚାଳ ରାଜ-ପୁରୋହିତ ହସ୍ତିନା ଯାଆନ୍ତୁ । ଯଦି ଦୁର୍ଯ୍ୟୋଧନ ଆମ କଥା ମାନିଲା, ତେବେ ଗୋଟାଏ ବଡ଼ ଅସୁବିଧା ଦୂର ହୋଇଯିବ । ନ

ହେଲେ ଯୁଦ୍ଧ ଛଡ଼ା ଅନ୍ୟ ପନ୍ଥା ନାହିଁ । ଯୁଦ୍ଧ କରିବାର ହେଲେ ଅନ୍ୟ ରାଜାମାନଙ୍କ ନିକଟକୁ ନିମନ୍ତ୍ରଣ ପଠାଇ ଆମକୁ ତୁରନ୍ତ ସଂବାଦ ଦେବେ ।"

ଶ୍ରୀକୃଷ୍ଣ, ବଳରାମ ଓ ସାତ୍ୟକୀ ଆଦି ଯାଦବ ବୀରମାନେ ଦ୍ୱାରିକା ଫେରିଆସିଲେ । ଦ୍ରୁପଦ ରାଜ-ପୁରୋହିତଙ୍କୁ ଡାକି କହିଲେ, "ଆପଣ ବିରାଟଙ୍କ ନିକଟରେ ଚାକିରି କରିବା ଆଦି ଘଟଣାମାନ ଉତ୍ତମ ରୂପେ ବର୍ଣ୍ଣନା କରି ସମସ୍ତଙ୍କ ମନରେ ଦୟାଜାତ କରାଇବାକୁ ଉଦ୍ୟମ କରିବେ । ଦୂତରୂପେ ଯାଉଥିବାରୁ ଆପଣଙ୍କ ପ୍ରତି କେହି କୌଣସି ଖରାପ ବ୍ୟବହାର ଦେଖାଇବେ ନାହିଁ । ଶୁଭବେଳା ଦେଖି ଆପଣ ହସ୍ତିନା ଯିବା ପାଇଁ ପ୍ରସ୍ତୁତ ହୁଅନ୍ତୁ ।"

## ଦ୍ୱାରିକାରେ ଦୁର୍ଯ୍ୟୋଧନ ଓ ଅର୍ଜୁନ

କୌରବ ରାଜସଭାକୁ ପାଞ୍ଚାଳର ରାଜ-ପୁରୋହିତ ଦୂତ ରୂପେ ଗଲେ । ମାତ୍ର ଦୁର୍ଯ୍ୟୋଧନଠାରୁ କିଛି ଭଲକଥା ଶୁଣିବା କାହାର ଆଶା ନଥାଏ । ତେଣୁ ପାଣ୍ଡବମାନେ ନୀରବରେ ନବସି ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ ।

ବିଭିନ୍ନ ରାଜ୍ୟକୁ ଦୂତ ପଠାଇଦେବା ପରେ ଅର୍ଜୁନ ନିଜେ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲେ । ଅର୍ଜୁନ ଦ୍ୱାରିକା ଯିବା କଥା ଶୁଣି ଦର୍ଯ୍ୟୋଧନ ମଧ୍ୟ ସଂଗେ ସଂଗେ ବାହାରି ପଡ଼ିଲେ । ସେତେବେଳେ ଯାଦବମାନେ ଅତି ଶକ୍ତିଶାଳୀ ବୀର ଥିଲେ ଓ ଶ୍ରୀକୃଷ୍ଣ ସେମାନଙ୍କ ରାଜା ଥିଲେ । ତେଣୁ ପାଣ୍ଡବ ଓ କୌରବ ଉଭୟ ପକ୍ଷ, ଶ୍ରୀକୃଷ୍ଣଙ୍କୁ ନିଜ ପକ୍ଷରେ ରଖିବା ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ଅର୍ଜୁନ ଶ୍ରୀକୃଷ୍ଣଙ୍କ ଶୋଇବା ଘରକୁ ଯାଇ ଦେଖିଲେ କୃଷ୍ଣ ନିଦରେ ଶୋଇଛନ୍ତି । ଆଗରୁ ଦୁର୍ଯ୍ୟୋଧନ ଆସି ତାଙ୍କ ମୁଣ୍ଡ ପାଖରେ ପଡ଼ିଥିବା ବହୁ ମୂଲ୍ୟ ଆସନରେ ବସିଛନ୍ତି । ଅର୍ଜୁନ କିଛି ନକହି ଶ୍ରୀକୃଷ୍ଣଙ୍କ ପାଦତଳେ ବସିପଡ଼ିଲେ । କିଛି ସମୟ ପରେ ଶ୍ରୀକୃଷ୍ଣ ଆଖି ଖୋଲିବା ମାତ୍ରେ ଅର୍ଜୁନଙ୍କୁ ଦେଖିଲେ ଓ ଆସିବାର କାରଣ ପଚାରିଲେ । ଅର୍ଜୁନ ଅତ୍ୟନ୍ତ ବିନୟର ସହିତ ଯୁଦ୍ଧ ବିଷୟ କହି ତାଙ୍କ ପକ୍ଷରେ ଯୋଗ ଦେବାକୁ ନିମନ୍ତ୍ରଣ ଜଣାଇଲେ । ଶ୍ରୀକୃଷ୍ଣ ରାଜି ହୋଇଯିବାରୁ ଅର୍ଜୁନଙ୍କ ମୁହଁରେ ଆନନ୍ଦର ଢ଼େଉ ଖେଳିଗଲା । ପରେ ପରେ ଶ୍ରୀକୃଷ୍ଣ ମୁଣ୍ଡ ପଟେ ବସିଥିବା ଦୁର୍ଯ୍ୟୋଧନକୁ ଦେଖି ଆସିବାର କାରଣ ପଚାରିଲେ ।

ଦୁର୍ଯ୍ୟୋଧନ କହିଲେ, "ଆମେ ଦୁହେଁ ସେଇ ଗୋଟିଏ କଥା ପାଇଁ ଅର୍ଥାତ୍ ଯୁଦ୍ଧରେ ସାହାଯ୍ୟ ମାଗିବା ଉଦ୍ଦେଶ୍ୟରେ ଏଠାକୁ ଆସିଛୁ । ମାତ୍ର ଅର୍ଜୁନ ଆସିବା ଆଗରୁ ମୁଁ ଏଠାକୁ ଆସିଥିବାରୁ ପ୍ରଥମେ ଆପଣଙ୍କଠାରୁ ସାହାଯ୍ୟ ପାଇବାରେ ହକ୍‌ଦାର ଅଟେ ।" କୃଷ୍ଣ ହସି ହସି କହିଲେ, "ତୁମ କଥା ସତ ହୋଇପାରେ । ମାତ୍ର ମୁଁ ଅଳ୍ପ ସମୟ ପୂର୍ବରୁ ଅର୍ଜୁନଙ୍କ ପକ୍ଷରେ ରହିବା ପାଇଁ ସ୍ୱୀକାର କରିସାରିଛି । କୌରବ ଓ ପାଣ୍ଡବମାନଙ୍କୁ ସମାନ ଦୃଷ୍ଟିରେ ଦେଖି ଆସୁଥିବାରୁ ଭାରତ ଯୁଦ୍ଧରେ ମୁଁ ଅସ୍ତ୍ର ଧରିବି ନାହିଁ । ମୁଁ କେବଳ ଅର୍ଜୁନ ସାଥୀରେ ରହିବି । ତୁମେ ପ୍ରଥମେ ଏଠାକୁ ଆସିଥିବାରୁ ମୁଁ ମୋର ନାରାୟଣୀ ସେନାଙ୍କୁ ତୁମ ପକ୍ଷରେ ଯୁଦ୍ଧ କରିବା ପାଇଁ ଦେଇଦେବି ।" ଦୁର୍ଯ୍ୟୋଧନ ନାରାୟଣୀ ସେନାଙ୍କୁ ପାଇବା ଶୁଣି ଅତି ଆନନ୍ଦରେ ହସ୍ତିନା ଫେରିଗଲେ ।

ଦୁର୍ଯ୍ୟୋଧନ ଯିବା ପରେ ଶ୍ରୀକୃଷ୍ଣ ପଚାରିଲେ, "ଅର୍ଜୁନ, ଶୁଣିଲ ମୁଁ ଯୁଦ୍ଧ କରିବି ନାହିଁ । ତୁମେ ମୋ ଶକ୍ତିଶାଳୀ ନାରାୟଣୀ ସେନାଙ୍କୁ ଛାଡ଼ି ମୋତେ ଗ୍ରହଣ କଲ କାହିଁକି ? ମୁଁ ତୁମର କି କାମରେ ଆସିବି ?"

ଅର୍ଜୁନ କହିଲେ, "ଏକୁଟିଆ କୌରବମାନଙ୍କ ସହିତ ଯୁଦ୍ଧକରି ସେମାନଙ୍କୁ ମାରିବା ପାଇଁ ମୋର ଇଚ୍ଛା । ଗୁଡ଼ାଏ ସୈନ୍ୟ ମୋର ଆବଶ୍ୟକ ନାହିଁ । କେବଳ ଆପଣ ମୋ ରଥରେ ସାରଥୀ ରୂପେ ରହିଲେ ମୋ ଇଚ୍ଛା ପୂର୍ଣ୍ଣହେବ ।" କୃଷ୍ଣ ହସି ନୀରବ ରହିଲେ ।

## ଶଲ୍ୟ ଭ୍ରମରେ ପଡ଼ିଗଲେ

ମଦ୍ର ଦେଶର ରାଜା ଶଲ୍ୟ ମାଦ୍ରୀଙ୍କ ଭାଇ ଓ ପାଣ୍ଡବମାନଙ୍କର ମାମୁଁ । ଯୁଦ୍ଧ ନିମନ୍ତ୍ରଣ ପାଇ ସେ ପାଣ୍ଡବମାନଙ୍କୁ ସାହାଯ୍ୟ କରିବାକୁ ବାହାରିଲେ । ଏକ ବିରାଟ ସୈନ୍ୟବାହିନୀ ସହ ପାଣ୍ଡବମାନଙ୍କ ନିକଟକୁ ଆସୁଥିବା ଖବରପାଇ ଦୁର୍ଯ୍ୟୋଧନ ଶଲ୍ୟଙ୍କ ଆସିବା ବାଟରେ ନାନା ସ୍ଥାନରେ ବିଚିତ୍ର ତୋରଣମାନ ନିର୍ମାଣ କଲେ । ରହଣି ସ୍ଥାନ ମାନଙ୍କରେ ଖାଦ୍ୟପେୟର ଅତି ଚମତ୍କାର ବ୍ୟବସ୍ଥା କରିଦେଲେ । ଏସବୁ ଦେଖି ଶଲ୍ୟ ଅତ୍ୟନ୍ତ ଖୁସି ହୋଇ ଯୁଧିଷ୍ଠିରଙ୍କର ବହୁ ପ୍ରଶଂସା କରିବାରେ ଲାଗିଲେ । ଦୁର୍ଯ୍ୟୋଧନ ଗୁପ୍ତ ବେଶରେ ଶଲ୍ୟଙ୍କ ସାଥିରେ ଯାଉଥାନ୍ତି । ଦିନେ ରାଜା ଶଲ୍ୟ ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ତୋରଣମାନ କରିଥିବା କାରିଗରମାନଙ୍କୁ ପୁରସ୍କାର ଦେବାପାଇଁ  ଇଚ୍ଛାକଲେ । ଏକଥା ଶୁଣି ଦୁର୍ଯ୍ୟୋଧନ ନିଜେ ଆସି କହିଲେ, "ମାମୁଁ, ଯେଉଁ ଶିଳ୍ପୀମାନେ ସ୍ଥାନେ ସ୍ଥାନେ ଆପଣଙ୍କ ବିଶ୍ରାମ ପାଇଁ ବିଚିତ୍ର ତୋରଣମାନ ନିର୍ମାଣ କରିଥିଲେ, ଆପଣ ସେମାନଙ୍କୁ ପୁରସ୍କାର ଦେବାପାଇଁ କହିଛନ୍ତି । ଯେଉଁ ବିଶ୍ରାମ ସ୍ଥାନଗୁଡ଼ିକ ଆପଣଙ୍କୁ ଆନନ୍ଦ ଦେଇଛି, ସେଗୁଡ଼ିକ ମୁଁ ତିଆରି କରିଛି ।" ଶଲ୍ୟ କହିଲେ, "ବତ୍ସ, ମାଗ, ମୁଁ ତୁମ ଇଚ୍ଛା ପୂରଣ କରିବାକୁ ପ୍ରସ୍ତୁତ ।" ଦୁର୍ଯ୍ୟୋଧନ କହିଲେ, "ଆପଣ ଆପଣଙ୍କ ସୈନ୍ୟମାନଙ୍କ ସହିତ ମୋ ପକ୍ଷରେ ରହିବେ । ଏହା ହିଁ ମୋର ବିନୀତ ପ୍ରାର୍ଥନା ।" ଶଲ୍ୟ ଏଥିରେ ରାଜି ହୋଇଗଲେ । ମାତ୍ର ଦୁର୍ଯ୍ୟୋଧନର କପଟ ଆଚରଣରେ ସେ ଖୁବ୍ ଦୁଃଖିତ ହେଲେ ।

ଯୁଧିଷ୍ଠିରଙ୍କୁ ସାକ୍ଷାତ କରିବା ଉଚିତ ହେବ ନାହିଁ ଭାବି ଶଲ୍ୟ ଅତ୍ୟନ୍ତ ଦୁଃଖିତ ହୋଇ କୁରୁକ୍ଷେତ୍ର ଆଡ଼କୁ ଗଲେ । ଦୂରରୁ ମାମୁଁ ଶଲ୍ୟ ଆସୁଥିବା ଦେଖି ପାଣ୍ଡବମାନେ ଅତ୍ୟନ୍ତ ବିନୟର ସହିତ ତାଙ୍କୁ ସ୍ୱାଗତ କରିନେଲେ । ଶଲ୍ୟ ବିଷର୍ଣ୍ଣ ମନରେ ମୁଣ୍ଡ ତଳକୁ କରି କହିଲେ, "ବାବୁ, ମୁଁ ଦୁର୍ଯ୍ୟୋଧନର ମାୟା ଜାଲରେ ଛନ୍ଦି ହୋଇ ତାଙ୍କ ପକ୍ଷରେ ରହି ଯୁଦ୍ଧ କରିବାକୁ ବଚନ ଦେଇସାରିଛି ।। ତେଣୁ ମୁଁ ତୁମ୍ଭମାନଙ୍କୁ ମୁହଁ ଟେକି କଥା କହିବାର ସାହସ ମୋର ନାହିଁ । ଯୁଧିଷ୍ଠିରଙ୍କ ମୁଣ୍ଡରେ ବଜ୍ର ପଡ଼ିଲାପରି ଲାଗିଲା । ସେ କିଛି ସମୟ ନୀରବ ରହି କହିଲେ, "ମାମୁଁ, ଆପଣ କର୍ଣ୍ଣଙ୍କ ରଥରେ ଯଦି ସାରଥୀ ହୁଅନ୍ତି, ତେବେ ଆପଣ ଆପଣଙ୍କ ପ୍ରିୟ ଭଣଜା ଅର୍ଜୁନର ମୃତ୍ୟୁର କାରଣ ହେବେ । କର୍ଣ୍ଣ ବହୁ ପୂର୍ବରୁ ଅର୍ଜୁନଙ୍କୁ ହତ୍ୟା କରିବାର ପ୍ରତିଜ୍ଞା କରିସାରିଛି ।"

ଶଲ୍ୟ ଆହୁରି ଦୁଃଖିତ ହୋଇ କହିଲେ, "ବତ୍ସ ମୁଁ ମନ୍ଦବୁଦ୍ଧି ଦୁର୍ଯ୍ୟୋଧନର ଚକ୍ରାନ୍ତ ବୁଝିନପାରି ତହିଁରେ ଛନ୍ଦି ହୋଇଯାଇଛି । ମୁଁ ତୁମକୁ ମଧ୍ୟ ବଚନ ଦେଉଛି, ଯଦି ମୁଁ କର୍ଣ୍ଣର ସାରଥୀ ହୁଏ, ତେବେ କର୍ଣ୍ଣକୁ ଯୁଦ୍ଧରେ ଉତ୍ସାହ ନ ଦେଇ ଭୟ ଦେଖାଇବି । ମନେରଖ ଯୁଦ୍ଧରେ ଅର୍ଜୁନ ନୁହେଁ କର୍ଣ୍ଣ ହିଁ ମରିବ । ତୁମ୍ଭମାନଙ୍କର ସୁଖର ଦିନ ପାଖେଇ ଆସୁଛି ।" ଏତିକି କହି ସେ କୌରବମାନଙ୍କ ଶିବିର ଆଡ଼କୁ ଗଲେ ।

## ଦ୍ରୁପଦଙ୍କ ପୁରୋହିତ ହସ୍ତିନା ଗଲେ

ପାଞ୍ଚାଳ ରାଜ-ପୁରୋହିତ ହସ୍ତିନାରେ ପହଞ୍ଚିବା ମାତ୍ରେ ଭୀଷ୍ମ, ଦ୍ରୋଣ, ବିଦୂର ଓ ଧୃତରାଷ୍ଟ୍ର ଆଦି ସମସ୍ତେ ତାଙ୍କୁ ଆଦରରେ ନେଇ ଆସନରେ ବସାଇଲେ । କିଛି ସମୟ କଥାବାର୍ତ୍ତା ପରେ ପୁରୋହିତ କହିଲେ, "ଧୃତରାଷ୍ଟ୍ର ଓ ପାଣ୍ଡୁ ଦୁଇ ଭାଇ । ତେଣୁ ପୈତୃକ ସମ୍ପତ୍ତିରୁ ପାଣ୍ଡବମାନଙ୍କର ଅଧେ ପ୍ରାପ୍ୟ । ଅତୀତରେ କୌରବମାନେ ପାଣ୍ଡବମାନଙ୍କ ପ୍ରତି ବହୁ ଅନ୍ୟାୟ କରିଛନ୍ତି । କପଟ ଆଚରଣ କରି ସେମାନେ ପାଣ୍ଡବମାନଙ୍କର ରାଜ୍ୟ, ଧନ ସବୁ ନେଇଯିବା ପରେ ରାଜ-ସଭାରେ ଦ୍ରୌପଦୀଙ୍କୁ ଘୋର ଅପମାନ ଦେବାକୁ ପଛାଇ ନାହାନ୍ତି । ପାଣ୍ଡବମାନଙ୍କୁ ତେରବର୍ଷ କାଳ ବଣରେ ବୁଲାଇ ଅସହ୍ୟ କଷ୍ଟଦେବା କଥା ନକହିବା ବରଂ ଭଲ । ଏସବୁ ସତ୍ତ୍ୱେ ପାଣ୍ଡବମାନେ ପଛ କଥା ଭୁଲି କୌରବମାନଙ୍କ ସହିତ ପୁଣି ଭାଇ ଭାଇ ହୋଇ ଚଳିବା ପାଇଁ ଇଚ୍ଛା ପ୍ରକାଶ

କରିଛନ୍ତି । ଯଦି ମିଳାମିଶା ନହୁଏ, ତେବେ ନିଶ୍ଚୟ ଯୁଦ୍ଧ ହେବ । ପାଣ୍ଡବମାନେ ଯୁଦ୍ଧ ନୁହେଁ, ସନ୍ଧି ପାଇଁ ଆଗ୍ରହୀ ଅଟନ୍ତି । ଆପଣମାନେ ଅତି ବିଚାରବନ୍ତ ବ୍ୟକ୍ତି । ନ୍ୟାୟ ବିଚାର କରି ନିଷ୍ପତ୍ତି ଦେବାକୁ ଅନୁରୋଧ କରେ ।"

ଭୀଷ୍ମ କହିଲେ, "ଆପଣଙ୍କ ପ୍ରତ୍ୟେକ ପଦ କଥା ନିରାଟ ସତ୍ୟ । ପାଣ୍ଡବମାନଙ୍କ ପ୍ରସ୍ତାବରେ ମୁଁ ଅତ୍ୟନ୍ତ ଖୁସି । ବନବାସରୁ ଫେରିବା ପରେ ସେମାନେ ତାଙ୍କ ରାଜ୍ୟ ଫେରି ପାଇବା ହିଁ ନ୍ୟାୟ । ନିହାତି ଯଦି ଯୁଦ୍ଧ ହୁଏ, ତେବେ ଅର୍ଜୁନଙ୍କ ଗାଣ୍ଡୀବ ହିଁ କୁରୁକୁଳ ଧ୍ୱଂସର କାରଣ ହେବ ।"

ଭୀଷ୍ମଙ୍କ କଥା ଶୁଣି କର୍ଣ୍ଣ କହିଲେ, "ପଶାଖେଳରେ ହାରି ପାଣ୍ଡବମାନେ ବଣକୁ ଗଲେ । ହାରିଥିଲେ କୌରବମାନଙ୍କୁ ମଧ୍ୟ ଠିକ୍ ସେଇ ଦଶା ଭୋଗିବାକୁ ପଡ଼ିଥାନ୍ତା । ଏଣେ ସନ୍ଧି ପାଇଁ ଦୂତ ପଠାଇ ତେଣେ ପାଣ୍ଡବମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛନ୍ତି । ଭୟ ଦେଖାଇ ଦୁର୍ଯ୍ୟୋଧନଙ୍କଠାରୁ କିଛି ଆଶା କରିବା ବୃଥା । ଅଜ୍ଞାତବାସ ଶେଷ ହେବା ପୂର୍ବରୁ ଧରାପଡ଼ି ପାଣ୍ଡବମାନେ ବନବାସର ବ୍ୟବସ୍ଥା ନକରି ରାଜ୍ୟ ଆଶା କରୁଛନ୍ତି କାହିଁକି ?"

ଭୀଷ୍ମ ରାଗି ଉଠି କହିଲେ, "ମୁହଁ ଟାଣରେ ଅନେକ କଥା କୁହାଯାଇପାରେ । ଅଳ୍ପଦିନ ତଳର କଥା ମନେପକାଇ ଦେଉଛି । ଆମ ଛଅ ଜଣଙ୍କୁ ଅର୍ଜୁନ ଏକୁଟିଆ ଯେପରି ଭାବରେ ଲଣ୍ଡଭଣ୍ଡ କରି ଘଉଡ଼ାଇ ଦେଲା, ତାହା ଏତେ ଶୀଘ୍ର ତୁମେ ପାଶୋରି ପକାଇବ ବୋଲି ମୁଁ ଭାବି ନଥିଲି । ପୁରୋହିତଙ୍କ ପ୍ରସ୍ତାବକୁ ଗୋଡ଼ରେ ଆଡ଼େଇଦେଲେ ଆମେ ସମସ୍ତେ ଗାଣ୍ଡୀବର ଶିକାର ହୋଇଯିବୁ । ଏଥିରେ ମୋର ଆଦୌ ସନ୍ଦେହ ନାହିଁ ।"

ଧୃତରାଷ୍ଟ୍ର କହିଲେ, "କର୍ଣ୍ଣ, ଭୀଷ୍ମଦେବଙ୍କ କଥାର ପ୍ରତିବାଦ କରନାହିଁ । ଯେଉଁ କାର୍ଯ୍ୟଦ୍ୱାରା ସମସ୍ତଙ୍କର ମଙ୍ଗଳ ହେବ, ସେଇ କଥା ଚିନ୍ତା କରିବା ଉଚିତ । ମୁଁ ସଞ୍ଜୟଙ୍କୁ ଦୂତ ରୂପେ ପାଣ୍ଡବମାନଙ୍କ ନିକଟକୁ ପଠାଉଛି ।"

କୌରବ ପକ୍ଷରୁ ଦୂତ ଆସିବା କଥା ଶୁଣି ରାଜପୁରୋହିତ ପାଞ୍ଚାଳ ଫେରିଆସିଲେ ।

## ଦୂତ ରୂପେ ସଞ୍ଜୟ

ଧୃତରାଷ୍ଟ୍ର ସଂଜୟଙ୍କୁ କହିଲେ, "ଦୁଷ୍ଟ ଦୁର୍ଯ୍ୟୋଧନ ସବୁ ଅନର୍ଥର ମୂଳ । ଗର୍ବୀ କର୍ଣ୍ଣ ଯୋଗୁଁ ତା'ର ବୁଦ୍ଧି ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲାଣି । ପାଣ୍ଡବମାନେ ଏବେ ମଧ୍ୟ ଶାନ୍ତିରେ ରହୁଛନ୍ତି । ଯଦି ମୋ ପିଲାମାନେ ପାଣ୍ଡବମାନଙ୍କ ପରାମର୍ଶ ଗ୍ରହଣ ନ କରନ୍ତି, ତେବେ କୁରୁକୁଳର ଅବସ୍ଥା ଶୋଚନୀୟ ହୋଇଯିବ । ପାଣ୍ଡବମାନେ ଅସାଧାରଣ ବୀର । ଏବେ ସେମାନଙ୍କ ପକ୍ଷରେ ଦ୍ରୁପଦ, ବିରାଟ ଓ ସାତ୍ୟକୀ ଆଦି ମହାବୀରମାନେ ଯୋଗଦେଲେଣି । ସବୁଠାରୁ ଭୟର କାରଣ ଶ୍ରୀକୃଷ୍ଣ । ସେ ଅର୍ଜୁନ ରଥରେ ସାରଥୀ ହେଲେ ଆମର ଲକ୍ଷ ଲକ୍ଷ ସେନା ସୁଅ ମୁହଁରେ କୁଟାଖିଅ ପରି ଭାସିଯିବେ । ତୁମେ ପ୍ରାଣପଣେ ଯୁଦ୍ଧ ନ ହେବା ପାଇଁ ଚେଷ୍ଟା କର ।"

ସଞ୍ଜୟ ପାଣ୍ଡବମାନଙ୍କ ନିକଟରେ ପହଞ୍ଚିଲେ । ସାମାନ୍ୟ କୁଶଳ ପ୍ରଶ୍ନ ପରେ କହିଲେ, "ମହାରାଜ ଧୃତରାଷ୍ଟ୍ର ମୋତେ ଆପଣମାନଙ୍କ ନିକଟକୁ ପଠାଇଛନ୍ତି । ବୋହୂ ଦ୍ରୌପଦୀଙ୍କ କୁଶଳ ସମାଚାର ଶୁଣିବା ପାଇଁ ତାଙ୍କ ମନ ବ୍ୟାକୁଳ ହୋଇଉଠୁଛି । କୌରବ ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ନହେବା ତାଙ୍କର ଇଚ୍ଛା । ଯୁଦ୍ଧ ଦ୍ୱାରା କିଛି ଜୟ କଲେ ମଧ୍ୟ ସୁଖ ବଦଳରେ ଦୁଃଖ ହିଁ ମିଳିଥାଏ । ବହୁ ଆଲୋଚନା କରି ଭୀଷ୍ମ, ଦ୍ରୋଣ ଆଦି ଗୁରୁଜନମାନେ ଆପଣମାନଙ୍କ ମଧ୍ୟରେ ମିଳାମିଶା ପାଇଁ ଆଗ୍ରହୀ ।"

ଯୁଧିଷ୍ଠିର କହିଲେ, "ହେ ସଞ୍ଜୟ, ଦିନେ ହେଲେ କୌରବମାନଙ୍କ ଅମଙ୍ଗଳ ଚିନ୍ତା ନକରି ଆମ୍ଭେମାନେ ଅକାରଣରେ ନାହିଁ ନଥିବା ଦୁଃଖ ଭୋଗ କରି ସାରିଲୁଣି । ଯଦି ଦୁର୍ଯ୍ୟୋଧନର ସୁବୁଦ୍ଧି ଫେରିଆସେ ଓ ଆମ୍ଭମାନଙ୍କ ଇନ୍ଦ୍ରପ୍ରସ୍ଥ ଫେରାଇଦିଏ, ତେବେ ଉଭୟଙ୍କ ମଧ୍ୟରେ ନିଶ୍ଚୟ ଶାନ୍ତି ପ୍ରତିଷ୍ଠିତ ହେବ ।"

ସଞ୍ଜୟ କହିଲେ, "ଯୁଧିଷ୍ଠିର, ମହାରାଜା ଧୃତରାଷ୍ଟ୍ରଙ୍କ ପିଲାମାନେ ଆଦୌ ସାଧୁ ସ୍ୱଭାବର ନୁହନ୍ତି । ସେମାନେ ପିତାମହ ଭୀଷ୍ମ ଓ ଦ୍ରୋଣଙ୍କ ଉପଦେଶକୁ ମଧ୍ୟ କାନ ଦେଉନାହାନ୍ତି । ବିନା ଯୁଦ୍ଧରେ ଆପଣମାନଙ୍କୁ କିଛିହେଲେ ନଦେବା କଥା ଦୁର୍ଯ୍ୟୋଧନ ବାରମ୍ବାର ଦୋହରାଇବାରେ ଲାଗିଛନ୍ତି । ମୋ ମତରେ ଯୁଦ୍ଧ ହେଲେ ଲକ୍ଷ ଲକ୍ଷ ନିର୍ଦ୍ଦୋଷ ଲୋକ ମରିବେ । ଲକ୍ଷ ଲକ୍ଷ ବିଧବା ନାରୀ ଓ ଅସହାୟ ବାଳକ ବାଳିକାଙ୍କ ବିକଳ କ୍ରନ୍ଦନରେ ଆକାଶ ଫାଟିପଡ଼ିବ । ମୋ ମତରେ ବରଂ ଭିକ୍ଷା କରି ଜୀବନ ଧାରଣ କରିବା ଭଲ; ମାତ୍ର ଯୁଦ୍ଧ କରି ସର୍ବନାଶ କରିବା ଉଚିତ ନୁହେଁ । ଧନ, ସଂପତ୍ତି ଓ କ୍ଷମତାର ଲୋଭ ମନୁଷ୍ୟକୁ ଅନ୍ଧ କରିପକାଏ । ଦିନେ ନା ଦିନେ ମୃତ୍ୟୁ ନିଶ୍ଚୟ ହେବ, ଏକଥା ସେ ସମ୍ପୂର୍ଣ୍ଣ ଭୁଲିଯାଏ । ଆପଣ ଧାର୍ମିକ, ଆପଣଙ୍କ ପକ୍ଷରେ ଯୁଦ୍ଧ ଆଦୌ ଶୋଭା ପାଏନାହିଁ । ଯଦି ନିତାନ୍ତ ଆପଣ ଯୁଦ୍ଧ କରିବା ସପକ୍ଷରେ ତେବେ ଆଜିଯାଏ ନୀରବ ରହିଲେ କାହିଁକି ? କାହିଁକି ଆପଣ ବନବାସର ଅସହ୍ୟ କଷ୍ଟ ସହ୍ୟକଲେ । ରାଜସଭାରେ ଦ୍ରୌପଦୀଙ୍କ ଲାଞ୍ଛନାକୁ ଆପଣମାନେ କେଉଁ ଆଶାରେ ମୁଣ୍ଡପାତି ସହିନେଲେ ?"

ଯୁଧିଷ୍ଠିର କହିଲେ, "ତୁମ କଥାର ମର୍ମ ମୁଁ ବେଶ୍ ବୁଝିପାରିଛି । ଶୁଣ, ସମୟ ଆସେ, ଯେତେବେଳେ ଧର୍ମ ଅଧର୍ମ ରୂପରେ ଓ ଅଧର୍ମ ଧର୍ମ ରୂପରେ ଦେଖାଦିଏ । ଭିକ୍ଷାବୃତ୍ତି ଦ୍ୱାରା ଜୀବନ ଧାରଣ କରିବା ବ୍ରାହ୍ମଣମାନଙ୍କର ଧର୍ମ; ମାତ୍ର କ୍ଷତ୍ରିୟମାନଙ୍କ ପକ୍ଷରେ ତାହା ଘୋର ଅଧର୍ମ ଅଟେ । ଶ୍ରୀକୃଷ୍ଣ କୌରବ ଓ ପାଣ୍ଡବମାନଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି । ଏ କ୍ଷେତ୍ରରେ ମୁଁ ତାଙ୍କରି ପରାମର୍ଶ ଅନୁସାରେ କାର୍ଯ୍ୟ କରିବାକୁ ସ୍ଥିର କରିଛି ।"

ଶ୍ରୀକୃଷ୍ଣ ସବୁ ଶୁଣିବା ପରେ କହିଲେ, "ସଞ୍ଜୟ, କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ବିବାଦ ନୁହେଁ, ଶାନ୍ତି ପ୍ରତିଷ୍ଠା ମୋର ଇଚ୍ଛା । ଯୁଧିଷ୍ଠିର ସନ୍ଧିପାଇଁ ସବୁବେଳେ ଆଗ୍ରହ ପ୍ରକାଶ କରି ଆସିଛନ୍ତି; ମାତ୍ର ଧୃତରାଷ୍ଟ୍ରଙ୍କ ପିଲାମାନେ ସମଗ୍ର ପୃଥିବୀର ଧନ ସମ୍ପତ୍ତି ଓ କ୍ଷମତାକୁ ନିଜ ହାତରେ ରଖିବା ଆଶାରେ ପାଗଳ । ତେଣୁ ସନ୍ଧି ହେବା ସହଜ କଥା ନୁହେଁ । ବର୍ତ୍ତମାନ ତୁମେ ଯୁଦ୍ଧ ନକରିବା ପାଇଁ ଯୁଧିଷ୍ଠିରଙ୍କୁ ବୁଝାଉଥିଲ । କିନ୍ତୁ କାହିଁକି ? ଦୁର୍ଯ୍ୟୋଧନ କପଟ ଆଚରଣ କରି ପାଣ୍ଡବମାନଙ୍କ ରାଜ୍ୟ ନେଇଯାଇଛି । ସେ ରାଜ୍ୟ ପାଣ୍ଡବମାନେ ଫେରିପାଇବା ହିଁ ଉଚିତ । ଯଦି ଭଲରେ ନହେଲା, ତେବେ ନିଜ ପୈତୃକ ରାଜ୍ୟ ଫେରିପାଇବା ପାଇଁ ପାଣ୍ଡବମାନଙ୍କୁ ଜଣ ଜଣ ହୋଇ ମରିବାକୁ ପଡ଼ିଲେ ମରିବେ ସିନା, ଯୁଦ୍ଧ ଅତିଶୀଘ୍ର ଆରମ୍ଭ କରିଦେବେ । ଆଜି ଯୁଧିଷ୍ଠିରଙ୍କୁ ତୁମେ ବହୁ ଧର୍ମ ଉପଦେଶ ଦେଉଥିବା ଶୁଣିଲି । ଯେଉଁଦିନ ଦୁଃଶାସନ ଦ୍ରୌପଦୀଙ୍କୁ କୁରୁସଭାରେ ଘୋର ଅପମାନ ଦେଲା, ସେଦିନ ତୁମ ପାଟି କିଏ ସିଲାଇ କରି ଦେଇଥିଲା ? ଦ୍ରୌପଦୀଙ୍କ ଉଲଗ୍ନ ବେଶ ଦେଖିବା ପାଇଁ ତୁମେ ସେଠାରେ ବୋଧେ ଆଗ୍ରହର ସହିତ ଅପେକ୍ଷା କରିଥିଲ । ଛାଡ଼, ମୁଁ ନିଜେ ହସ୍ତିନା ଯିବି ଓ ଯାହା ଉଭୟ ପକ୍ଷଙ୍କ ଭଲ ହେବ, ତାହା ହିଁ କରିବା ପାଇଁ ଚେଷ୍ଟା କରିବି ।"

## ସନ୍ଧି ପ୍ରସ୍ତାବରେ ଦୁର୍ଯ୍ୟୋଧନଙ୍କ ମତିଗତି

ସଞ୍ଜୟ ପାଣ୍ଡବମାନଙ୍କ ନିକଟରୁ ଫେରିଆସି ସମସ୍ତ କଥା କୁରୁସଭାରେ ବର୍ଣ୍ଣନା କଲେ । ଧୃତରାଷ୍ଟ୍ର କହିଲେ, "ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇଦେବା ହିଁ ମଙ୍ଗଳ ।"

ଭୀଷ୍ମ କହିଲେ, "ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ରୂପରେ ପୃଥିବୀକୁ ଆସିଛନ୍ତି । ଅର୍ଜୁନ ତାଙ୍କର ଆତ୍ମା ସ୍ୱରୂପ । ସେ ଦୁହେଁ ଏକତ୍ର ହେଲେ ଆମ ସମସ୍ତଙ୍କ ମୃତ୍ୟୁ ନିଶ୍ଚୟ ହେବ । ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ଓ ଶକୁନି ସହିତ ସାରଥୀ ପୁଅ କର୍ଣ୍ଣ ମଧ୍ୟ ମିଶିଯାଇଛି । ସେମାନଙ୍କ କଥାରେ ଚାଲିଲେ କ୍ଷତି ଛଡ଼ା ଲାଭ କିଛି ହେବନାହିଁ ।"

କର୍ଣ୍ଣ ଆଉ ସମ୍ଭାଳି ନପାରି କହିଲେ, "ମୁଁ ଏକାକୀ ପାଣ୍ଡବମାନଙ୍କୁ ସଂହାର କରିପାରିବି । ମୋ ଶକ୍ତି ବିଷୟରେ କେହି ସନ୍ଦେହ ନକରି ଅପେକ୍ଷା କରନ୍ତୁ । ଯୁଦ୍ଧ ହେଲେ ମୁଁ ଜଣେ ହେଲେ ପାଣ୍ଡବଙ୍କୁ ପୃଥିବୀରେ ରଖାଇଦେବି ନାହିଁ । ଏହା ମୋର ଅଟଳ ପ୍ରତିଜ୍ଞା ।"

ଭୀଷ୍ମ କହିଲେ, "ମହାରାଜ, ପାଗଳ କର୍ଣ୍ଣର କଥା ଆପଣଙ୍କ ପୁଅମାନଙ୍କୁ ଶୁଣିବାକୁ ବେଶ୍ ଭଲ ଲାଗୁଥିବ । ନିପଟ ବାହାପିଆ କଥା ଆପଣଙ୍କ ପିଲାମାନଙ୍କୁ ଉତ୍ସାହ ଦେଉଛି କି ଧ୍ୱଂସ ମୁହଁକୁ ଟାଣିନେଉଛି, ସେକଥା ଆପଣ ଶୀଘ୍ର ଜାଣିଯିବେ । ବିରାଟ ରାଜ୍ୟରେ ଅର୍ଜୁନ ଯେତେବେଳେ କୌରବମାନଙ୍କୁ ଗୋଡ଼ାଇ ଗୋଡ଼ାଇ ମାରୁଥିଲା, ସେତେବେଳେ ଏ ମହାବୀର କର୍ଣ୍ଣ କଅଣ କରୁଥିଲେ ? ଦ୍ୱୈତବନରେ ଗନ୍ଧର୍ବରାଜ ଆପଣଙ୍କ ପରାକ୍ରମୀ ପୁଅ ଦୁର୍ଯ୍ୟୋଧନକୁ ରଥ ଖୁଣ୍ଟରେ ବାନ୍ଧି ପକାଇଥିବାବେଳେ ଧନୁର୍ଦ୍ଧର ମହାବୀର କର୍ଣ୍ଣ କେଉଁଠି ମୁହଁ ଲୁଚାଇଥିଲେ ଥରେ ପଚାରି ବୁଝନ୍ତୁ । କେବଳ ଅର୍ଜୁନ ହିଁ ଗନ୍ଧର୍ବମାନଙ୍କୁ ପରାସ୍ତ କରି ଉପକାରୀ ଭାଇ ଦୁର୍ଯ୍ୟୋଧନକୁ ବନ୍ଧନ ମୁକ୍ତ କରିଥିଲା । କର୍ଣ୍ଣ ଯେତିକି ବୀର, ତାଠାରୁ ବହୁଗୁଣରେ ଉଦ୍ଧତ ଓ ଗର୍ବୀ । ସେପରି ଗୋଟିଏ ଲୋକର ବୃଥା ବାହାଦୂରୀରେ ଭୁଲି ନିଜର ସର୍ବନାଶ ନକରିବାକୁ ଆପଣଙ୍କୁ ପରାମର୍ଶ ଦେଉଛି ।"

ଦ୍ରୋଣାଚାର୍ଯ୍ୟ ଭୀଷ୍ମଙ୍କ କଥାରେ ଏକମତ ହେଲେ । ସବୁ ଶୁଣିବା ପରେ ଧୃତରାଷ୍ଟ୍ର କହିଲେ, "ମୁଁ ବହୁ ଚିନ୍ତା ପରେ ସ୍ଥିର କରିଛି, ଯଦି ପାଣ୍ଡବମାନଙ୍କ ସହିତ ସନ୍ଧି କରାଯାଏ ତେବେ ଆମ୍ଭେମାନେ କିଛିଦିନ ସୁଖରେ ବଞ୍ଚି ରହିପାରିବା । ମାତ୍ର କଅଣ ହେବ ? ମୋର ମୂର୍ଖ ପୁତ୍ରମାନେ କାହାରି ଉପଦେଶ ବା ଉତ୍ତମ ପରାମର୍ଶ ଗ୍ରହଣ ନକରି ମନଇଚ୍ଛା କାର୍ଯ୍ୟ କରିଚାଲିଛନ୍ତି । ଯାହା ଘଟିବାକୁ ଥିବ ଘଟିବ । ମୁଁ ଆଉ କଅଣ ବା କରିପାରିବି ?"

ଦୁର୍ଯ୍ୟୋଧନ ଆସନରୁ ଉଠି କହିଲେ, "ମହାରାଜ, ଆପଣ ଖୁବ୍ ଡରିଯିବାପରି ମନେହେଉଛି । ଏଣୁ ତେଣୁ ଗୁଡ଼ାଏ କଥା ଶୁଣି ଆପଣ ବିଚଳିତ ହୁଅନ୍ତୁ ନାହିଁ । ଯୁଦ୍ଧ ହେଲେ ଆମେ ଜୟଲାଭ କରିବୁ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କର୍ଣ୍ଣ, ଦୁଃଶାସନ ଓ ମୁଁ ପାଣ୍ଡବମାନଙ୍କୁ ପରାସ୍ତ କରିବାପାଇଁ ଯଥେଷ୍ଟ । ଅନ୍ୟ କାହାର ସାହାଯ୍ୟ ଆବଶ୍ୟକ ହେବ ନାହିଁ । ଶୁଣନ୍ତୁ, ପାଣ୍ଡବମାନଙ୍କ ସହିତ ସନ୍ଧିକରିବା ମୋର ଆଦୌ ଇଚ୍ଛା ନୁହେଁ । ରାଜ୍ୟକଥା ତ ସ୍ୱପ୍ନ, ବିନା ଯୁଦ୍ଧରେ ମୁଁ ସେମାନଙ୍କୁ ଛୁଞ୍ଚି ମୁନରେ ମୁନେ ସୁଦ୍ଧା ଜାଗା ଦେବାକୁ ପ୍ରସ୍ତୁତ ନୁହେଁ । ବୀରପରି ଆସି ଯୁଦ୍ଧ କରନ୍ତୁ । ଜୟଲାଭ କରି ସମସ୍ତ ରାଜ୍ୟ ଓ ଧନସମ୍ପତ୍ତି ନେଇ ଯାଆନ୍ତୁ । ମୋର ଏଥିରେ ଆପତ୍ତି ନାହିଁ । ମାତ୍ର ହାତ ପତାଇ ଭିକାରୀଙ୍କପରି ମାଗିଲେ ମୁଁ କିଛି ହେଲେ ଦେବାକୁ ପ୍ରସ୍ତୁତ ନୁହେଁ ।"

ଭୀଷ୍ମ, ଦ୍ରୋଣ, ବିଦୂର ଆଦି ଗୁରୁଜନମାନେ ଦୁର୍ଯ୍ୟୋଧନଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ କାହାରି କଥା ଶୁଣିଲେ ନାହିଁ । ସମସ୍ତେ ନିରାଶ ହୋଇ ଫେରିଗଲେ ।

## ଶ୍ରୀକୃଷ୍ଣ ଓ ପାଣ୍ଡବମାନଙ୍କ ଆଲୋଚନା

ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ କହିଲେ, "ସଞ୍ଜୟ ଯାହା ସବୁ କହିଗଲେ ତାହା ଧୃତରାଷ୍ଟ୍ରଙ୍କର ମନର କଥା । ଆମ୍ଭମାନଙ୍କୁ ଯାବତୀୟ ଦୁଃଖକଷ୍ଟ ଦେଇ ମଧ୍ୟ ତାଙ୍କର ମନ ବୋଧ ହୋଇ ନାହିଁ । ରାଜ୍ୟ ଦେବା କଥା ନକହି ସେ କେବଳ ଯୁଦ୍ଧ ନକରିବା ପାଇଁ ଖବର ଦେଇ ଦେଲେ । ଧନ୍ୟ ତାଙ୍କର ଉଦାରତା ! ପୈତୃକ ରାଜ୍ୟ ଫେରି ପାଇବା ପାଇଁ ଆମେ ମରିବା ପାଇଁ ମଧ୍ୟ ଭୟ କରୁନାହୁଁ । ବିନାଯୁଦ୍ଧରେ ଦୁର୍ଯ୍ୟୋଧନ ଆମ ପ୍ରସ୍ତାବ ଗ୍ରହଣ କରିବ ନାହିଁ । ଯୁଦ୍ଧ ହେଲେ ବଂଶ ନାଶ ହେବ । ବହୁ ଗୁରୁଜନ ଓ ପ୍ରିୟଜନଙ୍କୁ ହତ୍ୟା କରିବାକୁ ପଡ଼ିବ । ଏଭଳି ଅବସ୍ଥାରେ ଆମେ କଅଣ କରିବୁ, ପରାମର୍ଶ ଦିଅନ୍ତୁ ।"

ଶ୍ରୀକୃଷ୍ଣ କହିଲେ, "ମୁଁ ତୁମ ହୃଦୟର ଦୁଃଖ ବେଶ୍ ବୁଝି ପାରୁଛି । ବ୍ୟସ୍ତ ହେବାର କାରଣ କିଛି ନାହିଁ । ମୁଁ କାଲି ହସ୍ତିନା ଯିବି । ଯାହା ଦ୍ୱାରା ଉଭୟ ପକ୍ଷର ମଙ୍ଗଳ ହେବ, ତାହା କରିବା ପାଇଁ ଚେଷ୍ଟା କରିବି ।"

ଯୁଧିଷ୍ଠିର କହିଲେ, "ମୋ ମତରେ ଆପଣ ହସ୍ତିନା ରାଜସଭାକୁ ଯିବା ଭଲ ହୋଇ ନ ପାରେ । କାରଣ ଦୁର୍ଯ୍ୟୋଧନର ଖଳ ପ୍ରକୃତି ବିଷୟ ଆପଣଙ୍କୁ ଅଜଣା ନାହିଁ । କ୍ଷମତାର ଲୋଭ ତାଙ୍କୁ ଅନ୍ଧ କରି ପକାଇଛି । ସେ ଆପଣଙ୍କ ପ୍ରସ୍ତାବ ତ ଗ୍ରହଣ କରିବ ନାହିଁ । ବରଂ ଅନ୍ୟ ରାଜାମାନଙ୍କ ସହିତ ମିଶି ଆପଣଙ୍କୁ ଆକ୍ରମଣ କରିବାକୁ ପଛାଇବ ନାହିଁ ।"

ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, " ମୁଁ ସେ ସବୁ କଥା ଆଗରୁ ଜାଣିଛି । ତେବେ ଥରେ ଚେଷ୍ଟା ନ କରିବି କାହିଁକି ? ଶେଷ ଫଳ ଯେ ଯୁଦ୍ଧ ଏ ବିଷୟରେ ମୋର ସନ୍ଦେହ ନାହିଁ । ହଁ, କୌରବମାନେ ମୋତେ ଆକ୍ରମଣ କରିବା କଥା କହୁଥିଲ । ତାହା ଯଦି ସତ୍ୟ ହୁଏ, ତେବେ ଆଉ ଯୁଦ୍ଧ କରବା ଆବଶ୍ୟକ ହେବ ନାହିଁ । ମୁଁ ସେମାନଙ୍କୁ ସେଇଠି ଶେଷ କରି ଦେଇ ଆସିବି । କିଛି ନକରି ମଧ୍ୟ ତୁମ୍ଭେମାନେ ଶତ୍ରୁଶୂନ୍ୟ ହୋଇଯିବ ।"

ଯୁଧିଷ୍ଠିର କହିଲେ, "-ମୋର ଆଉ କହିବାର କିଛି ନାହିଁ । ଆପଣ ଯାହା ଉଚିତ ମନେ କରୁଛନ୍ତି, ତାହା ହିଁ କରନ୍ତୁ । ସନ୍ଧି ହେଲେ ଉତ୍ତମ; ନହେଲେ ଯୁଦ୍ଧକୁ କେହି ବନ୍ଦ କରି ପାରିବେ ନାହିଁ ।"

ସବୁ ଶୁଣିସାରି ଭୀମ କହିଲେ, "-ଯୁଦ୍ଧ ନୁହେଁ, ଶାନ୍ତି ପାଇଁ ଆପଣ ଚେଷ୍ଟା କରିବେ । ଯୁଦ୍ଧ ଦ୍ୱାରା ବହୁ ଧନ ଜୀବନ ନଷ୍ଟ ହେବା ଏକ ନିଶ୍ଚିତ ସତ୍ୟ ।"

ଶ୍ରୀକୃଷ୍ଣ ଭୀମଙ୍କୁ ଚିଡ଼ାଇବା ଉଦ୍ଦେଶ୍ୟରେ କହିଲେ, "-ଗଦାପିଟି ଦୁର୍ଯ୍ୟୋଧନର ଜଙ୍ଘ ହାଡ଼ ଭାଙ୍ଗି ଦେବା କଥା ଖୁବ୍ ବଡ଼ ପାଟିରେ ତୁମେ କୁରୁ ସଭାରେ କହିଥିଲଟି ? ଶାନ୍ତିରେ ତୁମେ କିପରି ତୁମ ପ୍ରତିଜ୍ଞା ରକ୍ଷା କରିବ ବୁଝାଇ ଦେଲ ?"

ଭୀମ କହିଲେ, "-ସେ କଥା ମୁଁ କହୁନାହିଁ । ଯୁଦ୍ଧକୁ ମୁଁ ଆଦୌ ଭୟ କରୁନାହିଁ । ମୋର ଉଦ୍ଦେଶ୍ୟ ଯୁଦ୍ଧ ନ ହେଲେ କୌରବମାନେ ଆଉ କିଛିଦିନ ବଞ୍ଚି ଯାଆନ୍ତେ ।" ଅର୍ଜୁନ ଓ ନକୁଳ ମଧ୍ୟ ମିଳାମିଶା ଭଲ ବୋଲି ମତ ଦେଲେ ।

ସବୁ ଶୁଣିବା ପରେ ସହଦେବ କହିଲେ, "-ଆପଣ ହସ୍ତିନା ଯାଇ ଯୁଦ୍ଧ ଯେପରି ଶୀଘ୍ର ଆରମ୍ଭ ହୋଇଯିବ, ତା'ର ବ୍ୟବସ୍ଥା କରି ଆସିବେ । କୁରୁସଭାରେ ଦ୍ରୌପଦୀଙ୍କ ପ୍ରତି ଯେଉଁ ପଶୁ ବ୍ୟବହାର କରାଯାଇଛି, ମନେ ପକାଇ ଶାନ୍ତି ନୁହେଁ, ଯୁଦ୍ଧରେ ତା'ର ଉତ୍ତର ଦେବାକୁ ହେବ । ପାପୀ ଦୁର୍ଯ୍ୟୋଧନକୁ ଯୁଦ୍ଧରେ ଉଚିତ-ଶିକ୍ଷା ମିଳିବାର ବ୍ୟବସ୍ଥା କରିବାକୁ ଅନୁରୋଧ । ସେଠାରେ ଉପସ୍ଥିତ ଥିବା ସାତ୍ୟକି ଓ ଅନ୍ୟ ବୀରମାନେ ସହଦେବଙ୍କ କଥାକୁ ଉଚିତ ବୋଲି ଗ୍ରହଣ କଲେ ।

ସଭା ଶେଷରେ ଦ୍ରୌପଦୀ ଆସି କହିଲେ, "-କୌରବମାନେ ଆମ୍ଭମାନଙ୍କୁ ଯେଉଁ ଅସୀମ ଦୁଃଖ ଦେଇଛନ୍ତି, ତା'ର ତୁଳନା ନାହିଁ । ତେବେ ମଧ୍ୟ ସବୁ ପଛ କଥା ଭୁଲି ଯୁଧିଷ୍ଠିର ମାତ୍ର ପାଞ୍ଚଖଣ୍ଡ ପଡ଼ା ମାଗି ସନ୍ଧି କରିବାକୁ କହିଥିଲେ । ଏହି ଛାର କଥାରେ ସୁଦ୍ଧା ଦୁର୍ଯ୍ୟୋଧନ ରାଜି ହେଲା ନାହିଁ । ଏସବୁ କଥା ଜାଣି ମଧ୍ୟ ଆପଣ ପୁଣି ହସ୍ତିନା ଯାଉଛନ୍ତି, ଯାଆନ୍ତୁ । କିନ୍ତୁ ମନେ ରଖନ୍ତୁ କୌଣସି କାରଣରୁ ଦୁର୍ଯ୍ୟୋଧନ ରାଜି ହେଲେ ମଧ୍ୟ ଆପଣ ସନ୍ଧି ବିଷୟରେ ମତ ଦେବେ ନାହିଁ । ପଣ୍ଡିତମାନେ କହିଛନ୍ତି-ଯାହାକୁ ମାରିବା କଥା, ତାକୁ ନମାରିଲେ ଏବଂ ଯାହାକୁ ନମାରିବା କଥା ତାକୁ ମାରିଲେ ସମାନ ପାପ ହୁଏ । ହେ କୃଷ୍ଣ, କଥା କହିବା ବେଳକୁ ମୋ ଦେହ ଜଳି ପୋଡ଼ି ଯାଉଛି । ମୋର ମହାବୀର ସ୍ୱାମୀମାନଙ୍କ ଆଗରେ ଦୁଃଶାସନ କଅଣ ବା ନକରିଛି ? ମୋର ମୁକୁଳା କେଶକୁ ଧରି ମୋତେ କୁରୁସଭା ଆଗରେ ଫୋପାଡ଼ି ଦେଲା । ଗୁରୁଜନଙ୍କ ଆଗରେ ମୋ ଦେହରୁ ବସ୍ତ୍ର ବାହାର କରି ଲଙ୍ଗଳା କରୁଥିଲା । ଏତେ କଥା କରି ମଧ୍ୟ ପାପୀ ଦୁର୍ଯ୍ୟୋଧନ ଓ ଦୁଃଶାସନ ଏପର୍ଯ୍ୟନ୍ତ ବଞ୍ଚି ରହିଛନ୍ତି । ମା ପୃଥିବୀ ତାଙ୍କୁ କୋଳରେ

ଧରି ରଖିଛି । ହାୟ, ଏ ସବୁଦେଖି ମୁଁ ଅର୍ଜୁନଙ୍କ ଗାଣ୍ଡୀବ ଓ ଭୀମଙ୍କ ବଜ୍ରସମ ଗଦାକୁ ନିନ୍ଦା କରୁଛି । କ୍ରମେ ଦ୍ରୌପଦୀ କ୍ରୋଧରେ ଅସ୍ଥିର ହୋଇ ଚିତ୍କାର କରି କହିଲେ, "-ହେ ବାସୁଦେବ, ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଆଦି ସମସ୍ତେ ସନ୍ଧି କରନ୍ତୁ; ମାତ୍ର ପ୍ରତିଶୋଧ ନ ନେବା ଯାଏ ମୁଁ ସ୍ଥିର ହୋଇ ରହି ପାରିବି ନାହିଁ । ମୋର ବୃଦ୍ଧ ପିତା ଦ୍ରୁପଦ, ଭାଇ ଧୃଷ୍ଟଦ୍ୟୁମ୍ନ, ମୋର ପାଞ୍ଚ ବୀର ପୁତ୍ର ଓ ମହାବୀର ଅଭିମନ୍ୟୁ ମୋ ପାଇଁ ଯୁଦ୍ଧ କରିବେ । ଦୁଃଶାସନ ଯେଉଁ ହାତରେ ମୋର କେଶକୁ ଓଟାରି ଧରିଥିଲା, ସେଇ ହାତକୁ ବିଲୁଆ କୁକୁର ଖାଇଥିବା କଥା ନଦେଖିବା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ ।"

କୃଷ୍ଣ ସାନ୍ତ୍ୱନା ଦେଇ କହିଲେ, "-ଦ୍ରୌପଦୀ ସ୍ଥିର ହୁଅ । ଆଉ ବେଶୀ ବିଳମ୍ବ ହେବ ନାହିଁ । ଅଳ୍ପ ଦିନ ମଧ୍ୟରେ କୌରବ ରମଣୀମାନେ ତୁମଠାରୁ ଆହୁରି ଉଚ୍ଚସ୍ୱରରେ କାନ୍ଦି ମୁଣ୍ଡ ପିଟୁଥିବାର ଦୃଶ୍ୟ ଦେଖିବାକୁ ପାଇବ । ମୁଁ ପାଣ୍ଡବମାନଙ୍କ ପକ୍ଷରେ ରହି କୌରବ ବଂଶ ନିର୍ମୂଳ କରିବି । ତୁମେ ପାଟ-ରାଣୀର ଗୌରବ ଲାଭ କରିବ । ଏଥିରେ ବିନ୍ଦୁଏ ହେଲେ ମିଥ୍ୟା ନାହିଁ । ଧୀର ସ୍ଥିର ହୋଇ ଆଉ ଅଳ୍ପ ଦିନ ଅପେକ୍ଷା କରିଯାଅ ।"

## ଦୂତ ରୂପେ ଶ୍ରୀକୃଷ୍ଣ

ସାତ୍ୟକିଙ୍କ ସହିତ ଶ୍ରୀକୃଷ୍ଣ ହସ୍ତିନାପୁର ଯାତ୍ରା କଲେ । ଚାରିଆଡ଼େ ଏ ଖବର ବିଜୁଳି ବେଗରେ ଖେଳିଗଲା । ମହାରାଜ ଧୃତରାଷ୍ଟ୍ର କୃଷ୍ଣଙ୍କୁ ସ୍ୱାଗତ କରିବା ପାଇଁ ହସ୍ତିନାପୁରକୁ ଅତି ଚମତ୍କାର ଭାବରେ ସଜାଇବାର ବ୍ୟବସ୍ଥା କଲେ ଓ ବିଦୂରଙ୍କୁ କହିଲେ, "କୃଷ୍ଣଙ୍କ ଅଭ୍ୟର୍ଥନା ପାଇଁ ସମସ୍ତ ବ୍ୟବସ୍ଥା କରି ଦେଇଛି । ଭାବୁଛି, ବହୁମୂଲ୍ୟ ରତ୍ନ ଆଦି ଉପହାର ଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରିବା । ତା' ହେଲେ ସେ ଆମ ପାଇଁ କିଛି କରିବେ ।"

ବିଦୂର କହିଲେ, "ମହାରାଜ, ଆପଣ ଏପର୍ଯ୍ୟନ୍ତ କପଟ ଛାଡ଼ି ପାରିନାହାନ୍ତି । ଅଧେ ରାଜ୍ୟ ପାଣ୍ଡବମାନଙ୍କର ପ୍ରାପ୍ୟ । ତା ନମାଗି ସେମାନେ ପାଞ୍ଚ ଖଣ୍ଡ ପଡ଼ା ମାତ୍ର ମାଗିଥିଲେ । ଆପଣ ସେଇ ସାମାନ୍ୟ ମାତ୍ର ଭିକ୍ଷା ନଦେଇ ତାଙ୍କୁ ଦୁଆରୁ ଫେରାଇ ଦେଇଛନ୍ତି । ଆଜି କୃଷ୍ଣଙ୍କୁ ଲାଞ୍ଚ ଦେଇ ପାଣ୍ଡବମାନଙ୍କ ଭିକ୍ଷାଥାଳକୁ ଭାଙ୍ଗିଦେବା ପାଇଁ ଯେଉଁ ହୀନ ଉଦ୍ୟମ କରୁଛନ୍ତି, ତାହା କଦାପି ସମ୍ଭବ ହୋଇପାରିବ ନାହିଁ । ବରଂ ସେ ଯେଉଁ ପ୍ରସ୍ତାବ ନେଇ ଆସିଛନ୍ତି, ତାକୁ ଗ୍ରହଣ କରି ନିଅନ୍ତୁ । ସେଥିରେ ସେ ସନ୍ତୁଷ୍ଟ ହେବେ ଓ ଆପଣଙ୍କର ମଙ୍ଗଳ ହେବ । ପାଣ୍ଡବମାନଙ୍କୁ ପୁତ୍ର ସ୍ନେହରୁ ବଞ୍ଚିତ କରନ୍ତୁ ନାହିଁ ।"

ଦୁର୍ଯ୍ୟୋଧନ କହିଲେ, "ବିଦୂର ଠିକ୍ କଥା କହିଛନ୍ତି । ଶ୍ରୀକୃଷ୍ଣ ଗୋଟାଯାକ ପାଣ୍ଡବଙ୍କର । ଉପହାର, ଭେଟି, ଲାଞ୍ଚ ଆଦି ଦେଇ ତାଙ୍କୁ ଆମର କରିବା ଆଦୌ ସମ୍ଭବ ନୁହେଁ ।"

ଭୀଷ୍ମ କହିଲେ, "କୃଷ୍ଣଙ୍କୁ ଆଦର କର ବା ନକର, ସେଥିରେ ସେ ଆଗ୍ରହୀ ନୁହନ୍ତି । ବରଂ ସେ ଯେଉଁ ପ୍ରସ୍ତାବ ଆଣି ଆସିଛନ୍ତି, ତାକୁ ଗ୍ରହଣ କଲେ ଆମର ବହୁ ଉପକାର ହେବ ଓ ସେ ଖୁସି ହେବେ ।"

ଦୁର୍ଯ୍ୟୋଧନ କହିଲେ, "ପାଣ୍ଡବମାନଙ୍କର ସେପରି କିଛି ଚିନ୍ତା ନାହିଁ । କେବଳ କୃଷ୍ଣଙ୍କୁ ବଳ କରି ସେମାନେ ବଡ଼ ବଡ଼ କଥାମାନ ଶୁଣାଉଛନ୍ତି । କାଲି କୃଷ୍ଣ ଏଠାରେ ପହଞ୍ଚିବା ମାତ୍ରେ ମୁଁ ତାଙ୍କୁ ବନ୍ଦୀ କରିଦେବି । ଏତିକି ହୋଇଗଲେ ଦେଖିବେ, ପାଣ୍ଡବମାନେ ବାଧ୍ୟ ହୋଇ ଆମର ଅଧୀନତା ସ୍ୱୀକାର କରିବେ ।"

ଭୀଷ୍ମଙ୍କୁ ଦୁର୍ଯ୍ୟୋଧନର କଥା ଅତ୍ୟନ୍ତ ଅସହ୍ୟ ବୋଧ ହେଲା । ସେ କହିଲେ, "ମହାରାଜ, ଆପଣଙ୍କ ପୁତ୍ରର ବୁଦ୍ଧି ନଷ୍ଟ ହୋଇଗଲାଣି । ଏପରି ପାପବୁଦ୍ଧି ପୁତ୍ରକୁ ତୁରନ୍ତ ରାଜ୍ୟରୁ ବାହାର କରିଦେବା ଉଚିତ । ତା ନହେଲେ କୃଷ୍ଣଙ୍କ କ୍ରୋଧରେ କୁରୁବଂଶ ନିର୍ମୂଳ ହୋଇଯିବ । କୌରବ ରମଣୀମାନଙ୍କ ବିକଳ ବିଳାପ ଆପଣ ଆଦୌ ସହ୍ୟ କରିପାରିବେ ନାହିଁ ।" ଏହିପରି କଟୂକଥା କହି ଭୀଷ୍ମ ସେ ସ୍ଥାନ ଛାଡ଼ି ଚାଲିଗଲେ ।



ଦୂତରୂପେ ଶ୍ରୀକୃଷ୍ଣ

## କୁରୁସଭାରେ ଶ୍ରୀକୃଷ୍ଣ

କୃଷ୍ଣ ହସ୍ତିନାରେ ପହଞ୍ଚିବା ପରେ ଧୃତରାଷ୍ଟ୍ର ଦୁର୍ଯ୍ୟୋଧନ ଓ ଦୁଃଶାସନ ଆଦି ପୁତ୍ରମାନଙ୍କ ସହ ତାଙ୍କୁ ପାଛୋଟି ଆଣିଲେ । ଧୃତରାଷ୍ଟ୍ର ନିଜ ରାଜନଅରରେ କୃଷ୍ଣଙ୍କ ରହିବାର ସମସ୍ତ ସୁବିଧା କରିଥିଲେ ମଧ୍ୟ ସେ ତାହା ଗ୍ରହଣ ନକରି ବିଦୁରଙ୍କ ଘରକୁ ଗଲେ । ସେଠାରେ ନିଜ ପିଉସୀ କୁନ୍ତୀଙ୍କୁ ନମସ୍କାର କରୁଥିବା ବେଳେ କୁନ୍ତୀ ତାଙ୍କୁ କୁଣ୍ଢାଇ ପକାଇ କାନ୍ଦି ଉଠିଲେ । କୃଷ୍ଣ ତାଙ୍କୁ ବହୁତ ବୁଝାଇ ଶାନ୍ତ କରିବାରେ ଲାଗିଲେ ।

କୃଷ୍ଣ ଓ ବିଦୁରଙ୍କ ମଧ୍ୟରେ ବହୁ ସମୟ ଧରି ଆଲୋଚନା ଚାଲିଲା । ବିଦୁର କହିଲେ, "ଭୀଷ୍ମ, ଦ୍ରୋଣ, କୃପ ଆଉ କର୍ଣ୍ଣଙ୍କୁ ଆଖି ଆଗରେ ରଖି ଦୁର୍ଯ୍ୟୋଧନର ମୁଣ୍ଡ ପର୍ବତ ଅଗରେ ଲାଗି ଯାଉଛି । ଆପଣ ଏପରି ଗୋଟାଏ ଉଦ୍ଧତ ଓ ଗର୍ବୀ ଲୋକ ସହିତ ଆଲୋଚନା କରିବା ପାଇଁ ଆସିବା ମୋ ମତରେ ଉଚିତ ହୋଇନାହିଁ । ଦୁର୍ଯ୍ୟୋଧନ ଓ ତାର ଭାଇମାନେ ଆପଣଙ୍କ ଜୀବନ ଉପରେ ବିପଦ ସୃଷ୍ଟି କରିବା ଅସମ୍ଭବ ନୁହେଁ ।"

କୃଷ୍ଣ କହିଲେ, "ଦୁର୍ଯ୍ୟୋଧନଙ୍କ ସଂପର୍କରେ ଆପଣଙ୍କ ଧାରଣା ଯଥାର୍ଥ । ମନେରଖନ୍ତୁ, ମୁଁ ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଏଠାକୁ ଆସିନାହିଁ । ସମସ୍ତେ ଜାଣି ଯାଆନ୍ତୁ ପାଣ୍ଡବମାନେ ନିର୍ଦ୍ଦୋଷ, ତା'ପରେ ଯାହା ହେବା ଉଚିତ ତାହା କରାଯିବ ।"

ପରଦିନ କୃଷ୍ଣ କୌରବ ସଭାରେ ଉପସ୍ଥିତ ହେଲେ । ତାଙ୍କୁ ଉପଯୁକ୍ତ ଆସନରେ ବସାଇ ଯଥାର୍ଥ ସମ୍ମାନ ଦିଆଗଲା । ସଭାରେ ପିତାମହ ଭୀଷ୍ମ, ଧୃତରାଷ୍ଟ୍ର, ଦ୍ରୋଣ, କୃପାଚାର୍ଯ୍ୟ, କର୍ଣ୍ଣ, ଶକୁନି ଓ ଦୁଃଶାସନ ଆଦି କୌରବ ପକ୍ଷର ବୀରମାନେ ଆସନ ଗ୍ରହଣ କରିଥିଲେ ।

କୃଷ୍ଣ କହିଲେ, "କୌରବ ଓ ପାଣ୍ଡବମାନେ ମହାନ୍ ଭରତ ବଂଶରେ ଜନ୍ମଲାଭ କରିଛନ୍ତି । ଉଭୟେ ମୋର ପ୍ରିୟ ବନ୍ଧୁ । ସାମାନ୍ୟ କଥା ପାଇଁ ଯୁଦ୍ଧରେ ମାତିଯିବା ଆଦୌ ଉଚିତ ନୁହେଁ । ଯୁଦ୍ଧ ହେଲେ କ୍ଷତ୍ରିୟ କୁଳ ନାଶ ହେବ ଏବଂ ଧର୍ମ ଓ ସତ୍ୟ ଲୋପ ପାଇଯିବ । ଏଣୁ ଯୁଦ୍ଧ ନହେବା ହିଁ ଭଲ । କପଟ କରି ପାଣ୍ଡବମାନଙ୍କୁ ପଶାଖେଳରେ ହରାଇ ଦିଆଗଲା । ଦୁର୍ଯ୍ୟୋଧନଙ୍କ ପକ୍ଷରୁ ଶକୁନି ପଶା ଖେଳିବା ମଧ୍ୟ ଏକ ଅନ୍ୟାୟ କାର୍ଯ୍ୟ ଅଟେ । ପୁଣି ପଶାରେ ହାରି ପାଣ୍ଡବମାନେ ବନବାସ ତଥା ଅଜ୍ଞାତବାସର କଠୋର କଷ୍ଟ ସହ୍ୟ କଲେ । ମହାରାଣୀ ଦ୍ରୌପଦୀଙ୍କ ଅପମାନ ଆମ ସମସ୍ତଙ୍କ ପ୍ରତି ଘୋର ଲଜ୍ଜାର ବିଷୟ ହୋଇପଡ଼ିଲା । ଏତେ କଥା ସତ୍ତ୍ୱେ ପାଣ୍ଡବମାନେ କଦାପି କୌରବମାନଙ୍କ ଅହିତ ଚିନ୍ତା କରିନାହାନ୍ତି । ଏପରିକି ଗନ୍ଧର୍ବରାଜ ଚିତ୍ରସେନ ଯେତେବେଳେ ଦୁର୍ଯ୍ୟୋଧନ ସହିତ କୌରବ ନାରୀମାନଙ୍କୁ ବାନ୍ଧି ନେଉଥିଲା, ସେତେବେଳେ ପାଣ୍ଡବମାନେ ହିଁ ସେମାନଙ୍କୁ ମୁକ୍ତ କରିଥିଲେ । ନାନା ଦୁଃଖ କଷ୍ଟ ଭୋଗ କରିବା ପରେ ଯୁଧିଷ୍ଠିର କେବଳ ଅଧେ ରାଜ୍ୟ ନେଇ ଶାନ୍ତିରେ ରହିବାକୁ ଚାହିଁଛନ୍ତି । ପାଣ୍ଡବମାନେ ଯୁଦ୍ଧପାଇଁ ଯେତିକି ପ୍ରସ୍ତୁତ, ସନ୍ଧିପାଇଁ ତାଠାରୁ ଅଧିକ ଆଗ୍ରହୀ । ଅନୁରୋଧ କରୁଛି, ପାଣ୍ଡବମାନଙ୍କ ଉଚିତ ପ୍ରାପ୍ୟ ଅଧେ ରାଜ୍ୟ ସେମାନଙ୍କୁ ଦେଇ ଶାନ୍ତି ରକ୍ଷା କରନ୍ତୁ । ମୁଁ କେବଳ ସନ୍ଧି କଥା କହିବା ଛଡ଼ା ଯୁଦ୍ଧ ବିଷୟ ଆଦୌ ଚିନ୍ତା ମଧ୍ୟ କରୁନାହିଁ ।"

ସଭାରେ ଉପସ୍ଥିତ ଥିବା ଗୁରୁଜନଙ୍କ ସହିତ କଣ୍ୱ, ନାରଦ ଆଦି ବହୁ ମୁନିଋଷି ଧୃତରାଷ୍ଟ୍ରଙ୍କୁ କହିଲେ, "ମହାରାଜ, ଆପଣ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇଦେବାରେ ଆଉ ବିଳମ୍ବ କରିବା ଉଚିତ ନୁହେଁ ।"

ଧୃତରାଷ୍ଟ୍ର କହିଲେ, "ଆପଣମାନଙ୍କ ପରାମର୍ଶ ଅତ୍ୟନ୍ତ ନ୍ୟାୟପୂର୍ଣ୍ଣ । ମାତ୍ର ସେହି ମୂଲ୍ୟବାନ ପରାମର୍ଶକୁ କାର୍ଯ୍ୟରେ ପରିଣତ କରିବାରେ ମୋର ଅଧିକାର ନାହିଁ । କାରଣ ଦୁର୍ଯ୍ୟୋଧନ ମୋ କଥା ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହେଁ । ଶ୍ରୀକୃଷ୍ଣ ନିଜେ ଦୁର୍ଯ୍ୟୋଧନ ସହିତ ଆଲୋଚନା କରିବାକୁ ମୁଁ ଅନୁରୋଧ କରୁଛି ।"

ଏଥର ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟ କରି କହିଲେ, "ଯେଉଁ ବଂଶରେ ତୁମର ଜନ୍ମ ହୋଇଛି, ତାହା ଏକ ବିଖ୍ୟାତ ବଂଶ । ଏହି ମହାନ୍ ବଂଶର ମର୍ଯ୍ୟାଦା ପ୍ରତି ଦୃଷ୍ଟି ନଦେଇ ତୁମେ ଅନ୍ଧଭାବରେ ଯେଉଁ କାର୍ଯ୍ୟ ସବୁ କରିଯାଉଛ, ତାହାର ଫଳ ଆଦୌ ଭଲ ହେବନାହିଁ । କିଏ କହିବ, ଏହି ବିରାଟ କୁରୁବଂଶ ଦିନେ ତୁମରି ଦୋଷରୁ ସମ୍ପୂର୍ଣ୍ଣ ଭାବରେ ଶେଷ ପାଇଯିବ । ଅତୀତରେ ପାଣ୍ଡବମାନଙ୍କ ପ୍ରତି ତୁମେ ଯେଉଁ ସବୁ ଅନ୍ୟାୟ କରିଛ, ସେ ସବୁ ସେମାନେ ଭୁଲି ଯାଇଛନ୍ତି । ପୁଣି ସେମାନଙ୍କ ପ୍ରତି ଅନ୍ୟାୟ କଲେ, କୁରୁବଂଶରେ ଜଣେ କେହି ବଞ୍ଚି ରହିପାରିବେ ନାହିଁ ।"

କୃଷ୍ଣଙ୍କ ପରାମର୍ଶକୁ ଭୀଷ୍ମ, ଦ୍ରୋଣ ଆଦି ବହୁ ଗୁରୁଜନ ଉଚିତ୍ ବୋଲି କହିବା ପରେ ବିଦୁର କହିଲେ, "ଦୁର୍ଯ୍ୟୋଧନ, ତୁମ ପାଇଁ ମୁଁ କିଛି ଭାବୁନାହିଁ । ତୁମେ ତ ନିଶ୍ଚୟ ମରିବ । ତୁମ ଲାଗି ଏ ବିଖ୍ୟାତ କୁରୁବଂଶ ଲୋପ ପାଇଯିବ । ତୁମ ବାପା ମାଆ ଏ ବୃଦ୍ଧାବସ୍ଥାରେ ଯେଉଁ ଶୋଚନୀୟ ଦୁଃଖ ଭୋଗ କରିବେ, ତାହା ଭାବି ମୁଁ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଛି ।"

ସବୁ ଶୁଣିସାରି ଦୁର୍ଯ୍ୟୋଧନ କହିଲେ, "କୌଣସି ବିଷୟରେ ନିଜର ମତାମତ ଦେବା ଆଗରୁ ସେ ବିଷୟଟି ଉତ୍ତମ ରୂପେ ବିଚାର କରିବା ଉଚିତ । ଶୁଣନ୍ତୁ, ପାଣ୍ଡବମାନଙ୍କୁ ପଶା ଖେଳବା ପାଇଁ କେହି ବାଧ୍ୟ କରିନଥିଲେ । ନିଜ ଇଚ୍ଛାରେ ପଣ ରଖି ହାରିଯିବା ପରେ ସତ୍ୟରକ୍ଷା ପାଇଁ ସେମାନେ ବଣକୁ ଗଲେ । ତେଣୁ ପାଣ୍ଡବମାନଙ୍କ ବନବାସ ଓ ସେଠାରେ ପାଇଥିବା କଷ୍ଟ ପାଇଁ ମୋତେ ଦାୟୀ କରାଯିବାର କାରଣ କଅଣ ? ଆହୁରି ଶୁଣନ୍ତୁ, ଧୃତରାଷ୍ଟ୍ର ରାଜ୍ୟର ରାଜା ଓ ସମସ୍ତ ସମ୍ପତ୍ତି ତାଙ୍କ ପୁଅମାନଙ୍କର

ପ୍ରାପ୍ୟ । ଏଥିରେ ପାଣ୍ଡବମାନେ ଅଂଶୀଦାର ହେବେ କାହିଁକି ? ଆମେ ସବୁ ପିଲା ଥିବା ବେଳେ ଆମ ପିତା ସ୍ନେହ ଯୋଗୁ ଅଥବା ଭୟ କରି ହେଉ ପାଣ୍ଡବମାନଙ୍କୁ ଅଧେ ରାଜ୍ୟ ଦେଇ ଏକ ବିରାଟ ଭୁଲ୍ କରି ପକାଇଥିଲେ । ରାଜ୍ୟ ସେମାନଙ୍କର ଉଚିତ ପ୍ରାପ୍ୟ ନୁହେଁ ବୋଲି ତାହା ପୁଣି ଆମ ପାଖକୁ ଫେରି ଆସିଛି । ସେଥିପାଇଁ ଆମକୁ କୌଣସି କଷ୍ଟ ସ୍ୱୀକାର କରିବାକୁ ପଡ଼ିନାହିଁ । ଯେ ରାଜା, ବର୍ତ୍ତମାନ ସମଗ୍ର ରାଜ୍ୟ ତା ଅଧୀନରେ ଅଛି, ଏଥିରେ ପାଣ୍ଡବମାନଙ୍କ ପ୍ରଶ୍ନ ଉଠୁଛି କାହିଁକି ? ଅଧେ ରାଜ୍ୟ ତ ଦୂରର କଥା ପାଣ୍ଡବମାନଙ୍କୁ ଛୁଞ୍ଚି ମୁନରେ ମୁନେ ଜାଗା ଦେବାପାଇଁ ମୁଁ ପ୍ରସ୍ତୁତ ନୁହେଁ । ଅପର ପକ୍ଷରେ ପାଣ୍ଡବମାନେ ଯୁଦ୍ଧ କରିବାର ଧମକ ଦେଉଛନ୍ତି । ମୁଁ ସେଥିପାଇଁ ଡରି ଯିବାର ଲୋକ ନୁହେଁ । ଲକ୍ଷ ଲକ୍ଷ ସୈନ୍ୟ ଓ ମହାବୀରମାନେ ମୋ ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଅଛନ୍ତି । ପାଣ୍ଡବଙ୍କ ସଂଖ୍ୟା ମାତ୍ର ପାଞ୍ଚ । ସେମାନେ ଯୁଦ୍ଧ କଥା ତୁଣ୍ଡରେ ବହୁତ କହିବେ; ମାତ୍ର ଯୁଦ୍ଧ ଭୂମିକୁ ଆଦୌ ଆସିବେ ନାହିଁ । ଏକଥା ମୁଁ ଉତ୍ତମ ରୂପେ ଜାଣେ ।"

ଦୁର୍ଯ୍ୟୋଧନଙ୍କର ଉଦ୍ଧତ କଥାରେ କୃଷ୍ଣ ରାଗିଯାଇ କହିଲେ, "ମହାରାଜ, ବିଚିତ୍ରବୀର୍ଯ୍ୟଙ୍କର ଦୁଇ ପୁଅ । ତେଣୁ ରାଜ୍ୟର ଅଧେ ଭାଗ ଧୃତରାଷ୍ଟ୍ର ଓ ଅନ୍ୟ ଅଧକ ପାଣ୍ଡୁଙ୍କର ପ୍ରାପ୍ୟ । ପାଣ୍ଡୁଙ୍କ ମୃତ୍ୟୁପରେ ଅଧେ ରାଜ୍ୟ ପାଣ୍ଡବମାନେ ପାଇବା ହିଁ ନ୍ୟାୟ । ମହାରାଜ ଧୃତରାଷ୍ଟ୍ର ଏହି ନ୍ୟାୟକୁ ଗ୍ରହଣ କରି ପାଣ୍ଡବମାନଙ୍କୁ ଅଧେ ରାଜ୍ୟ ଦେଇଥିଲେ, ସ୍ନେହ କରି ବା ଭୟ ଯୋଗୁ ନୁହେଁ । ତେଣୁ ଅଧେ ରାଜ୍ୟ ପାଣ୍ଡବମାନଙ୍କୁ ଫେରାଇ ନଦେଲେ ତୁମେ ହିଁ କୁରୁବଂଶ ଧ୍ୱଂସର କାରଣ ହେବ ।"

କୃଷ୍ଣଙ୍କ କଥାରେ ଦୁର୍ଯ୍ୟୋଧନ ରାଗି ଉଠି କହିଲେ, "ଦେଖୁଛି, ତୁମେ ମୋର ନିନ୍ଦା ରଚନା କରି ପାଣ୍ଡବମାନଙ୍କ ପ୍ରଶଂସା ଗାଇବାକୁ ଏଠାକୁ ଆସିଛ । ମନଦେଇ ଶୁଣ କୃଷ୍ଣ, ମୋର ପିତା ଧୃତରାଷ୍ଟ୍ର ଅନ୍ଧ ଥିବାରୁ ରାଜ୍ୟର ଭାର ପାଣ୍ଡବଙ୍କୁ ଦିଅଯାଇଥିଲା । ଧୃତରାଷ୍ଟ୍ରଙ୍କ ବଡ଼ ପୁଅ ମୁଁ ତ ଅନ୍ଧ ନୁହେଁ; ତେବେ ରାଜ୍ୟଟା ଯୁଧିଷ୍ଠିରଙ୍କର ପ୍ରାପ୍ୟ ହେଲା କିପରି ? ତୁମେ ପାଣ୍ଡବଙ୍କ ପକ୍ଷରୁ ଲଢ଼ିବା ପାଇଁ ଆସିଛ । ମୁଁ ତୁମର କୌଣସି କଥା ନଶୁଣି ତୁମକୁ ବନ୍ଦୀ କରିବି ।" ଏକଥା କହିବାରୁ କର୍ଣ୍ଣ, ଦୁଃଶାସନ ଆଦି କୃଷ୍ଣଙ୍କୁ ବାନ୍ଧି ପକାଇବା ପାଇଁ ଆଗେଇ ଆସିଲେ । ଏକଥା ଦେଖି ଭୀଷ୍ମ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି କହିଲେ, "ସାବଧାନ ଆଉ ପାଦେ ହେଲେ ଆଗକୁ ବଢ଼ ନାହିଁ । ଜୀବନ ପ୍ରତି ମମତା ଥିଲେ ପଛକୁ ଫେରିଯାଅ ।" ଏହି ସମୟରେ କୃଷ୍ଣଙ୍କ ମୁହଁରୁ ଏକ ଅପୂର୍ବ ତେଜ ବାହାରିବାରେ ଲାଗିଲା । କୌରବମାନେ ଅତ୍ୟନ୍ତ ଭୟଭୀତ ହୋଇଉଠିଲେ । ଆଉ ଅପେକ୍ଷା ନକରି ଶ୍ରୀକୃଷ୍ଣ ଅତିଶୀଘ୍ର ସଭା ସ୍ଥାନରୁ ବାହାରିଆସିଲେ ।

## କୁନ୍ତୀ ଓ ଶ୍ରୀକୃଷ୍ଣ

ସଭାରୁ ଫେରି ଶ୍ରୀକୃଷ୍ଣ ବିଦୂରଙ୍କ ଘରେ କୁନ୍ତୀଙ୍କୁ କହିଲେ, "ଯେତେ ବୁଝାଇଲେ ମଧ ଦୁଷ୍ଟ ଦୁର୍ଯ୍ୟୋଧନ ସନ୍ଧି ପ୍ରସ୍ତାବରେ ଆଦୌ ରାଜି ହେଲା ନାହିଁ । ମୁଁ ଏବେ ଉପପ୍ଲବ୍ୟ ଫେରି ଯାଉଛି । ଯଦି ପୁଅମାନଙ୍କ ପାଖକୁ କିଛି କହିବାର ଥାଏ ତେବେ ମୋତେ କହନ୍ତୁ ।"

କୁନ୍ତୀ ଛଳଛଳ ଆଖିରେ କହିଲେ, "କୃଷ୍ଣ, ପିଲାମାନଙ୍କୁ ମୋର କଲ୍ୟାଣ ଜଣାଇବ । ଆହୁରି କହିବ, ମୁଁ ମହାଧନୁର୍ଦ୍ଧର ପାଞ୍ଚ ପୁତ୍ରର ଜନନୀ । ଏକା ଏକା ପୃଥିବୀ ଜୟ କରିବାର ଶକ୍ତି ମୋ ପୁଅମାନଙ୍କର ଅଛି । ଏପରି ବୀର ସନ୍ତାନମାନଙ୍କର ଜନନୀ ହୋଇ ମୁଁ ଅନ୍ୟର ଆଶ୍ରୟ ଓ ଅନ୍ନରେ କେତେଦିନ ଆଉ ଚଳିବି ? ନିଜ ନିଜ ବୀରତ୍ୱର ପରିଚୟ ଦେବାର ସମୟ ଆସିଗଲାଣି । ସେମାନେ ପୈତୃକ ରାଜ୍ୟ ଫେରିପାଇବା ପାଇଁ ଯୁଦ୍ଧ କରିବାକୁ ବାହାରିପଡ଼ନ୍ତୁ । ପଶା ଖେଳ ପରେ ଯାହା ସବୁ ଘଟିଗଲା,

ସେଥିପାଇଁ ମୁଁ ଦୁଃଖ କରୁନାହିଁ । କିନ୍ତୁ ବୀର କନ୍ୟା, ବୀରଭଗ୍ନି ଓ ମହାବୀରମାନଙ୍କର ପତ୍ନୀ ହୋଇ ଦ୍ରୌପଦୀ ମୋର ଯେଉଁ ଲାଞ୍ଛନା ଓ ଅପମାନ ସହ୍ୟ କରିଛି, ତାହା ମୋ ଛାତିରେ ଗଭୀର କ୍ଷତ ସୃଷ୍ଟି କରି ପକାଇଛି । ମୋ ପିଲାମାନଙ୍କୁ ସେ ଅପମାନର ଉପଯୁକ୍ତ ପ୍ରତିଶୋଧ ନେବା ପାଇଁ ସ୍ମରଣ କରାଇଦେବ ।" କୃଷ୍ଣ ପିଉସୀଙ୍କଠାରୁ ବିଦାୟ ନେଇ ଉପପ୍ଲବ୍ୟ ଯାତ୍ରା କଲେ ।

## କୃଷ୍ଣ ଓ କର୍ଣ୍ଣ

ଶ୍ରୀକୃଷ୍ଣ କୁନ୍ତୀ ଓ କୌରବମାନଙ୍କଠାରୁ ବିଦାୟ ନେଇ ପାଣ୍ଡବମାନଙ୍କ ନିକଟକୁ ଫେରୁଥିବାବେଳେ କର୍ଣ୍ଣଙ୍କୁ ନିଜ ରଥରେ ବସାଇ କିଛି ବାଟ ନେଇ ଆସିଥିଲେ । କର୍ଣ୍ଣଙ୍କୁ କହିଲେ, "ତୁମେ ସାରଥୀ ଅଧିରଥର ପୁତ୍ର ନୁହଁ, କିମ୍ବା ରାଧା ତୁମ ଜନ୍ମିତ ମାଆ ନୁହେଁ । ମାତା କୁନ୍ତୀଦେବୀଙ୍କର ତୁମେ ସବାବଡ଼ ପୁଅ । ବିବାହ ପୂର୍ବରୁ କୁନ୍ତୀଦେବୀ ତୁମକୁ ଜନ୍ମ ଦେଇଥିଲେ । ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ଏବେ ତୁମେ ପାଣ୍ଡବମାନଙ୍କ ପାଖକୁ ଫେରିଆସ ଓ ବଡ଼ ଭାଇ ହିସାବରେ ସମଗ୍ର ପୃଥିବୀର ସମ୍ରାଟ ହେବାର ଗୌରବ ଲାଭକର । ସାମାନ୍ୟ ଅଙ୍ଗରାଜ୍ୟ ତୁମ ପାଇଁ କିଛି ନୁହେଁ । ପାଣ୍ଡବମାନଙ୍କୁ ଭାଇ ରୂପେ ଗ୍ରହଣ କରିଗଲେ ମାତା କୁନ୍ତୀଙ୍କର ଆନନ୍ଦର ସୀମା ରହିବ ନାହିଁ ଏବଂ ତୁମର ପ୍ରକୃତ ପରିଚୟ ପାଇ ସମସ୍ତେ ଚକିତ ହୋଇଯିବେ ।"

କର୍ଣ୍ଣ ନୀରବରେ ଶ୍ରୀକୃଷ୍ଣଙ୍କ କଥା ଶୁଣି କହିଲେ, "ବାସୁଦେବ, ମୁଁ କୁନ୍ତୀଦେବୀଙ୍କ ପ୍ରଥମ ପୁତ୍ର । ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ । ମାତ୍ର କୁନ୍ତୀଦେବୀ ମୋ ପ୍ରତି ଯେଉଁ ଅବିଚାର କରିଛନ୍ତି, ତା'ର ତୁଳନା ନାହିଁ । ନିଜର ମହତ୍ତ୍ୱ ରକ୍ଷା କରିବାପାଇଁ ସେ ମୋତେ ଜନ୍ମଦେବା ମାତ୍ରେ ହତ୍ୟା କରିଛନ୍ତି କହିଲେ କିଛି ଭୁଲହେବ ନାହିଁ । ନଦୀରେ ଫିଙ୍ଗିଦେବାପରେ ସାରଥୀ ଅଧିରଥ ଓ ରାଧା ମୋତେ ପୁତ୍ର-ସ୍ନେହ ଦେଇ ପାଳନ କରିଛନ୍ତି । ତାଙ୍କର ସ୍ନେହ ଓ ଶ୍ରଦ୍ଧା ଯୋଗୁ ଆଜି ମୁଁ ମଣିଷ ହୋଇଛି ଓ ତାଙ୍କୁ ପିତା ମାତାର ସମ୍ମାନ ଦେଇ ଜୀବନ ରକ୍ଷାକାରୀ ପ୍ରତି ବିଶ୍ୱାସଘାତକତା କରିବା କେଉଁ ନ୍ୟାୟ ? ପୁଣି ଦୁର୍ଯ୍ୟୋଧନଙ୍କ ନିକଟରେ ମୁଁ ଋଣୀ । ଦୁର୍ଯ୍ୟୋଧନଙ୍କୁ ସର୍ବଦା ସାହାଯ୍ୟ କରିବାକୁ ମୁଁ ପ୍ରତିଜ୍ଞା କରିସାରିଛି । ଆଜି ସେ ପ୍ରତିଜ୍ଞା ଭାଙ୍ଗିବି କିପରି ? ମୁଁ କୌରବ ପକ୍ଷ ଛାଡ଼ିଦେଲେ ଦୁର୍ଯ୍ୟୋଧନ ହତାଶ ହୋଇପଡ଼ିବେ । ଯେତେ ଯାହା କଲେ ମଧ୍ୟ ମୁଁ କୌରବମାନଙ୍କୁ ହିଁ ସାହାଯ୍ୟ କରିବି । ଆପଣ ପାଣ୍ଡବମାନଙ୍କ ପକ୍ଷରେ ଅଛନ୍ତି । ତେଣୁ ଶେଷରେ ପାଣ୍ଡବମାନେ ଜୟଲାଭ କରିବେ, ଏଥିରେ ମୋର ଆଦୌ ସନ୍ଦେହ ନାହିଁ ।"

କୃଷ୍ଣ କହିଲେ, "କର୍ଣ୍ଣ, ମୁଁ ତୁମକୁ ପୃଥିବୀର ଅଧୀଶ୍ୱର କରିବାକୁ ଇଚ୍ଛା କରିଥିଲି; ମାତ୍ର ତୁମେ ତାହା ଗ୍ରହଣ ନକରି ଦୁର୍ଯ୍ୟୋଧନ ପକ୍ଷରେ ରହିବାକୁ ନିଷ୍ପତ୍ତି ଜଣାଇଦେଲ । ଭଲ ହେଲା । ଏବେ ଫେରିଯାଇ କୌରବମାନଙ୍କୁ କହିବ, ଆଜିଠାରୁ ସାତଦିନପରେ ପାଣ୍ଡବମାନେ କୌରବମାନଙ୍କ ସହ ଯୁଦ୍ଧ ଆରମ୍ଭ କରିବେ ।"

କର୍ଣ୍ଣ ଫେରିଆସିଲେ । କୃଷ୍ଣ ଉପପ୍ଲବ୍ୟ ଆଡ଼କୁ ଯାତ୍ରା କଲେ ।

## କୁନ୍ତୀ ଓ କର୍ଣ୍ଣଙ୍କ ସାକ୍ଷାତ

ଯୁଦ୍ଧ ନିଶ୍ଚୟ ହେବ ଜାଣି କୁନ୍ତୀ ବଡ଼ ଚିନ୍ତିତ ହୋଇ ପଡ଼ିଥିଲେ । ସେ ଭଲ କରି ଜାଣିଥିଲେ ଯେ କୌରବ ପକ୍ଷର ଭୀଷ୍ମ ବା ଦ୍ରୋଣ ପାଣ୍ଡବମାନଙ୍କୁ ହତ୍ୟା କରିବାକୁ ଇଚ୍ଛା କରନ୍ତି ନାହିଁ । ଏକମାତ୍ର କର୍ଣ୍ଣ ହିଁ ତାଙ୍କର ଚିନ୍ତାର ବିଷୟ ହୋଇ ରହିଯାଇଥିଲେ । କୌଣସିମତେ କର୍ଣ୍ଣଙ୍କୁ ନିଜ ପକ୍ଷକୁ ଆଣିପାରିଲେ ପାଣ୍ଡବମାନଙ୍କର ଯୁଦ୍ଧ ଜୟ କରିବାରେ ଆଉ ସନ୍ଦେହ ରହନ୍ତା ନାହିଁ । ଏହିପରି ଭାବି ଦିନେ କର୍ଣ୍ଣଙ୍କୁ ସାକ୍ଷାତ କରିବାକୁ ଗଲେ । ସେତେବେଳକୁ କର୍ଣ୍ଣ ନଦୀରେ ସ୍ନାନ ସାରି ପୂଜା କରୁଥାନ୍ତି । କୁନ୍ତୀଙ୍କୁ ଆଗରେ ଦେଖି କର୍ଣ୍ଣ କହିଲେ, "ମହାରାଣୀ, ସାରଥୀ ଅଧିରଥ ପୁତ୍ରର ପ୍ରଣାମ ଗ୍ରହଣ କରନ୍ତୁ ।" କୁନ୍ତୀ ଥରଥର କଣ୍ଠରେ କହିଲେ, "ତୁ ଅଧିରଥର ପୁତ୍ର ନୋହୁଁ, ତୁ କୁନ୍ତୀ ପୁତ୍ର । ଯଦି ତୁ ଇଚ୍ଛା କରିବୁ, ତେବେ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ବନ୍ଦ ହୋଇଯିବ ।"

କର୍ଣ୍ଣ ଆଶ୍ଚର୍ଯ୍ୟ ହୋଇ କୁନ୍ତୀଙ୍କ ମୁହଁକୁ ଚାହିଁ ରହିଲେ । କୁନ୍ତୀ କହିଲେ, "ମହର୍ଷି ଦୁର୍ବାସା ମୋତେ ଏକ ସିଦ୍ଧମନ୍ତ୍ର ଦେଇ କହିଥିଲେ, ତୁ ଏ ମନ୍ତ୍ର ପାଠ କରି ଯେଉଁ ଦେବତାଙ୍କୁ ସ୍ମରଣ କରିବୁ ସେ ବର ସ୍ୱରୁପ ତୋତେ ପୁଅଟିଏ ଦେବେ । ମୁଁ ଦିନେ ମନ୍ତ୍ର ପଢ଼ି ସୂର୍ଯ୍ୟ ଦେବତାଙ୍କୁ ସ୍ମରଣ କରି ତୋତେ କୋଳରେ ଧରିବାର ସୌଭାଗ୍ୟ ଲାଭକରିଥିଲି । ଏ ବିଷୟ ତୁ ସୂର୍ଯ୍ୟଦେବତାଙ୍କୁ ପଚାରିପାରୁ ।"

କର୍ଣ୍ଣ ଚକ୍ଷୁ ମୁଦ୍ରିତ କରି ସୂର୍ଯ୍ୟଦେବତାଙ୍କୁ ସ୍ମରଣ କଲେ । ତାପରେ କୁନ୍ତୀଙ୍କୁ କହିଲେ, "ମା, ଆପଣଙ୍କ କଥା ସତ୍ୟ । ଏବେ ମୁଁ ମୋ ପ୍ରକୃତ ପରିଚୟ ପାଇଗଲି ।"

କୁନ୍ତୀ କହିଲେ, "ମୁଁ ଅନୁରୋଧ କରୁଛି, ଭାଇ ଭାଇ ଭିତରେ ଯୁଦ୍ଧ କରନାହିଁ । ତୁ ମୋର ବଡ଼ ପୁଅ । ତେଣୁ ତୋତେ ସିଂହାସନ ଦେବାରେ ଯୁଧିଷ୍ଠିରର କୌଣସି ଆପତ୍ତି ରହିବ ନାହିଁ ।"

କର୍ଣ୍ଣ କହିଲେ, "ମୁଁ ଆପଣଙ୍କ କଥା ରକ୍ଷା କରିବାକୁ ଅକ୍ଷମ । କ୍ଷତ୍ରିୟର ସନ୍ତାନ ହୋଇଥିଲେ ମଧ୍ୟ ଆପଣଙ୍କ ଯୋଗୁଁ ମୁଁ ସାରଥୀର ପୁତ୍ର ଭାବରେ ସଂସାରରେ ପରିଚିତ । ଏହାଠାରୁ ବଳି ଆଉ କି କ୍ଷତି ମୋର କରିଥାନ୍ତେ ? ନିଜର କଳଙ୍କକୁ ଘୋଡ଼ାଇବା ପାଇଁ ଆପଣ ମୋତେ ନଦୀ ସ୍ରୋତରେ ଭସାଇ ହତ୍ୟା କରିବାକୁ କୁଣ୍ଠିତ ହୋଇନଥିଲେ । ଆଜି ନିଜର ପ୍ରିୟ ପୁତ୍ରମାନଙ୍କ ବିପଦ ଆଶଙ୍କାରେ ଅସ୍ଥିର ହୋଇ ଆପଣ ମୋତେ ପୁଅ ବୋଲି କହିବା ଅସୁନ୍ଦର । ବର୍ତ୍ତମାନ ପାଣ୍ଡବମାନଙ୍କ ପାଖକୁ ଫେରିଗଲେ, ଲୋକେ ମୋତ ଭୀରୁ ବୋଲି କହି ଘୃଣା କରିବେ । କୌରବମାନଙ୍କର ନିକଟରେ ମୁଁ ବହୁ ଭାବରେ ଋଣୀ । ଆସନ୍ତା ଯୁଦ୍ଧରେ ସେମାନେ ମୋ ଉପରେ ଯଥେଷ୍ଟ ଭରସା ରଖିଛନ୍ତି । ମୁଁ ବିଶ୍ୱାସଘାତକତା କରିପାରିବି ନାହିଁ । ତେବେ ଏତିକି ମନେ ରଖନ୍ତୁ ଆପଣଙ୍କ ପୁଅମାନଙ୍କ ମଧ୍ୟରୁ କେବଳ ଅର୍ଜୁନ ସହିତ ମୁଁ ଯୁଦ୍ଧ କରିବି । ଆମ ଦୁହିଁଙ୍କ ମଧ୍ୟରୁ ଜଣେ କେହି ନିଶ୍ଚୟ ମରିବ । ପାଞ୍ଚପୁତ୍ରର ଜନନୀ ଭାବରେ ଆପଣଙ୍କ ପରିଚୟ ଠିକ୍ ରହିବ ।"

କୁନ୍ତୀ ପୁତ୍ରକୁ ଆଲିଙ୍ଗନ କରି କହିଲେ, "ବାବୁ, ଭାଗ୍ୟରେ ଯାହା ଲେଖାଥିବ; ତା'କୁ କେହି ବଦଳାଇ ପାରିବ ନାହିଁ । ଯେତେବେଳେ ଯାହା ଘଟିବାର କଥା ତା ନିଶ୍ଚୟ ଘଟିବ ।" ଆଉ ଅଧିକ ସମୟ ନରହି କୁନ୍ତୀ ଫେରିଆସିଲେ ।

## ଯୁଦ୍ଧ ଆୟୋଜନ

କୃଷ୍ଣ ନିରାଶ ହୋଇ ହସ୍ତିନାପୁରରୁ ପାଣ୍ଡବମାନଙ୍କ ପାଖକୁ ଫେରିଆସିଲେ । ତାଙ୍କଠାରୁ ସମସ୍ତ ବିଷୟ ଶୁଣି ପାଣ୍ଡବମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ । ସେମାନଙ୍କ ନିକଟରେ ସାତ ଅକ୍ଷୌହିଣୀ ସୈନ୍ୟ ଥିଲେ । ସୈନ୍ୟମାନଙ୍କୁ ସାତ ଭାଗରେ ବିଭକ୍ତ କରି ପ୍ରତିଭାଗ ପାଇଁ ଜଣେ ଲେଖାଏଁ ସେନାପତି ନିଯୁକ୍ତ କରାଗଲା, ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଧୃଷ୍ଟଦ୍ୟୁମ୍ନଙ୍କୁ ପ୍ରଧାନ ସେନାପତିର ଦାୟିତ୍ୱ ଦିଆଗଲା ।

ଗୋଟିଏ ଅକ୍ଷୌହିଣୀରେ ୧୦୯୩୫୦ ପଦାତିକ, ୬୫୬୧୦ ଘୋଡ଼ା ୨୧୯୮୦ ରଥ ଏବଂ ୨୧୮୭୦ ହାତୀ ରହିଥାନ୍ତି । ନିୟମ ଅନୁସାରେ ଦାନ ହୋମ ପାଳନ କରି ଯୁଦ୍ଧ ଅନୁକୂଳ କରାଗଲା ।

ଅନ୍ୟ ପକ୍ଷରେ, ଦୁର୍ଯ୍ୟୋଧନ ମଧ୍ୟ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ । ତାଙ୍କ ନିକଟରେ ଏଗାର ଅକ୍ଷୌହିଣୀ ସୈନ୍ୟ ଓ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, କୃପାଚାର୍ଯ୍ୟ, ଶଲ୍ୟ, ଅଶ୍ୱତ୍ଥମା, ଜୟଦ୍ରଥ, କୃତବର୍ମା, ଭୁରିଶ୍ରବା ଏବଂ ଭଗଦତ୍ତଙ୍କପରି ମହା ମହା ଯୋଦ୍ଧାମାନେ ଥିଲେ ।

ଦୁର୍ଯ୍ୟୋଧନଙ୍କ ମାମୁଁ ଶକୁନି ଓ ଭାଇ ଦୁଃଶାସନ ସହ ପରାମର୍ଶ କରି ମହାବୀର ପିତାମହ ଭୀଷ୍ମଙ୍କୁ ପ୍ରଧାନ ସେନାପତି ଦାୟିତ୍ୱ ଦେବାପାଇଁ ସ୍ଥିରକଲେ । ଏକଥା କର୍ଣ୍ଣଙ୍କୁ ମଧ୍ୟ ଜଣାଇ ଦିଆଗଲା ।

ରାତିରେ ଦୁର୍ଯ୍ୟୋଧନ ଭୀଷ୍ମଙ୍କ ନିକଟକୁ ଯାଇ କହିଲେ, "ପିତାମହ, ଆଜିଠାରୁ ଆପଣ କୌରବ ସେନାମାନଙ୍କର ପ୍ରଧାନ ସେନାପତି ଦାୟିତ୍ୱ ଗ୍ରହଣକରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।"

ଭୀଷ୍ମ କହିଲେ, "ଏଥିରେ ମୋର ଆପତ୍ତି ନାହିଁ । ମୋ ଶରରେ ପ୍ରତିଦିନ ପାଣ୍ଡବ ପକ୍ଷରୁ ଦଶ ହଜାର ଲେଖାଏଁ ସୈନ୍ୟ ମରିବେ; ମାତ୍ର ପାଣ୍ଡବମାନେ ମୋର କୌରବମାନଙ୍କପରି ପ୍ରିୟ । ତେଣୁ ଜଣେ ହେଲେ ପାଣ୍ଡବଙ୍କୁ ମୁଁ ହତ୍ୟା କରିବି ନାହିଁ । ଆହୁରି କହି ରଖୁଛି, ଶିଖଣ୍ଡୀ ମୋ ସହିତ ଯୁଦ୍ଧ କରିବାକୁ ଆସିଲେ ମୁଁ ଅସ୍ତ୍ରତ୍ୟାଗ କରିବି । ଆଉ ଗୋଟିଏ କଥା, କର୍ଣ୍ଣ ସବୁବେଳେ ନିଜ ବୀରତ୍ୱର ଗର୍ବ କରିଥାନ୍ତି । ମୁଁ ପ୍ରଧାନ ସେନାପତି ହେଲେ ସେ ଯୁଦ୍ଧରେ ଯୋଗଦେବେ କି ନାହିଁ ପଚାର ।"

କର୍ଣ୍ଣ ସେଠାରେ ଥିଲେ । ସେ କହିଲେ, "ଯେତେଦିନ ପର୍ଯ୍ୟନ୍ତ ପିତାମହ ପ୍ରଧାନ ସେନାପତି ରୂପେ ଯୁଦ୍ଧ ଚଳାଇବେ, ସେତେଦିନ ଯାଏ ମୁଁ ଯୁଦ୍ଧରେ ଯୋଗଦେବି ନାହିଁ । ଭୀଷ୍ମଙ୍କ ପରେ ମୁଁ ଅର୍ଜୁନ ସହିତ ଯୁଦ୍ଧ କରି ତାକୁ ହତ୍ୟା କରିବି ।"

ଏହି ସମୟରେ ବ୍ୟାସଦେବ ଧୃତରାଷ୍ଟ୍ରଙ୍କ ସହିତ ସାକ୍ଷାତ କରିବାକୁ ଆସିଥିଲେ । ଯୁଦ୍ଧର ଆୟୋଜନ ଦେଖି ସେ ବହୁ ଦୁଃଖ ପ୍ରକାଶ କଲେ । ଧୃତରାଷ୍ଟ୍ର କହିଲେ, "ଭଗବାନ୍, ମୁଁ ଅନ୍ଧ । ନିଜ ବଂଶ ଧ୍ୱଂଶ ଦେଖିବା ପାଇଁ ବଞ୍ଚିଛି । ବୀରମାନଙ୍କ ବୀରତ୍ୱ କାହାଣୀ ଶୁଣିବାପାଇଁ ବହୁତ ଇଚ୍ଛା ହେଉଛି । ଆପଣ ଏପରି ଏକ ବରଦାନ କରନ୍ତୁ, ଯେପରି ମୁଁ ଏଠାରେବସି କୁରୁକ୍ଷେତ୍ର ଯୁଦ୍ଧର ସମସ୍ତ ଘଟଣା ଶୁଣି ପାରିବି ।" ବ୍ୟାସ କହିଲେ, "ମୁଁ ଯୋଗ ବଳରେ ସଞ୍ଜୟଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କରୁଛି । ସେ ହସ୍ତିନାରେ ରହି ମଧ୍ୟ କୁରୁକ୍ଷେତ୍ରର ଯୁଦ୍ଧ ସ୍ପଷ୍ଟ ଦେଖିପାରିବେ ଓ ତୁମ ଆଗରେ ତାହା ବର୍ଣ୍ଣନା କରିବେ ।"

# ଭୀଷ୍ମ ପର୍ବ

## ସେକାଳର ଯୁଦ୍ଧ ନୀତି

ପରଦିନ ସକାଳୁ ଦେଖାଗଲା, କୌରବପକ୍ଷର ଏଗାର ଅକ୍ଷୌହିଣୀ ଓ ପାଣ୍ଡବପକ୍ଷର ସାତ ଅକ୍ଷୌହିଣୀ ସୈନ୍ୟ ଠୁଳ ହୋଇଗଲେ । କୁରୁକ୍ଷେତ୍ରର ପୂର୍ବପଟେ କୌରବ ସେନା ଓ ପଶ୍ଚିମ ପଟରେ ପାଣ୍ଡବ ସେନା ନିଜ ନିଜ ସେନାପତିମାନଙ୍କ ଆଦେଶ ପାଳନ ପାଇଁ ପ୍ରସ୍ତୁତ ହୋଇ ରହିଗଲେ ।

ବର୍ତ୍ତମାନ ଯେଉଁ ଯୁଦ୍ଧ ହେଉଛି ସେଥିରେ ନିୟମ କିଛି ନାହିଁ କହିଲେ ଚଳେ । ମାତ୍ର ରାମାୟଣ ବା ମହାଭାରତ ଯୁଗରେ ଯୁଦ୍ଧର ଧରାବନ୍ଧା ନିୟମମାନ ଥିଲା ଓ ସମସ୍ତେ ସେହି ନିୟମ ମାନି ଯୁଦ୍ଧ କରୁଥିଲେ ।

ପ୍ରତିଦିନ ସୂର୍ଯ୍ୟ ଅସ୍ତହେବା ପରେ ଯୁଦ୍ଧ ବନ୍ଦ କରାଯାଉଥିଲା । ଉଭୟପକ୍ଷର ଲୋକେ ରାତିରେ ବନ୍ଧୁ ଭାବରେ ମିଳାମିଶା କରିପାରୁଥିଲେ । ସମାନ ସମାନ ଯୋଦ୍ଧା ମଧ୍ୟରେ ଯୁଦ୍ଧ ହେଉଥିଲା । ଜଣେ ରଥୀ ସହିତ ରଥୀର, ଜଣେ ଅଶ୍ୱାରୋହୀ ସହିତ ଅନ୍ୟ ଅଶ୍ୱାରୋହୀର ଏବଂ ପାଇକ ସହିତ ପାଇକର ହିଁ ଯୁଦ୍ଧ ହେଉଥିଲା । ଯୁଦ୍ଧରୁ ପଳାଇ ଯାଉଥିବା, ଯୁଦ୍ଧରେ ଭୟ ପାଇ ଶରଣ ପଶିଥିବା, ପାଖରେ ଅସ୍ତ୍ର ନଥିବା, କିମ୍ବା ଯୁଦ୍ଧ କରିବାକୁ ଇଚ୍ଛା କରୁନଥିବା ଲୋକଙ୍କୁ ଆକ୍ରମଣ କରିବା, ଯୁଦ୍ଧ ନିୟମରେ ମନା କରାଯାଇଥିଲା । ଯୁଦ୍ଧକୁ ଯାଇଥିବା ହାତୀ, ଘୋଡ଼ା, ସାରଥୀ, ଯେଉଁମାନେ ଅସ୍ତ୍ରଶସ୍ତ୍ରର ବୋଝ ବୋହି ନେଉଥାନ୍ତି ଓ ଯେଉଁମାନେ ଯୁଦ୍ଧବାଦ୍ୟ ବଜାଉଥାନ୍ତି, ସେମାନଙ୍କୁ ଆକ୍ରମଣ କରିବାକୁ ଯୁଦ୍ଧ ନିୟମରେ ବାରଣ କରାଯାଇଥିଲା । କୌରବ ଓ ପାଣ୍ଡବମାନେ ଏହି ନିୟମ ସବୁ ପାଳନ କରି ଯୁଦ୍ଧ କରୁଥିଲେ ମଧ୍ୟ ମଝିରେ କେବେ ସେଗୁଡ଼ିକର ବ୍ୟତିକ୍ରମ କରି ନିନ୍ଦିତ ହୋଇଥିଲେ ।

## ଯୁଦ୍ଧ ଭୂମିରେ ଅର୍ଜୁନଙ୍କ ଦୁଃଖ

ଯୁଦ୍ଧ ଭୂମିରେ କୌରବ ସୈନ୍ୟମାନଙ୍କ ଆଗରେ ପ୍ରଧାନ ସେନାପତି ଭୀଷ୍ମ ଓ ପାଣ୍ଡବ ସେନାଙ୍କ ଆଗରେ ମହା ଧନୁର୍ଦ୍ଧର ବୀର ଅର୍ଜୁନ । ସ୍ୱୟଂ ଶ୍ରୀକୃଷ୍ଣ ଅର୍ଜୁନଙ୍କ ନନ୍ଦିଘୋଷ ରଥର ସାରଥୀ ହୋଇ ରଥ ଚଳାଉଥିଲେ ।

ପାଣ୍ଡବ ସୈନ୍ୟମାନଙ୍କ ଆଗରେ ନନ୍ଦିଘୋଷ ରଥ ଉପରେ ରହି ମହାପରାକ୍ରମୀ ଅର୍ଜୁନ ଦେଖିଲେ, କୌରବମାନଙ୍କର ପ୍ରଧାନ ସେନାପତି ପିତାମହ ଭୀଷ୍ମ ସମସ୍ତଙ୍କ ଆଗରେ ଅଛନ୍ତି । ତାଙ୍କ ପାଖରେ ଏକ ବିଶାଳ ରଥରେ ବସିଛନ୍ତି ଦୁଃଶାସନ । ଆଉ କିଛି ଦୂର ଆଗରେ ବହୁମୂଲ୍ୟ ମଣିମୁକ୍ତା ଖଞ୍ଜାଯାଇଥିବା ଅତି ସୁନ୍ଦର ରଥରେ କୌରବରାଜ ଦୁର୍ଯ୍ୟୋଧନ ବସିଥିବାର ଦେଖିଲେ । ତାଙ୍କ ପାଖକୁ ଲାଗି ଆଚାର୍ଯ୍ୟ ଦ୍ରୋଣ ଓ ଅଶ୍ୱତ୍ଥମା । ଅର୍ଜୁନ ଯୁଦ୍ଧ ଭୂଇଁରେ ଏ ଆତ୍ମୀୟ ସ୍ୱଜନ ଓ ଗୁରୁଜନଙ୍କୁ ଦେଖି ଭାବିଲେ, "ମୋ ଆଗରେ ମୋର ପିତାମହ, ଗୁରୁ, ଭାଇବନ୍ଧୁ ଓ ଅତି ଆପଣାର ଲୋକମାନେ ଠିଆ ହୋଇଛନ୍ତି । ମୋତେ ଏମାନଙ୍କ ସହ ଯୁଦ୍ଧ କରିବାକୁ ହେବ । ଯେଉଁ ରାଜ୍ୟପାଇଁ ମୁଁ ଯୁଦ୍ଧ କରିବି, ସେ ରାଜ୍ୟ ଲାଭ ପାଇଁ ମୁଁ ମୋ ଭାଇ ବନ୍ଧୁ, କୁଟୁମ୍ବ ଓ ଗୁରୁଜନମାନଙ୍କୁ ହତ୍ୟା କରିବି । ସ୍ତ୍ରୀଲୋକମାନେ ବିଧବା ହେବେ । ପିଲାମାନେ ଅନାଥ ହୋଇଯିବେ । ଆତ୍ମୀୟମାନଙ୍କୁ ହତ୍ୟାକରି ମୁଁ ଯେଉଁ ରାଜ୍ୟଲାଭ କରିବି, ତାହା ମୋର କି କାର୍ଯ୍ୟରେ ଆସିବ ? କି ପ୍ରକାର ସୁଖଶାନ୍ତି ମୋତେ ମିଳିବ ?" ଏହି ସବୁ କଥା ଭାବି ଭାବି ଅର୍ଜୁନଙ୍କ ଦେହ ଥରି ଉଠିଲା । ମୁହଁରୁ ଦେହରୁ ଗମ୍ ଗମ୍ ଝାଳ ବହିବାରେ ଲାଗିଲା । ତଣ୍ଟି ଶୁଖିଗଲା । ଦେହ ପୋଡ଼ିଗଲା ପରି ଲାଗିଲା । ଶେଷରେ ଏପରି ଅନୁଭବ କଲେ, ସତେ ଯେପରି ସେ ଗାଣ୍ଡୀବ ଧନୁକୁ ଆଉ ଧରିପାରିବେ ନାହିଁ । ତାହା ତାଙ୍କ ହାତରୁ ଖସି ତଳେ ପଡ଼ିଯିବ ।

## ଅର୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କ ଉପଦେଶ (ଗୀତା)

ଯୁଦ୍ଧକ୍ଷେତ୍ରରେ ଅର୍ଜୁନଙ୍କର ଏ ଅବସ୍ଥା ଦେଖି ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଏ ସମୟରେ ତୁମେ ଏପରି ଦୁର୍ବଳ, ଦୁଃଖିତ ଓ ଭୟଭୀତ ହୋଇପଡୁଛ କାହିଁକି ?" ଅର୍ଜୁନ କହିଲେ, "ଯେଉଁ ଯୁଦ୍ଧରେ ନିଜର ଭାଇବନ୍ଧୁ ଗୁରୁଜନ ଓ ଆତ୍ମୀୟ ସ୍ୱଜନଙ୍କୁ ହତ୍ୟା କରିବାକୁ ପଡ଼େ, ତାହା ଘୋର ଅଧର୍ମ ଅଟେ । ଏଇ କଥା ଭାବି ମୁଁ ଦୁଃଖିତ ଓ ଦୁର୍ବଳ ହୋଇ ପଡୁଛି ।" ଅର୍ଜୁନଙ୍କ ଏହି ମୋହ ଓ ଭ୍ରମ ଦୂର କରିବା ପାଇଁ ଶ୍ରୀକୃଷ୍ଣ କହିଲେ, "ଦେଖ, ଯୁଦ୍ଧ ପିଲାଖେଳ ନୁହେଁ । ଯୁଦ୍ଧ କରିବାପାଇଁ ତୁମ୍ଭେମାନେ ପ୍ରଥମେ ସ୍ଥିର କରିଛ ଓ କେତେକଙ୍କ ଉପରେ ପ୍ରତିଶୋଧ ନେବାର ପ୍ରତିଜ୍ଞା ମଧ କରିସାରିଛ । ଦୁଇ ପକ୍ଷର ସୈନ୍ୟ ମୁହାଁମୁହିଁ ହୋଇ ଠିଆ ହୋଇଗଲେଣି । ସେନାପତିଙ୍କ ଆଦେଶ ପାଇବା ମାତ୍ରେ ଘୋର ଯୁଦ୍ଧ ଆରମ୍ଭ ହୋଇଯିବ । ଏ ସମୟରେ ଯୁଦ୍ଧ କରିବନାହିଁ ବୋଲି କହିଲେ, ଲୋକେ ତୁମକୁ ଭୀରୁ ଓ କାପୁରୁଷ କହି ଥଟ୍ଟାକରିବେ । ଆଉ ଟିକିଏ ଚିନ୍ତା କରି ଦେଖ, ଯେଉଁମାନଙ୍କୁ ତୁମେ ଗୁରୁ, ଭାଇ ଓ ବନ୍ଧୁ ବୋଲି ବିଚାରି ଏତେ ଦୁର୍ବଳ ହୋଇପଡୁଛ, ସେମାନେ ତୁମକୁ ଶତ୍ରୁ ବୋଲି ଭାବି ଧନୁରେ ଶର ଯୋଖି ହତ୍ୟା କରିବା ପାଇଁ ପ୍ରସ୍ତୁତ ହୋଇ ରହିଛନ୍ତି । ଯୁଦ୍ଧ ଭୂମିରେ ଠିଆ ହୋଇ ଏପରି କହିଲେ, ଲୋକେ ତୁମକୁ ପାଗଳ ବୋଲି କହିବେ । ଏ ଯୁଦ୍ଧ ଧର୍ମ ଓ ନ୍ୟାୟର ଯୁଦ୍ଧ । ସର୍ବଦା ଅଧର୍ମର ପରାଜୟ ହୋଇ ଧର୍ମର ଜୟ ହୋଇଥାଏ । ଯୁଦ୍ଧ ତୁମେ ବା କୌରବମାନେ କରୁନାହଁ । ଅନ୍ୟାୟକୁ ଦୂର କରି ଧର୍ମ ରକ୍ଷା ପାଇଁ ଏ ଯୁଦ୍ଧ ଭଗବାନଙ୍କ ଇଚ୍ଛାରେ ହିଁ ହେଉଛି । ତୁମେ ଫେରିଗଲେ ଯୁଦ୍ଧ ବନ୍ଦ ହୋଇଯିବ ନାହିଁ । ଭୀମଙ୍କ ପ୍ରତିଜ୍ଞା ଅବଶ୍ୟ ପୂରଣ ହେବ । ଦ୍ରୌପଦୀଙ୍କ ଅପମାନ ପାଇଁ କୌରବଙ୍କୁ ଦଣ୍ଡ ଭୋଗିବାକୁ ପଡ଼ିବ । ଯାହା ଘଟିବାର କଥା ସେସବୁ ବହୁତ ଆଗରୁ ଘଟିଗଲାଣି । ତୁମେ କେବଳ ନିଜର କ୍ଷତ୍ରିୟଧର୍ମ ପାଳନ କରି ଯୁଦ୍ଧ କର । ଆତ୍ମୀୟ ସ୍ୱଜନ, ଭାଇ, ବନ୍ଧୁ କୁଟୁମ୍ବଙ୍କ ପ୍ରତି ମୋହ ଯୋଗୁ ତୁମେ ନିଜ ଧର୍ମ ପାଳନ ନକରିବା ଉଚିତ ନୁହେଁ । ଅଧର୍ମ ଆଚରଣ ଯୋଗୁଁ

କୌରବମାନଙ୍କ ମୃତ୍ୟୁ ବହୁ ପୂର୍ବରୁ ହୋଇସାରିଛି । ତୁମର ଯଦି ମୋ କଥାରେ ବିଶ୍ୱାସ ହେଉନାହିଁ ତେବେ ଦେଖ ।”

ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିଜର ବିରାଟ ବିଶ୍ୱରୂପ ଦେଖାଇଲେ । ଏ ଅଦ୍ଭୁତ ରୂପ ଦେଖିବା ମାତ୍ରେ ଅର୍ଜୁନ ଭୟରେ ଥରି ଉଠିଲେ । ସେ ଦେଖିଲେ, ଶ୍ରୀକୃଷ୍ଣଙ୍କ ପାଟି ଭିତରେ ପ୍ରବଳ ଅଗ୍ନିଶିଖା ଧୂ ଧୂ ହୋଇ ଜଳୁଛି । ପ୍ରତି ମୂହୁର୍ତ୍ତରେ କୋଟି କୋଟି ପ୍ରାଣୀ ତା ଭିତରେ ପଶି ଭସ୍ମ ହୋଇ ଯାଉଛନ୍ତି । ଆହୁରି ଦେଖିଲେ କୌରବ ଓ ସେମାନଙ୍କର ସୈନ୍ୟମାନେ ଶ୍ରୀକୃଷ୍ଣଙ୍କ ପେଟ ଭିତରେ ପଶି ଅଦୃଶ୍ୟ ହୋଇ ଯାଉଛନ୍ତି । ଅର୍ଜୁନଙ୍କ ଚେତାଫେରିଲା । ସେ ଭଗବାନ କୃଷ୍ଣଙ୍କୁ ପୂର୍ବ ରୂପକୁ ଫେରିଆସିବାକୁ କହିଲେ ।

ଶ୍ରୀକୃଷ୍ଣ ପୂର୍ବ ରୂପକୁ ଫେରିଆସି କହିଲେ, “ଗୋଟିଏ ଲୁଗା ପୁରୁଣା ହୋଇଗଲେ ତାକୁ ଫିଙ୍ଗିଦେଇ ନୂଆଟିଏ ପିନ୍ଧିଲା ପରି ଆତ୍ମା ପୁରୁଣା ହୋଇଥିବା ଶରୀରରୁ ଯାଇ ନୂତନ ଶରୀରରେ ବାସ କରେ । ତେଣୁ ଆତ୍ମା ଅମର ଓ ତା ପାଇଁ ଶୋକ କରିବା ଅନୁଚିତ୍ । ଫଳ ପାଇବାର ଆଶା ନରଖି ମନୁଷ୍ୟ କର୍ତ୍ତବ୍ୟ କରିଯିବା ଉଚିତ ।” ଅର୍ଜୁନଙ୍କ ମୋହ ତୁଟିଗଲା । ଏଥର ସେ ଗାଣ୍ଡୀବ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ।

ଯୁଦ୍ଧ ଭୂମିରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦେଇଥିବା ଉପଦେଶଗୁଡ଼ିକ ପରେ ଭଗବତ୍ ଗୀତା ନାମରେ ବିଖ୍ୟାତ ହେଲା । ଏପରି ଅମୂଲ୍ୟ ଗ୍ରନ୍ଥ ପୃଥିବୀର ଅନ୍ୟ କୌଣସି ଭାଷାରେ ନାହିଁ ।

## ଯୁଧିଷ୍ଠିରଙ୍କ ମହତ ପଣିଆ

ଅର୍ଜୁନଙ୍କ ମୋହ ଭାଙ୍ଗିଗଲା । ସେ ଯୁଦ୍ଧପାଇଁ ପ୍ରସ୍ତୁତ ହେଉଥିବା ସମୟରେ ଦେଖିଲେ ଯୁଧିଷ୍ଠିର ନିଜର ଅସ୍ତ୍ର ଓ କବଚ ରଥରେ ଓହ୍ଲାଇଦେଇ ତଳକୁ ଓହ୍ଲାଇ ଆସିଲେ । ଏକାକୀ କୌରବ ସେନାମାନଙ୍କ ଆଡ଼କୁ ଚାଲିବାରେ ଲାଗିଲେ । ଯୁଧିଷ୍ଠିରଙ୍କ ଏ ପ୍ରକାର କାର୍ଯ୍ୟ ଦେଖି ଅନ୍ୟ ଭାଇମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନଙ୍କ ମନରେ ନାନା ପ୍ରକାର ସନ୍ଦେହ ଜାତହେଲା । ସମସ୍ତେ ତାଙ୍କ ପଛେ ପଛେ ଦଉଡ଼ି କହିଲେ, “ମହାରାଜ, ଆଗରେ ଶତ୍ରୁମାନେ ଶସ୍ତ୍ର ଧରି ଠିଆ ହୋଇଛନ୍ତି । ଆପଣଙ୍କ ହାତରେ ଶସ୍ତ୍ର ନାହିଁ କି ଦେହରେ କବଚ ମଧ୍ୟ ନାହିଁ; ସେଥିରେ ଆପଣ ଏକୁଟିଆ ଶତ୍ରୁମାନଙ୍କ ନିକଟକୁ କାହିଁକି ଆଗେଇ ଯାଉଛନ୍ତି ?” ମାତ୍ର ଯୁଧିଷ୍ଠିର ପଦେ ହେଲେ ଉତ୍ତର ନଦେଇ ଆଗେଇ ଚାଲିଲେ । ପାଣ୍ଡବମାନେ ବ୍ୟସ୍ତହେବା ଦେଖି ଶ୍ରୀକୃଷ୍ଣ କହିଲେ, “ଧୈର୍ଯ୍ୟ ଧର । ମହାରାଜ ଯୁଧିଷ୍ଠିର ଯୁଦ୍ଧ ସମୟରେ ଗୁରୁଜନମାନଙ୍କୁ ପ୍ରଣାମ ଜଣାଇ ଆଶୀର୍ବାଦ ଗ୍ରହଣ କରିବାପାଇଁ ଯାଉଛନ୍ତି । ଏପରି ସଙ୍କଟ ସମୟରେ ମଧ୍ୟ ସେ ନିଜର ଧର୍ମ ପାଳନ କରିବାକୁ ଭୁଲିନାହାନ୍ତି । ସେ ପ୍ରଥମେ ଭୀଷ୍ମ ଓ ପରେ ଆଚାର୍ଯ୍ୟ ଦ୍ରୋଣଙ୍କଠାରୁ ଆଶୀର୍ବାଦ ପ୍ରାର୍ଥନା କରିବେ । ଗୁରୁଜନମାନଙ୍କ ପାଖକୁ ଯୁଦ୍ଧ ବେଶରେ ଯିବା ଉଚିତନୁହେଁ ଭାବି ସେ ଅସ୍ତ୍ର ଓ କବଚ ତ୍ୟାଗକରି ଚାଲି ଚାଲି ଯାଉଛନ୍ତି ।”

ଯୁଧିଷ୍ଠିର ପିତାମହ ଭୀଷ୍ମଙ୍କ ନିକଟକୁ ଆସୁଥିବାର ଦେଖି କୌରବମାନେ ନାନା କଥା କହିବାକୁ ଆରମ୍ଭ କରିଦେଲେ । କିଏ କହିଲା, “କୌରବମାନଙ୍କ ଏ ବିରାଟ ସୈନ୍ୟସଜ୍ଜା ଦେଖି ପାଣ୍ଡବମାନେ ଭୟ ପାଇଗଲେଣି ।” ଆଉ କିଏ କହିଲା, “ଯୁଦ୍ଧକୁ ଡରି ଯୁଧିଷ୍ଠିର ସନ୍ଧି କରିବାପାଇଁ ପିତାମହଙ୍କ ନିକଟକୁ ଯାଉଛନ୍ତି । ସତରେ ଯୁଧିଷ୍ଠିର ଅତି ଭୟାଳୁ ଓ କ୍ଷତ୍ରିୟ ଜାତିର ଏକ କଳଙ୍କ । ଜୀବନକୁ ଭୟକରି ଯୁଦ୍ଧରୁ ଓହରିଯିବା ମୃତ୍ୟୁ ସଙ୍ଗେ ସମାନ ।” ଏହିପରି ଯାହା ତୁଣ୍ଡକୁ ଯାହା ଆସିଲା କହି ଚାଲିଥାନ୍ତି ।

ପ୍ରକୃତରେ ଶ୍ରୀକୃଷ୍ଣଙ୍କ କଥା ହିଁ ସତହେଲା । ଯୁଧିଷ୍ଠିର ପ୍ରଥମେ ପିତାମହ ଭୀଷ୍ମଙ୍କ ନିକଟକୁ ଯାଇ ତାଙ୍କ ଚରଣ ସ୍ପର୍ଶ କଲେ । ନାତି ଯୁଧିଷ୍ଠିରଙ୍କର ଏପରି ଭଦ୍ରତା ଓ ଭକ୍ତି ଦେଖି ପିତାମହଙ୍କ ହୃଦୟ ପୁଲକିତ ହୋଇଉଠିଲା । ସେ ଆଶୀର୍ବାଦ ଦେଇ କହିଲେ, “ବତ୍ସ, ତୁମେ ଜୟଲାଭ କରିବ । ମୁଁ ମାତା ସତ୍ୟବତୀଙ୍କ ନିକଟରେ ପ୍ରତିଜ୍ଞା କରିଛି ଯେ ସର୍ବଦା ରାଜ୍ୟ ଓ ରାଜାଙ୍କ ପକ୍ଷରେ ହିଁ

ରହିବି । ସେହି କାରଣରୁ ମୋତେ କୌରବଙ୍କ ପକ୍ଷରେ ରହି ଯୁଦ୍ଧ କରିବାକୁ ହେବ । ମନେରଖ ଧର୍ମର ଶକ୍ତି ଅପାର । ଏ ଧର୍ମ ଯୁଦ୍ଧରେ ତୁମର ବିଜୟ ସୁନିଶ୍ଚିତ । ମୃତ୍ୟୁ ମୋର ଇଚ୍ଛାଧୀନ ଅଟେ । ତେଣୁ ସମୟ ହେଲେ ମୁଁ ମରିବି । ମରିବା ପୂର୍ବରୁ ତୁମେ ମୋ ପାଖକୁ ଆସିବ । ମୁଁ ତୁମକୁ ବହୁ ଉପଦେଶ ଦେବି । ଶ୍ରୀକୃଷ୍ଣ ତୁମକୁ ସାହାଯ୍ୟ କରୁଛନ୍ତି, ତେଣୁ ବିଜୟରେ ସନ୍ଦେହ କରିବନାହିଁ ।"

ଭୀଷ୍ମଙ୍କ ପରେ ଯୁଧିଷ୍ଠିର ଆଚାର୍ଯ୍ୟ ଦ୍ରୋଣଙ୍କ ପାଦବନ୍ଦନା କରି ଆଶୀର୍ବାଦ ଭିକ୍ଷା କଲେ । ପରେ ପରେ କୃପାଚାର୍ଯ୍ୟ ଓ ମାମୁଁ ଶଲ୍ୟଙ୍କଠାରୁ ଆଶୀର୍ବାଦ ଲାଭ କରି ନିଜ ସୈନ୍ୟମାନଙ୍କ ନିକଟକୁ ଫେରିଆସିଲେ ।

ଯୁଧିଷ୍ଠିରଙ୍କର ଏ ପ୍ରକାର ଧର୍ମନୀତି ଦେଖି ଧୃତରାଷ୍ଟ୍ରଙ୍କ ପୁତ୍ର ଯୁଯୁତ୍ସୁଙ୍କ ମନ ଏପରି ବଦଳିଗଲା ଯେ, ସେ କୌରବ ପକ୍ଷ ତ୍ୟାଗକରି ପାଣ୍ଡବମାନଙ୍କ ପାଖକୁ ଚାଲି ଆସିବାରୁ ଯୁଧିଷ୍ଠିର ତାଙ୍କୁ ଆନନ୍ଦରେ କୁଣ୍ଢାଇ ପକାଇଲେ । ସଙ୍ଗେ ସଙ୍ଗେ ବିଭିନ୍ନ ଯୁଦ୍ଧବାଦ୍ୟ ଓ ଶଙ୍ଖନାଦରେ କୁରୁକ୍ଷେତ୍ର କମ୍ପି ଉଠିଲା । ପ୍ରଥମ ଦିନର ଯୁଦ୍ଧ ଆରମ୍ଭ ହୋଇଗଲା ।

## ପ୍ରଥମ ଦିନର ଯୁଦ୍ଧ

ପ୍ରଥମେ ମହାବୀର ଅର୍ଜୁନ ତାଙ୍କର ଦେବଦତ୍ତ ଶଙ୍ଖ ଫୁଙ୍କି ଯୁଦ୍ଧ ଘୋଷଣା କରିବାରୁ କୌରବମାନଙ୍କ ଉପରେ ଆକ୍ରମଣ ଆରମ୍ଭ ହେଲା । ଭୀମ ବିଜୁଳି ବେଗରେ ଦୁଃଶାସନ ଉପରେ ଆକ୍ରମଣ କରିବାରେ ଲାଗିଲେ । ମହାପରାକ୍ରମୀ ଭୀଷ୍ମ ଗୋଟିଏ ଦିଗରେ ଅର୍ଜୁନଙ୍କ ସହିତ ଯୁଦ୍ଧ କରୁଥିବା ବେଳେ ଅନ୍ୟ ପକ୍ଷରେ ଦୁଃଶାସନ ଉପରେ ଭୀମର ପ୍ରଚଣ୍ଡ ଆକ୍ରମଣକୁ ମଧ୍ୟ ବାଧା ଦେଉଥାନ୍ତି । ଚାହୁଁ ଚାହୁଁ ଉଭୟ ପକ୍ଷର ସୈନ୍ୟମାନେ ଭୟଙ୍କର ଯୁଦ୍ଧ ଆରମ୍ଭ କରିଦେଲେ । ଶରମାଳରେ ଆକାଶ ଅନ୍ଧାର ଦେଖାଗଲା । ହାତୀ ସହିତ ହାତୀ, ରଥ ସହିତ ରଥ, ଘୋଡ଼ା ସହିତ ଘୋଡ଼ା ଓ ପଦାତିକ ସହିତ ପଦାତିକମାନଙ୍କର ପ୍ରବଳ ଯୁଦ୍ଧ ଲାଗିଗଲା । ବୀରମାନଙ୍କ ଗର୍ଜନ, ଶହ ଶହ ଶଙ୍ଖର ଶବ୍ଦ, ଧନୁର ଟଙ୍କାର, ହାତୀମାନଙ୍କର ଚିତ୍କାର, ଘୋଡ଼ାମାନଙ୍କର ହ୍ରେଷାରବ ସହିତ ରଥଗୁଡ଼ିକର ଘର୍ଘର ନାଦ ମିଶି ପୃଥିବୀ ଫାଟିଗଲା ପରି ମନେହେଲା । ଭୀଷ୍ମଙ୍କ ଅଦ୍‌ଭୁତ ରଣକୌଶଳ ଦେଖି ପାଣ୍ଡବସେନାମାନେ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଲେ । ଭୀଷ୍ମଙ୍କ ରଥ ଯେଉଁ ଦିଗକୁ ଯାଉଥାଏ, ସେ ଦିଗରେ ଶହ ଶହ ପାଣ୍ଡବ ସୈନ୍ୟ ଭୂଇଁରେ ଲୋଟି ଯାଉଥାନ୍ତି । ଚାରିଆଡ଼େ ହାହାକାର ପଡ଼ି ଯାଉଥାଏ । ଭୀଷ୍ମଙ୍କର ଏ ଅଦ୍‌ଭୁତ ଯୁଦ୍ଧ ଦେଖି ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ ଆଗେଇ ଆସିଲେ । ଚାହୁଁ ଚାହୁଁ ଆଖି ପିଛୁଳାକେ ସେ ଭୀଷ୍ମଙ୍କ ଧନୁକୁ କାଟି ତଳେ ପକାଇଦେଲେ । ପରେ ପରେ ଅନ୍ୟ ଏକ ଶର ମାରି ବହୁ ମୂଲ୍ୟ ରତ୍ନ ଖଞ୍ଜା ଯାଇଥିବା ବିଶାଳ ରଥ ଦଣ୍ଡ କାଟି ଦେଲେ । ଦଣ୍ଡ କଟି ଯିବାରୁ ରଥର ପତାକା ତଳେ ପଡ଼ିଗଲା । ଫଳରେ ଭୀଷ୍ମଙ୍କ ରଥକୁ ଆଉ ଚିହ୍ନିବାର ଉପାୟ ରହିଲା ନାହିଁ । କୌରବମାନେ ଅସ୍ତବ୍ୟସ୍ତ ହୋଇପଡ଼ିଲେ । କୌରବ ପକ୍ଷର ବହୁ ରଥୀ ଭୀଷ୍ମଙ୍କୁ ଖୋଜିବାକୁ ଆସି ଅଭିମନ୍ୟୁ ସହିତ ପ୍ରବଳ ଯୁଦ୍ଧ ଆରମ୍ଭ କରିଦେଲେ । ବାଳକ ଅଭିମନ୍ୟୁର ଅଦ୍ଭୁତ ଶସ୍ତ୍ରଚାଳନା ଦେଖି ଭୀଷ୍ମ ଭାବିଲେ, ଏପରି ଶସ୍ତ୍ର ଚାଳନା ଅର୍ଜୁନଠାରେ ମଧ୍ୟ ଦେଖାଯାଇନଥିଲା । ସେ ଅଭିମନ୍ୟୁକୁ ଧନ୍ୟ ଧନ୍ୟ କହିବାରେ ଲାଗିଲେ । ତାଙ୍କ ମନ ଆନନ୍ଦରେ ପୂରିଉଠିଲା । ଏପରି ଜଣେ ଅସାଧାରଣ ବୀର ସହିତ ଯୁଦ୍ଧ କରିବାକୁ ହେବ ଭାବି ସେ ଅତ୍ୟନ୍ତ ଦୁଃଖିତ ହେଲେ । ତଥାପି ସେ ତାଙ୍କର ସମସ୍ତ ଶକ୍ତି ଲଗାଇ ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିବାରେ ଲାଗିଲେ । ଏହି ସମୟରେ ଅଭିମନ୍ୟୁକୁ ସାହାଯ୍ୟ କରିବା ପାଇଁ ବିରାଟ, ଉତ୍ତର, ଧୃଷ୍ଟଦ୍ୟୁମ୍ନ ଓ ଭୀମସେନ ଆସି ପହଞ୍ଚିଗଲେ । ଉତ୍ତର ଶଲ୍ୟଙ୍କୁ ଆକ୍ରମଣ କରିବାକୁ ଯାଇ ତାଙ୍କ ରଥର ଘୋଡ଼ାମାନଙ୍କୁ ମାରିଦେଲେ । ଶଲ୍ୟ ଅତ୍ୟନ୍ତ ରାଗିଯାଇ ଉତ୍ତରଙ୍କ ଉପରକୁ ଏକ ମାରଣାସ୍ତ୍ର ଫିଙ୍ଗିଦେଲେ । ସେହି ଅସ୍ତ୍ର ଉତ୍ତରଙ୍କ ଛାତିରେ ଗଳିଗଲା ଓ ସେ ଟଳିପଡ଼ିଲେ । ଉତ୍ତରଙ୍କ ମୃତ୍ୟୁପରେ ମଧ୍ୟ ତାଙ୍କ ହାତୀ ଯୁଦ୍ଧ ଭୂଇଁ ଛାଡ଼ି ନଯାଇ ଅଗଣିତ ସୈନ୍ୟଙ୍କୁ ଦଳି ଚକଟି ହତ୍ୟା କରିବାରେ ଲାଗିଲା । ଶଲ୍ୟ ତୀକ୍ଷ୍ଣ ଶର ମାରି ହାତୀର ଶୁଣ୍ଢକୁ କାଟି ପକାଇଲେ । ରଥ ନଥିବାରୁ ଶଲ୍ୟ କୃତବର୍ମାଙ୍କ ରଥ ଉପରକୁ ଉଠିଗଲେ ।

ଉତ୍ତରଙ୍କ ମୃତ୍ୟୁପରେ ବିରାଟଙ୍କ ଅନ୍ୟପୁତ୍ର ଶ୍ୱେତ ଭୟଙ୍କର ରାଗିଯାଇ ଶଲ୍ୟଙ୍କୁ ଆକ୍ରମଣ କଲେ । ଶ୍ୱେତ ଆସୁଥିବାର ଦେଖି କୌରବ ପକ୍ଷର ସାତଜଣ ରଥୀ ତାଙ୍କୁ ଚାରିଆଡୁ ଆକ୍ରମଣ କରିବାରେ ଲାଗିଲେ । ବୀର ଶ୍ୱେତ ଏକାକୀ ଶରମାରି କୌରବ ରଥୀମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ବହୁ ସୈନ୍ୟ, ରଥ ଓ ବହୁ ଯୁଦ୍ଧ ହସ୍ତୀଙ୍କୁ ତଳେ ଶୁଆଇ ଦେଇ ସେ ଭୀଷ୍ମଙ୍କ ଆଗକୁ ଆସିଗଲେ । ଭୀଷ୍ମ ତତ୍‌କ୍ଷଣାତ୍ ଶ୍ୱେତଙ୍କ ସାରଥୀ ଓ ଅଶ୍ୱମାନଙ୍କୁ ମାରିଦେଲେ । ଶ୍ୱେତ ଅତ୍ୟନ୍ତ ରାଗିଯାଇ ଗଦା ପ୍ରହାର କରିବାକୁ ଆଗେଇ ଆସୁଥିବା ଦେଖି ଭୀଷ୍ମ ରଥରୁ ତଳକୁ ଡେଇଁ ପଡ଼ିଲେ । ଶ୍ୱେତଙ୍କ ଗଦା ମାଡ଼ରେ ଭୀଷ୍ମଙ୍କ ରଥ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । କ୍ରୋଧରେ ଜର୍ଜର ହୋଇ ଭୀଷ୍ମ ଏକ ଶକ୍ତିଶାଳୀ ଶର ମାରି ଶ୍ୱେତଙ୍କୁ ହତ୍ୟା କଲେ ।

ପ୍ରଥମ ଦିନରେ କୌରବମାନଙ୍କର ବିଜୟ ହେଲା । ଦୁର୍ଯ୍ୟୋଧନ ଶଙ୍ଖ ବଜାଇ ଆନନ୍ଦ ପ୍ରକାଶ କରିବାରେ ଲାଗିଲେ । ପାଣ୍ଡବମାନଙ୍କ ଦୁଃଖର ସୀମା ରହିଲା ନାହିଁ । ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ କହିଲେ, "ଗୋଟାଏ ଦିନର ଫଳାଫଳରୁ କିଛି ଜଣାପଡ଼େ ନାହିଁ । ତୁମେ ଧୈର୍ଯ୍ୟ ଧର । ଅତିଶୀଘ୍ର ଭୀଷ୍ମ ଟଳି ପଡ଼ିବେ ।" କୃଷ୍ଣଙ୍କ ଆଶ୍ୱାସନା ପାଇ ପାଣ୍ଡବମାନେ ଓ ମହାରାଜ ବିରାଟ ମଧ ମନରୁ ଦୁଃଖ ଦୂର କଲେ ଓ ପରଦିନର ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ ।

## ଦ୍ୱିତୀୟ ଦିନର ଯୁଦ୍ଧ

ଦ୍ୱିତୀୟ ଦିନ ସକାଳୁ କୌରବ ଓ ପାଣ୍ଡବ ସେନାମାନେ ନିଜ ନିଜ ବ୍ୟୁହରେ ଛିଡ଼ାହୋଇ ଯୁଦ୍ଧ ପାଇଁ ସେନାପତିଙ୍କ ଆଦେଶକୁ ଅପେକ୍ଷା କରି ରହିଥାନ୍ତି । ଆଦେଶ ପାଇବା ମାତ୍ରେ ତୁମୂଳ ଯୁଦ୍ଧ ଆରମ୍ଭ ହୋଇଗଲା । ଭୀଷ୍ମ ପ୍ରଥମ ଦିନ ପରି ପାଣ୍ଡବ ପକ୍ଷର ବହୁ ସୈନ୍ୟଙ୍କ ଉପରେ ପ୍ରବଳ ଆକ୍ରମଣ କରିଦେଲେ । ପାଣ୍ଡବ ସୈନ୍ୟମାନେ ଅସ୍ତବ୍ୟସ୍ତ ହୋଇ ଉଠିଲେ । ଚାରିଆଡ଼େ ହାହାକାର ପଡ଼ିଗଲା । ଏ ସବୁ ଦେଖି ଅର୍ଜୁନ ଭୀଷଣ ରାଗିଯାଇ କୃଷ୍ଣଙ୍କୁ କହିଲେ, "ଯଦି ଏହିପରି ଭାବରେ ଯୁଦ୍ଧ ଚାଲିବ, ତେବେ ଭୀଷ୍ମ ଆମର ସବୁ ସୈନ୍ୟଙ୍କୁ ମାରି ପଦା କରିଦେବେ । ଆଉ ଅପେକ୍ଷା ନକରି ଭୀଷ୍ମଙ୍କ ନିକଟକୁ ରଥ ଚଳାଅ ।" ଶ୍ରୀକୃଷ୍ଣ ଅତି ବେଗରେ ଅର୍ଜୁନଙ୍କ ରଥ ନେଇ ଭୀଷ୍ମଙ୍କ ନିକଟରେ ଉପସ୍ଥିତ ହେଲେ । ଅର୍ଜୁନ ଓ ଭୀଷ୍ମଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଲାଗିଗଲା । ଭୀଷ୍ମ ବଛା ବଛା ଶର ମାନ ଅର୍ଜୁନଙ୍କ ଉପରକୁ ମାରିବାରେ ଲାଗିଲେ । ଅର୍ଜୁନ ଅତ୍ୟନ୍ତ ଚତୁରତାର ସହିତ ଭୀଷ୍ମଙ୍କ ସମସ୍ତ ଶର କାଟି ଖଣ୍ଡ ଖଣ୍ଡ କରି ଦେଉଥିଲେ । ଅର୍ଜୁନ ବିଜୁଳି ବେଗରେ କୌରବ ସୈନ୍ୟମାନଙ୍କ ମଝିରେ ପଶି ଆଗକୁ ଆଗକୁ ଯିବାରେ ଲାଗିଲେ । ଯିବାବେଳେ ସେ ଅସଂଖ୍ୟ ଶତ୍ରୁ ସୈନ୍ୟଙ୍କୁ ତଳେ ଗଡ଼ାଇ ଦେଉଥିବା ଦେଖି ଦୁର୍ଯ୍ୟୋଧନଙ୍କ ଛାତି ଥରି ଉଠିଲା । ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଭୀଷ୍ମଙ୍କୁ କହିଲେ, "ପିତାମହ, ଆପଣ ଓ ଆଚାର୍ଯ୍ୟ ମହାଶୟ ବଞ୍ଚି ଥାଉ ଥାଉ ଅର୍ଜୁନ ଓ ଶ୍ରୀକୃଷ୍ଣ କୌରବ ସେନାମାନଙ୍କୁ ମାଟିରେ ମିଶାଇ ଦେବେ । ମହାବୀର କର୍ଣ୍ଣ କେବଳ ଆପଣଙ୍କ ଯୋଗୁ ଅସ୍ତ୍ର ଧରିବେ ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି । ସେ ମୋର ଡାହାଣ ହାତ ସ୍ୱରୂପ ଥିଲେ । ଆଜି ଅର୍ଜୁନ ଯେପରି ଭୟଙ୍କର ଯୁଦ୍ଧ କରୁଛି, ସେଥିରେ ମୁଁ ହତାଶ ହୋଇ ପଡ଼ିଲିଣି । ଆପଣ ଯେ କୌଣସି ପ୍ରକାରେ ଅର୍ଜୁନଙ୍କୁ ହତ୍ୟା କରିବାକୁ ପଛାନ୍ତୁ ନାହିଁ ।"

ଦୁର୍ଯ୍ୟୋଧନଙ୍କ କଥାରେ ଭୀଷ୍ମଙ୍କ ମନରେ ଭୀଷଣ ଦୁଃଖ ହେଲା ସତ, ମାତ୍ର ସେ କୌଣସି ଉତ୍ତର ନଦେଇ ଅର୍ଜୁନଙ୍କ ଉପରେ ପ୍ରବଳ ଆକ୍ରମଣ ଆରମ୍ଭ କରିଦେଲେ । ଅନେକ ସମୟ ପର୍ଯ୍ୟନ୍ତ ଦୁଇ ମହାଯୋଦ୍ଧାଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଲାଗି ରହିଲା । ଦୁଇ ମହାରଥୀଙ୍କ ଅପୂର୍ବ ରଣ କୌଶଳ ଦେଖି ଉଭୟ ପକ୍ଷ ଯୋଦ୍ଧାମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଗୋଟିଏ ସ୍ଥାନରେ ଭୀଷ୍ମ ଓ ଅର୍ଜୁନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ଚାଲିଥିବା ବେଳେ ଅନ୍ୟ ପଟରେ ଦ୍ରୋଣ ଓ ତାଙ୍କ ଶତ୍ରୁ ଧୃଷ୍ଟଦ୍ୟୁମ୍ନଙ୍କ ମଧ୍ୟରେ ନାହିଁ ନଥିବା ଯୁଦ୍ଧ ଆରମ୍ଭ ହୋଇଗଲା । ଦ୍ରୋଣ ଅତି ନିର୍ଦ୍ଦୟ ଭାବରେ ଆକ୍ରମଣ କରି ଧୃଷ୍ଟଦ୍ୟୁମ୍ନଙ୍କ ସର୍ବାଙ୍ଗ

କ୍ଷତ ବିକ୍ଷତ କରି ପକାଇଲେ । ଧୃଷ୍ଟଦ୍ୟୁମ୍ନ ଗଦା ପ୍ରହାର କରି ଦ୍ରୋଣଙ୍କୁ ହତ୍ୟାକରିବା ପାଇଁ ଚେଷ୍ଟା କଲା ବେଳକୁ ଦ୍ରୋଣ ଶର ମାରି ସେ ଗଦାକୁ ଖଣ୍ଡ ଖଣ୍ଡ କରି ପକାଇଲେ । ଧୃଷ୍ଟଦ୍ୟୁମ୍ନ ଖଣ୍ଡା ବାହାରକରି ଦ୍ରୋଣଙ୍କୁ ଆକ୍ରମଣ କରିବାକୁ ଦଉଡ଼ିବା ବେଳେ ଦ୍ରୋଣାଚାର୍ଯ୍ୟ ତାଙ୍କୁ ଅଟକାଇ ଦେଲେ ।

ଏହି ସମୟରେ ମହାବୀର ଭୀମ ଠିକ୍ ଯମରାଜଙ୍କ ପରି ହଜାର ହଜାର କୌରବ ସୈନ୍ୟଙ୍କୁ ମାରି ଭୂଇଁରେ ଗଡ଼ାଇ ଦେବାରେ ଲାଗିଲେ । ତାଙ୍କର ବିକଟାଳ ରୂପ ଓ ଭୟଙ୍କର ଗର୍ଜନ ଶୁଣି କୌରବ ସେନାମାନେ ଛାନିଆ ହୋଇଗଲେ । ଭୀମଙ୍କ ଯୁଦ୍ଧ ଦେଖି ଭୀଷ୍ମ ଅର୍ଜୁନଙ୍କୁ ଛାଡ଼ି ଭୀମଙ୍କ ସହିତ ଯୁଦ୍ଧ କରିବାକୁ ଧାଇଁ ଆସିଲେ । ଭୀମଙ୍କୁ ସାହାଯ୍ୟ କରିବା ପାଇଁ ଅଭିମନ୍ୟୁ, ସାତ୍ୟକୀ ଆଦି ପାଣ୍ଡବ ବୀରମାନେ ଆସି ଭୀଷ୍ମଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ସାତ୍ୟକୀଙ୍କ ଗୋଟିଏ ଶରରେ ଭୀଷ୍ମଙ୍କ ସାରଥୀ ରଥରୁ ତଳକୁ ପଡ଼ିଗଲେ । ସାରଥୀ ପଡ଼ିଯିବା ଦେଖି ଘୋଡ଼ାମାନେ ଅତ୍ୟନ୍ତ ବେଗରେ ରଥ ନେଇ ପଳାଇବାରେ ଲାଗିଲେ । ପାଣ୍ଡବ ସେନାମାନେ ଉତ୍ସାହର ସହିତ କୌରବମାନଙ୍କୁ ଆକ୍ରମଣ କରିବାରେ ଲାଗିଲେ । କୌରବ ସେନାମାନେ ପ୍ରମାଦ ଗଣିଲେ । ଶୀଘ୍ର ସୂର୍ଯ୍ୟାସ୍ତ ହୋଇ ଯୁଦ୍ଧ ବନ୍ଦ ହୋଇଯାଉ ବୋଲି କୌରବମାନେ ପ୍ରାର୍ଥନା କରିବାରେ ଲାଗିଲେ ।

ସନ୍ଧ୍ୟା ହୋଇଗଲା । ଉଭୟ ପକ୍ଷର ସେନାପତି ଶଙ୍ଖ ବଜାଇ ଯୁଦ୍ଧ ବିରତି ଘୋଷଣା କରିଦେଲେ । ଅର୍ଜୁନଙ୍କ ସହିତ ଅନ୍ୟ ପାଣ୍ଡବ ବୀରମାନେ ଅତ୍ୟନ୍ତ ଆନନ୍ଦରେ ଶଙ୍ଖ ନାଦ କରି ଶିବିରକୁ ଫେରିଆସିଲେ । ପ୍ରଥମ ଦିନ ଯୁଦ୍ଧରେ ପାଣ୍ଡବମାନଙ୍କ ମନରେ ଜାତ ହୋଇଥିବା ଭୟ ଆଜି କୌରବମାନଙ୍କ ମନରେ ସୃଷ୍ଟି ହୋଇଗଲା । ଦ୍ୱିତୀୟ ଦିନ ଯୁଦ୍ଧରେ ପାଣ୍ଡବମାନେ ଯେତିକି ଆନନ୍ଦିତ ଥିଲେ, କୌରବମାନେ ତାଠାରୁ ଅଧିକ ଦୁଃଖିତ ହେଉଥିଲେ ।

## ତୃତୀୟ ଦିନର ଯୁଦ୍ଧ

ତୃତୀୟ ଦିନ ଯୁଦ୍ଧରେ କୌରବ ସୈନ୍ୟମାନେ ପାଣ୍ଡବ ବୀରମାନଙ୍କ ଆଗରେ ଠିଆ ହୋଇପାରିଲେ ନାହିଁ । ଶକୁନି ବହୁ ସୈନ୍ୟସହ ପାଣ୍ଡବ ପକ୍ଷର ସାତ୍ୟକୀ ଓ ଅଭିମନ୍ୟୁଙ୍କୁ ଆକ୍ରମଣ କଲେ । ସାତ୍ୟକୀଙ୍କ ରଥ ଭାଙ୍ଗି ଯିବାରୁ ସେ ଅଭିମନ୍ୟୁଙ୍କ ରଥକୁ ଉଠିଗଲେ । ଦୁହେଁ ସେଇ ଗୋଟିଏ ରଥରୁ କୌରବମାନଙ୍କୁ ଶରମାରି ଅସ୍ତବ୍ୟସ୍ତ କରି ପକାଇଲେ । ଯୁଧିଷ୍ଠିର, ନକୁଳ ଓ ସହଦେବ ବହୁ ସୈନ୍ୟ ନେଇ ଦ୍ରୋଣାଚାର୍ଯ୍ୟଙ୍କୁ ଆକ୍ରମଣ କଲେ । ଭୀମଙ୍କ ସହିତ ତାଙ୍କ ପୁତ୍ର ଘଟୋତ୍କଚ ଆସି ଯୋଗଦେବାରୁ ଯୁଦ୍ଧ ଭୟଙ୍କର ରୂପ ଧାରଣ କଲା । ହାତୀ କଦଳୀ ବଣରେ ପଶି ଦଳି ଚକଟି ଦେଲା ପରି ବୀର ଘଟୋତ୍କଚ ଅସୁମାରି କୌରବ ସୈନ୍ୟଙ୍କୁ ମାଟିରେ ମିଶାଇଦେଲା । ତାଙ୍କ ବିରାଟ ଶରୀରକୁ ଦେଖି କୌରବ ସୈନ୍ୟମାନେ ଭୟରେ ଏଣେତେଣେ ପଳାଇବାକୁ ଲାଗିଲେ । ଭୀମ ଶରମାରି ଦୁର୍ଯ୍ୟୋଧନଙ୍କୁ ଅଚେତ କରି ରଥରେ ଗଡ଼ାଇ ଦେଲେ । ସାରଥୀ ଦୁର୍ଯ୍ୟୋଧନଙ୍କ ଅବସ୍ଥା ଦେଖି ରଥକୁ ଯୁଦ୍ଧଭୂମିରୁ ଦୂରକୁ ନେଇ ପଳାଇଗଲେ । କୁରୁପକ୍ଷ ସୈନ୍ୟମାନଙ୍କ ସାହସ କମିଗଲା । ଏହି ସୁଯୋଗରେ ଭୀମ ଶହ ଶହ ଶତ୍ରୁ ସୈନ୍ୟଙ୍କୁ ହତ୍ୟା କରିବାରେ ଲାଗିଲେ ।

ଚେତା ପାଇ ଦୁର୍ଯ୍ୟୋଧନ ଭାବିଲେ, "ଯଦି ପାଣ୍ଡବମାନେ ଏପରି ଯୁଦ୍ଧ କରିଚାଲିବେ, ତେବେ ଆମର ପରାଜୟ ନିଶ୍ଚିତ ।" ଅଶାନ୍ତି, ଦୁଃଖ ଓ ଯନ୍ତ୍ରଣାରେ ଅସ୍ଥିର ହୋଇ ସେ ଭୀଷ୍ମଙ୍କୁ କହିଲେ, "ପିତାମହ, ଆପଣଙ୍କ ଆଖି ଆଗରେ ପାଣ୍ଡବମାନେ ଆମ ସୈନ୍ୟମାନଙ୍କୁ ହତ୍ୟା କରି ଚାଲିଛନ୍ତି, ଆପଣ ସେମାନଙ୍କର ଅନିଷ୍ଟ କରିବା ପାଇଁ ଆଦୌ ଇଚ୍ଛା କରୁ ନାହାନ୍ତି । ପାଣ୍ଡବମାନଙ୍କ ପ୍ରତି ଅଧିକ ସ୍ନେହ ଥିବାରୁ ଆପଣ ମନ-ପ୍ରାଣ ଦେଇ ଯୁଦ୍ଧ କରୁନାହାନ୍ତି । ଆପଣ ସେମାନଙ୍କର ବିଜୟ ଚାହାନ୍ତି, ଏ ବିଷୟରେ ମୋର ଧାରଣା ସ୍ପଷ୍ଟ ହୋଇଗଲାଣି । ଆଗରୁ ଏକଥା ଜାଣିଥିଲେ ମୁଁ ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିନଥାନ୍ତି ।" ମହାରଥୀ ଭୀଷ୍ମ ଏକଥା ଶୁଣି ଅତ୍ୟନ୍ତ ରାଗିଯାଇ କହିଲେ, "ଦୁର୍ଯ୍ୟୋଧନ, ମୁଁ ପ୍ରଥମରୁ କହି ରଖିଛି ପାଣ୍ଡବମାନଙ୍କୁ ଜିଣିବା ଅସମ୍ଭବ । ସେମାନେ ବିପଦକୁ

ଭୟ କରନ୍ତି ନାହିଁ । ସେମାନଙ୍କ ଧୈର୍ଯ୍ୟର ତୁଳନା ମଧ୍ୟ ନାହିଁ । ତଥାପି ମଧ୍ୟ ମୁଁ ତୁମ ପାଇଁ ଯଥା ଶକ୍ତି ଚେଷ୍ଟା ନିଶ୍ଚୟ କରିବି । ତୁମେ ଚିନ୍ତା କରନାହିଁ ।"

ଭୀଷ୍ମ ପ୍ରଚଣ୍ଡ ଆକ୍ରମଣ କରିଦେବାରେ ପାଣ୍ଡବ ସୈନ୍ୟମାନେ ତାଙ୍କ ଆଗରେ ଅଧିକ ସମୟ ଦମ୍ଭ ଧରି ରହି ପାରିଲେ ନାହିଁ । ସେନାମାନେ ଛିନ୍ନଛତ୍ର ହୋଇ ଏଣେତେଣେ ପଳାଇ ଯାଉଥିବା ଦେଖି କୃଷ୍ଣ ଅର୍ଜୁନଙ୍କ ରଥ ନେଇ ଭୀଷ୍ମଙ୍କ ଆଗରେ ରଖି ଦେଲେ । ଅନେକ ସମୟ ଯାଏ ଏ ଦୁଇ ଯୋଦ୍ଧାଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଲାଗିଲା । ଅର୍ଜୁନଙ୍କ ଶରଗୁଡ଼ିକ ଭୀଷ୍ମ କାଟି ପକାଉଥିବାର ଦେଖି ଶ୍ରୀକୃଷ୍ଣ କହିଲେ, "ଅର୍ଜୁନ, ତୁମେ ଏବେ ବି ମମତା ଛାଡ଼ି ପାରିନାହଁ । ମୁଁ ଏ କଥା ଆଉ ଅଧିକ ସମୟ ସହ୍ୟ କରିପାରିବି ନାହିଁ ।

ଅର୍ଜୁନ କହିଲେ, "ବାସୁଦେବ, ମୁଁ ଶପଥ କରି କହୁଛି, ଜଣେ ହେଲେ କୌରବଙ୍କୁ ଜୀବିତ ରଖିବି ନାହିଁ । ନିଜେ ଅସ୍ତ୍ର ନଧରିବାକୁ ମୁଁ ପ୍ରାର୍ଥନା କରୁଛି ।" କୃଷ୍ଣ ଶାନ୍ତ ହେଲେ । ଭୀଷଣ ଯୁଦ୍ଧ ଆରମ୍ଭ ହୋଇଗଲା । ଅର୍ଜୁନ କୌରବ ପକ୍ଷର ହଜାର ହଜାର ସୈନ୍ୟଙ୍କୁ ମାରି ରକ୍ତର ସୁଅ ଛୁଟାଇଦେଲେ । ସନ୍ଧ୍ୟା ହୋଇ ଯିବାରୁ ଯୁଦ୍ଧ ବନ୍ଦ ହେଲା । କୌରବ ପକ୍ଷର ବୀରମାନେ କୁହାକୁହି ହେଲେ, "ସତରେ ଅର୍ଜୁନଙ୍କ ପରି ବୀର କିଏ ଅଛି ? ଏ ଯୁଦ୍ଧରେ ସେ ନିଶ୍ଚୟ ଜୟଲାଭ କରିବେ ।"

## ଚତୁର୍ଥ ଦିନର ଯୁଦ୍ଧ

ଆଜି ଅଶ୍ୱତ୍ଥମା, ଭୁରିଶ୍ରବା, ଶାଲ୍ୱ ଆଦି ପାଞ୍ଚଜଣ ଯୋଦ୍ଧା ଅଭିମନ୍ୟୁ ସହିତ ଯୁଦ୍ଧ କରିବାରେ ଲାଗିଲେ । ଅର୍ଜୁନ ଆଉ ସମ୍ଭାଳି ନପାରି ଅଭିମନ୍ୟୁଙ୍କୁ ସାହାଯ୍ୟ କରିବା ପାଇଁ ପହଞ୍ଚିଗଲେ । ଧୃଷ୍ଟଦ୍ୟୁମ୍ନ ମଧ୍ୟ ବହୁ ସୈନ୍ୟ ସହ ଆଗେଇ ଆସିଲେ । ଚେଳ ରାଜ୍ୟର ରାଜପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କୁ ଆକ୍ରମଣ କରିବାରୁ ଧୃଷ୍ଟଦ୍ୟୁମ୍ନ ଗୋଟିଏ ତୀକ୍ଷ୍ଣ ଶରରେ ତାଙ୍କୁ ତଳେ ଶୁଆଇ ଦେଲେ । ପୁତ୍ରର ମୃତ୍ୟୁରେ ଚେଳରାଜ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଧୃଷ୍ଟଦ୍ୟୁମ୍ନଙ୍କୁ ଆକ୍ରମଣ କଲେ । ଶାଲ୍ୱ ମଧ୍ୟ ଚେଳରାଜଙ୍କ ସହିତ ଯୋଗ ଦେଲେ । ଶାଲ୍ୱ ଶରମାରି ଧୃଷ୍ଟଦ୍ୟୁମ୍ନଙ୍କ ଧନୁ ଭାଙ୍ଗିଦେବାରୁ ଅଭିମନ୍ୟୁ ଶରପରେ ଶର ମାରି ଶାଲ୍ୱଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ଦୁର୍ଯ୍ୟୋଧନ ଆଉ ଅପେକ୍ଷା ନକରି ତାଙ୍କର କେତେଜଣ ଭାଇଙ୍କୁ ସଙ୍ଗରେ ନେଇ ଶାଲ୍ୱଙ୍କ ନିକଟରେ ପହଞ୍ଚିଗଲେ । ଦୁର୍ଯ୍ୟୋଧନଙ୍କୁ ଦେଖିବା ମାତ୍ରେ ଭୀମ ଆସି ତାଙ୍କ ଆଗରେ ଠିଆ ହୋଇଗଲେ । ଦୁଇ ମହା ମଲ୍ଲବୀରଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଆରମ୍ଭ ହୋଇଗଲା । ଭୀମ କୌରବ ପକ୍ଷର ସେନ୍ୟମାନଙ୍କ ସହିତ ଗୋଟାକୁ ଗୋଟା ହାତୀ ମାରି ତଳେ ଗଡ଼ାଇ ଦେବାରେ ଲାଗିଲେ । ମଲା ହାତୀଙ୍କ ବିରାଟ ବିରାଟ ଦେହ ଗୁଡ଼ାକ ଦୂରକୁ ଖଣ୍ଡିଆ ପାହାଡ଼ ପରି ଦେଖା ଯାଉଥିଲା । ଭୀମ ସାରଥୀ ବିଶୋକଙ୍କୁ କହିଲେ, "ମଲା ହାତୀରେ ରାସ୍ତା ବନ୍ଦ ହୋଇ ଯାଉଛି । ତୁମେ ଅତି ସାବଧାନ ହୋଇ ଆଗକୁ ରଥ ଚଳାଅ । ଦେଖ, ଅନ୍ଧ ରାଜାର ଅନେକଗୁଡ଼ିଏ ପୁଅ ମୋ ଆଡ଼କୁ ମାଡ଼ି ଆସୁଥିବାର ଦେଖା ଗଲାଣି । ମୁଁ ଏ ସୁଯୋଗ ଆଉ ଛାଡ଼ିବି ନାହିଁ । ବର୍ତ୍ତମାନ ମୁଁ ସେ ସମସ୍ତଙ୍କୁ ଯମରାଜଙ୍କ ଦରବାରକୁ ପଠାଇ ଦେବି ।" ଚାହୁଁ ଚାହୁଁ ଧୃତରାଷ୍ଟ୍ରଙ୍କର ଆଠଗୋଟି ପୁଅ ଏକାବେଳେକେ ଭୀମଙ୍କ ଆଡ଼କୁ ମାଡ଼ି ଆସିଲେ । ଭୀମ ଗର୍ଜନ କରି କହିଲେ, "ଆରେ, ଅନ୍ଧଛୁଆ, ନିଆଁ ଦେଖିଲେ ପତଙ୍ଗର ଭାରି ଲୋଭ ହୁଏ । ଆସ, ଆସ ମୁଁ ବହୁ ଦିନରୁ ସୁଯୋଗକୁ ଅପେକ୍ଷାକରି ରହିଥିଲି ।" ଅଳ୍ପ ସମୟ ଯୁଦ୍ଧ ପରେ ଭୀମ ଗୋଟି ଗୋଟି କରି ଧୃତରାଷ୍ଟ୍ରଙ୍କର ଆଠଗୋଟି ପୁଅକୁ ହତ୍ୟା କରିଦେଲେ ।

ଦୁର୍ଯ୍ୟୋଧନଙ୍କ ଦୁଃଖର ସୀମା ରହିଲା ନାହିଁ । ସେ ରାଗରେ ଜଳି ଉଠି ଭୀମଙ୍କୁ ଆକ୍ରମଣ କଲେ । ଦୁର୍ଯ୍ୟୋଧନଙ୍କ ଆକ୍ରମଣ ପୂର୍ବରୁ ଭୀମ ବହୁ ସମୟ ଯୁଦ୍ଧ କରି କ୍ଳାନ୍ତ ହୋଇପଡ଼ିଥିଲେ । ଏହି ସମୟରେ ଦୁର୍ଯ୍ୟୋଧନ ଶର ପରେ ଶର ମାରି ଅସ୍ତବ୍ୟସ୍ତ କରିବାରୁ ଭୀମ ରଥ ଉପରେ ବସିପଡ଼ିଲେ । ଶରଟାଏ ଛାତିରେ ଗଳି ଯାଇଥିବାରୁ ତାଙ୍କୁ ଭୀଷଣ କଷ୍ଟ ହେଉଥାଏ । ସେ ଯନ୍ତ୍ରଣାରେ ଛଟପଟ ହେଉଥିବା ଦେଖି ତାଙ୍କ ପୁତ୍ର ଘଟୋତ୍କଚ ଭୀଷଣ ଗର୍ଜନ କରି କୌରବ ସେନାଙ୍କୁ ହତ୍ୟାକରିବାରେ ଲାଗିଲା । ଘଟୋତ୍କଚର

ଅଦ୍ଭୁତ ଯୁଦ୍ଧ ଦେଖି ପିତାମହ ଦ୍ରୋଣଙ୍କୁ କହିଲେ, "ଏ ଭୟଙ୍କର ରାକ୍ଷସଟା ସହିତ ଆଉ ଅଧିକ କାଳ ଯୁଦ୍ଧ କରି ହେବ ନାହିଁ । ସୂର୍ଯ୍ୟାସ୍ତ ହୋଇ ଆସିଲାଣି । ଆଜିର ଯୁଦ୍ଧ ବନ୍ଦ କରି କାଲି ଘଟୋତ୍କଚ କଥା ବୁଝିବା ।"

ଚତୁର୍ଥ ଦିନର ଯୁଦ୍ଧ ବନ୍ଦ ହୋଇଗଲା । ଗୋଟିଏ ମାତ୍ର ଦିନରେ ନିଜର ଆଠଜଣ ଭାଇ ପ୍ରାଣ ହରାଇ ଥିବାରୁ ଦୁର୍ଯ୍ୟୋଧନ ଏକାବେଳେକେ ଭାଙ୍ଗି ପଡ଼ିଲେ ।

ମହର୍ଷି ବ୍ୟାସଦେବ ସଂଜୟଙ୍କୁ ଦିବ୍ୟଦୃଷ୍ଟି ଦେଇଥିଲେ । ସେଥିପାଇଁ ହସ୍ତିନାରେ ଥାଇ ମଧ୍ୟ କୁରୁକ୍ଷେତ୍ରରେ ପ୍ରତିଦିନ ଯାହା ଯାହା ଘଟୁଥାଏ, ସେ ସମସ୍ତ ସ୍ପଷ୍ଟ ଦେଖି ପାରୁଥାନ୍ତି ଓ ଧୃତରାଷ୍ଟ୍ରଙ୍କ ଆଗରେ ଅବିକଳ ବର୍ଣ୍ଣନା କରୁଥାନ୍ତି । ପ୍ରତିଦିନ କୌରବମାନଙ୍କ ପରାଜୟ କଥା ଶୁଣି ଶୁଣି ଧୃତରାଷ୍ଟ୍ର ଦୁଃଖରେ ଅଧୀର ହୋଇ ଉଠୁଥିଲେ । ଆଜିର ଯୁଦ୍ଧ କଥା ଶୁଣି ସେ କହିଲେ, "ସଂଜୟ, ତୁମେ ଏ ସବୁ କଅଣ ଗୁଡ଼ାଏ କହୁଛ ? ପାଣ୍ଡବଙ୍କ ଦେହ ଲୁହାରେ ଓ କୌରବଙ୍କ ଦେହ କ'ଣ ଲହୁଣୀରେ ତିଆରି କି ? କୌରବ ପକ୍ଷରେ ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥମାଙ୍କ ପରି ମହା ଧନୁର୍ଦ୍ଧରମାନେ ଅଛନ୍ତି । କୌରବଙ୍କ ସେନା ପାଣ୍ଡବଙ୍କଠାରୁ ଯଥେଷ୍ଟ ଅଧିକ । ମୁଁ ଜାଣୁଛି, ତୁମେ ନିଶ୍ଚୟ ପାଣ୍ଡବ ପକ୍ଷର ଲୋକ । ନହେଲେ ତୁମେ ସବୁଦିନେ ପାଣ୍ଡବଙ୍କ ବିଜୟ କଥା ମୋତେ ଶୁଣାଉ ନଥାନ୍ତ ।" ସଂଜୟ ଧୀର ସ୍ଥିର ଭାବରେ କହିଲେ, "ମହାରାଜ, ପାଣ୍ଡବମାନଙ୍କୁ ଧର୍ମ ରକ୍ଷା କରୁଛି । ପୁଣି ସେମାନେ ତପସ୍ୱୀ ହୋଇଥିବାରୁ ଅଧିକ ଶକ୍ତିଶାଳୀ ହୋଇ ପାରିଛନ୍ତି । ଯୁଦ୍ଧରେ ଯାହା ଘଟୁଛି, ତାହା ମୋତେ ସ୍ପଷ୍ଟ ଦେଖାଯାଉଛି । ତାହା ହିଁ ମୁଁ ଆପଣଙ୍କୁ ଜଣାଉଛି । ଆପଣଙ୍କୁ ସୁଖ ଲାଗିଲା ଭଳି ସଂବାଦ ମୁଁ ମନରୁ ଫାନ୍ଦି କହିବି କିପରି ?"

ଧୃତରାଷ୍ଟ୍ର କହିଲେ, "ହାୟ ଅଦୃଷ୍ଟ, ତୋତେ ଅତିକ୍ରମ କରିବା ଶକ୍ତି କାହାର ନାହିଁ । ମହାଜ୍ଞାନୀ ବିଦୁରଙ୍କ କଥା ନିଶ୍ଚୟ ସତ ହେବ ।"

## ଯୁଦ୍ଧର ପଞ୍ଚମ ଦିନ

ଚତୁର୍ଥ ଦିନ ରାତିରେ ଦୁର୍ଯ୍ୟୋଧନ ଭୀଷ୍ମଙ୍କ ନିକଟକୁ ଯାଇ କହିଲେ, "ପିତାମହ, ଆପଣ ଓ ଆଚାର୍ଯ୍ୟ ମହାଶୟ ଯୁଦ୍ଧରେ ହାରିବାର ବ୍ୟକ୍ତି ନୁହନ୍ତି । ଅଧିକନ୍ତୁ କୃପାଚାର୍ଯ୍ୟ, ଅଶ୍ୱତ୍ଥମା, ଭୂରିଶ୍ରବା, ଭଗଦତ୍ତ ଆଦି ବୀରମାନଙ୍କୁ ମୃତ୍ୟୁ ମଧ୍ୟ ଭୟ କରେ । ସମସ୍ତ ପାଣ୍ଡବ ଏକାଠି ହୋଇ ଯୁଦ୍ଧ କଲେ ମଧ୍ୟ ଆପଣମାନଙ୍କ ମଧ୍ୟରୁ ଜଣକୁ ହେଲେ ପରାସ୍ତ କରି ପାରିବେ ନାହିଁ । ତେବେ କେଉଁ କାରଣରୁ ଆମରି ପ୍ରତିଦିନ ପରାଜୟ ହିଁ ହେବାରେ ଲାଗିଛି ?"

ଭୀଷ୍ମ କହିଲେ, "ବତ୍ସ, ଏହାର କାରଣ ସ୍ପଷ୍ଟ । ପ୍ରତି ଘଟଣାରେ ମୁଁ ତୁମକୁ ଉତ୍ତମ ପରାମର୍ଶ ଦେଇ ଆସିଛି । ମାତ୍ର ତୁମେ ଗୁରୁଜନମାନଙ୍କ ହିତ ଉପଦେଶକୁ ଆଦୌ ଗ୍ରହଣ କରିନାହଁ । ସନ୍ଧି ପ୍ରସ୍ତାବରେ ରାଜି ହୋଇଥିଲେ ତୁମେ ସୁଖ-ଶାନ୍ତିରେ ରହିବା ସଂଗେ ସଂଗେ ସମଗ୍ର ଭାରତର ମଧ୍ୟ ମଙ୍ଗଳ ହୋଇଥାନ୍ତା । ତୁମେ ଯେଉଁ ଗଛ ଲଗାଇଥିଲ, ଏବେ ସେ ଗଛରେ ଫଳ ଧରି ଆସୁଛି । ଅପେକ୍ଷା କରିବାକୁ ହେବ । ଏତିକି ମନେରଖ, ପାଣ୍ଡବମାନଙ୍କୁ ଶ୍ରୀକୃଷ୍ଣ ସାହାଯ୍ୟ କରୁଛନ୍ତି । ଶ୍ରୀକୃଷ୍ଣ ଜଣେ ସାଧାରଣ ମନୁଷ୍ୟ ବୋଲି ଭାବିବା ଉଚିତ ନୁହେଁ । ସେ ନର ଦେହରେ ସ୍ୱୟଂ ନାରାୟଣ । ଯାହାଙ୍କୁ ନାରାୟଣ ସାହାଯ୍ୟ କରିବେ-ତାଙ୍କୁ ପରାସ୍ତ କରିବାର ଶକ୍ତି ଦେବତାମାନଙ୍କର ମଧ୍ୟ ନାହିଁ । ବର୍ତ୍ତମାନ ବି ସମୟ ଅଛି । ଶାନ୍ତି ସ୍ଥାପନ କରି ତୁମେ ତୁମର ରାଜ୍ୟ ଭୋଗ କରିପାରିବ । ଶତ୍ରୁ ଭାବରେ ନୁହେଁ । ପାଣ୍ଡବମାନଙ୍କୁ ଭାଇ ଭାବରେ ଗ୍ରହଣ କରିନିଅ ।"

ଭୀଷ୍ମଙ୍କର କଥା ଗୁଡ଼ାକ ଦୁର୍ଯ୍ୟୋଧନକୁ ଆଦୌ ଭଲ ଲାଗିଲା ନାହିଁ । ସେ ସେଠାରୁ ଆସି ଦ୍ରୋଣଙ୍କ ନିକଟରେ ପହଞ୍ଚିଲେ ଓ ତାଙ୍କୁ ମଧ୍ୟ ନିଜ ପକ୍ଷର କ୍ରମାଗତ ପରାଜୟ କଥା କହି ଖୁବ୍ ବିରକ୍ତ ହେଲେ । ଦ୍ରୋଣ ରାଗିଯାଇ କହିଲେ, "ଆମେ ସମସ୍ତେ ନିଜ ନିଜର ଶକ୍ତି ଅନୁସାରେ ଯୁଦ୍ଧ କରୁଛୁ । ପାଣ୍ଡବମାନଙ୍କର ଶକ୍ତି କେତେ, ସେ କଥା ତୁମ ଧାରଣାର ବାହାରେ । ଫଳାଫଳ ପାଇଁ

ଆଉ କିଛି ଦିନ ଅପେକ୍ଷା କରିବାକୁ ପଡ଼ିବ ।” ଦୁର୍ଯ୍ୟୋଧନ ଅଧିକ କିଛି ନକିହି ଚାଲିଗଲେ ।

ପଞ୍ଚମ ଦିନର ଯୁଦ୍ଧ ଅତି ଭୟଙ୍କର ହେଲା । ଦୁର୍ଯ୍ୟୋଧନ ସାତ୍ୟକୀଙ୍କୁ ଆକ୍ରମଣ କରିବା ପାଇଁ ବହୁ ସୈନ୍ୟ ପଠାଇ ଦେଲେ । ମାତ୍ର ମହାବୀର ସାତ୍ୟକୀ ଅଳ୍ପ ସମୟ ମଧ୍ୟରେ ସେ ସମସ୍ତଙ୍କୁ ଶେଷ କରି ଦେଇ ଭୁରିଶ୍ରବାଙ୍କୁ ଆକ୍ରମଣ କଲେ । ଭୁରିଶ୍ରବା ଜଣେ ଅସାଧାରଣ ବୀର । ସେ ଶର ପରେ ଶର ମାରି ସାତ୍ୟକୀଙ୍କୁ ଅସ୍ତବ୍ୟସ୍ତ କରୁଥିବା ଦେଖି ସାତ୍ୟକୀଙ୍କ ଜଣଜଣ ପୁଅ ଭୁରିଶ୍ରବାଙ୍କୁ ଆକ୍ରମଣ କଲେ । ଦୁଃଖର କଥା ଅଳ୍ପ ସମୟ ଯୁଦ୍ଧରେ ଭୁରିଶ୍ରବା ସେ ଦଶଜଣଙ୍କୁ ଅତି ନିର୍ଦ୍ଦୟ ଭାବରେ ହତ୍ୟାକଲେ । ସାତ୍ୟକୀଙ୍କ ହୃଦୟରେ ନିଆଁ ଜଳି ଉଠିଲା । ସେ ଭୁରିଶ୍ରବାଙ୍କୁ ହତ୍ୟା କରିବା ପାଇଁ ଧାଇଁଗଲେ । ଦୁଇ ମହାବୀରଙ୍କ ରଥ ପରସ୍ପର ଦେହରେ ମାଡ଼ଖାଇ ଖଣ୍ଡ ଖଣ୍ଡ ହୋଇଗଲା । ସାଂଗେ ସାଂଗେ ସାତ୍ୟକୀ ଖଣ୍ଡା ଧରି ଭୁରିଶ୍ରବାଙ୍କୁ ଆକ୍ରମଣ କରିବା ପାଇଁ ଆଗେଇ ଆସିଲେ । ଖଣ୍ଡା ଯୁଦ୍ଧରେ ଭୁରିଶ୍ରବା ନିଶ୍ଚୟ ସାତ୍ୟକୀକୁ ହତ୍ୟାକରିଦେବେ ଜାଣି ଭୀମ ତତ୍‌କ୍ଷଣାତ ସାତ୍ୟକୀଙ୍କୁ ନେଇ ଚାଲିଗଲେ ।

ପଞ୍ଚମଦିନ ଅର୍ଜୁନ କୁରୁକ୍ଷେତ୍ରର ଅସଂଖ୍ୟ ସୈନ୍ୟ ସଂହାର କରିଥିଲେ । ସନ୍ଧ୍ୟା ହୋଇ ଆସିବାରୁ ଯୁଦ୍ଧ ବନ୍ଦ ହୋଇଗଲା । ସମସ୍ତେ ନିଜ ନିଜ ଶିବିରକୁ ଫେରି ଆସିଲେ ।

## ଷଷ୍ଠ ଦିନର ବିବରଣୀ

ସକାଳୁ ଯୁଦ୍ଧ ଆରମ୍ଭ ହୋଇଗଲା । ଭୟଙ୍କର ଯୁଦ୍ଧରେ ଦ୍ରୋଣଙ୍କ ସାରଥୀ ମରିଯିବାରୁ ଦ୍ରୋଣ ନିଜେ ଅସ୍ତ୍ର ଚାଳନା ଓ ରଥ ଚାଳନା ଉଭୟ କାର୍ଯ୍ୟ କରୁଥିଲେ । ଚାହୁଁ ଚାହୁଁ ସେ ପାଣ୍ଡବ ପକ୍ଷର ଅସୁମାରି ସୈନ୍ୟଙ୍କୁ ମାରି ରକ୍ତର ସୁଅ ଛୁଟାଇ ଦେଲେ । ସୈନିକମାନଙ୍କ ଶବ ଓ ହାତୀ ଘୋଡ଼ାଙ୍କ ମଲା ଦେହରେ ଯୁଦ୍ଧ ପଡ଼ିଆ ପୂର୍ଣ୍ଣ ହୋଇଗଲା ।

ଭୀମ କୌରବ ସେନାଙ୍କ ମଧ୍ୟରେ ପଶିଯାଉଥିବାର ଲକ୍ଷ୍ୟ କରି ଦୁର୍ଯ୍ୟୋଧନ ଓ ଆଉ କେତେକ କୌରବ ଯୋଦ୍ଧା ତାଙ୍କୁ ଆକ୍ରମଣ କରିବାକୁ ଆଗେଇ ଆସିଲେ । ସେମାନେ କୌଣସି ମତେ ଭୀମଙ୍କୁ ବନ୍ଦୀ କରି ନେଇ ହତ୍ୟା କରିବାକୁ ସ୍ଥିର କରିଥାନ୍ତି । ଏକାବେଳେକେ ବହୁ ଯୋଦ୍ଧା ଆକ୍ରମଣ କରୁଥିବା ଦେଖି ଭୀମଙ୍କ ଦେହ ରାଗରେ ଜଳି ଉଠିଲା । ସେ ଗଦା ଧରି ତଳକୁ ଡେଇଁ ପଡ଼ିଲେ । ଅନ୍ଧରାଜାର ଆଉ କେତେଟା ପୁଅକୁ ହତ୍ୟା କରିବା ପାଇଁ ସେ ସୁଯୋଗ ଅପେକ୍ଷାରେ ରହିଥାନ୍ତି ।

ଧୃଷ୍ଟଦ୍ୟୁମ୍ନ ଅଳ୍ପ ଦୂରରେ ଯୁଦ୍ଧ କରୁଥିଲେ । ଭୀମଙ୍କ ରଥ ତାଙ୍କୁ ଦେଖା ନଯିବାରୁ ସେ ଅତି ବ୍ୟସ୍ତ ହୋଇ ନିଜ ରଥ ଦଉଡ଼ାଇ ଦେଲେ । ଭୀମଙ୍କ ରଥରେ କେବଳ ସାରଥୀଙ୍କୁ ଦେଖି ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ପଚାରିଲେ, “ବିଶୋକ, ଭୀମ କେଉଁଠି, ମୋତେ ଚଞ୍ଚଳ କହ ।”

ବିଶୋକ କହିଲେ, “ମହାଶୟ, ଏହିଠାରେ ରଥ ରଖିବାକୁ କହି ଭୀମ ତଳକୁ ଡେଉଁ ପଡ଼ିଲେ । ହାତରେ ଗଦାଧରି କୌରବଭାଇମାନଙ୍କ ପାଖକୁ ପବନ ବେଗରେ ଧାଇଁ ଯିବାର ମୁଁ ଦେଖିଛି । ଆଉ ଅଧିକ ଶୁଣିବାକୁ ତାଙ୍କର ଧୈର୍ଯ୍ୟ ନଥିଲା । ସେ ଆଗକୁ ଯାଇ ଦେଖିଲେ, ଚାରିପଟେ ଶତ୍ରୁମାନେ ଘେରିଯାଇ ଭୀମଙ୍କ ଉପରକୁ ଶରବର୍ଷା କରିବାରେ ଲାଗିଛନ୍ତି । ଭୀମ ଏକାକୀ ଗଦାଧରି ସେମାନଙ୍କୁ ଅଟକାଉଛନ୍ତି । ତାଙ୍କ ଦେହରେ ଶରବାଜି ଝର୍‌ଝର୍ ରକ୍ତର ଧାର ବହି ଯାଉଛି । ଧୃଷ୍ଟଦ୍ୟୁମ୍ନ ବିଳମ୍ବ ନକରି ଭୀମଙ୍କୁ ତାଙ୍କ ରଥ ଉପରକୁ ଟେକି ନେଲେ ଓ ଦେହରେ ଗଳି ଯାଇଥିବା ଶର ଗୁଡ଼ିକ ଗୋଟି ଗୋଟି କରି ବାହାର କରିବାରେ ଲାଗିଲେ ।

ଭୀମ ବା ଧୃଷ୍ଟଦ୍ୟୁମ୍ନ କେହି ଯୁଦ୍ଧ ପାଇଁ ପ୍ରସ୍ତୁତ ନଥିବା ବେଳେ ହଠାତ୍ ଦୁର୍ଯ୍ୟୋଧନ ତାଙ୍କୁ ଆକ୍ରମଣ କରିବା ପାଇଁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ଠିକ୍ ଏତିକି ବେଳେ ଯୁଧିଷ୍ଠିର ଓ ଅଭିମନ୍ୟୁ ରଥ ସହ ସେଠାରେ ପହଞ୍ଚି ଭୀମ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ସାହାଯ୍ୟ କଲେ ।

ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କ ସାରଥୀ ଓ ଘୋଡ଼ାଙ୍କୁ ମାରି ରଥକୁ ଖଣ୍ଡ ଖଣ୍ଡ କରିଦେଲେ । କୌରବମାନଙ୍କର ଆନନ୍ଦର ସୀମା ରହିଲା ନାହିଁ ।

କିଛି ସମୟ ପରେ ଭୀମ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ମୁହାଁ ମୁହିଁ ଯୁଦ୍ଧ ଲାଗିଗଲା । ଭୀମଙ୍କ ଶର ମାଡ଼ରେ ଦୁର୍ଯ୍ୟୋଧନ ଅଚେତ ହୋଇ ଯିବାରୁ କୃପାଚାର୍ଯ୍ୟ ତାଙ୍କୁ ନିଜ ରଥକୁ ଉଠାଇ ଅନ୍ୟତ୍ର ଚାଲିଗଲେ । ଭୀଷ୍ମ ସେଠାରେ ପହଞ୍ଚି ଶର ବର୍ଷା କରିବାରୁ ପାଣ୍ଡବ ସେନାମାନେ ଛାନିଆ ହୋଇ ଏଣେତେଣେ ପଳାଇବାରେ ଲାଗିଲେ ।

ସୂର୍ଯ୍ୟାସ୍ତ ପରେ ସେ ଦିନର ଯୁଦ୍ଧ ବନ୍ଦ ହୋଇଗଲା ।

## ସପ୍ତମ ଦିନର ଯୁଦ୍ଧ

ଗତକାଲିର ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ଦେହରେ ଅନେକ କ୍ଷତ ହୋଇ ରହିଯାଇଥିଲା । ଦେହ ଓ ମନ ଯନ୍ତ୍ରଣାରେ ଅସ୍ଥିର ହୋଇ ସେ ଭୀଷ୍ମଙ୍କୁ କହିଲେ, "ପିତାମହ, ଆପଣ ତ ସବୁ ଦେଖୁଛନ୍ତି । ଏବେ କିପରି କଅଣ କରିବାକୁ ହେବ, ଦୟାକରି କହନ୍ତୁ । ମୋ ମନର ବଳ କ୍ରମେ କ୍ରମେ ଊଣା ହୋଇ ଆସୁଛି । କ୍ଷତର ଯନ୍ତ୍ରଣା ମଧ୍ୟ ମୋତେ ଅଧିକ ଅସ୍ଥିର କରି ପକାଉଛି ।"

ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ ସାହସ ଦେଇ କହିଲେ, "ଅଯଥା ଭୟ କରିବାର କାରଣ କିଛି ନାହିଁ । ଦ୍ରୋଣ, ଶଲ୍ୟ, ଅଶ୍ୱତ୍ଥମା, କୃତବର୍ମା ଆଦି ଅଗଣିତ ବୀରମାନଙ୍କ ସହିତ ଅସୁମାରି ସୈନ୍ୟ, ରଥ, ଘୋଡ଼ା ଓ ପ୍ରଚୁର ଅସ୍ତ୍ରଶସ୍ତ୍ର ଥାଉଁ ଥାଉଁ ତୁମେ ଏପରି ଦୁର୍ବଳ ହୋଇପଡୁଛ କାହିଁକି ? ଗୋଟିଏ ମଲମ ଦେଇ ଭୀଷ୍ମ କହିଲେ, ପ୍ରତି କ୍ଷତ ସ୍ଥାନରେ ଏହାକୁ ଉତ୍ତମ ରୂପେ ମାଲିସ କର । ଶୀଘ୍ର ଆରାମ ମିଳିବ ।"

ସପ୍ତମ ଦିନର ଯୁଦ୍ଧ ଆରମ୍ଭ ହୋଇଗଲା । ଭୀଷ୍ମଙ୍କ ସହିତ ଅର୍ଜୁନ, ଦ୍ରୋଣଙ୍କ ସହିତ ବିରାଟ, ଶିଖଣ୍ଡୀଙ୍କ ସହିତ ଅଶ୍ୱତ୍ଥମା, ଦୁର୍ଯ୍ୟୋଧନ-ଧୃଷ୍ଟଦ୍ୟୁମ୍ନ, ଭୀମ-କୃତବର୍ମା, ଘଟୋତ୍କଚ-ଭଗଦତ୍ତ, ଅଳମ୍ବସ-ସାତ୍ୟକୀ, ଯୁଧିଷ୍ଠିର-ଶ୍ରୁତାୟୁ (କଳିଙ୍ଗର ରାଜା) ନକୁଳ ଓ ସହଦେବ ମାମୁଁ ଶଲ୍ୟଙ୍କ ସହିତ ଯୁଦ୍ଧ କରିବାରେ ଲାଗିଗଲେ ।

ଧୃଷ୍ଟଦ୍ୟୁମ୍ନ ଦୁର୍ଯ୍ୟୋଧନଙ୍କୁ ଆକ୍ରମଣ କରି ତାଙ୍କ ରଥର ଘୋଡ଼ାଗୁଡ଼ିକୁ ମାରିଦେଲେ । ତଥାପି ଦୁର୍ଯ୍ୟୋଧନ ଖଣ୍ଡା ଧରି ଯୁଦ୍ଧ କରିବାରେ ଲାଗିଥାନ୍ତି । ଏତିକି ବେଳେ ଶକୁନି ତାଙ୍କୁ ନିଜ ରଥକୁ ଉଠାଇ ନେଇ ଅନ୍ୟଆଡ଼େ ଚାଲିଗଲେ ।

ଶାଲ୍ୱ ନିଜ ଦୁଇ ଭଣଜା ନକୁଳ ଓ ସହଦେବଙ୍କ ସହ ଯୁଦ୍ଧ କରୁଥିଲେ । ମାମୁଁ ନକୁଳଙ୍କ ରଥର ଘୋଡ଼ାମାନଙ୍କୁ ମାରିଦେବାରୁ ନକୁଳ ସହଦେବଙ୍କ ରଥ ଉପରକୁ ଉଠିଗଲେ । ସହଦେବ ଏକ ଶକ୍ତିଶାଳୀ ଶର ମାରି ମାମୁଁଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ଶାଲ୍ୱଙ୍କ ଅବସ୍ଥା ଦେଖି ତାଙ୍କ ଜୀବନ ରକ୍ଷା କରିବା ପାଇଁ ସାରଥୀ ତାଙ୍କୁ ଅନ୍ୟ ଆଡ଼େ ନେଇ ଚାଲିଗଲା । ଏହି ସୁଯୋଗରେ ନକୁଳ ଓ ସହଦେବ ଶାଲ୍ୱଙ୍କ ସୈନ୍ୟମାନଙ୍କୁ ଗୋଡ଼ାଇ ଗୋଡ଼ାଇ ମାରିବାରେ ଲାଗିଲେ ।

କଳିଙ୍ଗ ରାଜା ଶ୍ରୁତାୟୁ ଯୁଧିଷ୍ଠିରଙ୍କ ସହିତ ଯୁଦ୍ଧ କରୁଥିଲେ । ଅନେକ ସମୟ ଯୁଦ୍ଧ ପରେ ଯୁଧିଷ୍ଠିରଙ୍କ ଏକ ଶର ଶ୍ରୁତାୟୁଙ୍କ ଛାତିରେ ଗଳିଗଲା । ସଂଗେ ସଂଗେ ଯୁଧିଷ୍ଠିର ଶାଲ୍ୱଙ୍କ ଘୋଡ଼ା ଗୁଡ଼ିକୁ ମାରି ରଥଟାକୁ ସଂପୂର୍ଣ୍ଣ ଚୂନା କରିଦେଲେ । ଶ୍ରୁତାୟୁ ବିକଳରେ ଦୂରକୁ ପଳାଇଗଲେ ।

ଏକାବେଳକେ ଦୁର୍ଯ୍ୟୋଧନର ତିନି ଜଣ ଭାଇ ଅଭିମନ୍ୟୁକୁ ଆକ୍ରମଣ କଲେ ମଧ୍ୟ ଅଭିମନ୍ୟୁଙ୍କ ଆଗରେ ସେମାନେ ଅଧିକ ସମୟ ଧନୁ ଧରି ରହିପାରିଲେ ନାହିଁ । ଏକାକୀ ଅଭିମନ୍ୟୁ ସେ ତିନି ଭାଇଙ୍କୁ ପରାସ୍ତ କଲେ, ମାତ୍ର କାହାକୁ ହତ୍ୟା କଲେ ନାହିଁ ।

କାରଣ ଭୀମ ଧୃତରାଷ୍ଟ୍ରଙ୍କର ସବୁ ପୁଅକୁ ହତ୍ୟା କରିବାର ଶପଥ ନେଇଥିଲେ । ଅଭିମନ୍ୟୁ ଅନ୍ଧ ରାଜାର ପୁଅ କେତେଟାଙ୍କୁ ମାରିଦେଲା ଅନୁମାନ କରି ଭୀମ ଅଭିମନ୍ୟୁକୁ ଆକ୍ରମଣ କରିବା ପାଇଁ ଆଗେଇ ଆସିଲେ ।

ଅର୍ଜୁନ ଏ ଘଟଣା ଦେଖି ଭୀମ ଓ ଅଭିମନ୍ୟୁଙ୍କ ଆଗରେ ଠିଆ ହୋଇଗଲେ । ପରେ ପରେ ପାଣ୍ଡବ ଭାଇମାନେ ଆସି ସେଠାରେ ପହଞ୍ଚିଲେ ।

ସୂର୍ଯ୍ୟାସ୍ତ ହୋଇଯିବାରୁ ଯୁଦ୍ଧ ବନ୍ଦ ହୋଇଗଲା ।

## ଅଷ୍ଟମ ଦିନର ଯୁଦ୍ଧ

ଅଷ୍ଟମ ଦିନ ଭୟଙ୍କର ଯୁଦ୍ଧ ହେଲା । ଭୀମ ଧୃତରାଷ୍ଟ୍ରଙ୍କର ଆଠଗୋଟି ପୁଅକୁ ହତ୍ୟା କରିଦେଲେ । ଦୁର୍ଯ୍ୟୋଧନଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ବନ୍ଧୁମାନଙ୍କୁ କହିଲେ, "ଆମ ଶହେ ଭାଇଙ୍କୁ ମାରି ଭୀମ ତାର ପ୍ରତିଜ୍ଞା ନିଶ୍ଚୟ ପୂରଣ କରିବ ।" ସମସ୍ତେ ଖୁବ୍ ଦୁଃଖିତ ହୋଇ ପଡ଼ିଲେ ଓ କାହାରି ତୁଣ୍ଡରୁ କଥା ବାହାରିଲା ନାହିଁ ।

ବନବାସ ସମୟରେ ଅର୍ଜୁନ ନାଗକନ୍ୟା ଉଲୁପୀଙ୍କୁ ବିବାହ କରିଥିଲେ । ମହାବୀର ଉରାବାନ୍ ଉଲୁପୀଙ୍କ ଯୋଗ୍ୟପୁତ୍ର । ମହାଭାରତ ଯୁଦ୍ଧ ଲାଗିଯିବା ଶୁଣି ସେ ପାଣ୍ଡବମାନଙ୍କୁ ସାହାଯ୍ୟ କରିବା ପାଇଁ କୁରୁକ୍ଷେତ୍ରରେ ପହଞ୍ଚିଗଲେ । ସେ କୌରବମାନଙ୍କୁ ଏପରି ଆକ୍ରମଣ କଲେ ସୈନ୍ୟମାନେ ଯୁଦ୍ଧ ଭୂଇଁ ଛାଡ଼ି ପଳାଇବାରେ ଲାଗିଲେ । ନିଜର ଅସଂଖ୍ୟ ସୈନ୍ୟ ଟଳି ପଡୁଥିବା ଦେଖି ଦୁର୍ଯ୍ୟୋଧନ ରାଗରେ ଥରି ଉଠିଲେ । ସେ ଉରାବାନ୍ ସହିତ ଯୁଦ୍ଧ କରିବା ପାଇଁ ତାଙ୍କ ବନ୍ଧୁ ବକାସୁରର ପୁଅ ଆର୍ଯ୍ୟଶୃଙ୍ଗଙ୍କୁ ପଠାଇ ଦେଲେ । ଦୁହିଁଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ଲାଗିଗଲା । କିଛି ସମୟ ପରେ ଉରାବାନ୍‌ର ମୃତ୍ୟୁ ହେଲା । ଏ ସଂବାଦ ପାଇବା ମାତ୍ରେ ଭୀମଙ୍କ ପୁତ୍ର ଘଟୋତ୍କଚ ରାଗରେ ହଜାର ହଜାର କୌରବ ସୈନ୍ୟଙ୍କୁ ମାରି ଆଗକୁ ମାଡ଼ିଯିବାରେ ଲାଗିଲା । କେହି ଭରସି କରି ତାଙ୍କ ଆଗକୁ ଆସିବାକୁ ସାହସ କଲେ ନାହିଁ । ଘଟୋତ୍କଚ ଅଳ୍ପ ସମୟ ମଧ୍ୟରେ ଦୁର୍ଯ୍ୟୋଧନ ପାଖକୁ ଆସି ଏକ ଶକ୍ତ ପ୍ରହାର କଲେ ।

ଉରାବାନଙ୍କ ମୃତ୍ୟୁରେ ଅର୍ଜୁନଙ୍କ ଦୁଃଖର ସୀମା ରହିଲା ନାହିଁ । ସେ ପ୍ରବଳ ବେଗରେ କୌରବ ସୈନ୍ୟମାନଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଏପରିକି ମହାବୀର ଭୀଷ୍ମ ମଧ୍ୟ ଅର୍ଜୁନଙ୍କ ଆଗରେ ଠିଆ ହୋଇ ପାରିଲେ ନାହିଁ । ଚାହୁଁ ଚାହୁଁ ହଜାର ହଜାର କୌରବ ସେନା ଅର୍ଜୁନଙ୍କ ଶରରେ ଟଳି ପଡ଼ିଲେ । ସୂର୍ଯ୍ୟାସ୍ତ ହୋଇଯିବାରୁ ଭୀଷ୍ମ ଶଙ୍ଖ ବଜାଇ ଯୁଦ୍ଧ ବନ୍ଦ ହେବାର ସୂଚନା ଦେବାରୁ କୌରବଙ୍କ ପିଣ୍ଡରେ ପ୍ରାଣ ପଶିଲା ।

## ଦୁର୍ଯ୍ୟୋଧନ କର୍ଣ୍ଣ ଓ ଭୀଷ୍ମଙ୍କ ଆଲୋଚନା

ଅଷ୍ଟମ ଦିନର ଯୁଦ୍ଧ ଦେଖି ଦୁର୍ଯ୍ୟୋଧନଙ୍କ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ସେ କର୍ଣ୍ଣଙ୍କ ନିକଟକୁ ଯାଇ କହିଲେ, "ବନ୍ଧୁ, ପାଣ୍ଡବମାନେ ଆମଠାରୁ ବହୁତ ଶକ୍ତିଶାଳୀ ବୋଲି ପ୍ରମାଣ ହୋଇଗଲାଣି । ଦିନକୁ ଦିନ ଆମ ସୈନ୍ୟ ସଂଖ୍ୟା କମି କମି ଯାଉଛି । ମୋତେ ବୁଦ୍ଧିବାଟ ଦେଖାଯାଉନାହିଁ । କ'ଣ କରିବାକୁ ହେବ ପରାମର୍ଶ ଦିଅ ।"

କର୍ଣ୍ଣ କହିଲେ, "ବନ୍ଧୁ, ଧୈର୍ଯ୍ୟ ଧର । ସବୁ ଠିକ୍ ହୋଇଯିବ । ଭୀଷ୍ମଙ୍କ ପତନ ପରେ ମୁଁ ମୋର ଦିବ୍ୟ ଅସ୍ତ୍ର ପ୍ରୟୋଗ କରି ସମସ୍ତ ପାଣ୍ଡବଙ୍କୁ ସଂହାର କରିବି । ସେତେବେଳକୁ ତୁମେ ପ୍ରକୃତ ଆନନ୍ଦ ଅନୁଭବ କରିବ । ଭୀଷ୍ମଥିବା ଯାଏ ତୁମର କିଛି ହେଲେ ମଙ୍ଗଳ ହେବ ନାହିଁ । ଯାଅ, ନିଶ୍ଚିନ୍ତରେ ବିଶ୍ରାମ କର । ତୁମ ପାଇଁ ମୋର ଏ ଜୀବନ ଦେବି ବୋଲି ପ୍ରତିଜ୍ଞା କରୁଛି ।"

ସବୁ ଶୁଣି ମଧ୍ୟ ଦୁର୍ଯ୍ୟୋଧନଙ୍କ ମନବୋଧ ହେଲା ନାହିଁ । ସେ ଭୀଷ୍ମଙ୍କ ପାଖକୁ ଯାଇ କହିଲେ, "ପିତାମହ, ଆପଣ ପୃଥିବୀର ସର୍ବଶ୍ରେଷ୍ଠ ବୀର । ଆପଣଙ୍କ ନିକଟରେ ଦେବତାମାନେ ମଧ୍ୟ ହାର ମାନିଥାନ୍ତି । ମୋର ମନେହେଉଛି, ପାଣ୍ଡବମାନଙ୍କୁ ଅତ୍ୟନ୍ତ ସ୍ନେହ କରୁଥିବାରୁ ଆପଣ ନିଜର ଶକ୍ତି ପ୍ରକାଶ କରୁନାହାନ୍ତି । ଯଦି ଆପଣ ଏପରି ଉପର ମନରେ ଯୁଦ୍ଧ କରି ଚାଲିବେ, ତେବେ ମୋତେ ଅନୁମତି ଦିଅନ୍ତୁ, ମୁଁ କର୍ଣ୍ଣଙ୍କୁ ସେନାପତି କରିଦେବି । ମୋର ଅସଂଖ୍ୟ ସେନା କ୍ଷୟ ଦେଖି ମୁଁ ଧୈର୍ଯ୍ୟ ଧରି ରହିପାରୁ ନାହିଁ ।" ଭୀଷ୍ମ ଦୁର୍ଯ୍ୟୋଧନର କଥା ଶୁଣି କହିଲେ, "ବତ୍ସ ଦୁର୍ଯ୍ୟୋଧନ । ତୁମର ବୁଦ୍ଧି ନଷ୍ଟ ହୋଇ ଗଲାଣି । ବିନାଶ କାଳରେ ବୁଦ୍ଧି ବିପରୀତ ହୋଇଥାଏ । ବୀର ତାର ମୃତ୍ୟୁ ପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ ଯୁଦ୍ଧ କରେ । ପାଣ୍ଡବମାନଙ୍କର ମଧ୍ୟ ଅସୁମାରୀ ସୈନ୍ୟ ନିହତ ହୋଇସାରିଲେଣି । କିନ୍ତୁ ସେମାନେ ତୁମ ପରି ଅସ୍ଥିର ବା ବିବ୍ରତ ନାହାନ୍ତି । ସେମାନଙ୍କ ଧୈର୍ଯ୍ୟ ଓ ସହିବା ଶକ୍ତି ବହୁତ ବେଶୀ । ଏହାର ପରିଚୟ ସେମାନେ ବନବାସ ସମୟରେ ତୁମକୁ ଦେଇ ସାରିଛନ୍ତି । କର୍ଣ୍ଣଙ୍କୁ ପ୍ରଧାନ ସେନାପତି କରିବ ତ ? କରିଦିଅ । ତାଙ୍କ ବୀରତ୍ୱର ପ୍ରମାଣ ତୁମେ ବିରାଟ ନଗରରେ ପାଇସାରିଛ । ଯାଅ, ଶାନ୍ତିରେ ଶୋଇପଡ଼ । କାଲି ଯୁଦ୍ଧରେ କଅଣ ହେଉଛି ଦେଖ ।"

## ନବମ ଦିନର ଯୁଦ୍ଧ

ଆଜି ଭୀଷ୍ମ ଅତି ଭୟଙ୍କର ଯୁଦ୍ଧ ଆରମ୍ଭ କରିଦେଲେ । ତାଙ୍କ ଶରମାଡ଼ରେ ଅର୍ଜୁନ ମଧ୍ୟ ଥୟ ଧରି ରହି ପାରିଲେ ନାହିଁ । ଭୀଷ୍ମ ଏପରି ଶର ପ୍ରୟୋଗ କଲେ ଯେ ଅର୍ଜୁନଙ୍କ ନନ୍ଦିଘୋଷ ରଥ ଅଣେଇ ହୋଇପଡ଼ିଲା । ପାଣ୍ଡବ ସେନାମାନେ ଅର୍ଜୁନଙ୍କ ରଥ ନଦେଖି ହାହାକାର କରିବାରେ ଲାଗିଲେ । ନିଜେ କୃଷ୍ଣଙ୍କ ଦେହରୁ ମଧ୍ୟ ଧାର ଧାର ରକ୍ତ ବହିବାରେ ଲାଗିଲା । ରଥର ଘୋଡ଼ାମାନେ ସ୍ଥିର ହୋଇ ଠିଆ ହୋଇଗଲେ । କୌରବମାନେ ଆନନ୍ଦରେ ଚିତ୍କାର କରି ଡେଇଁବାରେ ଲାଗିଲେ । ଠିକ୍ ଏହି ସୁଯୋଗରେ ଭୀଷ୍ମ ହଜାର ହଜାର ପାଣ୍ଡବ ସେନାଙ୍କୁ ମାରି ତଳେ ଗଡ଼ାଇ ଦେଲେ । ଏ ସାଙ୍ଘାତିକ ଅବସ୍ଥା ଦେଖି କୃଷ୍ଣ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଲେ । ଯୁଦ୍ଧରେ ଅସ୍ତ୍ର ଧରିବି ନାହିଁ ବୋଲି ପ୍ରତିଜ୍ଞାକୁ ସଂପୂର୍ଣ୍ଣ ଭୁଲିଗଲେ । ସେ ଗୋଟାଏ ରଥର ଚକକୁ ଧରି ଭୀଷ୍ମଙ୍କୁ ମାରିବା ପାଇଁ ଦୌଡ଼ିବାରେ ଲାଗିଲେ । ନିଜେ ଶ୍ରୀକୃଷ୍ଣ ମାରିବାକୁ ଆସୁଥିବା ଦେଖି ଭୀଷ୍ମ କହିଲେ, "ହେ ଚକ୍ରଧର, ପ୍ରଥମେ ମୋର ପ୍ରଣାମ ସ୍ୱୀକାର କରନ୍ତୁ । ଆପଣ ମୋତେ ହତ୍ୟା କରିବେ-ଏ କଥା କ'ଣ ସତରେ ମୋର ଭାଗ୍ୟରେ ଘଟିବ ? ମୁଁ କ'ଣ ଏଡ଼େ ଭାଗ୍ୟବାନ ହୋଇ ପାରିବି ପ୍ରଭୁ ?"

ଶ୍ରୀକୃଷ୍ଣ କହିଲେ, "ଏ ମହାଯୁଦ୍ଧର ମୂଳ କାରଣ ତୁମେ । ତୁମେ ଇଚ୍ଛା କରିଥିଲେ ଏ ଯୁଦ୍ଧ ବନ୍ଦ ହୋଇ ପାରିଥାନ୍ତା । କହ, ତୁମେ ଏ ଯୁଦ୍ଧ ନହେବା ପାଇଁ କି ଚେଷ୍ଟା କରିଛ ? ପଶାଖେଳ ସବୁ ଅନର୍ଥର ମୂଳ । ତୁମେ ବାଧା ଦେଇଥିଲେ ଧୃତରାଷ୍ଟ୍ର ପଶାଖେଳ ପାଇଁ ଅନୁମତି ଦେଇ ନଥାନ୍ତେ । ଯଦି ସେ ତୁମ ଇଚ୍ଛା ବିରୁଦ୍ଧରେ ଯାଇଥାନ୍ତେ, ତେବେ ତୁମେ ତାଙ୍କୁ ତ୍ୟାଗ କରି ପାରିଥାନ୍ତ ? ତାହା ତ କରିପାରିଲ ନାହିଁ । ବରଂ ଅନ୍ୟାୟୀ, ଅତ୍ୟାଚାରୀ, ଦୁର୍ଯ୍ୟୋଧନ ପକ୍ଷରେ ଯୁଦ୍ଧ କଲ । ନିରୀହ ପାଣ୍ଡବମାନଙ୍କ ଉପରକୁ ଶର ମାରିଲା ବେଳେ ତୁମ ହାତ ଥରି ଉଠୁନାହିଁ । ତୁମ ହୃଦୟ କମ୍ପି ଉଠୁନାହିଁ । ସେ ବିବେକ ଟିକିଏ ହେଲେ ବାଧା ଦେଉନାହିଁ ? ଧନ୍ୟ ତୁମେ ।"

"ଅନ୍ଧ ରାଜା ପୁତ୍ର ସ୍ନେହରେ ଏପରି ପାଗଳ ହୋଇଗଲେ ଯେ, ଅନ୍ୟର ହିତ ଉପଦେଶ ତାଙ୍କୁ ପିତା ଲାଗିଲା । ମୁଁ ଆପଣଙ୍କୁ ଅଧିକ ବୁଝାଇବା ଲୋକ ନୁହେଁ । ଯାହା ଘଟିବାକୁ ଥାଏ, ତାହା ନିଶ୍ଚୟ ଘଟେ । ବିଧିର ବିଧାନକୁ ବଦଳାଇବାର ଶକ୍ତି କାହାର ନାହିଁ । ଯୁଦ୍ଧର ଫଳାଫଳ ଆପଣଙ୍କୁ ଉତ୍ତମ ରୂପେ ଜଣା ।"

ଶ୍ରୀକୃଷ୍ଣ ରଥରୁ ଡେଇଁବା ପରେ ପରେ ଅର୍ଜୁନ ମଧ୍ୟ ତାଙ୍କ ପଛେ ପଛେ ଧାଉଁଥିଲେ । ସେ ପ୍ରାର୍ଥନା କରି କହିଲେ, "ହେ ବାସୁଦେବ, ଆପଣ ଅସ୍ତ୍ରଧରି ପ୍ରତିଜ୍ଞା ଭଙ୍ଗ କରନ୍ତୁ ନାହିଁ । ଶପଥ କରି କହୁଛି, ପ୍ରାଣପାତ କରି ମୁଁ କହୁଛି, କୌରବ ପକ୍ଷର ବୀରମାନଙ୍କୁ ସଂହାର କରିବି ।"

ଶ୍ରୀକୃଷ୍ଣଙ୍କ କ୍ରୋଧ ଶାନ୍ତ ହେଲା । ସେ ରଥ ଉପରକୁ ଲେଉଟି ଆସିଲେ । ସନ୍ଧ୍ୟା ହୋଇଯିବାରୁ ଯୁଦ୍ଧ ବନ୍ଦ ହେବା ପାଇଁ ଶଙ୍ଖ ବାଜିଲା । ଉଭୟ ପକ୍ଷର ସୈନ୍ୟମାନେ ନିଜ ନିଜ ଶିବିରକୁ ଫେରି ଆସିଲେ ।

## ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ସହିତ ମନ୍ତ୍ରଣା କଲେ

ନବମ ଦିନରେ ଭୀଷ୍ମ ଏପରି ଯୁଦ୍ଧ କଲେ ଯେ ଉଭୟ ପକ୍ଷର ବୀରମାନେ ତଟସ୍ଥ ହୋଇଗଲେ । ଏଥିରେ ପାଣ୍ଡବ ପକ୍ଷର ବୀରମାନେ ଅତି ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲେ । ଯୁଦ୍ଧ ବନ୍ଦ ହୋଇଯିବା ପରେ ପାଣ୍ଡବମାନେ ଅତି ଦୁଃଖରେ ଶିବିରକୁ ଫେରି ଆସିଲେ ।

ରାତିରେ ଯୁଧିଷ୍ଠିର କୃଷ୍ଣଙ୍କ ସହିତ ମନ୍ତ୍ରଣା କରୁଥିବା ବେଳେ କହିଲେ, "କେଶବ, ଏ ଯୁଦ୍ଧରେ ଆମର ପରାଜୟ ଏକ ପ୍ରକାର ନିଶ୍ଚିତ ହୋଇଗଲାଣି । ଆମେ କେହି ପିତାମହଙ୍କ ଆଗରେ ଠିଆ ହୋଇ ପାରୁନାହୁଁ ।" ଏତିକି ବେଳେ ଭୀମ କହିଲେ, "ଅର୍ଜୁନ ଅନେକ ଦିବ୍ୟ ଅସ୍ତ୍ର ଲାଭ କରିଛି । ମାତ୍ର ଯୁଦ୍ଧରେ ତ କାହିଁ ଗୋଟିଏ ହେଲେ ଦିବ୍ୟାସ୍ତ୍ର ପ୍ରୟୋଗ କରି ନାହାନ୍ତି । କାହିଁକି ସେ ସବୁକୁ ସାଇତି ରଖିଛନ୍ତି ମୁଁ କିଛି ବୁଝି ପାରୁନାହିଁ । ହେ ଶ୍ରୀକୃଷ୍ଣ ଏବେ ଆପଣ କହନ୍ତୁ କି ଉପାୟରେ ଆମେ ଭୀଷ୍ମଙ୍କୁ ପରାସ୍ତ କରିପାରିବୁ ?"

କିଛି ସମୟ ଚିନ୍ତା କରି କୃଷ୍ଣ କହିଲେ, "ଭୀଷ୍ମ କେବଳ ଜଣେ ମହାରଥୀ ନୁହନ୍ତି, ଜଣେ ଉଦାର ବ୍ୟକ୍ତି ମଧ୍ୟ । ଆମେ ତାଙ୍କୁ ଜୟ କରିବାର ଉପାୟ ତାଙ୍କୁ ହିଁ ପଚାରିବା ।

ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କ ସହି ଭୀଷ୍ମଙ୍କ ଶିବିରରେ ଉପସ୍ଥିତ ହେଲେ । ସମସ୍ତେ ପିତାମହଙ୍କୁ ସମ୍ମାନ ଦେଖାଇବା ପରେ ଯୁଧିଷ୍ଠିର କହିଲେ, "ପିତାମହ, ଏ ଯୁଦ୍ଧ କଦାପି ଆମ ସପକ୍ଷରେ ଯିବନାହିଁ । କାରଣ ଆପଣ ଯେଉଁ ପକ୍ଷରେ ରହିବେ, ସେଇ ପକ୍ଷର ହିଁ ବିଜୟ ହେବ । ଆପଣଙ୍କୁ ପରାସ୍ତ କରିବା ଲୋକ ଏଯାଏ ପୃଥିବୀରେ ଜନ୍ମ ହୋଇ ନାହାନ୍ତି । କୌରବମାନେ ବିଜୟୀ ହେଲେ ଦେଶରୁ ଧର୍ମ ଓ ସତ୍ୟ ଲୋପ ପାଇଯିବ ।" ଯୁଧିଷ୍ଠିରଙ୍କ କଥାରେ ଭୀଷ୍ମଙ୍କ ହୃଦୟ ଆଲୋଡ଼ିତ ହେବାରେ ଲାଗିଲା । ସେ ଗଦ୍‌ଗଦ୍ କଣ୍ଠରେ କହିଲେ, "ଯୁଧିଷ୍ଠିର ତୁମେ ଠିକ୍ କହିଛ । ଯେ ପର୍ଯ୍ୟନ୍ତ ମୋ ପିଣ୍ଡରେ ପ୍ରାଣ ଅଛି, ସେ ପର୍ଯ୍ୟନ୍ତ କୌରବମାନଙ୍କୁ କେହି ପରାସ୍ତ କରିପାରିବେ ନାହିଁ । ଦୁଃଖର କଥା ମୁଁ ନିରୁପାୟ ହୋଇ ଅସତ୍ୟ ପକ୍ଷ ଗ୍ରହଣ କରିଛି । ମୋରି ଆଗରେ ଯଦି ସତ୍ୟର ମର୍ଯ୍ୟାଦା ନରହେ ତେବେ ତାହା ମୋ ପକ୍ଷରେ ସବୁଠାରୁ ବଡ଼ ଲଜ୍ଜାର ବିଷୟ ହେବ । ଏହି କଥା ଭାବି ମୋ ମନ ବ୍ୟଥିତ ହେଉଛି । ଅର୍ଜୁନ ଏ ପର୍ଯ୍ୟନ୍ତ ଦେବତାମାନଙ୍କଠାରୁ ପାଇଥିବା ଦିବ୍ୟାସ୍ତ୍ର ପ୍ରୟୋଗ କରି ନଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଆଶ୍ଚର୍ଯ୍ୟର କଥା ଅର୍ଜୁନ ଅତ୍ୟନ୍ତ ବୀରତ୍ୱ ସହିତ ମୋ ଶରକୁ ସହ୍ୟ କରିପାରିଛି । ମୁଁ ଅଧିକ ସମୟ ଏ ସଂସାରେ ରହିବାକୁ ଇଚ୍ଛା କରୁନାହିଁ । ଅର୍ଜୁନ ହିଁ ମୋ ବଂଶର ମୁଖ ଉଜ୍ଜ୍ୱଳ କରିବ । ଏବେ ମୁଁ ମୋ ମୃତ୍ୟୁର ରହସ୍ୟ ବତାଇ ଦେଉଛି, ଶୁଣ । ତୁମ ପକ୍ଷରେ ଥିବା ରାଜା ଦ୍ରୁପଦଙ୍କ ପୁତ୍ର ଶିଖଣ୍ଡୀ ଆର ଜନ୍ମରେ ସ୍ତ୍ରୀ ଥିଲେ । ମୋତେ ହତ୍ୟାକରିବା ପାଇଁ ସେ ମହାଦେବଙ୍କ ନିକଟରେ ତପସ୍ୟା କରି ବର ଲାଭ କରିଥିଲେ । ସେଇ ଦ୍ରୁପଦଙ୍କ ଘରେ କନ୍ୟା ରୂପରେ ଜନ୍ମ ହୋଇଥିଲେ । ଜନ୍ମର କିଛି ଦିନ ପରେ ଜଣେ ଯକ୍ଷ ତାଙ୍କୁ ପୁରୁଷ କରି ଦେଇଥିବା କଥା ମୁଁ ଜାଣେ । ମୋ ବିଚାରରେ ସେ ଏପର୍ଯ୍ୟନ୍ତ ସ୍ତ୍ରୀ ହୋଇ ରହିଛନ୍ତି । ଯଦି ଅର୍ଜୁନ ସେଇ ଶିଖଣ୍ଡୀଙ୍କୁ ଆଗରେ

ରଖି ଯୁଦ୍ଧ କରିବେ, ତେବେ ମୁଁ ଆଉ ଧନୁ ଧରିବି ନାହିଁ । ଏହି ସୁଯୋଗରେ ଅର୍ଜୁନ ଶର ପରେ ଶର ମାରି ମୋତେ ହତ୍ୟା କରିବାକୁ ଚେଷ୍ଟା କରିବେ ।"

ପାଣ୍ଡବମାନେ ପିତାମହଙ୍କୁ ପ୍ରଣାମ କରି ଶିବିରକୁ ଫେରିଆସିଲେ ।

## ଦଶମ ଦିନର ଯୁଦ୍ଧ

ଦଶମ ଦିନରେ ନାହିଁ ନଥିବା ଯୁଦ୍ଧ ଆରମ୍ଭ ହୋଇଗଲା । ଆଜି ମଧ୍ୟ ପାଣ୍ଡବମାନେ ଭୀଷ୍ମଙ୍କ ଆଗରେ ଠିଆହୋଇ ରହିପାରିଲେ ନାହିଁ । ସେମାନଙ୍କ ମଧ୍ୟରେ ଆତଙ୍କ ଖେଳିଗଲା । ଯୁଧିଷ୍ଠିର ଅତ୍ୟନ୍ତ ବିଚଳିତ ହୋଇ ଉଠିଲେ । ଅନ୍ୟ ଉପାୟ ନଦେଖି ପାଣ୍ଡବମାନେ ଶିଖଣ୍ଡୀଙ୍କୁ ଭୀଷ୍ମଙ୍କ ନିକଟକୁ ନେବା ପାଇଁ ଉଦ୍ୟମ କଲେ । ଏକଥା ଦେଖି କୌରବମାନେ ତାଙ୍କୁ ପ୍ରାଣପଣେ ବାଧା ଦେବାରେ ଲାଗିଲେ । ମାତ୍ର ସେମାନଙ୍କର ପ୍ରବଳ ବାଧା ସତ୍ତ୍ୱେ ପାଣ୍ଡବମାନେ ଶିଖଣ୍ଡୀଙ୍କୁ ଅର୍ଜୁନଙ୍କ ରଥ ଉପରେ ବସାଇ ଦେଲେ । ରଥରେ ଶିଖଣ୍ଡୀଙ୍କୁ ଦେଖିବା ମାତ୍ରେ ଭୀଷ୍ମ ଅସ୍ତ୍ରତ୍ୟାଗ କଲେ । ମାତ୍ର ଶିଖଣ୍ଡୀ ଭୀଷ୍ମଙ୍କ ଉପରକୁ ତୁହାକୁ ତୁହା ଶର ବର୍ଷା କରିବାରେ ଲାଗିଲେ । ଏତେ ଶରମାଡ଼ରେ ମଧ୍ୟ ଭୀଷ୍ମଙ୍କର କୌଣସି କ୍ଷତି ହେଲା ନାହିଁ । ଶୀଖଣ୍ଡୀଙ୍କ ପଛରେ ଅର୍ଜୁନ ବସିଥିଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ, "ଚାହିଁଛ କଅଣ ? ଶିଖଣ୍ଡୀଙ୍କ ପକ୍ଷ ନେଇ ଭୀଷ୍ମଙ୍କ ଉପରକୁ ଶର ମାର ।" ଅର୍ଜୁନ କହିଲେ, "ପ୍ରଭୁ, ଏ ବଡ଼ ଅନ୍ୟାୟ କାର୍ଯ୍ୟ ହେବ । ପିତାମହ ବର୍ତ୍ତମାନ ଶସ୍ତ୍ର ତ୍ୟାଗ କରିଛନ୍ତି । ଶସ୍ତ୍ରହୀନ ଭୀଷ୍ମଙ୍କ ଉପରକୁ ମୁଁ କିପରି ଶର ମାରିବି ?" କୃଷ୍ଣ କହିଲେ, "ହାତରେ ଶସ୍ତ୍ର ଥିଲେ ଭୀଷ୍ମଙ୍କୁ କେହି ପରାସ୍ତ କରି ପାରିବେ ନାହିଁ । ଭୀଷ୍ମ ନିଜେ ତ ତୁମକୁ ତାଙ୍କ ମୃତ୍ୟୁଭେଦ ବତାଇଛନ୍ତି । ତାଙ୍କ ଆଦେଶ ପାଳନ ତ ତୁମର ଧର୍ମ ।" କୃଷ୍ଣଙ୍କ କଥା ଶୁଣି ଅର୍ଜୁନ ଭୀଷ୍ମଙ୍କ ଉପରକୁ ଶର ମାରିବାରେ ଲାଗିଲେ । ଗୋଟାକ ପରେ ଗୋଟାଏ ଶର ଭୀଷ୍ମଙ୍କ ଦେହରେ ଗଳି ଯିବାପରି ଲାଗିଲା । ସେ ଯନ୍ତ୍ରଣାରେ ଅସ୍ଥିର ହୋଇ ରଥରୁ ତଳକୁ ଖସି ପଡ଼ିଲେ । ମୁଣ୍ଡକୁ ଛାଡ଼ି ଦେହର ଚାରିଆଡ଼େ ଶରଗୁଡ଼ାକ ଏପରି ଗଳି ଯାଇଥିଲା ଯେ, ତଳେ ପଡ଼ି ମଧ୍ୟ ଭୀଷ୍ମଙ୍କ ଦେହ ମାଟିରେ ଲାଗିଲା ନାହିଁ । ସେ ଶରଗୁଡ଼ାକ ଉପରେ ଲମ୍ବ ହୋଇ ଶୋଇରହିଲେ । କେବଳ ମୁଣ୍ଡଟି ତଳକୁ ଝୁଲି ପଡ଼ିଥାଏ ।

## ଶରଶଯ୍ୟା

ଭୀଷ୍ମଙ୍କ ପତନ ପରେ କୌରବ ଓ ପାଣ୍ଡବ ଉଭୟ ପକ୍ଷଙ୍କ ମଧ୍ୟରେ ହାହାକାର ଖେଳିଗଲା । ସେ ଦିନ ପାଇଁ ଯୁଦ୍ଧ ବନ୍ଦ ହୋଇଯିବାରୁ ସମସ୍ତେ ପିତାମହଙ୍କ ପାଖକୁ ଦୌଡ଼ି ଆସିଲେ । କୌରବ ଓ ପାଣ୍ଡବମାନେ ତାଙ୍କୁ ଘେରିଯାଇ ଶୋକ କରିବାରେ ଲାଗିଲେ । ଦୁର୍ଯ୍ୟୋଧନ ଭାବିଲେ ମହାବୀର ଭୀଷ୍ମଙ୍କ ମୃତ୍ୟୁ ହେଲା ନାହିଁ ଯେ, କୌରବମାନଙ୍କ ବିନାଶ ସମୟ ଆରମ୍ଭ ହୋଇଗଲା ।

ଭୀଷ୍ମ ଯନ୍ତ୍ରଣାରେ ଅସ୍ଥିର ହୋଇ କହଲେ, "ମୋର ମୁଣ୍ଡ ତଳକୁ ଝୁଲି ପଡ଼ିବାରୁ ବହୁତ କଷ୍ଟ ହେଉଛି । ଶୀଘ୍ର କିଛି ବ୍ୟବସ୍ଥା କର । ଏ କଥା ଶୁଣିବା ମାତ୍ରେ ଦୁର୍ଯ୍ୟୋଧନ ଏକ ମୂଲ୍ୟବାନ ସୁନ୍ଦର ତକିଆ ନେଇ ଭୀଷ୍ମଙ୍କ ପାଖରେ ପହଞ୍ଚିଗଲେ । ଭୀଷ୍ମ ଅର୍ଜୁନଙ୍କ ଆଡ଼କୁ ମୁହଁ ବୁଲାଇ ଚାହିଁଲେ । ଅର୍ଜୁନ ଭୀଷ୍ମଙ୍କ ମନକଥା ଜାଣି ପାରି ତାଙ୍କ ମୁଣ୍ଡ ତଳକୁ ଲକ୍ଷ୍ୟ କରି ଏପରି ତିନି ଗୋଟି ଶର ମାରିଲେ ଯେ ତାହା ଭୀଷ୍ମଙ୍କ ମୁଣ୍ଡକୁ ତକିଆ ଉପରେ ରଖିବା ପରି ଟେକି ରଖିଲା ।

ତା ପରେ ଭୀଷ୍ମ କହିଲେ, "ତୃଷାରେ ମୋର କଣ୍ଠ ଶୁଷ୍କ ହୋଇ ଯାଉଛି । ଶୀଘ୍ର ଜଳ ଆଣି ଦିଅ ।" ଦୁର୍ଯ୍ୟୋଧନ ସୁବର୍ଣ୍ଣ ଝରରୁ ଶୀତଳ ଜଳ ମଗାଇ ଆଣିଲେ । ଏଥର ମଧ୍ୟ ଭୀଷ୍ମ ଅର୍ଜୁନଙ୍କ ଆଡ଼କୁ ଚାହିଁବାରୁ ଅର୍ଜୁନ ପୃଥିବୀ ବକ୍ଷକୁ ଶର ବିଦ୍ଧ କଲେ । ତାହୁଁ



ଭୀଷ୍ମଙ୍କର ଶରଶର୍ଯ୍ୟା

ଚାହୁଁ ଅତି ନିର୍ମଳ ଜଳ ଝରି ଆସି ଭୀଷ୍ମଙ୍କ ପାଟିରେ ପଡ଼ିଲା । ତୃଷା ନିବାରଣ ପରେ ଭୀଷ୍ମ ଉଭୟ ପକ୍ଷଙ୍କୁ ଶିବିରକୁ ଫେରିଯିବା ପାଇଁ କହିଲେ ।

ଭୀଷ୍ମଙ୍କ ଶରଶଯ୍ୟା ସମ୍ବାଦ ପାଇ ମହାବୀର କର୍ଣ୍ଣ ଆଗର ସମସ୍ତ ଶତ୍ରୁତା ଭୁଲି ତାଙ୍କୁ ସାକ୍ଷାତ କରିବାକୁ ଗଲେ । ପ୍ରଣାମ କରିବା ପରେ ଭୀଷ୍ମ ତାଙ୍କୁ ଆଶୀର୍ବାଦ ଦେଇ କହିଲେ, "-ବାବୁ, ତୁମେ ଇଚ୍ଛା କଲେ ଏ ଯୁଦ୍ଧ ବନ୍ଦ ହୋଇ ଯାଆନ୍ତା । ଦୁର୍ଯ୍ୟୋଧନ ଭାବିଛି ତୁମରି ସାହାଯ୍ୟରେ ସେ ଯୁଦ୍ଧ ନିଶ୍ଚୟ ଜୟ କରିବ । ମାତ୍ର ଅର୍ଜୁନଙ୍କୁ ପରାସ୍ତ କରିବା ଆଦୌ ସମ୍ଭବ ନୁହେଁ । ତୁମେ ଅର୍ଜୁନ ଠାରୁ ବଳି ବୀର -ଏକଥା କୌଣସି ଯୁଦ୍ଧରେ ପ୍ରମାଣ ହୋଇନାହିଁ । ତୁମେ ବୁଝାଇଲେ ହୁଏତ ଦୁର୍ଯ୍ୟୋଧନ ମାନିଯାଇପାରେ । ଶୁଣ କର୍ଣ୍ଣ, ତୁମେ ସୂତ ପୁତ୍ର ନୁହଁ । ପାଣ୍ଡବଙ୍କ ଭାଇ-କୁନ୍ତୀଙ୍କ ପୁତ୍ର । ତୁମେ ଚାହିଁଲେ ଯୁଦ୍ଧ ବନ୍ଦ ହୋଇ ଉଭୟ ପକ୍ଷରେ ଶାନ୍ତି ବିରାଜିବ ।" କର୍ଣ୍ଣ କହିଲେ, "- ପିତାମହ, ବର୍ତ୍ତମାନ ଯୁଦ୍ଧ ବହୁତ ଆଗେଇ ଗଲାଣି । ଯେଉଁ ଅଧିରଥ ମୋତେ ପାଳି ପୋଷି ବଡ଼ କରିଛନ୍ତି, ମୁଁ ତାଙ୍କରି ପୁଅ । ମୁଁ ଲୋକଙ୍କ ଆଗରେ ନୀଚ ଥିଲି । ଦୁର୍ଯ୍ୟୋଧନ ମୋତେ ରାଜ୍ୟର ରାଜା କରାଇ ଉଚ୍ଚ ଆସନ ଦେଇ ବଡ଼ କରିଛନ୍ତି । ଏ ଘୋର ଅସମୟରେ ମୁଁ କଦାପି ଦୁର୍ଯ୍ୟୋଧନଙ୍କୁ ଛାଡ଼ି ପାରିବି ନାହିଁ । ପାଣ୍ଡବମାନେ ତ ଆପଣଙ୍କର ଅତିପ୍ରିୟ ଥିଲେ । ଆପଣ କାହିଁକି ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଥିଲେ ? କୌରବମାନଙ୍କୁ ମଧ୍ୟ ଆପଣ ବୁଝାଇ ପାରିଥାନ୍ତେ । ମୋତେ ଆଉ ଅଧିକ କିଛି କହନ୍ତୁ ନାହିଁ ।"

ଏହିପରି କହି କର୍ଣ୍ଣ ନିଜ ଶିବିରକୁ ଫେରିଆସିଲେ ।

## ଦ୍ରୋଣ ପର୍ବ

ପିତାମହ ଭୀଷ୍ମଙ୍କ ପତନ ପରେ କୌରବଙ୍କ ଶିବିରରେ ମହାରଥୀମାନଙ୍କର ସଭା ବସିଲା । ବୀର କର୍ଣ୍ଣ ମଧ୍ୟ ଉପସ୍ଥିତ ହେଲେ । କୌରବ ପକ୍ଷର ପ୍ରଧାନ ସେନାପତି ଦାୟିତ୍ୱ କାହାକୁ ଦିଆଯିବ, ସେଇକଥା ଆଲୋଚନା ହେଲା ।

କର୍ଣ୍ଣ କହିଲେ, "ମହାରାଜ, ଆପଣଙ୍କ ପକ୍ଷର ବୀରମାନେ ପ୍ରତ୍ୟେକ ପ୍ରଧାନ ସେନାପତି ଭାବରେ ଦାୟିତ୍ୱ ଗ୍ରହଣ କରିବା ପାଇଁ ଯୋଗ୍ୟ । ମାତ୍ର ଆମ ସମସ୍ତଙ୍କର ଗୁରୁ ମହାଯୋଦ୍ଧା ଦ୍ରୋଣାଚାର୍ଯ୍ୟଙ୍କୁ ପ୍ରଧାନ ସେନାପତି ଦାୟିତ୍ୱ ଦିଆଗଲେ କାହାରି କିଛି ଆପତ୍ତି ନାହିଁ ।

କର୍ଣ୍ଣଙ୍କ କଥା ସମସ୍ତଙ୍କ ମନକୁ ପାଇଲା । ଦୁର୍ଯ୍ୟୋଧନ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ କହିଲେ, "ମହାଶୟ ବୀରତ୍ୱ, ବୁଦ୍ଧି ଓ ଅଭିଜ୍ଞତାରେ ଆପଣଙ୍କ ସହିତ ସମାନ ହେବାକୁ କେହି ନାହାନ୍ତି । କୌରବମାନେ ବର୍ତ୍ତମାନ ଚାଳକ ଶୂନ୍ୟ ନୌକାପରି ଯୁଦ୍ଧ ଦରିଆରେ ଭାସୁଛନ୍ତ । ଏ ସମୟରେ ଆପଣ ପ୍ରଧାନ ସେନାପତି ଦାୟିତ୍ୱ ଗ୍ରହଣ କରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।" ସଂଗେ ସଂଗେ ଉପସ୍ଥିତ ବୀରମାନେ ଦ୍ରୋଣାଚାର୍ଯ୍ୟଙ୍କ ଜୟଗାନରେ ସଭାସ୍ଥଳୀ କମ୍ପାଇ ଦେଲେ ।

ପ୍ରଧାନ ସେନାପତି ଦାୟିତ୍ୱ ନେବା ପରେ ଦ୍ରୋଣାଚାର୍ଯ୍ୟ କହିଲେ, "ପ୍ରତିଜ୍ଞା କରୁଛି, ମହାବୀର ଭୀଷ୍ମଙ୍କ ପରି ମୁଁ କୌରବସେନାଙ୍କ ରକ୍ଷା ଓ ପାଣ୍ଡବସେନାଙ୍କ ସଂହାର କରିବି । କେବଳ ଧୃଷ୍ଟଦ୍ୟୁମ୍ନ ମୋର ଚିନ୍ତାର ବିଷୟ । କାରଣ ମୋତେ ମାରିବା ପାଇଁ ତାଙ୍କର ଜନ୍ମ ।"

ଦ୍ରୋଣାଚାର୍ଯ୍ୟଙ୍କ ପ୍ରତିଜ୍ଞା ଶୁଣିବା ପରେ ଦୁର୍ଯ୍ୟୋଧନ କହିଲେ, "ଗୁରୁଦେବ, ଆପଣ ପୃଥିବୀ ବିଖ୍ୟାତ ତୀର ଓ ଶସ୍ତ୍ର ଚାଳନାରେ ସର୍ବଶ୍ରେଷ୍ଠ । ଆପଣଙ୍କ ଲାଗି ଆମେ ବିଜୟ ଲାଭ କରିବୁ-ଏଥିରେ ମୋର ଆଉ ସନ୍ଦେହ ନାହିଁ । ବହୁ ପ୍ରକାର ବ୍ୟୁହ ଚାଳନାରେ ଆପଣ ଅତ୍ୟନ୍ତ ନିପୁଣ । ଏପରି ଏକ ବ୍ୟୁହ ରଚନା କରନ୍ତୁ ଯାହାକୁ ପାଣ୍ଡବମାନେ ଆଦୌ ଭେଦ କରି ପାରିବେ ନାହିଁ ।

ଦୁର୍ଯ୍ୟୋଧନଙ୍କ କଥା ଶୁଣି ଦ୍ରୋଣାଚାର୍ଯ୍ୟ କହିଲେ, "ମୁଁ ମୋର ସମସ୍ତ ବୁଦ୍ଧି, ବଳ ଓ କୌଶଳ ପ୍ରୟୋଗ କରି ଯୁଧିଷ୍ଠିରଙ୍କୁ ବନ୍ଦୀ କରିବାକୁ ଚେଷ୍ଟା କରିବି । ମାତ୍ର ମନେରଖ, ଯେ ପର୍ଯ୍ୟନ୍ତ ଅର୍ଜୁନ ପାଖେ ପାଖେ ଥିବ, ସେ ପର୍ଯ୍ୟନ୍ତ ଯୁଧିଷ୍ଠିରଙ୍କୁ ଧରିବା ଆଦୌ ସମ୍ଭବ ନୁହେଁ । ଅର୍ଜୁନଙ୍କୁ ସମସ୍ତ ପ୍ରକାର ଯୁଦ୍ଧ କୌଶଳ ଜଣା ଅଛି । ଅଧିକନ୍ତୁ ସେ ଦେବ ଦେବ ମହାଦେବଙ୍କୁ ସନ୍ତୁଷ୍ଟ କରି ପାଶୁପତ ଅସ୍ତ୍ର ଲାଭ ମଧ୍ୟ କରିଛନ୍ତି । ଯଦି କୌଣସି ପ୍ରକାରେ ଅର୍ଜୁନଙ୍କୁ ଅଲଗା କରାଯାଇ ପାରିବ ତେବେ ଯୁଧିଷ୍ଠିରଙ୍କୁ ବାନ୍ଧି ଆଣିବା ସହଜ ହୋଇଯିବ ।"

ଦ୍ରୋଣଙ୍କ କଥା ଶୁଣି ତ୍ରିଗର୍ତ୍ତର ରାଜା ସୁଶର୍ମା ଓ ସଂସପ୍ତକ ସେନାମାନେ କହିଲେ, "ଆମେ କାଲି ଅର୍ଜୁନଙ୍କ ସହିତ ଯୁଦ୍ଧ କରି ତାଙ୍କୁ ବହୁ ଦୂରକୁ ନେଇଯିବୁ । ଠିକ୍ ସମୟ ମଧ୍ୟରେ ଆପଣ ଯୁଧିଷ୍ଠିରଙ୍କୁ ବନ୍ଦୀ କରିବା ପାଇଁ ଉପାୟ କରନ୍ତୁ ।"

ଏପରି କଥା ଶୁଣି କୌରବ ପକ୍ଷର ଲୋକେ ବହୁତ ଆନନ୍ଦିତ ହେଲେ । ସେମାନଙ୍କର ସବୁଠାରୁ ବଡ଼ ଆନନ୍ଦର କଥା ହେଲା, କାଲି ଠାରୁ କର୍ଣ୍ଣ ଯୁଦ୍ଧରେ ଯୋଗ ଦେବେ ଓ ପାଣ୍ଡବମାନଙ୍କୁ ନିଶ୍ଚୟ ହତ୍ୟା କରିବେ ।"

ପାଣ୍ଡବମାନଙ୍କ ଶିବିରରେ ମଧ୍ୟ ଆଲୋଚନା ଚାଲିଥାଏ । ଶ୍ରୀକୃଷ୍ଣ କହିଲେ, "-ପିତାମହଙ୍କ ପତନ ପରେ ଧର୍ମଯୁଦ୍ଧ ଶେଷ ହୋଇଗଲା । କୌରବମାନେ ଆଉ କୌଣସି ନୀତି ନିୟମ ମାନିବେ ନାହିଁ । କାଲିଠାରୁ ପୁଣି କର୍ଣ୍ଣ ମଧ୍ୟ ଯୁଦ୍ଧରେ ଯୋଗ ଦେଉଛନ୍ତି । ଦୁର୍ଯ୍ୟୋଧନ ଅତ୍ୟନ୍ତ ଦୁଷ୍ଟ ଓ ଗର୍ବୀ । ତା ସାଥିରେ ଶକୁନୀ ଓ କର୍ଣ୍ଣ ମିଶିଗଲେ ସେମାନେ ଯେ କୌଣସି ଅନ୍ୟାୟ କରିବାକୁ ପଛେଇବେ ନାହିଁ । ମୋର ଅନୁମାନ ଯାଡ଼କୁ ଯୁଦ୍ଧ କେବଳ ଛଳ, କପଟ ଓ ଅନ୍ୟାୟରେ ହିଁ ଚାଲିବ । ଦ୍ରୋଣ ସେନାପତି ହେବା ପରେ କିଛି ଗୋଟାଏ ଉପାୟ ସ୍ଥିର କରୁଥିବେ । ମୋ ବିଚାରରେ କାଲି ଯୁଧିଷ୍ଠିରଙ୍କୁ ରକ୍ଷା କରିବା ପାଇଁ ଉତ୍ତମ ବ୍ୟବସ୍ଥା ହେବା ଉଚିତ । ଭୀମ ଓ ଅର୍ଜୁନ ଦୁହେଁ ଧର୍ମରାଜଙ୍କ ଦୁଇ ପାଖରେ ଜଗି ରହିବେ । ଯଦି କୌଣସି କାରଣରୁ ଏମାନଙ୍କ ମଧ୍ୟରୁ କେହି ଜଣେ ରହି ନପାରନ୍ତି, ତେବେ ତାଙ୍କ ସ୍ଥାନରେ ଧୃଷ୍ଟଦ୍ୟୁମ୍ନ ଓ ସାତ୍ୟକି ରହିବେ । କୌଣସି ପ୍ରକାରେ ଯେପରି କୌରବମାନେ ଯୁଧିଷ୍ଠିରଙ୍କ ପାଖକୁ ଆସି ନପାରିବେ, ଆମକୁ ସେପରି ବ୍ୟବସ୍ଥା ନିଶ୍ଚୟ କରିବାକୁ ହେବ ।"

ଦଶମ ଦିନ ରାତିରେ ଉଭୟ ପକ୍ଷ ନିଜ ନିଜର ମନ୍ତ୍ରଣା ସାରି ପରଦିନ ସକାଳୁ ନୂଆ ଉତ୍ସାହର ସହିତ ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଗଲେ ।

## ଦ୍ରୋଣ ପର୍ବ

ଆଜି ଅତି ସୁନ୍ଦର ଭାବରେ ସଜ୍ଜା ହୋଇଥିବା ଏକ ବିରାଟ ରଥ ଉପରେ ସେନାପତି ଦ୍ରୋଣଙ୍କୁ ଦେଖି କୌରବମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେନାପତିଙ୍କ ଡାହାଣ ପାଖରେ ଦୁର୍ଯ୍ୟୋଧନ, ବାମ ପାଖରେ ଦୁଃଶାସନ ଓ ସେମାନଙ୍କ ପଛରେ ଜୟଦ୍ରଥ ଆଦି ଅନେକ ଯୋଦ୍ଧା ନିଜ ନିଜ ରଥ ଉପରେ ବସିଥାନ୍ତି । କିଛି ଦୂରରେ ଅଶ୍ୱତ୍ଥମା ଓ ମହାବୀର କର୍ଣ୍ଣ ମଧ୍ୟ ରହିଥିଲେ । ।

ପାଣ୍ଡବ ସେନାମାନଙ୍କ ଆଗରେ ଅର୍ଜୁନ ନନ୍ଦିଘୋଷ ରଥ ଉପରେ ବସି କୌରବ ସେନାମାନଙ୍କ ବ୍ୟୂହ ରଚନାକୁ ଉତ୍ତମ ରୂପେ ଲକ୍ଷ୍ୟ କରୁଥାନ୍ତି । ତାଙ୍କ ରଥ ଉପରେ କପିଧ୍ୱଜ ଶୋଭା ପାଉଥାଏ । ଅର୍ଜୁନ ସାତ୍ୟକୀଙ୍କୁ କହିଲେ, "ଦ୍ରୋଣଙ୍କର ଏ ବ୍ୟୂହ ରଚନା କେବଳ ଯୁଧିଷ୍ଠିରଙ୍କୁ ବନ୍ଦୀ କରିବା ପାଇଁ କରାଯାଇଛି । ତୁମେ ବ୍ୟୂହ ଭେଦ କରିବାରେ ଖୁବ୍ ଦକ୍ଷ । ସାବଧାନ ହୋଇ କାର୍ଯ୍ୟ କରିବ । ଆମର ପ୍ରଧାନ ସେନାପତି ଧୃଷ୍ଟଦ୍ୟୁମ୍ନଙ୍କୁ ଆଚାର୍ଯ୍ୟ ଦ୍ରୋଣ ଖୁବ୍ ଭୟ କରନ୍ତି । ତେଣୁ ସେ ଯୁଧିଷ୍ଠିରଙ୍କୁ ରକ୍ଷା କରିବା ପାଇଁ ଏଠାକୁ ଆସିଲେ ଭାରି ଭଲ ହେବ । ଯୁଧିଷ୍ଠିରଙ୍କ ଡାହାଣ ପଟେ ଭୀମ ଥିଲେ ମଧ୍ୟ ସେ କର୍ଣ୍ଣଙ୍କୁ ଅଟକାଇ ପାରିବେ ନାହିଁ । ତେଣୁ ମୋ ବିଚାରରେ ଡାହାଣ ପଟ ନିଶ୍ଚୟ ଦୁର୍ବଳ ହୋଇଯିବ । ତେଣୁ କେବଳ ତୁମରି ଉପରେ ହିଁ ମହାରାଜଙ୍କ ରକ୍ଷା ଦାୟିତ୍ୱ

ସଂପୂର୍ଣ୍ଣ ଭାବରେ ନିର୍ଭର କରୁଛି । ଯଦି ଅବସ୍ଥା ଅସମ୍ଭାଳ ହୋଇପଡ଼େ, ତେବେ ତୁମେ ଯୁଧିଷ୍ଠିରଙ୍କୁ ପଛକୁ ହଟିବାକୁ ବାଧ୍ୟ କରିବ ।"

ଉଭୟ ପକ୍ଷର ସେନାପତିମାନେ ଶଙ୍ଖ ବଜାଇ ଦେବାରୁ ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ଆଗପଟରୁ ଦ୍ରୋଣାଚାର୍ଯ୍ୟ ଓ ପଛ ପଟରୁ କର୍ଣ୍ଣ ପାଣ୍ଡବ ସୈନ୍ୟମାନଙ୍କୁ ଆକ୍ରମଣ କରିବାରେ ଲାଗିଲେ । ବେଳକୁ ବେଳ ଯୁଦ୍ଧ ପ୍ରବଳ ହୋଇ ଉଠିଲା ଓ ପାଣ୍ଡବ ସୈନ୍ୟମାନେ ବହୁ ସଂଖ୍ୟାରେ ପ୍ରାଣ ଦେଲେ । ସୁଶର୍ମାଙ୍କ ସହିତ ଲଢ଼ି ଲଢ଼ି ଅର୍ଜୁନ ବହୁ ଦୂର ପର୍ଯ୍ୟନ୍ତ ଚାଲିଗଲେ । ଏତିକି ବେଳେ ଶଲ୍ୟ ଆସି ଭୀମଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଶଲ୍ୟ ଭୀମଙ୍କ ସହିତ ଯୁଦ୍ଧ କରି ତାଙ୍କୁ ଯୁଧିଷ୍ଠିରଙ୍କ ପାଖରୁ ଅଲଗା କରିଦେବା ପାଇଁ ଲକ୍ଷ୍ୟ ରଖିଥାନ୍ତି । ଠିକ୍ ଏତିକି ବେଳେ କର୍ଣ୍ଣ ମଧ ଆକ୍ରମଣ କରିବାରେ ଲାଗିଲେ । ସାତ୍ୟକି ଆଗରୁ ସାବଧାନ ଥିଲେ । ତେଣୁ ସେ କର୍ଣ୍ଣଙ୍କ ସହିତ ପ୍ରବଳ ଯୁଦ୍ଧ କରିବାରେ ଲାଗିଲେ । ଏବେ ଯୁଧିଷ୍ଠିରଙ୍କ ପାଖରେ କେବଳ ନକୁଳ ଓ ସହଦେବ ଦୁଇ ଭାଇ ରହିଗଲେ । ଅଳ୍ପ ସମୟରେ ଶକୁନି ଆସି ସହଦେବଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ବର୍ତ୍ତମାନ କେବଳ ନକୁଳ ହିଁ ଯୁଧିଷ୍ଠିରଙ୍କ ରକ୍ଷା ଦାୟିତ୍ୱରେ ରହିଗଲେ । ଏ ସୁଯୋଗ ଦେଖି ଦ୍ରୋଣାଚାର୍ଯ୍ୟ ଅତି ବେଗରେ ଯୁଧିଷ୍ଠିରଙ୍କ ଆଡ଼କୁ ମାଡ଼ି ଆସିଲେ । ଯୁଦ୍ଧ ଏପରି ଯୋର୍‌ରେ ଚାଲିଲା ଯେ ଚାରିଆଡ଼ ଅନ୍ଧାର ଦେଖାଗଲା । ଏହି ସମୟରେ କୌରବମାନେ ଯୁଧିଷ୍ଠିରଙ୍କୁ ବନ୍ଦୀ କରାଗଲା ବୋଲି ପ୍ରଚାର କରିଦେଲେ । ଅର୍ଜୁନ ବହୁ ଦୂରକୁ ଚାଲି ଯାଇଥିଲେ । ଯୁଧିଷ୍ଠିର ବନ୍ଦୀ ହେବା ସମ୍ବାଦ ପାଇ ସେ ବିଜୁଳି ବେଗରେ ପଛକୁ ଫେରିଲେ । ଯୁଧିଷ୍ଠିରଙ୍କ ପାଖରେ ପହଞ୍ଚି ଦେଖିଲେ ସେ ଠିକ୍ ଅଛନ୍ତି ଏବଂ ନକୁଳ ଜୀବନକୁ ପାଣି ଛଡ଼ାଇ କୌରବମାନଙ୍କ ସହିତ ପ୍ରବଳ ଯୁଦ୍ଧ କରୁଛନ୍ତି । ସାତ୍ୟକୀ କର୍ଣ୍ଣଙ୍କୁ ବାଟ ଛାଡ଼ି ଦେଉନାହାନ୍ତି । ଭୀମ ଶଲ୍ୟଙ୍କ ସହିତ ଓ ସହଦେବ ଶକୁନୀଙ୍କ ସହିତ ପ୍ରାଣମୂର୍ଚ୍ଛା ଲଢ଼ାଇ କରିବାରେ ଲାଗିଛନ୍ତି । ଅର୍ଜୁନଙ୍କ ମନରେ ଅପୂର୍ବ ଆନନ୍ଦ ଜାତ ହେଲା । ସେ ବଛା ବଛା ଶରମାରି କୌରବ ସୈନ୍ୟମାନଙ୍କୁ ଲଣ୍ଡ ଭଣ୍ଡ କରି ପକାଇଲେ ।

ଅର୍ଜୁନଙ୍କୁ ଆଗରେ ଦେଖି ଦ୍ରୋଣ ଯୁଧିଷ୍ଠିରଙ୍କୁ ବାନ୍ଧି ନେବାର ଆଶା ଛାଡ଼ି ଦେଲେ । ସନ୍ଧ୍ୟା ହୋଇଯିବାରୁ ସେ ଦିନର ଯୁଦ୍ଧ ବନ୍ଦ ହୋଇଗଲା ।

ଆଜି ରାତିରେ ମଧ ଯୁଧିଷ୍ଠିରଙ୍କୁ ବନ୍ଦୀ କରିବା ପାଇଁ ଆଲୋଚନା ଚାଲିଲା । ସୁଶର୍ମା କହିଲେ, କାଲି ମୁଁ ଯୁଦ୍ଧ କରି ଅର୍ଜୁନଙ୍କୁ ବହୁ ଦୂର ପର୍ଯ୍ୟନ୍ତ ନେଇଯିବି । ତାଙ୍କର ଫେରିବା ବାଟକୁ କୌରବ ସେନା ଓ ସେନାପତିମାନଙ୍କ ଦ୍ୱାରା ବନ୍ଦ କରି ଦିଆଯିବ । ଠିକ୍ ଏହି ସମୟରେ ଦ୍ରୋଣାଚାର୍ଯ୍ୟ ଓ କର୍ଣ୍ଣ ଯୁଧିଷ୍ଠିରଙ୍କୁ ବନ୍ଦୀ କରିନେବାରେ ଅସୁବିଧା ହେବ ନାହିଁ । ମହାମତି ଦ୍ରୋଣାଚାର୍ଯ୍ୟ କହିଲେ, "ଆମ ପରି ପାଣ୍ଡବମାନେ ମଧ ବିଚାର କରିବାରେ ଲାଗିଛନ୍ତି । ସେମାନେ ଯୁଧିଷ୍ଠିରଙ୍କୁ ରକ୍ଷା କରିବା ପାଇଁ ସବୁ ପ୍ରକାର ଉଦ୍ୟମ କରି ସାରିଲେଣି । ପାଞ୍ଚାଳ ରାଜପୁତ୍ର ସତ୍ୟଜିତକୁ ପାଣ୍ଡବମାନେ ଯୁଧିଷ୍ଠିରଙ୍କ ରକ୍ଷା ଦାୟିତ୍ୱ ଦେଇ ସାରିଲେଣି । ଏହା ବ୍ୟତୀତ ସତ୍ୟଜିତ୍‌ଙ୍କୁ ସାହାଯ୍ୟ କରିବା ପାଇଁ ବହୁ ଯୋଦ୍ଧା ମଧ ନିଯୁକ୍ତ ହୋଇ ସାରିଛନ୍ତି । ଆହୁରି ସ୍ଥିର ହୋଇଛି ଯେ, ଯଦି ଯୁଧିଷ୍ଠିରଙ୍କୁ ରକ୍ଷା କରିବା ସମ୍ଭବ ନହୁଏ, ତେବେ ସେ ଯୁଦ୍ଧକ୍ଷେତ୍ର ଛାଡ଼ି ଚାଲିଯିବେ ।"

## ଦ୍ୱାଦଶ ଦିନର ଯୁଦ୍ଧ

ଆଜି କୌରବ ଓ ପାଣ୍ଡବ ସେନା ଯୁଦ୍ଧ କ୍ଷେତ୍ରକୁ ଆସିବା ମାତ୍ରେ ସୁଶର୍ମା ଅର୍ଜୁନଙ୍କୁ ଆକ୍ରମଣ କରିବା ଆରମ୍ଭ କରିଦେଲେ । ଅର୍ଜୁନ ଅସୀମ ବୀରତ୍ୱର ସହିତ ପ୍ରବଳ ଯୁଦ୍ଧ କରିବାରେ ଲାଗିଥାନ୍ତି । ଚାହୁଁ ଚାହୁଁ ତ୍ରିଗର୍ତ୍ତଙ୍କ ଅସଂଖ୍ୟ ସେନା ଯୁଦ୍ଧ ଭୂଇଁରେ ଟଳି ପଡ଼ିଲେ । କୃଷ୍ଣ ଅର୍ଜୁନଙ୍କ ରଥ ଫେରାଇ ଯୁଧିଷ୍ଠିରଙ୍କ ପାଖକୁ ନେବାକୁ ବାହାରିଲେ । ମାତ୍ର ଦେଖିଲେ ସମସ୍ତ ରାସ୍ତା ବନ୍ଦ । କୌରବ ପକ୍ଷର ହଜାର ହଜାର ସୈନ୍ୟ ତାଙ୍କ ବାଟ ଓଗାଳି ଠିଆ ହୋଇଛନ୍ତି ।

ଏପଟେ ଯୁଧିଷ୍ଠିରଙ୍କୁ ବାନ୍ଧିନେବା ପାଇଁ ଦ୍ରୋଣାଚାର୍ଯ୍ୟ ପ୍ରବଳ ଉଦ୍ୟମ କରୁଥିବା ବେଳେ ଏକାକୀ ସତ୍ୟଜିତ୍ ଅତ୍ୟନ୍ତ ସାହସର ସହିତ ତାଙ୍କୁ ବାଧା ଦେବାରେ ଲାଗିଥାନ୍ତି । ସେ ଏପରି ଏକ ଶର ମାରିଲେ ଯେ ଦ୍ରୋଣାଚାର୍ଯ୍ୟଙ୍କ ଘୋଡ଼ା ମରିଗଲେ ଓ ରଥର ପହି ଗୁଡ଼ାକ ମଡ଼ ମଡ଼ ହୋଇ ଭାଙ୍ଗିଗଲା । ଦ୍ରୋଣାଚାର୍ଯ୍ୟ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ସଂଗେ ସଂଗେ ଅର୍ଦ୍ଧଚନ୍ଦ୍ର ବାଣ ପ୍ରୟୋଗ କରି ସତ୍ୟଜିତଙ୍କୁ ମାରିଦେଲେ । ସତ୍ୟଜିତଙ୍କ ମୃତ୍ୟୁ ହୋଇଯିବା ପରେ ଯୁଧିଷ୍ଠିର ଯୁଦ୍ଧଭୂମି ଛାଡ଼ି ଚାଲିଗଲେ ।

ଏ ଘଟଣାରେ କୌରବ ସେନାମାନେ ଅତ୍ୟନ୍ତ ଉତ୍ସାହର ସହିତ ଯୁଦ୍ଧ କରିବାରେ ଲାଗିଲେ । ଅର୍ଜୁନ ଯୁଧିଷ୍ଠିରଙ୍କୁ ନଦେଖି ଚିନ୍ତିତ ହୋଇ ପଡ଼ିଲେ ଓ ସାକ୍ଷାତ ଯମରାଜାଙ୍କ ମୂର୍ତ୍ତି ଧରି କୌରବ ସେନା ସଂହାର କରିବାରେ ଲାଗିଲେ । ଦ୍ରୋଣାଚାର୍ଯ୍ୟଙ୍କ ସମସ୍ତ ଆଶା ପଣ୍ଡ ହୋଇଗଲା ଜାଣି ସେ ହତାଶ ହୋଇପଡ଼ିଲେ । ସନ୍ଧ୍ୟା ହୋଇ ଆସୁଥିବାରୁ ଆଚାର୍ଯ୍ୟ ଶଙ୍ଖନାଦ କରି ଯୁଦ୍ଧ ବନ୍ଦ ହେବାର ଯୋଜନା କରିଦେଲେ ।

ଆଜି ମଧ୍ୟ ଦୁର୍ଯ୍ୟୋଧନ ଅତ୍ୟନ୍ତ ବ୍ୟଥିତ ହୋଇ ଉଠୁଥାନ୍ତି । ରାତିରେ ଆଲୋଚନା ସଭା ବସିଥିବା ବେଳେ ସେ ଆଚାର୍ଯ୍ୟ ଦ୍ରୋଣଙ୍କୁ କହିଲେ, "ଆମର ଅସଂଖ୍ୟ ସେନା ମରିବାରେ ଲାଗିଛନ୍ତି । ଦିନକୁ ଦିନ ଆମର ଶକ୍ତି ଯେତିକି ଊଣା ହେଉଛି, ପାଣ୍ଡବମାନେ ସେତିକି ଶକ୍ତିଶାଳୀ ହୋଇ ଉଠୁଛନ୍ତି । ଯୁଧିଷ୍ଠିରଙ୍କୁ ବାନ୍ଧି ଆଣିବାର ପ୍ରତିଜ୍ଞା ଏପର୍ଯ୍ୟନ୍ତ ପୂରଣ ହୋଇପାରିନାହିଁ । ଅଥଚ ତାଙ୍କୁ ବାନ୍ଧି ଆଣିବା ଆପଣଙ୍କ ପରି ବୀର ପକ୍ଷରେ ଆଦୌ ଅସମ୍ଭବ କାର୍ଯ୍ୟ ନୁହେଁ । କେବଳ ପାଣ୍ଡବମାନଙ୍କ ପ୍ରତି ଅଧିକ ସ୍ନେହ ଥିବା ଯୋଗୁ ଆପଣ ପ୍ରତିଜ୍ଞା ପାଳନ କରିବାରେ କୁଣ୍ଠିତ ହେଉଛନ୍ତି ।"

## ଚକ୍ରବ୍ୟୂହ ଯୋଜନା

ଦୁର୍ଯ୍ୟୋଧନଙ୍କ କଥା ଶୁଣି ଦ୍ରୋଣାଚାର୍ଯ୍ୟ ଦୁଃଖିତ ହୋଇ କହିଲେ, "ମହାରାଜ, ମୁଁ ମୋର ସମସ୍ତ ଚେଷ୍ଟା କରିଛି । ମାତ୍ର ଏପର୍ଯ୍ୟନ୍ତ ସଫଳ ହୋଇ ପାରିନାହିଁ । କାରଣ ଅର୍ଜୁନ ଜଣେ ଅସାଧାରଣ ବୀର । ସେ ଆମର ବ୍ୟୂହ ରଚନା ଓ ବ୍ୟୂହ ଭେଦ କୌଶଳ ଉତ୍ତମ ରୂପେ ଜାଣେ । କିନ୍ତୁ କାଲି ମୁଁ ଚକ୍ରବ୍ୟୂହ ରଚନା କରିବାର ବ୍ୟବସ୍ଥା କରୁଛି । ଯଦି କାଲି ଅର୍ଜୁନଙ୍କୁ ଅଧିକ ଦୂର ପର୍ଯ୍ୟନ୍ତ ନେଇ ଯାଇହେବ, ତେବେ ମୁଁ ନିଶ୍ଚୟ ଯୁଧିଷ୍ଠିରଙ୍କୁ ବନ୍ଦୀ କରିଦେବି । ଚକ୍ରବ୍ୟୂହ ଭେଦ କୌଶଳ ଅର୍ଜୁନ ବ୍ୟତୀତ ଅନ୍ୟ କେହି ଜାଣନ୍ତି ନାହିଁ । ଯୁଧିଷ୍ଠିର କୌଣସି ମତେ ଚକ୍ରବ୍ୟୂହ ଭେଦ କରିପାରିବେ ନାହିଁ । ଫଳରେ ଆମ ପାଖରେ ବନ୍ଦୀ ହେବାକୁ ବାଧ୍ୟ ହେବେ ।"

## ଭଗଦତ୍ତଙ୍କ ହାତୀ

ଭଗଦତ୍ତଙ୍କ ସୁପ୍ରତିକା ନାମରେ ଏକ ବିରାଟ ଯୁଦ୍ଧ ହାତୀ ଥିଲା । ହାତୀଟା ଦେଖିବାକୁ ଏକ ବଛାଟିଆ ପାହାଡ଼ ପରି ଏବଂ ତା ଦେହରେ ଅମାପ ବଳ ଥିଲା । ବିରାଟ ଶୁଣ୍ଢ ଏବଂ ଶକ୍ତ ଗୋଡ଼ ସାହାଯ୍ୟରେ ସେ ବିପକ୍ଷ ସୈନ୍ୟମାନଙ୍କୁ ଏପରି ଆକ୍ରମଣ କରୁଥିଲା ଯେ ସୁପ୍ରତିକା ଆଗକୁ ଆସିବାକୁ ମହା ମହା ବୀରମାନେ ମଧ୍ୟ ସାହସ କରୁ ନଥିଲେ ।

ଦ୍ରୋଣ ବାରମ୍ବାର ଚେଷ୍ଟା କରି ମଧ୍ୟ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ପାରିଲେ ନାହିଁ । ଭୀମସେନ ଯୁଧିଷ୍ଠିରଙ୍କ ପାଖେ ପାଖେ ରହି ଦ୍ରୋଣଙ୍କ ସମସ୍ତ କୌଶଳ ପଣ୍ଡ କରି ଦେବାରେ ଲାଗିଲେ । ଦୁର୍ଯ୍ୟୋଧନ ଏକ ଉପାୟ ପାଞ୍ଚି ନିଜେ କିଛି କରିବାକୁ ସ୍ଥିର କଲେ । ସେ ଦଳେ ଯୁଦ୍ଧ ହାତୀଙ୍କ ସାହାଯ୍ୟ ନେଇ ଭୀମଙ୍କୁ ଆକ୍ରମଣ କରିବା ଆରମ୍ଭ କରିଦେଲେ । ମହାବୀର ଭୀମ ନାନା ଅସ୍ତ୍ର ପ୍ରୟୋଗ କରି ହାତୀମାନଙ୍କୁ ଅସ୍ତବ୍ୟସ୍ତ କରିବା ସଂଗେ ସଂଗେ ଦୁର୍ଯ୍ୟୋଧନଙ୍କୁ ମଧ୍ୟ ଘାଇଲା କରି ପକାଇଲେ । ମହାରାଜା ଦୁର୍ଯ୍ୟୋଧନଙ୍କ ଅବସ୍ଥା ଦେଖି ମ୍ଳେଚ୍ଛ ଦେଶର ରାଜା ଅଙ୍ଗ ଭୀମଙ୍କୁ ଆକ୍ରମଣ କରିବା ପାଇଁ ଆଗେଇ ଆସିଲେ । ତାଙ୍କର ମଧ୍ୟ ଏକ ବିରାଟ ହାତୀ

ଥିଲା । ଭୀମ ତୁହାକୁ ତୁହା ତୀକ୍ଷ୍ଣ ଶରମାନ ପ୍ରୟୋଗ କରି ହାତୀ ସହିତ ଅଙ୍ଗ ରାଜାଙ୍କୁ ଗଡ଼ାଇ ଦେଲେ । ଭୀମଙ୍କର ସେ ଉଗ୍ରମୂର୍ତ୍ତି ଓ ଅପୂର୍ବ ଯୁଦ୍ଧ କୌଶଳ ଦେଖି କୌରବ ସୈନ୍ୟମାନେ ଛତ୍ରଭଙ୍ଗ ଦେବାକୁ ଲାଗିଲେ ।

କୌରବ ସେନାଙ୍କ ଶୋଚନୀୟ ଅବସ୍ଥା ଲକ୍ଷ୍ୟକରି ବୀର ଭଗଦତ୍ତ ତୁରନ୍ତ ଆଗେଇ ଆସିଲେ । ସୁପ୍ରତିକା ନିମିଷକ ମଧ୍ୟରେ ଭୀମଙ୍କ ରଥକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲା । ଭୀମ ରଥରୁ ଡେଇଁ ପଡ଼ି କୌଣସି ମତେ ନିଜକୁ ବଞ୍ଚାଇ ଦେଲେ ସିନା ସୁପ୍ରତିକା ହାବୁଡ଼ରୁ ରକ୍ଷା ପାଇବା ଉପାୟ ନଥିଲା । ସୁପ୍ରତିକା ତାଙ୍କୁ ଶୁଣ୍ଢରେ ଭିଡ଼ିଆଣି ପାଦରେ ଦଳି ଦେବାକୁ ବାହାରିଲା ବେଳକୁ ଭୀମ କୌଶଳରେ ତା ପେଟତଳେ ଛପି ଗଲେ ! ହାତୀଟା ତାଙ୍କୁ ଏପଟ ସେପଟ ହୋଇ ଖୋଜିବାରେ ଲାଗିଲା । ମାତ୍ର ସେ ଅତି ସାବଧାନରେ ପେଟ ତଳେ ଲୁଚି ଯାଉଥାନ୍ତି । ଏତିକି ବେଳେ ଭୀମ ସୁପ୍ରତିକାର ସନ୍ଧି ସ୍ଥାନମାନଙ୍କରେ ଅସ୍ତ୍ର ସାହାଯ୍ୟରେ ଆଘାତ କରିବାକୁ ଆରମ୍ଭ କରିଦେଲେ । ସୁପ୍ରତିକା ଅସ୍ତ ବ୍ୟସ୍ତ ହୋଇ ଉଠିଲା । ସେ କୌଣସି ମତେ ଭୀମଙ୍କୁ ଭିଡ଼ି ଆଣିବା ପାଇଁ ଚେଷ୍ଟା କରିବା ଦେଖି ଭୀମ ତା ତାଳଗଛ ପରି ମୋଟା ଗୋଡ଼କୁ ଜାବୁଡ଼ି ଧରି ରହି ଗଲେ । ସୁପ୍ରତିକା ଭୟଙ୍କର ଗର୍ଜନ କରି ଭୀମଙ୍କୁ ଧରି ପକାଇବା ପାଇଁ ପ୍ରାଣପଣେ ଉଦ୍ୟମ କରି ମଧ୍ୟ ପାରିଲା ନାହିଁ । ଭୀମ ଗୋଡ଼କୁ ଛାଡ଼ି ପୁଣି ତା ପେଟ ତଳକୁ ଆସିଗଲେ ଓ ପୂର୍ବାପେକ୍ଷା ଅଧିକ ଯୋରରେ ଆଘାତ କରିବାରେ ଲାଗିଲେ । ଭୀମଙ୍କ ଆଘାତ ସହ୍ୟ କରି ନପାରି ହାତୀଟା ପାଗଳଙ୍କ ପରି ଘୂରିବାରେ ଲାଗିଲା ।

ଭୀମଙ୍କୁ ନଦେଖି ପାଣ୍ଡବ ପକ୍ଷଙ୍କ ମନରେ ନାନା ସନ୍ଦେହ ହେଲା । ସେମାନେ ଭାବିଲେ ସୁପ୍ରିତିକା ନିଶ୍ଚୟ ଭୀମଙ୍କୁ ତା ବିରାଟ ପାଦତଳେ ଦଳି ଦେଇ ମାଟିରେ ମିଶାଇ ଦେଇଛି । ଭୀମ ମରିଗଲେ ବୋଲି ଲୋକେ ଚିତ୍କାର କରିବାରେ ଲାଗିଲେ ।

ଏ ସଂବାଦ ପାଇଁ ଯୁଧିଷ୍ଠିର ଅତ୍ୟନ୍ତ ବିଚଳିତ ହୋଇ ଉଠିଲେ ଓ ସମସ୍ତ ସୈନ୍ୟଙ୍କୁ ଭଗଦତ୍ତଙ୍କୁ ଆକ୍ରମଣ କରିବା ପାଇଁ ଆଦେଶ ଦେଲେ । ଦଶାର୍ଣ୍ଣ ଦେଶର ରାଜା ପାଣ୍ଡବମାନଙ୍କ ପକ୍ଷରେ ଯୁଦ୍ଧ କରୁଥିଲେ । ଯୁଧିଷ୍ଠିରଙ୍କ ଆଦେଶ ପାଇ ସେ ତାଙ୍କର ବିରାଟ ହାତୀକୁ ନେଇ ଭଗଦତ୍ତଙ୍କୁ ଆକ୍ରମଣ କଲେ । କିଛି ସମୟ ଘମାଘୋଟ ଲଢ଼ାଇ ଚାଲିଲା । ଏତିକି ବେଳେ ସୁପ୍ରତିକା ଦାଶାର୍ଣ୍ଣଙ୍କ ହାତୀ ପେଟକୁ ଲକ୍ଷ୍ୟ କରି ଏପରି ଭୁଷି ଦେଲା ଯେ ତାର ବଡ଼ ବଡ଼ ଦାନ୍ତ ଦୁଇଟା ଦଶାର୍ଣ୍ଣଙ୍କ ହାତୀ ପେଟରେ ସଂପୂର୍ଣ୍ଣ ଗଳିଗଲା । ଏହି ସୁଯୋଗରେ ଭୀମ ସୁପ୍ରତିକାର ପେଟ ତଳୁ ବାହାର ବିଜୁଳି ବେଗରେ ପଳାଇ ଗଲେ । ଭୀମ ବଞ୍ଚିଥିବା ଦେଖି ପାଣ୍ଡବମାନେ ହର୍ଷ ଧ୍ୱନୀ କରିବାରେ ଲାଗିଲେ ।

ଏଥର ପାଣ୍ଡବ ପକ୍ଷର ବଳ ବଢ଼ିଗଲା । ସେମାନେ ନୂତନ ଉତ୍ସାହରେ ଭଗଦତ୍ତଙ୍କୁ ଚାରିପଟୁ ଘେରିଗଲେ । ବୀର ଭଗଦତ୍ତ ଅସୀମ ସାହସର ସହିତ ଶତ୍ରୁ ସୈନ୍ୟମାନଙ୍କୁ ଅଟକାଇ ଦେଉଥିଲେ । ବୀର ସାତ୍ୟକୀଙ୍କୁ ଆଗରେ ଦେଖି ଭଗଦତ୍ତ ତାଙ୍କ ଆଗକୁ ମାଡ଼ି ଆସିଲେ । ଚାହୁଁ ଚାହୁଁ ସୁପ୍ରତିକା ତା'ର ପ୍ରକାଣ୍ଡ ଶୁଣ୍ଢ ସାହାଯ୍ୟରେ ସାତ୍ୟକିଙ୍କ ରଥକୁ ଫୁଲ ପରି ଟେକି ଦେଇ ଉପରକୁ ଫିଙ୍ଗି ଦେଲା । ରଥ ତଳେ କଚାଡ଼ି ହୋଇ ପଡ଼ିବା ପୂର୍ବରୁ ସାତ୍ୟକି ଡେଇଁ ପଡ଼ି ବଞ୍ଚିଗଲେ ।

ଭଗଦତ୍ତଙ୍କ ହାତୀ ପାଣ୍ଡବ ସୈନ୍ୟମାନଙ୍କୁ ଦଳି ଚକଟି ଆଗକୁ ଆଗକୁ ମାଡ଼ି ଚାଲିଥାଏ । କେହି ତା ଆଗରେ ଠିଆ ହେବାର ସାହସ କରୁନଥାନ୍ତି ।

ସୁପ୍ରତିକା ପେଟତଳୁ କୌଶଳରେ ଖସି ଆସିବା ପରେ ଭୀମ ବହୁ ଅସ୍ତ୍ର ଶସ୍ତ୍ର ସହିତ ଏକ ନୂତନ ରଥରେ ବସି ଭଗଦତ୍ତଙ୍କୁ ଆକ୍ରମଣ କଲେ । ଭୀମଙ୍କୁ ଦେଖିବା ମାତ୍ରେ ସୁପ୍ରତିକା ରାଗରେ ଗର୍ଜନ କରି ତାଙ୍କୁ ଆକ୍ରମଣ କରିବାରେ ଲାଗିଲା ।

ଅର୍ଜୁନ ସେହି ସମୟରେ ସଂଶପ୍ତକ ସେନାଙ୍କ ସହିତ ଯୁଦ୍ଧ କରୁଥିଲେ । ବାରମ୍ବାର ଭଗଦତ୍ତଙ୍କ ହାତୀର ଗର୍ଜନ ଶୁଣି ସେ କୃଷ୍ଣଙ୍କୁ କହିଲେ, "ସଖା, ଆମେ ସଂଶପ୍ତକମାନଙ୍କୁ ଉଚିତ ଶିକ୍ଷାଦେଇସାରିଲେଣି । ବର୍ତ୍ତମାନ ଭଗଦତ୍ତ ଆମ ସୈନ୍ୟମାନଙ୍କୁ

ଛିନ୍ନଛତ୍ର କରି ପକାଇଲେଣି । ବିଶେଷ କରି ତାଙ୍କର ସେଇ ବିରାଟକାୟ ହାତୀଟା କେତେ ଯେ ସୈନ୍ୟଙ୍କୁ ମାରି ସାରିଲାଣି ତା'ର ହିସାବ ନଥିବ । ଅଧିକ ବିଳମ୍ବ କଲେ ଆମେ ବହୁତ ପସ୍ତାଇବା ।"

ଭଗଦତ୍ତଙ୍କ ହାତୀ ଯେଉଁଠି ଥିଲା ଶ୍ରୀକୃଷ୍ଣ ସେଠାକୁ ରଥ ବାହିନେଲେ । ରଥ ପବନ ବେଗରେ ଯାଉଥାଏ । ଅଧାବାଟରେ ସୁଶର୍ମା ଓ ତାଙ୍କ ଭାଇମାନେ ରଥ ଅଟକାଇ କହିଲେ, "ଅର୍ଜୁନ, ଆମେ ତୁମ ସହିତ ଯୁଦ୍ଧ କରିବାକୁ ଆସିଛୁ । ବହୁ ସମୟ ଖୋଜିବା ପରେ ତୁମକୁ ପାଇଛୁ । ଶୀଘ୍ର ପ୍ରସ୍ତୁତ ହୋଇଯାଅ । ଅର୍ଜୁନଙ୍କ ମନ ଭଗଦତ୍ତଙ୍କ ପାଖରେ । କିପରି ସେଠାରେ ଚଞ୍ଚଳ ପହଞ୍ଚିବେ, ସେଥିପାଇଁ ସେ ଖୁବ୍ ବ୍ୟସ୍ତ ହେଉଥାନ୍ତି । ହଠାତ୍ ଏ ଯୁଦ୍ଧ ଡାକରା ଶୁଣି ମନେ ମନେ ବିଚାରିଲେ, "ମୋତେ ଆଉ କିଛି ସମୟ ଅଟକାଇ ଦେବା ଉଦ୍ଦେଶ୍ୟରେ କୌରବ ପକ୍ଷର ଏହା ଅନ୍ୟ ଏକ କୌଶଳ ।" ଏହି ପରି ଭାବୁଥିବା ସମୟରେ ଗୋଟିଏ ଶର ଅର୍ଜୁନ ଓ ଆଉ ଗୋଟିଏ ଶର ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି ଆସୁଥିବାର ଦେଖାଗଲା । ଅର୍ଜୁନ ଆଉ ଭାବିବେ କଅଣ ? ସଂଗେ ସଂଗେ ଏକ ଶକ୍ତିଶାଳୀ ଶର ପ୍ରୟୋଗ କରି ସୁଶର୍ମାଙ୍କ ଶରକୁ ଖଣ୍ଡ ଖଣ୍ଡ କରିଦେଲେ । ସୁଶର୍ମା ଓ ତାଙ୍କ ଭାଇମାନେ ପ୍ରାଣ ଭୟରେ ରଣକ୍ଷେତ୍ର ଛାଡ଼ି ପଳାଇବାରେ ଲାଗିଲେ ।

ବାଟ ସଫା ହୋଇଗଲା । ଆଗରେ ଆଉ କେହି ନଥିବା ଦେଖି ଅର୍ଜୁନ ଶୀଘ୍ର ଭଗଦତ୍ତଙ୍କ ନିକଟରେ ପହଞ୍ଚିଗଲେ । ଦେଖିଲେ ଭଗଦତ୍ତ ଧ୍ୱଂସର ଏକ ତାଣ୍ଡବଲୀଳା ସୃଷ୍ଟି କରି ସାରିଲେଣି । ପାଣ୍ଡବ ସେନାମାନେ ଇତଃସ୍ତତ ହୋଇ ଯାଉଛନ୍ତି । ଅର୍ଜୁନଙ୍କ ରଥକୁ ଦେଖିବା ମାତ୍ରେ ପାଣ୍ଡବ ସୈନ୍ୟମାନେ ପୁଣି ନୂତନ ଉତ୍ସାହରେ ମାତି ଉଠିଲେ । ଭଗଦତ୍ତ ଅର୍ଜୁନଙ୍କୁ ଲକ୍ଷ୍ୟ କରି ତୁହାକୁ ତୁହା ଶରବୃଷ୍ଟି କରିବାରେ ଲାଗିଥାନ୍ତି । ଅର୍ଜୁନ ଅତି ଚତୁରତାର ସହିତ ବାଣଗୁଡ଼ିକ କାଟି ଦେଉଥିବାର ଦେଖି ଭଗଦତ୍ତଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ କିଛି ସମୟ ନୀରବ ହୋଇ ରହିଗଲେ । ଏହି ସମୟରେ ଅର୍ଜୁନ ଏକ ତୀକ୍ଷ୍ଣ ଶର ମାରି ସୁପ୍ରତିକା ଉପରେ ପଡ଼ିଥିବା ଅତି ସୁଦୃଢ଼ ସାଞ୍ଜୁକୁ ଚିରି ଖଣ୍ଡ ଖଣ୍ଡ କରିଦେଲେ । ଏଥର ହାତୀ ଉପରକୁ ଗୋଟାକ ପରେ ଗୋଟାଏ ଶର ମାରି ତା'କୁ ଅସ୍ତବ୍ୟସ୍ତ କରି ପକାଇଲେ । ଭଗଦତ୍ତ ଦେଖିଲେ ସୁପ୍ରତିକାର ସମୟ ଶେଷ ହୋଇ ଆସୁଛି । ସେ ଆଉ ଅଧିକ ସମୟ ବଞ୍ଚି ରହି ପାରିବ ନାହିଁ । ତେଣୁ ଅତି କ୍ରୋଧରେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି ସେ ଏକ ଶକ୍ତିଶାଳୀ ଶର ପ୍ରୟୋଗ କରିଦେଲେ । ଅର୍ଜୁନ କି ଛାଡ଼ିବା ବ୍ୟକ୍ତି,- ସେ ଅଧବାଟରେ ସେହି ଶରଟିକୁ ଅକାମୀ କରିଦେଲେ । ଭଗଦତ୍ତଙ୍କ କ୍ରୋଧ ଆହୁରି ବଢ଼ିଗଲା । ସେ ଅନ୍ୟ ଏକ ଶର ଅର୍ଜୁନଙ୍କ ମୁଣ୍ଡକୁ ଲକ୍ଷ୍ୟ କରି ମାରିଦେଲେ । ଶରଟା ଅର୍ଜୁନଙ୍କ ପଗଡ଼ିକୁ ଟିକିଏ ନୁଆଇଁ ଦେଲା ।

ପଗଡ଼ିକୁ ସଜାଡ଼ି ଦେଇ ଅର୍ଜୁନ ଉଚ୍ଚ ସ୍ୱରରେ କହିଲେ, "ଭଗଦତ୍ତ, ସମୟ ହୋଇଗଲା । ଆଉ ବିଳମ୍ବ କରନାହିଁ । ଭଲ କରି ଶେଷ ଥର ପାଇଁ ଏ ପୃଥିବୀକୁ ଦେଖିନିଅ । ନଚେତ୍ ଆଉ ଏ ସୁଯୋଗ ମିଳିବ ନାହିଁ । ସ୍ୱର୍ଗର କବାଟ ମେଲା ହୋଇଗଲାଣି । ତୁମକୁ ଅତିଶୀଘ୍ର ସେଠାକୁ ଯିବାକୁ ହେବ ।" ଭଗଦତ୍ତ ଅତି ବୃଦ୍ଧ ହୋଇଯାଇଥିଲେ । ତାଙ୍କ ଦେହର ଚମ ସବୁ ଲୋଚା ଲୋଚା ହୋଇ ତଳକୁ ଓହଳି ପଡ଼ିଥାଏ । ଲମ୍ବା ଲମ୍ବା ଦାଢ଼ୀ ଓ ନିଶରେ ସେ ଗୋଟାଏ ବୁଢ଼ା ସିଂହପରି ଦେଖାଯାଉଥିଲେ । ଏ ବୃଦ୍ଧ ବୟସରେ ମଧ୍ୟ ତାଙ୍କ ଶରୀରରେ ଅମାପ ଶକ୍ତି ଭରି ରହିଥିଲା । ଅର୍ଜୁନଙ୍କ କଟୁ କଥାରେ ତାଙ୍କ ଆଖିରୁ ନିଆଁ ବାହାରିଲା ପରି ଲାଗିଲା ଓ ସର୍ବାଙ୍ଗ ଥରି ଉଠିଲା । ସେ ଅର୍ଜୁନଙ୍କୁ ଲକ୍ଷ୍ୟ କରି ଏକ ବୈଷ୍ଣବାସ୍ତ୍ର ପ୍ରୟୋଗ କରିଦେଲେ । ବୈଷ୍ଣବାସ୍ତ୍ରକୁ ଅଟକାଇବା ଅର୍ଜୁନଙ୍କ ଶକ୍ତିର ବାହାରେ । ଏଥିରେ ଅର୍ଜୁନଙ୍କ ମୃତ୍ୟୁ ସୁନିଶ୍ଚିତ ଜାଣି ଶ୍ରୀକୃଷ୍ଣ ତୁରନ୍ତ ଆସି ଅର୍ଜୁନଙ୍କ ଆଗରେ ଠିଆ ହୋଇଗଲେ । ଅସ୍ତ୍ରଟି ଶ୍ରୀକୃଷ୍ଣଙ୍କ ଗଳାରେ ପଦକ ପରି ଶୋଭା ପାଇଲା । ବିଷ୍ଣୁଙ୍କ ଅସ୍ତ୍ର ବିଷ୍ଣୁଙ୍କ ପାଖକୁ ଚାଲି ଆସିଲା ।

ଅର୍ଜୁନ ଆଶ୍ଚର୍ଯ୍ୟ ହୋଇ କହିଲେ, "ନାରାୟଣ, ଆପଣ କୌଣସି ଅସ୍ତ୍ର ଧାରଣ ନକରି କେବଳ ମୋ ରଥର ସାରଥୀ ହେବେ ଓ ଯୁଦ୍ଧ ମୁଁ କରିବି- ଏହା ହିଁ କଥା ଥିଲା । ତେବେ କାହିଁକି ଆପଣ ବୈଷ୍ଣବାସ୍ତ୍ରକୁ ଅକାମୀ କରିଦେଲେ ?"

ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ସଖା, ତୁମେ ବୁଝି ପାରିବ ନାହିଁ । ଯଦି ଏ ଅସ୍ତ୍ର ତୁମକୁ ସ୍ପର୍ଶ କରିଥାନ୍ତା, ତେବେ ତୁମର ନିଶ୍ଚୟ ମୃତ୍ୟୁ ହୋଇଥାନ୍ତା । ପ୍ରକୃତ ପକ୍ଷେ ଅସ୍ତ୍ରଟି ମୋ ନିଜର । ମୋ ଅସ୍ତ୍ର ମୋର ବା କି କ୍ଷତି କରିବ ? ତେଣୁ ସେ ମୋ ପାଖକୁ ଫେରି ଆସିଛି । ଏଥିରେ ମୁଁ ଅସ୍ତ୍ର ଧରି ଯୁଦ୍ଧ କଲି ବୋଲି ତୁମେ କହୁଛ କିପରି ?" ଅର୍ଜୁନ କଥାଟିର ଅର୍ଥ ବୁଝିଗଲେ । ସେ ଆଉ ଅଧିକ ବିଳମ୍ବ ନକରି ସୁପ୍ରତିକା ମୁଣ୍ଡକୁ ଲକ୍ଷ୍ୟ କରି ଏକ ଶର ମାରି ଦେଲେ । ସାପ ବିକଳରେ ଗାତରେ ପଶିଲା ପରି ଶରଟା ସର ସର ହୋଇ ହାତୀ ମୁଣ୍ଡରେ ଗଳିଗଲା । ଆଗରୁ ଦେହରେ ବିଭିନ୍ନ ସ୍ଥାନରେ ଶର ଗଳିଥିଲେ ମଧ୍ୟ ସୁପ୍ରତିକା ତଳେ ପଡ଼ି ନଥିଲା । ମାତ୍ର ମୁଣ୍ଡରେ ଆଘାତ ପାଇବାରୁ ସେ ଅଳ୍ପ ସମୟ ମଧ୍ୟରେ ଭୂଇଁରେ କଚାଡ଼ି ହୋଇ ପଡ଼ିଲା ଓ ତା'ର ବିରାଟ ଦାନ୍ତ ଦୁଇଟା ମାଟିରେ ଗଳିଗଲା ।

ସୁପ୍ରତିକା ମରିବାରେ ଅର୍ଜୁନ ଯେତିକି ଦୁଃଖିତ ହେଲେ ଭଗଦତ୍ତ ଏ ପର୍ଯ୍ୟନ୍ତ ବଞ୍ଚି ରହିଥିବାରୁ ତା'ଠାରୁ ଅଧିକ ଲଜ୍ଜିତ ହେଲେ । ସେ ଆଉ ଅପେକ୍ଷା ନକରି ଏକ ଶକ୍ତିଶାଳୀ ଶର ଦ୍ୱାରା ଭଗଦତ୍ତଙ୍କ ଛାତି ଫୁଟାଇ ଦେଲେ । ବୃଦ୍ଧ ବୀର ଭଗଦତ୍ତ ଗଛ କାଟିଲା ପରି ତଳେ ପଡ଼ିଯାଇ ଚିତ୍କାର କରିବାରେ ଲାଗିଲେ । ଅଳ୍ପ ସମୟ ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଭଗଦତ୍ତ ଓ ସୁପ୍ରତିକାର ମୃତ୍ୟୁ କୌରବ ପକ୍ଷେ ମହାବିପଦର କାରଣ ହୋଇ ଉଠିଲା । ସମସ୍ତେ ହାହାକାର କରିବାକୁ ଲାଗିଲେ । ଶକୁନୀଙ୍କ ଦୁଇ ପୁଅ ବୃଷ ଓ ଅଚଳ ଅତ୍ୟନ୍ତ ସାହସର ସହିତ ଅର୍ଜୁନଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ସେମାନେ ବା ଅର୍ଜୁନଙ୍କ ପରି ମହାବୀରଙ୍କ ସହିତ କେତେ ସମୟ ଯୁଦ୍ଧ କରନ୍ତେ । ସୁଅ ମୁହଁରେ କୁଟା ଖଣ୍ଡ ପରି ଦୁଇଭାଇ ଅର୍ଜୁନଙ୍କ ଶରରେ ପ୍ରାଣ ଦେଲେ ।

ପୁଅ ଦୁହିଁଙ୍କର ଶୋଚନୀୟ ମୃତ୍ୟୁ ଦେଖି ଶକୁନି ଅତ୍ୟନ୍ତ କ୍ରୋଧରେ ଅର୍ଜୁନଙ୍କୁ ଆକ୍ରମଣ କଲେ । କିଛି ସମୟ ଯୁଦ୍ଧ ଚାଲିଲା । ଶକୁନୀ ତାଙ୍କର ସମସ୍ତ ଯୁଦ୍ଧ କୌଶଳ ପ୍ରୟୋଗ କରି ଯୁଦ୍ଧ କରୁଥାନ୍ତି । ବଛା ବଛା ଶରମାନ ପ୍ରୟୋଗ ଦ୍ୱାରା ଅର୍ଜୁନଙ୍କୁ ଘାଇଲା କରି ପକାଇବା ପାଇଁ ଚେଷ୍ଟା କରୁଥାନ୍ତି । ମାତ୍ର ଶକୁନିଙ୍କ ସମସ୍ତ ଶରକୁ ଅର୍ଜୁନ ଅଧବାଟରୁ କାଟି ଫିଙ୍ଗି ଦେଉଥାନ୍ତି । ଅର୍ଜୁନ ଅଳ୍ପ ହସି କହିଲେ, "-ମାମୁଁ, ଏଇଟା ଯୁଦ୍ଧକ୍ଷେତ୍ର । କୁରୁସଭାର ପଶାଖେଳ ନୁହେଁ ଯେ-କପଟ କରି ସବୁ ବାଜି ଜିଣିଯିବ । ଆଉ ଶର ଥିଲେ ବାହାର କର । ନଚେତ୍ ମୋ ହାତରେ ଜୀବନ ଦେବା ପାଇଁ ପ୍ରସ୍ତୁତ ହୁଅ । ସବୁ ଅନର୍ଥର ମୂଳ ତୁମେ ହେଲେ ମଧ୍ୟ ଏତେ ଶୀଘ୍ର ତୁମକୁ ହତ୍ୟାକରିବା ମୋର ଇଚ୍ଛା ନଥିଲା । ଯଦି ତୁମେ ପଛକୁ ନହଟିବ, ତେବେ ମରିବା ପାଇଁ ପ୍ରସ୍ତୁତ ହୁଅ ।"

ଅର୍ଜୁନ ଗାଣ୍ଡୀବ ଉଠାଇବା ଦେଖି ଶକୁନିଙ୍କ ପିଳେହୀ ପାଣି ହୋଇଗଲା । ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଥରିବାରେ ଲାଗିଲା । ଅର୍ଜୁନ ଧନୁରେ ଶର ଯୋଖିବା ପୂର୍ବରୁ ସେ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାଇଗଲେ ।

ପାଣ୍ଡବ ସୈନ୍ୟମାନେ ମହା ଉତ୍ସାହର ସହିତ ଦ୍ରୋଣଙ୍କ ସୈନ୍ୟମାନଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଚାହୁଁ ଚାହୁଁ ଅସୁମାରି କୌରବ ସୈନ୍ୟଙ୍କ ଦେହ ଭୂଇଁରେ ଲୋଟିଗଲା । ସନ୍ଧ୍ୟା ହୋଇ ଆସିବାରୁ ଦ୍ୱାଦଶ ଦିନର ଯୁଦ୍ଧ ବନ୍ଦ ହୋଇଗଲା ।

କୌରବ ଶିବିରରେ ଦୁଃଖ ଓ ପାଣ୍ଡବ ଶିବିରରେ ଆନନ୍ଦ ଉତ୍ସାହର ଢେଉ ଖେଳିବାରେ ଲାଗିଲା । ସମସ୍ତେ ଅର୍ଜୁନଙ୍କର ଅଶେଷ ପ୍ରଶଂସା ଗାନ କରି ନାଚିବାରେ ଲାଗିଲେ ।

## ତ୍ରୟୋଦଶ ଦିନର ଯୁଦ୍ଧ

ଗତ ରାତିରୁ ସ୍ଥିର କରାଯାଇଥିଲା, ଅର୍ଜୁନଙ୍କୁ ବହୁ ଦୂରକୁ ନେଇଗଲେ ଦ୍ରୋଣ ଯୁଧିଷ୍ଠିରଙ୍କୁ ନିଶ୍ଚୟ ବନ୍ଦୀ କରିନେବେ । ସେହି ଅନୁସାରେ ଆଜି ତ୍ରିଗର୍ତ୍ତ ଓ ସଂଶପ୍ତକ ସେନାମାନେ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । ଅର୍ଜୁନ ତାଙ୍କ ସହିତ ଯୁଦ୍ଧ କରି

କରି ବହୁ ଦୂର ପର୍ଯ୍ୟନ୍ତ ଆଗକୁ ଚାଲିଗଲେ । ଏହି ସମୟରେ କୌରବଙ୍କ ଦୂତ ଯୁଧିଷ୍ଠିରଙ୍କୁ ଚକ୍ରବ୍ୟୂହ ଭେଦ କରି ଯୁଦ୍ଧ କରିବାକୁ ନିମନ୍ତ୍ରଣ ଦେଇଗଲା । ଏ ସଂବାଦ ପାଇ ଯୁଧିଷ୍ଠିର ବିଚଳିତ ହୋଇଉଠିଲେ । ଅର୍ଜୁନ ଓ ଶ୍ରୀକୃଷ୍ଣ ତାଙ୍କ ପାଖରୁ କାହିଁ କେତେ ଦୂରରେ । ସେ ବ୍ୟାକୁଳ ହୋଇ ଭୀମ, ସାତ୍ୟକି, ଧୃଷ୍ଟଦ୍ୟୁମ୍ନ ଆଦି ବୀରମାନଙ୍କୁ ଚକ୍ରବ୍ୟୂହ ଭେଦିବାର କୌଶଳ ସମ୍ପର୍କରେ ପଚାରିଲେ । ମାତ୍ର କେହି ଜଣେ ହେଲେ ତା' ଭିତରକୁ ପଶିବାର କୌଶଳ ଜାଣନ୍ତି ନାହିଁ ବୋଲି କହିଲେ । ଯୁଧିଷ୍ଠିରଙ୍କ ମନ ଅସ୍ଥିର ହୋଇଉଠିଲା ।

ଏହି ସମୟରେ ଅଭିମନ୍ୟୁ ଯୁଧିଷ୍ଠିରଙ୍କୁ ପ୍ରଣାମ କରି ପଚାରିଲା, "ଆପଣ ଏପରି ଚିନ୍ତିତ ଦେଖାଯାଉଛନ୍ତି କାହିଁକି ?" ଯୁଧିଷ୍ଠିର ଚକ୍ରବ୍ୟୂହ ଭେଦ କରିବାକୁ ଅସିଥିବା ଖବର ବିଷୟରେ କହିଲେ । ଏକଥା ଶୁଣିବା ପରେ ଅଭିମନ୍ୟୁ କହିଲେ, "ବାବା, ମୁଁ ମା'ଙ୍କ ଗର୍ଭରେ ଥିଲି । ଦିନେ ରାତିରେ ପିତା ମୋ ମାଆଙ୍କୁ ଚକ୍ରବ୍ୟୂହ ଭେଦ କରିବାର କୌଶଳମାନ ବର୍ଣ୍ଣନା କରୁଥାନ୍ତି । ମୁଁ ଗର୍ଭରେ ଥାଇ ସବୁ ଶୁଣୁଥାଏ । ବ୍ୟୂହର ଛଅ ଦ୍ୱାର ପର୍ଯ୍ୟନ୍ତ ଭେଦ କରିବା କୌଶଳ ମୁଁ ଶୁଣିଛି । ତା' ପରେ ମାଆଙ୍କୁ ନିଦ ଲାଗିଗଲା । ଆଗକୁ କଅଣ ସବୁ ହେବ ସେ ସବୁ ଶୁଣିପାରିଲି ନାହିଁ । ସେ ଯାହା ହେଉ ଯୁଦ୍ଧର ନିମନ୍ତ୍ରଣ ଆପଣ ରକ୍ଷା କରନ୍ତୁ । ମୁଁ ସେଥିପାଇଁ ପ୍ରସ୍ତୁତ ଅଛି ।"

ଯୁଧିଷ୍ଠିରଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଆନନ୍ଦରେ ଅଧୀର ହୋଇ ଉଠିଲେ ଓ ଅଭିମନ୍ୟୁଙ୍କୁ କୋଳ କରି ବହୁ ଆଶୀର୍ବାଦ ଦେଲେ । ଏଥର ସେ ଚକ୍ରବ୍ୟୁହ ଭେଦ କରିବାର ନିମନ୍ତ୍ରଣ ଗ୍ରହଣ କରିନେଲେ । ଯୁବକ ଅଭିମନ୍ୟୁଙ୍କ ମୁଣ୍ଡରେ ସେନାପତିର ଶାଢ଼ୀ ବନ୍ଧାଗଲା । ନିଜ ପୁଅ ସେନାପତି ହୋଇଛି ଶୁଣି ସୁଭଦ୍ରାଙ୍କ ରୋମ ଟାଙ୍କୁରି ଉଠିଲା । ସେ ଆନନ୍ଦରେ ଗଦ୍ ଗଦ୍ ହୋଇ ପୁତ୍ର ଅଭିମନ୍ୟୁକୁ ନାନା ଅସ୍ତ୍ରଶସ୍ତ୍ରରେ ସଜାଇବାରେ ଲାଗିଲେ । କୋଳ କରି ତାଙ୍କ ମୁହଁରେ ବାରମ୍ବାର ଚୁମ୍ବନ ଦେବାରେ ଲାଗିଲେ । ମାଆଙ୍କଠାରୁ ବିଦାୟ ନେଇ ଅଭିମନ୍ୟୁ ସ୍ତ୍ରୀ ଉତ୍ତରାଙ୍କ ନିକଟକୁ ଗଲେ । ଉତ୍ତରା ଅଭିମନ୍ୟୁଙ୍କ ପାଦ ଧରି ଅତି ବିକଳ ହୋଇ କହିଲେ, "ପ୍ରଭୁ, ଗତ ରାତିରେ ମୁଁ ବଡ଼ ଅଶୁଭ ସ୍ୱପ୍ନ ଦେଖିଛି । ଆପଣ ଯୁଦ୍ଧକୁ ଯାଆନ୍ତୁ ନାହିଁ ।"

ଅଭିମନ୍ୟୁ ଉତ୍ତରାଙ୍କୁ ବୋଧ ଦେଇ କହିଲେ, "ମୋର ପିତା କେଡ଼େ ବଡ଼ ଶକ୍ତିଶାଳୀ ବୀର ସେ କଥା ତୁମେ ବହୁ ପୂର୍ବରୁ ଜାଣିଛ । ତାଙ୍କ ପୁଅ ହୋଇ ଯୁଦ୍ଧକୁ ଭୟ କଲେ ସେ ମୋତେ ଭୀରୁ କାପୁରୁଷ ବୋଲି କହି ଘୃଣା କରିବେ । ମାମୁଁ ଶ୍ରୀକୃଷ୍ଣ ମଧ୍ୟ ମୋର ଏ ଦୁର୍ବଳତାକୁ ଆଦୌ ପସନ୍ଦ କରିବେ ନାହିଁ । ମୁଁ ଅର୍ଜୁନଙ୍କ ପୁତ୍ର ଓ ସ୍ୱୟଂ ଶ୍ରୀକୃଷ୍ଣଙ୍କ ଭଣଜା । ତୁମେ ଚିନ୍ତା କର ନାହିଁ ଉତ୍ତରା-ମୁଁ ନିଶ୍ଚୟ ଯୁଦ୍ଧ ଜୟ କରି ହିଁ ଫେରିବି । ବିଜୟ ଲାଭ ପରେ ପୁଣି ଅତ୍ୟନ୍ତ ଆନନ୍ଦରେ ତୁମକୁ ଆଲିଙ୍ଗନ କରିବି । ଯଦି ବ୍ୟୁହ ଭେଦ କରି ନପାରିଲି ତଥାପି ମଧ୍ୟ ମୋର ବୀରତ୍ୱ ଓ ସାହସ କଥା ଶୁଣି ତୁମ ଛାତି ଗର୍ବରେ ଫୁଲି ଉଠିବ ।"

ଅଭିମନ୍ୟୁଙ୍କ ପାଇଁ ରଥ ପ୍ରସ୍ତୁତ ଥିଲା । ସେ ଅତି ଦ୍ରୁତ ବେଗରେ ଯୁଦ୍ଧକ୍ଷେତ୍ର ଆଡ଼କୁ ଅଗ୍ରସର ହେଲେ । ପାଣ୍ଡବ ସେନାମାନେ ଜୟଧ୍ୱନି କରିବାରେ ଲାଗିଲେ । ଯୁଧିଷ୍ଠିର, ଭୀମ, ନକୁଳ, ସହଦେବ, ସାତ୍ୟକି, ଧୃଷ୍ଟଦ୍ୟୁମ୍ନ ଆଦି ବୀରଗଣ ଅଭିମନ୍ୟୁଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ପାଖେ ପାଖେ ରହିଗଲେ । ସେମାନେ କୁହାକୁହି ହେଲେ ଏ କିପ୍ରକାର ବ୍ୟୂହରେ ବାବା ! ଏହାର ପ୍ରବେଶ ଦ୍ୱାର କାହିଁ ? କିପରି ତା ଭିତରକୁ ଯିବାକୁ ହେବ, କିଛି ତ ବୁଝି ହେଉ ନାହିଁ । ଅଭିମନ୍ୟୁ ଭୀମଙ୍କୁ କହିଲେ, "ଦେଖନ୍ତୁ, ମହାରାଜା ଜୟଦ୍ରଥ ଯେଉଁଠି ଜଗି ରହିଛନ୍ତି ସେଇଟା ହିଁ ବ୍ୟୁହର ପ୍ରଥମ ଦ୍ୱାର ଅଟେ । ଆପଣ ମୋ ସାଥୀରେ ଆସନ୍ତୁ । ମୁଁ ପ୍ରଥମ ଦ୍ୱାର ଭେଦ କରିବାକୁ ଯାଉଛି ।" ଏହା କହି ଅଭିମନ୍ୟୁ ବାଣ ପରେ ବାଣ ବର୍ଷା କଲେ ଓ ବ୍ୟୂହ ଭିତରେ ପ୍ରବେଶକଲେ । ମାତ୍ର ଭୀମଙ୍କ ରଥ ଆଉ ଆଗକୁ ଯାଇ ପାରିଲା ନାହିଁ । ଜୟଦ୍ରଥ ତାଙ୍କୁ ଅଟକାଇ ଦେଲେ । ଅନ୍ୟ ପାଣ୍ଡବ ବୀରମାନେ ପ୍ରବଳ ଚେଷ୍ଟା କରି ମଧ୍ୟ ଭିତରକୁ ଯାଇପାରିଲେ ନାହିଁ ।

ଅଭିମନ୍ୟୁ ବ୍ୟୂହର ଦ୍ୱିତୀୟ ଦ୍ୱାର ନିକଟରେ ପହଞ୍ଚିଗଲେ । ଏଠାରେ ଦ୍ରୋଣାଚାର୍ଯ୍ୟ ଜଗି ରହିଥିଲେ । ଦ୍ରୋଣ ଧନୁ ଧରିବା ପୂର୍ବରୁ ଅଭିମନ୍ୟୁ ତାଙ୍କ ଧନୁକୁ କାଟି ଅତ୍ୟନ୍ତ ବେଗରେ ବ୍ୟୂହ ମଧ୍ୟରେ ଆଗକୁ ମାଡ଼ିଗଲେ । ତୃତୀୟ ଦ୍ୱାରରେ ଥିଲେ ମହାବୀର

କର୍ଣ୍ଣ । ଅଭିମନ୍ୟୁଙ୍କୁ ଦେଖି କର୍ଣ୍ଣଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଭାବିଲେ ଜୟଦ୍ରଥ ଓ ଦ୍ରୋଣାଚାର୍ଯ୍ୟଙ୍କ ପରି ମହାବୀରଙ୍କୁ ହରାଇ ସାମାନ୍ୟ ବାଳକଟାଏ ମୋ ପର୍ଯ୍ୟନ୍ତ କିପରି ଆସିପାରିଲା ? ଅଭିମନ୍ୟୁ ଜାଣନ୍ତି କର୍ଣ୍ଣ ହିଁ ତାଙ୍କ ପିତା ଅର୍ଜୁନଙ୍କର ସବୁଠାରୁ ବଡ଼ ପ୍ରତିଦ୍ୱନ୍ଦୀ । ସେ ବିଳମ୍ବ ନକରି ଏପରି ତୀକ୍ଷ୍ଣ ବାଣ ଛାଡ଼ିଲେ ଯେ କର୍ଣ୍ଣ ସଂଗେ ସଂଗେ ଅଚେତ ହୋଇପଡ଼ିଲେ । ଏହ ସୁଯୋଗରେ ଅଭିମନ୍ୟୁଙ୍କ ସାରଥୀ ତୃତୀୟ ଦ୍ୱାର ପାର ହୋଇ ଆଗକୁ ଚାଲିଗଲେ ।

ଚତୁର୍ଥ ଦ୍ୱାରରେ ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥମା ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଥିଲେ । ସେ ଅଭିମନ୍ୟୁଙ୍କ ରଥ ଦେଖିବା ମାତ୍ରେ ଭୀଷଣ ବେଗରେ ଶର ମାରି ଅଟକାଇବାରେ ଲାଗିଲେ । ଅନେକ ସମୟ ପର୍ଯ୍ୟନ୍ତ ଦୁଇ ମହାରଥୀଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ଲାଗି ରହିଲା । ଶେଷକୁ ଅଭିମନ୍ୟୁ ଅତ୍ୟନ୍ତ କୌଶଳର ସହିତ ଚତୁର୍ଥ ଦ୍ୱାର ଅତିକ୍ରମ କରି ପଞ୍ଚମ ଦ୍ୱାର ଆଡ଼କୁ ଅଗ୍ରସର ହେଲେ । ଦୁର୍ଯ୍ୟୋଧନ ଅତ୍ୟନ୍ତ ବିଚଳିତ ହୋଇ କର୍ଣ୍ଣଙ୍କୁ କହିଲେ, "ଏହିପରି ଭାବରେ ଅଭିମନ୍ୟୁ ସପ୍ତମଦ୍ୱାର ପର୍ଯ୍ୟନ୍ତ ଯାଇ ଆନନ୍ଦରେ ଫେରି ଆସିବ । ଆମେ କେହି କିଛି କରି ପାରିବା ନାହିଁ । ଏଥିରେ ପାଣ୍ଡବମାନେ ହିଁ ଜୟଲାଭ କରିବେ ।" କର୍ଣ୍ଣ କହିଲେ, "ଛୋଟ ସାପ ସିନା, ବିଷ ତା'ର ଅତି ଉତ୍କଟ । ମୁଁ ଏକୁଟିଆ ତା'ର କୌଣସି କ୍ଷତି କରି ପାରିବି ନାହିଁ । ମୋ ମତରେ ସାତ ଦ୍ୱାରରେ ଥିବା ସାତଜଣ ଯାକ ରଥୀ ମିଶି ତାକୁ ମାରିବାକୁ ହେବ । ଚକ୍ରବ୍ୟୁହ ଭିତରେ ନ୍ୟାୟ ଅନ୍ୟାୟର ପ୍ରଶ୍ନ ଉଠୁ ନାହିଁ । କେବଳ ଏଇ ଅସାଧାରଣ ବୀର ଯୁବକର ମୃତ୍ୟୁ ହିଁ ଆମ ନିକଟରେ ମୁଖ୍ୟ ହୋଇପଡ଼ିଛି । ତାହା ହିଁ ବର୍ତ୍ତମାନ ଧର୍ମ ।" କର୍ଣ୍ଣଙ୍କ କଥା ଶୁଣି ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଲେ । ସବୁ ରଥୀ ଓ ଦୁର୍ଯ୍ୟୋଧନଙ୍କ ପୁତ୍ର ଲକ୍ଷ୍ମଣକୁମାର ଆସି ସପ୍ତମ ଦ୍ୱାରଠାରେ ଏକାଠି ହୋଇଗଲେ । ସେତେବେଳକୁ ଅଭିମନ୍ୟୁ ଷଷ୍ଠଦ୍ୱାର ପାର ହୋଇ ସାରିଥାନ୍ତି । ସପ୍ତମ ଦ୍ୱାରରେ ପହଞ୍ଚିବା ପୂର୍ବରୁ ସାତଜଣ ଯାକ ବୀର ଅଭିମନ୍ୟୁକୁ ଘେରିଗଲେ । ଏପରି ଅବସ୍ଥା ଦେଖି ସାରଥୀ ଅଭିମନ୍ୟୁଙ୍କୁ କହିଲେ, "ଏ ଅନ୍ୟାୟ ଯୁଦ୍ଧ । ଦ୍ରୋଣ, ଅଶ୍ୱତ୍ଥମା, କର୍ଣ୍ଣଙ୍କ ପରି ମହାବୀରମାନେ ଅନ୍ୟାୟ ଯୁଦ୍ଧ କରିବାକୁ ଟିକିଏ ହେଲେ ଭୟ କରୁନାହାନ୍ତି । ମୁଁ ଯେଉଁଠୁ ଯେଉଁବାଟ ଦେଇ ଏ ପର୍ଯ୍ୟନ୍ତ ଆସିଛି, ସେଇ ବାଟ ଦେଇ ମୋ ରଥକୁ ଏପରି ବେଗରେ ନେଇଯିବି ଯେ ସବୁ ରଥୀଯାକ ମିଶିଲେ ମଧ ମୋ ରଥକୁ କୌଣସି ମତେ କ୍ଷତି କରି ପାରିବେ ନାହିଁ । ସପ୍ତମ ଦ୍ୱାରକୁ ଆଉ ଯାଆନ୍ତୁ ନାହିଁ । କାଲି ପିତା ଅର୍ଜୁନଙ୍କ ସାଥୀରେ ଆସି ଏ କୁଳାଙ୍ଗାରମାନଙ୍କୁ ଗୋଟି ଗୋଟି କରି ସଂହାର କରିବେ ।"

ଅଭିମନ୍ୟୁ ସହଜରେ ଡରିଯିବା ଯୁବକ ନୁହନ୍ତି । ସେ ସାରଥୀଙ୍କୁ ଦମ୍ଭ ଦେଇ କହିଲେ, "ତୁମେ ବ୍ୟାକୁଳ ହୁଅ ନାହିଁ, ସାରଥୀ । ମୁଁ ଯୁଦ୍ଧରେ ପଛକୁ ଫେରିବା ଶିଖି ନାହିଁ । ଅତି ବେଗରେ ରଥ ଚଳାଅ । ସାତରଥୀଯାକ ଆଜି ଅର୍ଜୁନ ପୁତ୍ରର ଯୁଦ୍ଧ କୌଶଳ ଦେଖି ନିଅନ୍ତୁ ।" ଏତିକିବେଳେ କର୍ଣ୍ଣ ଗର୍ଜନ କରି କହିଲେ, "ବିଳମ୍ବ ନକରି ସମସ୍ତେ ଏକାବେଳେକେ ଅଭିମନ୍ୟୁକୁ ଆକ୍ରମଣ କର । ଦେଖିବା ତା ଦେହରେ କେତେ ଶକ୍ତି ଅଛି ।" ଚାହୁଁ ଚାହୁଁ ଚାରିଦିଗରୁ ଶର ସବୁ ସାଇଁ ସାଇଁ ଶବ୍ଦ କରି ମାଡ଼ି ଆସିଲା । ଅଭିମନ୍ୟୁଙ୍କ ରଣକୌଶଳ ଅତି ଅଦ୍ଭୁତ ଥିଲା । ତାଙ୍କ ରଥ ସାରଥୀମାନଙ୍କ ଆଗରେ ଚକ୍ରପରି ଘୂରିବାରେ ଲାଗିଲା ଓ ସବୁ ରଥୀଙ୍କ ଦେହ ଅଭିମନ୍ୟୁଙ୍କ ଶରମାଡ଼ରେ ରକ୍ତ ଜର୍ଜର ହୋଇ ଉଠିଲା । ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ଦ୍ରୋଣାଚାର୍ଯ୍ୟ କହିଲେ, "ଅଭିମନ୍ୟୁ ପିନ୍ଧିଥିବା କବଚ ଦେହରେ କୌଣସି ଶସ୍ତ୍ର ଭେଦି ପାରିବ ନାହିଁ । ତେଣୁ କେବଳ ତା ମୁଣ୍ଡକୁ ଲକ୍ଷ୍ୟ କରି ଶର ପ୍ରୟୋଗ କରିବାକୁ ହେବ ଓ ଅତିଶୀଘ୍ର ତା ଧନୁକୁ କାଟି ଖଣ୍ଡ ଖଣ୍ଡ କରି ଦେବାକୁ ହେବ ।"

ପ୍ରବଳ ଆକ୍ରମଣ ଆରମ୍ଭ ହୋଇଗଲା । ଅଳ୍ପ ସମୟରେ ଅଭିମନ୍ୟୁଙ୍କ ସାରଥୀ ଓ ଘୋଡ଼ାମାନେ ମରିଯିବାରୁ ଅନ୍ୟ ଉପାୟ ନପାଇ ସେ ରଥରୁ ଡେଇଁପଡ଼ିଲେ । କର୍ଣ୍ଣ ଓ ଦ୍ରୋଣାଚାର୍ଯ୍ୟ ରଥକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ପକାଇଲେ । ଅଭିମନ୍ୟୁ ଖଣ୍ଡାଧରି ଆଗେଇ ଯାଉଥିବା ବେଳେ ଅଶ୍ୱତ୍ଥମା ତାଙ୍କ ଖଣ୍ଡାକୁ କାଟି ଖଣ୍ଡ ଖଣ୍ଡ କରିଦେଲେ । ମହାବୀର ଅଭିମନ୍ୟୁ ରଥ ଶୂନ୍ୟ ଓ ଅସ୍ତ୍ର ଶୂନ୍ୟ ହୋଇ ମଧ୍ୟ ସାହସ ହରାଇ ନଥିଲେ । ସେ ଭାଙ୍ଗି ଯାଇଥିବା ରଥର ଗୋଟାଏ ଚକକୁ ହାତରେ ବିଜୁଳି ବେଗରେ ବୁଲାଇ ଶତ୍ରୁମାନଙ୍କୁ



ଚକ୍ରବ୍ୟୂହରେ ଅଭିମନ୍ୟୁ

ଅଟକାଇବାରେ ଲାଗିଲେ । ଅଶ୍ୱତ୍ଥମା ଶରମାରି ରଥ ଚକକୁ ମଧ୍ୟ କାଟିଦେଲେ । ବର୍ତ୍ତମାନ ଅଭିମନ୍ୟୁଙ୍କ ହାତରେ କିଛି ହେଲେ ଅସ୍ତ୍ର ନଥିଲା । ଏହି ସୁଯୋଗରେ ଦୁର୍ଯ୍ୟୋଧନଙ୍କ ପୁଅ ଲକ୍ଷ୍ମଣ କୁମାର ବୀର ଅଭିମନ୍ୟୁଙ୍କ ମୁଣ୍ଡକୁ ଗଦାରେ ପିଟି ଦେଲା । ଅଭିମନ୍ୟୁ ଗଦା ମାଡ଼ରେ ତଳେ ପଡ଼ିଗଲେ । ମାତ୍ର ସଂଗେ ସଂଗେ ସେଇ ଗଦାକୁ ଛଡ଼ାଇ ଲକ୍ଷ୍ମଣ କୁମାରଙ୍କ ମୁଣ୍ଡରେ ଆଘାତ କଲେ । ଲକ୍ଷ୍ମଣ କୁମାର ଓ ଅଭିମନ୍ୟୁ ଏକାବେଳେକେ ଅଚେତା ହୋଇ ତଳେ ପଡ଼ିଗଲେ ଓ ଅଳ୍ପ ସମୟ ପରେ ଦୁହେଁ ପ୍ରାଣତ୍ୟାଗ କଲେ । ଏହି ସମୟରେ ଯୁଦ୍ଧ ବନ୍ଦ ହେବାର ଶଙ୍ଖ ଧ୍ୱନୀ ଶୁଣାଗଲା । ଅଭିମନ୍ୟୁଙ୍କ ମୃତ୍ୟୁ ଘଟଣାରେ କୌରବ ଶିବିରରେ ଯେତିକି ଆନନ୍ଦ ପ୍ରକାଶ ପାଉଥିଲା, ଲକ୍ଷ୍ମଣ କୁମାରଙ୍କ ମୃତ୍ୟୁରେ ସେତିକି ଦୁଃଖ ମଧ୍ୟ ଖେଳିଯାଉଥିଲା ।

ଅନେକଙ୍କ ମତରେ ଦୁଃଶାସନଙ୍କ ପୁଅ ଗଦା ପ୍ରହାର କରି ଅଭିମନ୍ୟୁଙ୍କୁ ହତ୍ୟା କରିଥିଲା । ଲକ୍ଷ୍ମଣ କୁମାର ଅଭିମନ୍ୟୁଙ୍କ ସହିତ ଯୁଦ୍ଧ କରିନାହାନ୍ତି କିମ୍ବା ଅଭିମନ୍ୟୁଙ୍କ ସହିତ ମରିନାହାନ୍ତି ।

ଅଭିମନ୍ୟୁଙ୍କ ମୃତ୍ୟୁ ସଂବାଦରେ ପାଣ୍ଡବମାନଙ୍କ ମଧ୍ୟରେ ଶୋକର ଛାୟା ଖେଳିଗଲା । କିନ୍ତୁ ଅଭିମନ୍ୟୁଙ୍କ ବୀରତ୍ୱ, ପରାକ୍ରମ, ସାହସ ଓ ଅପୂର୍ବ ରଣ-କୌଶଳର ଅମର କାହାଣୀ ସବୁଦିନ ପାଇଁ ରହିଗଲା ।

ଯୁଧିଷ୍ଠିର ବ୍ୟାକୁଳ ହୋଇ କହିଲେ, "-ବାବୁ, ତୁ ପରା ଦ୍ରୋଣଙ୍କୁ ହଟାଇ ଦେଇଥିଲୁ । ଜୟଦ୍ରଥ, ଅଶ୍ୱତ୍ଥମା, କର୍ଣ୍ଣ ଆଦି ମହାବୀରମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିବା ମୁଁ ନିଜେ ଦେଖିଛି । ସତେ କ'ଣ ତୁ କରି ଯାଉଛୁ ? ହାୟ, ଆମେ ରାଜ୍ୟ ଲାଭ କରି କଅଣ କରିବୁ ? ଆଉ କାହାପାଇଁ ଏ ଲୋଭ । କେଉଁ ଆଶାରେ ଏ ଅଜସ୍ର ଜନକ୍ଷୟ ? ଅର୍ଜୁନ ଫେରି ଆସିଲେ ମୁଁ ତାଙ୍କୁ କଅଣ କହିବି ? ହାୟ, ରାଜ୍ୟ ଲାଭର ସାମାନ୍ୟ ସ୍ୱାର୍ଥ ପାଇଁ ମୁଁ ମୋର ଅମୂଲ୍ୟ ରତ୍ନକୁ ମରଣ ମୁହଁକୁ ଠେଲି ଦେଲି । ଅର୍ଜୁନ ନଥିବା

ବେଳେ ମୁଁ ମୋ ଜୀବନ ଦେଇ ଯାହାକୁ ରକ୍ଷା କରିଥାଆନ୍ତି, ଆଜି ମୁଁ ତା'ର ହତ୍ୟାର କାରଣ ହୋଇଛି ।" ସୁଭଦ୍ରା ଓ ଉତ୍ତରାର ଅବସ୍ଥା କଅଣ ହେବ । ତାଙ୍କୁ କିଏ ବୋଧ ହେଦବ । କିଏ ଦେବ ମାଆ କୋଳରେ ପୁଅ ? କିଏ ଦେବ ଉତ୍ତରା ମଥାରେ ସୋହାଗ ସିନ୍ଦୁର ?

ଅଭିମନ୍ୟୁଙ୍କ ମୃତ୍ୟୁ ସଂବାଦ ପାଇ ସୁଭଦ୍ରା ଓ ଉତ୍ତରା ଅତ୍ୟନ୍ତ ଶୋକବିହ୍ୱଳ ହୋଇ ପଡ଼ିଲେ । ସେତେବେଳେ ସେମାନଙ୍କ ହୃଦୟ ବେଦନା ବର୍ଣ୍ଣନା କରାଯାଇନପାରେ । ସେମାନେ କାନ୍ଦି କାନ୍ଦି ଚକ୍ରବ୍ୟୁହର ସପ୍ତଦ୍ୱାର ପର୍ଯ୍ୟନ୍ତ ଚାଲିଗଲେ । ଲକ୍ଷ ଲକ୍ଷ କୌରବ ସୈନ୍ୟଙ୍କ ମୃତ ଦେହ ମଧ୍ୟରେ ଅଭିମନ୍ୟୁଙ୍କ ଶବ ଚନ୍ଦ୍ର ପରି ଶୋଭା ପାଉଥାଏ । ମୁହଁର ଜ୍ୟୋତି ଟିକିଏ ହେଲେ ମଳିନ ହୋଇ ନଥାଏ । ଉତ୍ତରା ଆଉ ସମ୍ଭାଳି ନପାରି ଅଭିମନ୍ୟୁଙ୍କ ପାଦତଳେ ଲୋଟିଗଲେ ଓ ସଂଗେ ସଂଗେ ତାଙ୍କର ଚେତା ବୁଡ଼ିଗଲା । ସୁଭଦ୍ରା ନିଜ ବୀର ପୁତ୍ରର ମସ୍ତକକୁ କୋଳରେ ଥୋଇ ଅତି ବିକଳ କ୍ରନ୍ଦନ କରିବାରେ ଲାଗିଲେ । ଉତ୍ତରା ଅଭିମନ୍ୟୁ ଚିତାରେ ଝାସ ଦେବା ପାଇଁ ସ୍ଥିର କରି ସୁଭଦ୍ରାଙ୍କୁ ଜଣାଇ ଦେଲେ । ମାତ୍ର ସେ ଗର୍ଭବତୀ ଥିବାରୁ ସୁଭଦ୍ରା ତାଙ୍କୁ ସେପରି କରିବାକୁ ବାରଣ କଲେ ।

ସେଦିନ ତ୍ରିଗର୍ତ୍ତ ଓ ସଂଶପ୍ତକ ସୈନ୍ୟମାନଙ୍କୁ ସଂପୂର୍ଣ୍ଣ ସଂହାର କରି ଅର୍ଜୁନ ଶିବିରକୁ ଫେରି ଆସିଲେ । ଫେରିଲା ବେଳେ ତାଙ୍କର ଏକମାତ୍ର ଚିନ୍ତା ଥାଏ, କାଳେ କୌରବମାନେ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ନେଇଯାଇଥିବେ । ଶିବିରରେ ଅଭିମନ୍ୟୁର ମୃତ୍ୟୁ ସମ୍ବାଦ ପାଇ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲେ । ଶ୍ରୀକୃଷ୍ଣ ବହୁ ବୁଝାଇ କହିଲେ, "ପାର୍ଥ, ଅଭିମନ୍ୟୁ ପରି ବୀର ପୁତ୍ର ଆଉ ଜନ୍ମ ହେବେ ନାହିଁ । ସେପରି ବୀର ଯୁଦ୍ଧ କରି ସ୍ୱର୍ଗକୁ ଯିବା ଏକ ଶ୍ରେଷ୍ଠ ଗୌରବ । ସେଥିପାଇଁ ଶୋକ କରିବା ଉଚିତ ନୁହେଁ । ଅଭିମନ୍ୟୁ ମୃତ୍ୟୁର କାରଣ ଦୁର୍ଯ୍ୟୋଧନର ଭିଣୋଇ ଜୟଦ୍ରଥ । ସେ ମହାଦେବଙ୍କୁ ସନ୍ତୁଷ୍ଟ କରି ପାଣ୍ଡବମାନଙ୍କୁ ଜୟ କରିବା ପାଇଁ ବର ପ୍ରାର୍ଥନା କରିଥିଲା । ଶିବ କହିଲେ, "ଅର୍ଜୁନଙ୍କ ବ୍ୟତୀତ ଅନ୍ୟ ଚାରିପାଣ୍ଡବ ତୁମକୁ ଯୁଦ୍ଧରେ ଜୟ କରି ପାରିବେ ନାହିଁ । ଏହା ଜାଣି ଚକ୍ରବ୍ୟୁହର ପ୍ରଥମ ଦ୍ୱାରରେ ଜୟଦ୍ରଥକୁ ରଖାଯାଇଥିଲା । ଯାହା ଫଳରେ ଭୀମ ଆଦି ଅନ୍ୟ ପାଣ୍ଡବମାନେ କେହି ହେଲେ ଚକ୍ରବ୍ୟୁହ ଭିତରକୁ ପ୍ରବେଶ କରି ପାରିଲେ ନାହିଁ ।"

ଜୟଦ୍ରଥ ବୀରପୁତ୍ର ଅଭିମନ୍ୟୁର ମୃତ୍ୟୁ ପାଇଁ ଦାୟୀ ହୋଇଥିବାରୁ ଅର୍ଜୁନ ପ୍ରତିଜ୍ଞା କରି କହିଲେ, "ଯଦି କାଲି ସୂର୍ଯ୍ୟାସ୍ତ ପୂର୍ବରୁ ମୁଁ ଜୟଦ୍ରଥକୁ ବଧ କରିନପାରେ, ତେବେ ଜ୍ୱଳନ୍ତ ଅଗ୍ନିରେ ଝାସ ଦେବି ।"

ଅର୍ଜୁନଙ୍କ ପ୍ରତିଜ୍ଞା ଚାରିଆଡ଼େ ଖେଳିଗଲା । ଜୟଦ୍ରଥ ଭୟରେ ଥରିବାକୁ ଲାଗିଲେ । ଦୁର୍ଯ୍ୟୋଧନ ତାଙ୍କୁ ସାହସ ଦେଇ କହିଲେ, "ଚିନ୍ତା ନାହିଁ, କାଲି ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ମୁଁ ତୁମକୁ ଲୁଚାଇ ରଖିବି" । ଦୁହେଁ ଦ୍ରୋଣଙ୍କ ନିକଟକୁ ଗଲେ । ଆଗରୁ ଦ୍ରୋଣ ଅର୍ଜୁନଙ୍କ ପ୍ରତିଜ୍ଞା କଥା ଶୁଣି ସାରିଥିଲେ । ସେ ଦୁର୍ଯ୍ୟୋଧନଙ୍କୁ କହିଲେ, "ଏଇ ସାମାନ୍ୟ କଥା ପାଇଁ ବ୍ୟସ୍ତ ହେବାର କିଛି ନାହିଁ । ମୁଁ କାଲି ଏପରି ଏକ ବ୍ୟୁହ ରଚନା କରିବି, ମାରିବା ତ ଦୂରର କଥା, ଅର୍ଜୁନ ଜୟଦ୍ରଥଙ୍କୁ ଦେଖି ମଧ୍ୟ ପାରିବ ନାହିଁ ।" ଦୁର୍ଯ୍ୟୋଧନ ଓ ଜୟଦ୍ରଥଙ୍କ ମନ ବୁଝିଲା ନାହିଁ । ସେ କର୍ଣ୍ଣଙ୍କ ନିକଟକୁ ଗଲେ । କର୍ଣ୍ଣ ମଧ୍ୟ ତାଙ୍କୁ ନାନା ପ୍ରକାର ସାହସ ଦେଇ ନିଶ୍ଚିନ୍ତ ରହିବାକୁ ପରାମର୍ଶ ଦେଲେ ।

ଅର୍ଜୁନ ହଠାତ୍ ଏପରି ଏକ ଭୟଙ୍କର ପ୍ରତିଜ୍ଞା କରିଦେବାରୁ ପାଣ୍ଡବମାନେ ଖୁବ୍ ଚିନ୍ତିତ ହୋଇ ପଡ଼ିଲେ । ଶ୍ରୀକୃଷ୍ଣ ସମସ୍ତଙ୍କୁ ବୁଝାଇ ସାନ୍ତ୍ୱନା ଦେଲେ ।

## ଚତୁର୍ଦ୍ଦଶ ଦିବସର ଯୁଦ୍ଧ

ଆଜି ଦ୍ରୋଣାଚାର୍ଯ୍ୟ ଜୟଦ୍ରଥଙ୍କୁ ନିରାପଦରେ ରଖିବା ପାଇଁ ଏକ ଅପୂର୍ବ ବ୍ୟୂହ ରଚନା କଲେ । ଏପଟେ ଏକ ହଜାର ରଥ, ଏକ ଶହ ହାତୀ, ତିନି ହଜାର ଘୋଡ଼ ସବାର, ପନ୍ଦର ଶହ ଧନୁ ଧରିଥିବା ଯୋଦ୍ଧା ଓ ଦଶହଜାର ପଦାତିକ ନିଯୁକ୍ତ ହୋଇଥିଲେ ।

କୌରବ ପକ୍ଷର କର୍ଣ୍ଣ, ଶଲ୍ୟ, ଭୁରିଶ୍ରବା ଓ ଅଶ୍ୱତ୍ଥମା ଆଦି ମହାବୀରମମାନଙ୍କୁ ଏପରି ଭାବରେ ସଜାଇ ଦେଲେ, ଯେପରି ଜୟଦ୍ରଥଙ୍କ ପାଖକୁ ଯିବାକୁ କେହି ସାହସ ମଧ୍ୟ କରି ପାରିବେ ନାହିଁ ।

ଅର୍ଜୁନ ଆଜି ବହୁତ ବ୍ୟଗ୍ର । ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥକୁ ହତ୍ୟା କରିବା ପାଇଁ ପ୍ରତିଜ୍ଞା କରି ସାରିଛନ୍ତି । ସେ ରଥ ଚଳାଇ ଦ୍ରୋଣଙ୍କ ଆଗକୁ ଚାଲି ଯିବାକୁ ଉଦ୍ୟମ କରିବାରୁ ଦ୍ରୋଣ ତାଙ୍କୁ ଅଟକାଇ କହିଲେ, "ଅର୍ଜୁନ, ପ୍ରଥମେ ମୋତେ ପରାସ୍ତ କର । ତା ପରେ ଅଗ୍ରସର ହେବ ।"

ଅର୍ଜୁନ ଅତି ଦୁଃଖରେ କହିଲେ, "ଆପଣ ମୋର ଗୁରୁ, ଶତ୍ରୁ ନୁହନ୍ତି । ଅଯଥା ବାଟରେ ଅଟକାଇ ବାଧା ଦିଅନ୍ତୁ ନାହିଁ ।"

ଦ୍ରୋଣ ଅର୍ଜୁନଙ୍କ କୌଣସି କଥାକୁ କାନ ନଦେଇ ଶର ପରେ ଶର ମାରି ଚାରିଆଡ଼ ଅନ୍ଧାର କରିଦେଲେ । ଶ୍ରୀକୃଷ୍ଣ କୌଶଳକ୍ରମେ ରଥ ନେଇ ଯିବାକୁ ଉଦ୍ୟମ କରୁଥିବା ବେଳେ ଦ୍ରୋଣ କହିଲେ, "ଏ ଅସମ୍ଭବ, ମୁଁ ଆଗରେ ଅଛି । ମୋତେ ପରାସ୍ତ ନକରିବା ପର୍ଯ୍ୟନ୍ତ ତୁମ ରଥର ଚକ ଗଡ଼ି ପାରିବ ନାହିଁ ।"

ଅର୍ଜୁନ ଅନ୍ୟ ଉପାୟ ନଦେଖି କହିଲେ, "-ଆଚାର୍ଯ୍ୟ ମହାଶୟ, ଆପଣ ମୋର ସବୁଠାରୁ ଅଧିକ ପୂଜନୀୟ ବ୍ୟକ୍ତି । ମୁଁ ଆପଣଙ୍କ ବିରୁଦ୍ଧରେ ଅସ୍ତ୍ର ଧରିବାକୁ କିପରି ସାହସ କରିବି ? କହିବା ବାହୁଲ୍ୟ ଯେ ସମଗ୍ର ପୃଥିବୀରେ ଆପଣଙ୍କୁ ପରାସ୍ତ କରିବା ପାଇଁ ବୀର ଜନ୍ମ ହୋଇ ନାହାନ୍ତି । ଏଣୁ ଦୟା କରି ମୋ ପ୍ରତିଜ୍ଞା ପୂରଣରେ ବାଧା ଦିଅନ୍ତୁ ନାହିଁ ।" ଏହି ପରି କହି କହି ସେ ଦ୍ରୋଣଙ୍କ ଆଗକୁ ଚାଲିଗଲେ । ହଠାତ୍ ଭୋଜ ରାଜାଙ୍କ ସୈନ୍ୟମାନେ ଆସି ଅର୍ଜୁନଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । କୃତବର୍ମା ଓ ସୁଦକ୍ଷିଣାଙ୍କୁ ଅଳ୍ପ ସମୟ ମଧ୍ୟରେ ପରାସ୍ତ କରି ଅର୍ଜୁନ ଆଗକୁ ମାଡ଼ି ଯାଉଥିବା ଦେଖି ମହାବୀର ଶ୍ରୁତାୟୁଧ ଅର୍ଜୁନଙ୍କ ସହିତ ପ୍ରବଳ ଯୁଦ୍ଧ ଆରମ୍ଭ କରିଦେଲେ । ଜୟଦ୍ରଥଙ୍କ ପାଖରେ ପହଞ୍ଚିବା ବିଳମ୍ବ ହେବା ଦେଖି ଅର୍ଜୁନ ଅତି ତୀକ୍ଷ୍ଣ ଶର ମାନ ମାରି ଶ୍ରୁତାୟୁଧଙ୍କ ରଥର ଘୋଡ଼ାମାନଙ୍କୁ ମାରି ରଥକୁ ଖଣ୍ଡ ଖଣ୍ଡ କରିଦେଲେ । ଶ୍ରୁତାୟୁଧଙ୍କ ରାଗର ସୀମା ରହିଲା ନାହିଁ । ସେ ତାଙ୍କର ମହାଶକ୍ତିଶାଳୀ ବିଚିତ୍ର ଗଦାଟିକୁ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟ କରି ଫିଙ୍ଗିଦେଲେ । ଆଶ୍ଚର୍ଯ୍ୟର କଥା-ଗଦାଟି ଶ୍ରୀକୃଷ୍ଣଙ୍କ ଛାତିରେ ବାଜି ଫେରିଆସିଲା ଓ ଶ୍ରୁତାୟୁଧଙ୍କୁ ଆଘାତ କଲା । ନିଜ ଗଦା ମାଡ଼ରେ ଶ୍ରୁତାୟୁଧ ଯୁଦ୍ଧ ଭୂମିରେ ଟଳି ପଡ଼ିଲେ ।

## ବିଚିତ୍ର ଗଦାର କାହାଣୀ

ଶ୍ରୁତାୟୁଧଙ୍କ ମାଆ କଠୋର ତପସ୍ୟା କରି ବରୁଣ ଦେବଙ୍କୁ ସନ୍ତୁଷ୍ଟ କରିଥିଲେ । ବରୁଣ ଏହି ଗଦାଟି ତାଙ୍କୁ ବର ରୂପେ ଦେଇ କହିଲେ, "ଏ ଗଦା ତୋ ପୁଅ ହାତରେ ଥିବା ପର୍ଯ୍ୟନ୍ତ କେହି ତାଙ୍କୁ ପରାସ୍ତ କରିପାରିବେ ନାହିଁ । କିନ୍ତୁ ମନେରଖ, ଯୁଦ୍ଧ କରୁନଥିବା କୌଣସି ଲୋକ ଉପରକୁ ଏ ଗଦା ଫିଙ୍ଗିଲେ ତାହା ଫେରିଆସି ଫିଙ୍ଗିଥିବା ଲୋକର ଜୀବନ ନେବ ।"

ଶ୍ରୀକୃଷ୍ଣ ଅର୍ଜୁନଙ୍କର ରଥରେ ସାରଥୀର କାର୍ଯ୍ୟ କରୁଥିଲେ । ସେ ନିଜେ ଯୁଦ୍ଧ କରୁ ନ ଥିଲେ । ଶ୍ରୁତାୟୁଧ ଅର୍ଜୁନଙ୍କୁ ଗଦା ପ୍ରହାର ନକରି ଶ୍ରୀକୃଷ୍ଣଙ୍କ ଉପରକୁ ଫିଙ୍ଗିବାରୁ ନିଜ ଗଦାରେ ନିଜେ ମଲେ । ଯିବା ବାଟରେ ବାଧା ଦେଉଥିବା ବୀରମାନଙ୍କୁ ଅର୍ଜୁନ ଅତି ନିର୍ଦ୍ଦୟ ଭାବରେ ହତ୍ୟା କରି ଆଗକୁ ଯାଉଥାନ୍ତି । ଆଜି ପ୍ରତିଜ୍ଞା ପୂରଣ ପାଇଁ ଅର୍ଜୁନ ପାଗଳ ହୋଇ ଉଠିଥିବାରୁ ବହୁ ଯୋଦ୍ଧାକୁ ହତ୍ୟା କରି ନିଜର ପଥ ପରିଷ୍କାର କରିବାରେ ଲାଗିଲେ ।

# ଦ୍ରୋଣ ଓ ଦୁର୍ଯ୍ୟୋଧନ

ଅର୍ଜୁନ ଅତ୍ୟନ୍ତ ସାହସର ସହିତ ଜୟଦ୍ରଥଙ୍କ ଆଡ଼କୁ ଆଗେଇ ଯାଉଥିବା ଦେଖି ଦୁର୍ଯ୍ୟୋଧନ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲେ । ଆଶଙ୍କାରେ ତାଙ୍କ ମୁଣ୍ଡ ବୁଲାଇ ହୋଇଗଲା । ସେ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ କହିଲେ, "ଗୁରୁଦେବ, ଅର୍ଜୁନ ଯେପରି ଭାବରେ ଆଗେଇ ଆସୁଛି, ସେ କଥା ଦେଖି ମୁଁ ବିଚଳିତ ହୋଇ ପଡ଼ିଲିଣି । ଆମେ ଆପଣଙ୍କର କୌଣସି ଅସୁବିଧା କରିନାହୁଁ । ତଥାପି କେଉଁ କାରଣରୁ ଆପଣ ଆମ୍ଭମାନଙ୍କ ପ୍ରତି ଏପରି ନିଷ୍ଠୁର ହୋଇ ଉଠୁଛନ୍ତି ? ଆଗରୁ ଏକଥାର ସାମାନ୍ୟ ସୂଚନା ପାଇଥିଲେ ମୁଁ କଦାପି ଜୟଦ୍ରଥଙ୍କୁ ଅଟକାଇ ରଖି ନଥାନ୍ତି । ତାଙ୍କୁ ତାଙ୍କ ରାଜ୍ୟକୁ ଛାଡ଼ିନଦେଇ ମୁଁ ଖୁବ୍ ଭୁଲ କରିଛି । ହାୟ, ଜାଣି ଜାଣି ମୁଁ ମୋର ଏକମାତ୍ର ଭଉଣୀର ମୁଣ୍ଡରୁ ସିନ୍ଦୁର ପୋଛି ଦେବାକୁ ଯାଉଛି । ଯଦି ଅର୍ଜୁନ ଜୟଦ୍ରଥ ନିକଟରେ ପହଞ୍ଚିଯାଏ, ତେବେ ଅବସ୍ଥା ଅସମ୍ଭାଳ ହୋଇ ପଡ଼ିବ । ସମସ୍ତଙ୍କ ଆଖି ଆଗରେ ମୋ ଭିଣୋଇର ମୃତ୍ୟୁ ହେବ । ଜୟଦ୍ରଥଙ୍କୁ ଜଗି ରହିଥିବା ବୀରମାନଙ୍କର ମନ ଖୁବ୍ ଦୁର୍ବଳ ହୋଇଆସିଲାଣି । ସମସ୍ତଙ୍କର ଦୃଢ଼ ଧାରଣା ଥିଲା, ଅର୍ଜୁନ ଆପଣଙ୍କ ହାବୁଡ଼ରୁ କଦାପି ଆଗକୁ ଆସିପାରିବ ନାହିଁ । ଏବେ ସେ କଥା ମିଥ୍ୟା ପ୍ରମାଣିତ ହେବା ପରେ ସେ ଢେର ଆଗକୁ ମାଡ଼ିଗଲାଣି । ଆପଣ ନୀରବରେ ସବୁ ଦେଖୁଛନ୍ତି ମାତ୍ର । ମୋର ଏବେ ଧାରଣା ସ୍ପଷ୍ଟ ହୋଇଗଲା ଯେ-ଆପଣ କୌରବଙ୍କ ପକ୍ଷରେ ରହି ପାଣ୍ଡବମାନଙ୍କୁ ସାହାଯ୍ୟ ଦେବାରେ ତତ୍ପର ଅଛନ୍ତି । ଗୁରୁଦେବ, ଅତି ବିଚଳିତ ହୋଇ ମୁଁ ଆପଣଙ୍କୁ ଅନେକ କଟୁ କଥା କହି ପକାଇଛି । ପ୍ରାର୍ଥନା କରୁଛି ମୋତେ କ୍ଷମା କରନ୍ତୁ ଓ ଅର୍ଜୁନଙ୍କୁ କୌଣସି ମତେ ଅଟକାଇ ଜୟଦ୍ରଥଙ୍କ ଜୀବନ ରକ୍ଷା କରନ୍ତୁ ।"

ଦ୍ରୋଣ କହିଲେ, "ଦୁର୍ଯ୍ୟୋଧନ, ତୁମେ ପାଗଳ ହୋଇଗଲଣି । ମୁଁ ତୁମ କଥାକୁ ଧରୁନାହିଁ । ଅଶ୍ୱତ୍ଥମା ପରି ମୁଁ ତୁମକୁ ପୁତ୍ର ଜ୍ଞାନରେ ସ୍ନେହ କରେ । ବର୍ତ୍ତମାନ ମୋ ନିକଟରେ ଏକ ଅଦ୍ଭୁତ କବଚ ଅଛି । ତାକୁ ପିନ୍ଧି ଯୁଦ୍ଧ କଲେ ତୁମ ଦେହରେ କୌଣସି ଅସ୍ତ୍ର ଭେଦି ପାରିବ ନାହିଁ । ତୁମେ ବର୍ତ୍ତମାନ ସେ କବଚଟି ପିନ୍ଧି ଅର୍ଜୁନର ଆଗକୁ ଯିବା ବାଟ ବନ୍ଦ କରିଦିଅ ।"

ଏବେ ଅପୂର୍ବ ସୁଯୋଗ, ଅର୍ଜୁନ ଯୁଧିଷ୍ଠିରଙ୍କ ପାଖରେ ନାହିଁ । ମୁଁ ପାଣ୍ଡବ ସୈନ୍ୟଙ୍କ ସହିତ ଯୁଦ୍ଧ କରି ଅକ୍ଳେଶରେ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ପାରିବି । ଆମର ବହୁ ଦିନର ଆଶା ପୂରଣ ହେବାର ଏହାହିଁ ଶୁଭ ମୁହୂର୍ତ୍ତ । ଆଉ ବେଳ ନାହିଁ । ତୁମେ ଏ କବଚ ପିନ୍ଧି ଶୀଘ୍ର ଚାଲିଯାଅ ।"

ଦ୍ରୋଣଙ୍କ କଥାରେ ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଲେ । ଯୁଧିଷ୍ଠିର ଯେ ନିଶ୍ଚୟ ବନ୍ଦୀ ହୋଇ ଆସିବେ, ଏଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ସେ ସଂଗରେ ବହୁ ସୈନ୍ୟ ଧରି ଅର୍ଜୁନଙ୍କୁ ଅଟକାଇ ଦେବା ପାଇଁ ବାହାରି ପଡ଼ିଲେ । ଅର୍ଜୁନ ଆଜି ସାକ୍ଷାତ ଯମରାଜାଙ୍କ ପରି ଶତ୍ରୁ ସୈନ୍ୟ ସଂହାର କରି ଆଗେଇ ଯାଉଥାନ୍ତି । କେହି କୌଣସି ପ୍ରକାରେ ତାଙ୍କୁ ବାଧା ଦେବାକୁ ସାହସ ମଧ କରୁ ନ ଥାନ୍ତି । ତାଙ୍କର ଏକମାତ୍ର ଲକ୍ଷ୍ୟ ଜୟଦ୍ରଥ । ତାଙ୍କୁ ହତ୍ୟା କରିବାକୁ ଯିବା ବାଟରେ ଯେ ବାଧା ଦେଉଥାଏ, ଅର୍ଜୁନ ତାକୁ ଅଳ୍ପ ସମୟ ମଧରେ ଯମପୁରକୁ ପଠାଇ ଆଗେଇ ଯାଉଥାନ୍ତି । ରଥର ଘୋଡ଼ା ଗୁଡ଼ିକ ଖୁବ୍ କ୍ଳାନ୍ତ ହୋଇପଡ଼ିଲେ । ଏକଥା ଦେଖି ସାରଥୀ କୃଷ୍ଣ ଘୋଡ଼ାଗୁଡ଼ିକୁ ଅଳ୍ପ ସମୟ ପାଇଁ ଫିଟାଇ ଦେଇଥିଲେ । କିଛି ସମୟ ବିଶ୍ରାମ କରିବା ପରେ ପୁଣି ରଥରେ ବସି ଜୟଦ୍ରଥ ଥିବା ସ୍ଥାନ ଆଡ଼କୁ ଆଗେଇବାରେ ଲାଗିଲେ ।

ପୂର୍ବରୁ ଦୁର୍ଯ୍ୟୋଧନ ମାଡ଼ି ଆସୁଥିବା ଦେଖି ଶ୍ରୀକୃଷ୍ଣ କହିଲେ, "ଅର୍ଜୁନ ଆଜି ତୁମର ବଡ଼ ଭାଗ୍ୟ । ସବୁ ଅନର୍ଥର ମୂଳ ଦୁର୍ଯ୍ୟୋଧନ ଆଜି ଆପେ ଆପେ ତୁମ ହାତରେ ଧରା ଦେବାକୁ ଆଗେଇ ଆସିବା ସାମାନ୍ୟ ସୁଯୋଗ ନୁହେଁ । ଶୀଘ୍ର ପ୍ରସ୍ତୁତ ହୋଇ ଯାଅ । କିନ୍ତୁ ମନେରଖ ଅର୍ଜୁନ, ଦୁର୍ଯ୍ୟୋଧନକୁ ସାଧାରଣ ବୀର ବୋଲି ଭାବିବ ନାହିଁ ।" ଅର୍ଜୁନ ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଆଗେଇବାରେ ଲାଗିଥାନ୍ତି । ଶ୍ରୀକୃଷ୍ଣଙ୍କ ସମସ୍ତ କଥା ଶୁଣି ମଧ ଉତ୍ତର ଦେବାକୁ ତାଙ୍କ ପାଖରେ ସମୟ ନଥାଏ ।

ଦୁର୍ଯ୍ୟୋଧନ ଦୂରରୁ ଅର୍ଜୁନଙ୍କୁ ଡାକି କହିଲେ, "ତୁ ଖୁବ୍ ବଡ଼ ବୀର ବୋଲି ଲୋକେ କହିବା ମୁଁ ଶୁଣିଛି । ମାତ୍ର ତାର ପରିଚୟ କେବେ ପାଇନାହିଁ । ଆଜି ସୁଯୋଗ ମିଳିଛି । ଦେଖିବି, ତୁ କେତେବଡ଼ ବୀର ।" ଅର୍ଜୁନ କହିଲେ, "ମୁଁ ମଧ ଏ ସୁଯୋଗରେ ମୋ ବୀରତ୍ୱର ସାମାନ୍ୟ କିଛି ପରିଚୟ ଦେବାକୁ ଚେଷ୍ଟା କରିବି ।" ସଂଗେ ସଂଗେ ଯୁଦ୍ଧ ଆରମ୍ଭ ହୋଇଗଲା । ଦୁହେଁ ଦୁହିଁଙ୍କୁ ଶର ମାରିବାରେ ଲାଗିଥାନ୍ତି । କୃଷ୍ଣ ଏକ ଅଦ୍ଭୁତ କଥା ଦେଖି କହିଲେ, "ଅର୍ଜୁନ, ଏକି ଅଘଟଣ ? ଆଜି ତୁମର ଶରଗୁଡ଼ାକ ଦୁର୍ଯ୍ୟୋଧନ ଦେହରେ ନଗଳି ତଳେ ଖସି ପଡୁଛି କାହିଁକି ? ମନେହୁଏ ତୁମ ଶରମାନ ମୁଣ୍ଡା ହୋଇଗଲାଣି କିମ୍ବା ଗାଣ୍ଡୀବ ଚଳାଇବାରେ ତୁମ ହାତ ଦୁର୍ବଳ ହୋଇ ପଡୁଛି । ଏଥିରୁ କେଉଁ କଥାଟି ଠିକ୍ ମୁଁ ଏପର୍ଯ୍ୟନ୍ତ ସ୍ଥିର କରି ପାରୁନାହିଁ ।"

ଅର୍ଜୁନ ହସି ଦେଇ କହିଲେ, "-ସଖା, ଏହା ରହସ୍ୟ ମୁଁ ଉତ୍ତମ ରୂପେ ଜାଣିଛି । ଆଜି ମହାମାନ୍ୟ କୁରୁସମ୍ରାଟ ଦୁର୍ଯ୍ୟୋଧନ ଗୁରୁ ଦ୍ରୋଣଙ୍କଠାରୁ ଏକ ଅଦ୍ଭୁତ କବଚ ମାଗି ଆଣି ପିନ୍ଧିଛନ୍ତି । ସେହି କବଚ ମଧ ଦେଇ କୌଣସି ଶର ଗଳି ପାରିବ ନାହିଁ । ତେଣୁ ଦୁର୍ଯ୍ୟୋଧନଙ୍କ ମୁହଁ ଏହେତୁ ଟାଣ । ମାତ୍ର ଗୁରୁଦେବ ସେ କବଚର ଗୁପ୍ତ ରହସ୍ୟ ମୋତେ ଜଣାଇ ଦେଇଛନ୍ତି । ଆପଣ ଅଧୈର୍ଯ୍ୟ ନହୋଇ ଅପେକ୍ଷା କରନ୍ତୁ । ଅଳ୍ପ ସମୟ ମଧରେ ମୁଁ ଆପଣଙ୍କୁ କେତେକ କୌତୁକ କଥା ଦେଖାଇବି । ଏଇ ଦେଖନ୍ତୁ, ମହାବୀର ଗାନ୍ଧାରୀ ନନ୍ଦନଙ୍କ ସହିତ ମୁଁ ଯୁଦ୍ଧ କଲି ।" ଏହା କରି ଅର୍ଜୁନ ଶରମାରି ପ୍ରଥମେ ସାରଥୀ ସହିତ ଦୁର୍ଯ୍ୟୋଧନର ଘୋଡ଼ାମାନଙ୍କୁ ମାରି ପକାଇଲେ । ତା ପରେ ଦୁର୍ଯ୍ୟୋଧନଙ୍କ ହାତରେ ଥିବା ଧନୁକୁ ଖଣ୍ଡ ଖଣ୍ଡ କରିଦେଲେ । ଦୁର୍ଯ୍ୟୋଧନ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ । ଏତିକିବେଳେ ଅର୍ଜୁନ ଦୁର୍ଯ୍ୟୋଧନଙ୍କ ଦେହର ଯେଉଁ ସବୁ ଅଂଶ କବଚରେ ଘୋଡ଼ାଇ ହୋଇନଥିଲା, ଠିକ୍ ସେହି ସ୍ଥାନମାନଙ୍କୁ ଛୁଞ୍ଚିପରି ଶର ମାନ ମାରି ଏପରି ଲଣ୍ଡ ଭଣ୍ଡ କରି ପକାଇଲେ ଯେ ସେ ଯନ୍ତ୍ରଣାରେ ଅସ୍ଥିର ହୋଇ ଯୁଦ୍ଧ ଭୂମିରୁ ପଳାଇ ଗଲେ ।

ଦୁର୍ଯ୍ୟୋଧନ ଯୁଦ୍ଧ ଭୂମିରୁ ପଳାଇଯିବା ଦେଖି ଶ୍ରୀକୃଷ୍ଣ ଶଙ୍ଖ ବଜାଇବାରେ ଲାଗିଲେ । ପଞ୍ଚଜନ୍ୟ ଶବ୍ଦ ଶୁଣିବା ମାତ୍ରେ ଜୟଦ୍ରଥ ଓ ତାଙ୍କ ସୈନ୍ୟମାନେ ଥରି ଉଠିଲେ । ଜୟଦ୍ରଥଙ୍କୁ ରକ୍ଷା କରୁଥିବା ଯୋଦ୍ଧାମାନେ ଅର୍ଜୁନଙ୍କ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

## ଦ୍ରୋଣ ଓ ସାତ୍ୟକିଙ୍କ ଯୁଦ୍ଧ

ଯୁଧିଷ୍ଠିରଙ୍କୁ ବନ୍ଦୀ କରି ଦୁର୍ଯ୍ୟୋଧନଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଦ୍ରୋଣ ପ୍ରାଣ ପଣେ ଉଦ୍ୟମ କରୁଥାନ୍ତି । ସେ ଅଗଣିତ ସେନା ସହ ନିଜର ସମସ୍ତ ଶକ୍ତି ଓ ସମର କୌଶଳ ପ୍ରୟୋଗ କରିବାରେ ଲାଗିଥାନ୍ତି । ତଥାପି ଲକ୍ଷ୍ୟ ହାସଲ କରିବା ପାଇଁ ବହୁ ବାଧା ତାଙ୍କ ଆଗରେ ଉପସ୍ଥିତ ହୋଇ ଯାଉଥାଏ । ଦ୍ରୋଣ ଆଗେଇ ଯାଉଥିବା ଦେଖି ହଠାତ୍ ସାତ୍ୟକି ନିଜ ରଥ ଆଣି ତାଙ୍କ ଆଗରେ ଠିଆ ହୋଇଗଲେ ଓ କହିଲେ, "-ଏ ଭିକାରୀ ବ୍ରାହ୍ମଣ ହିଁ ସବୁ ଅନର୍ଥର ମୂଳ । ଏହାରି ଯୋଗୁଁ ଦୁର୍ଯ୍ୟୋଧନର ମୁଣ୍ଡ ଗର୍ବ-ପର୍ବତରେ ଲାଗିଯାଉଛି । ଆଜି ମୁଁ ଏ ବ୍ରାହ୍ମଣଙ୍କୁ ଉଚିତ ଶିକ୍ଷା ନଦେଇ ଛାଡୁନାହିଁ ।"

ଚାହୁଁ ଚାହୁଁ ଉଭୟ ଯୋଦ୍ଧାଙ୍କ ମଧରେ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । କେହି କାହାକୁ ଊଣା ନୁହନ୍ତି । ଶରମାଡ଼ରେ ଉଭୟଙ୍କ ଦେହରୁ ଧାର ଧାର ରକ୍ତ ବହିଯାଉଥାଏ । ସାତ୍ୟକି ଏକ ଶରମାରି ଦ୍ରୋଣଙ୍କ ଧନୁକୁ ଖଣ୍ଡ ଖଣ୍ଡ କରିଦେଲେ । ଦ୍ରୋଣ ଅନ୍ୟ ଏକ ଧନୁ ଧରିବା ମାତ୍ରେ ସାତ୍ୟକି ସଂଗେ ସଂଗେ ତାକୁ ମଧ୍ୟ କାଟି ପକାଇଲେ । ଏହପରି ଭାବରେ ସାତ୍ୟକି ଦ୍ରୋଣଙ୍କର ଏକଶତ ଏକ ଗୋଟି ଧନୁକୁ କାଟି ଖଣ୍ଡ ଖଣ୍ଡ କରି ଦେଲେ । ସାତ୍ୟକିଙ୍କ ବୀରତ୍ୱ ଦେଖି ଦ୍ରୋଣ ଆଶ୍ଚର୍ଯ୍ୟ ହୋଇଗଲେ ଓ ମନେ ମନେ ତାଙ୍କୁ ପ୍ରଶଂସା କରିବାରେ ଲାଗିଲେ । ଲଢ଼ିବା ପାଇଁ ଜଣେ ସମକକ୍ଷ ଯୋଦ୍ଧା ପାଇଥିବାରୁ ଦ୍ରୋଣ ଖୁବ୍ ଆନନ୍ଦିତ ମଧ ହେଉଥାନ୍ତି । ଅନେକ ସମୟ ଯୁଦ୍ଧ କରି ସାତ୍ୟକି କ୍ଳାନ୍ତ ହୋଇ ପଡ଼ିଥିବା ଲକ୍ଷ୍ୟ କରି ଯୁଧିଷ୍ଠିର ଦ୍ରୋଣଙ୍କ ସହିତ ଲଢ଼ିବା ପାଇଁ ଆଉ କେତେକ ଯୋଦ୍ଧାଙ୍କୁ ପଠାଇ ଦେବାରୁ ସାତ୍ୟକି ରକ୍ଷା ପାଇଗଲେ ।

କିଛି ସମୟ ପରେ ଅର୍ଜୁନଙ୍କୁ ଆଗେଇବାରେ ସାହାଯ୍ୟ କରିବା ପାଇଁ ଯୁଧିଷ୍ଠିର ସାତ୍ୟକିଙ୍କୁ ଆଦେଶ ଦେଲେ । ମାତ୍ର ସାତ୍ୟକି ବିନମ୍ର ଭାବରେ କହିଲେ, "ମହାରାଜ, ବର୍ତ୍ତମାନ ଆପଣଙ୍କୁ ରକ୍ଷା କରିବା ପାଇଁ କେହିନାହାନ୍ତି । ମୁଁ ଚାଲିଯିବା ମାତ୍ରେ ଦ୍ରୋଣ ଆପଣଙ୍କୁ ବନ୍ଦୀ କରି ନେବାର ପଥ ସୁଗମ ହୋଇଯିବ । ଦୟାକରି ଅନ୍ୟ କୁଆଡ଼େ ଯିବାକୁ ମୋତେ ଆଦେଶ ଦିଅନ୍ତୁ ନାହିଁ ।" ଯୁଧିଷ୍ଠିର କହିଲେ, "ତୁମକୁ ଏପରି ଆଦେଶ ଦେବା ପୂର୍ବରୁ ମୁଁ ସେ ବିଷୟରେ ଚିନ୍ତା କରି ସାରିଛି । ବର୍ତ୍ତମାନ ପ୍ରିୟ ଅର୍ଜୁନର ପ୍ରତିଜ୍ଞା ପୂରଣ ଆମ ଆଗରେ ସବୁଠାରୁ ବଡ଼ ପ୍ରଶ୍ନ ହୋଇ ଠିଆ ହୋଇଛି । ଆମେ ସମସ୍ତେ ସାହାଯ୍ୟ ନକଲେ ଜୟଦ୍ରଥକୁ ମାରିବା ତ ଦୂରର କଥା ସନ୍ଧ୍ୟା ପୂର୍ବରୁ ତା ପାଖରେ ପହଞ୍ଚିବା ମଧ୍ୟ ସମ୍ଭବ ହୋଇ ପାରିବ ନାହିଁ । ଭୀମ ମୋ ପାଖରେ ଅଛନ୍ତି । ତୁମେ ଅନ୍ୟ କିଛି ନଭାବି ତୁରନ୍ତ ଅର୍ଜୁନଙ୍କ ନିକଟକୁ ଚାଲି ଯାଅ ।" ଏହିପରି କହି ଯୁଧିଷ୍ଠିର ବହୁ ଅସ୍ତ୍ରଶସ୍ତ୍ର ସାତ୍ୟକିଙ୍କ ରଥରେ ଗଦା କରି ଦେଲେ ।

ସାତ୍ୟକି ଚାଲିଗଲେ । ଦ୍ରୋଣ ଯୁଧିଷ୍ଠିରଙ୍କ ନିକଟରେ ପହଞ୍ଚିବା ଲକ୍ଷ୍ୟରେ ବହୁ ପାଣ୍ଡବ ସୈନ୍ୟଙ୍କୁ ଛିନ୍ନଛତ୍ର କରି ଆଗେଇବାରେ ଲାଗିଲେ ।

## ଦ୍ରୋଣ ଓ ଭୀମଙ୍କ ଯୁଦ୍ଧ

ଦ୍ରୋଣ ଓ ପାଣ୍ଡବ ସୈନ୍ୟମାନଙ୍କ ମଧ୍ୟରେ ନାହିଁ ନଥିବା ଯୁଦ୍ଧ ଲାଗିଥାଏ । ଅଳ୍ପ ସମୟ ପରେ ଯୁଧିଷ୍ଠିର କହିଲେ, "–ଭୀମସେନ, ମୁଁ ଅର୍ଜୁନର ଗାଣ୍ଡୀବ ଶବ୍ଦ କିମ୍ବା ଶ୍ରୀକୃଷ୍ଣଙ୍କ ପାଞ୍ଚଜନ୍ୟର ଶବ୍ଦ ବହୁ ସମୟ ଧରି ଶୁଣିବାକୁ ପାଉନାହିଁ । ମୋର ଆଶଙ୍କା ହେଉଛି କୌରବମାନେ ଅର୍ଜୁନଙ୍କୁ ହତ୍ୟା କରିଦେଇଛନ୍ତି । କିମ୍ବା ଅର୍ଜୁନ ଘୋର ଅସୁବିଧାରେ ପଡ଼ି ଛଟପଟ ହେଉଛନ୍ତି । ବିଳମ୍ବ ନକରି ତୁମେ ଅର୍ଜୁନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଯାଅ ।" ଭୀମ କହିଲେ, "ମହାରାଜ, ଆପଣ ଏ କଅଣ କହୁଛନ୍ତି ? ଆପଣଙ୍କ ଆଶଙ୍କା ଆଦୌ ସତ୍ୟ ନୁହେଁ । ଅର୍ଜୁନଙ୍କ ପରି ତ୍ରିପୁର ବିଜୟୀ ବୀରଙ୍କୁ ହତ୍ୟା କରିବା ପାଇଁ କୌରବ ପକ୍ଷରେ ଜଣେ ହେଲେ ବୀର ନାହାନ୍ତି । ଆପଣ ନିଶ୍ଚିନ୍ତ ରୁହନ୍ତୁ । ଅର୍ଜୁନ ତାଙ୍କ ଲକ୍ଷ୍ୟ ପଥରେ ଅଗ୍ରସର ହେଉଛନ୍ତି, ଏଥିରେ ସନ୍ଦେହ ନାହିଁ । ତଥାପି ଆପଣଙ୍କ ଆଦେଶ ଗ୍ରହଣ କରି ମୁଁ ଯାଉଛି ।"

ଭୀମ ଧୃଷ୍ଟଦ୍ୟୁମ୍ନଙ୍କୁ ପାଖକୁ ଡାକି କହିଲେ, "ବନ୍ଧୁ, ମହାରାଜ ସ୍ନେହରେ ଅନ୍ଧ ହୋଇ ନାନା ଅଶୁଭ ଚିନ୍ତା କରିବାରେ ଲାଗିଛନ୍ତି । ଅଥଚ ମୁଁ ଏଠାରୁ ଚାଲିଗଲେ ଦ୍ରୋଣ ଅକ୍ଳେଶରେ ତାଙ୍କୁ ବନ୍ଦୀ କରି ନେବେ ଏକଥା ମଧ୍ୟ ସେ ଆଦୌ ଭାବି ପାରୁ ନାହାନ୍ତି । ସେ ଯାହା ହେଉ ମୁଁ ନିଶ୍ଚୟ ଆଦେଶ ପାଳନ କରିବି । ଅନୁରୋଧ ଆପଣ ଯୁଧିଷ୍ଠିରଙ୍କ ପାଖେ ପାଖେ ରହି ତାଙ୍କୁ ରକ୍ଷା କରନ୍ତୁ ।" ଭୀମ ଅତି ବେଗରେ ରଥ ଚଳାଇ ଆଗେଇ ଯାଉଥିବା ଦେଖି କୌରବମାନେ ତାଙ୍କୁ ବାଧା ଦେବାକୁ ମାଡ଼ି ଆସିଲେ । ମାତ୍ର ନିଆଁ ମୁହଁରେ ପତଙ୍ଗ ପରି କେତେ ଯେ ମଲେ ତା'ର କଳନା ନାହିଁ । ଯେତିକି ମଲେ ତା'ର ବହୁ ଗୁଣ ସୈନ୍ୟ ଭୂଇଁ ଛାଡ଼ି ଜୀବନ ବିକଳରେ ପଳାଇବାରେ ଲାଗିଲେ । ଦୁର୍ଯ୍ୟୋଧନର ଏଗାର ଗୋଟି ଭାଇ ଭୀମଙ୍କୁ ବାଧା ଦେବାକୁ ଚେଷ୍ଟା କରି ଗୋଟି ଗୋଟି ହୋଇ ମଲେ । ଭୀମ ସେମାନଙ୍କ ମଡ଼ା ଉପରେ ରଥ ଚଳାଇ ଆଗେଇବାରେ ଲାଗିଲେ ।

ହଠାତ୍ ଦ୍ରୋଣ ଆଗକୁ ଆସି କହିଲେ, "ଭୀମ, ରହ, ଆଗକୁ ଯିବାକୁ ଚେଷ୍ଟା କର ନାହିଁ । ମୁଁ ତୁମ ଆଗରେ ଅଛି । ମୋତେ ପରାସ୍ତ ନକରି ତୁମେ ଆଗକୁ ଯାଇ ପାରିବ ନାହିଁ । ତୁମ ଭାଇ ଅର୍ଜୁନ ଆଗକୁ ଯିବା ପାଇଁ ମୋ ଠାରୁ ଅନୁମତି ନେଇ ଯାଇଛି । ମାତ୍ର ମୋ ପରି ଜଣେ ଶତ୍ରୁଙ୍କୁ ପରାସ୍ତ ନକରି ତୁମେ ପାଦେ ହେଲେ ଆଗେଇ ପାରିବ ନାହିଁ ।" ଭୀମଙ୍କଠାରୁ ଅର୍ଜୁନଙ୍କ ପରି ବ୍ୟବହାର ଆଶା କରିବା ବୃଥା । ସେ ଦ୍ରୋଣଙ୍କୁ କହିଲେ, "ହେ ବ୍ରାହ୍ମଣ, ଅର୍ଜୁନ ତୁମଠାରୁ ଅନୁମତି ନେଇ ଆଗକୁ ଯାଉଛନ୍ତି, ଏକଥା ମୁଁ ଆଦୌ ବିଶ୍ୱାସ କରୁନାହିଁ । ବରଂ ଏକଥା ସତ୍ୟ ଯେ, ଅର୍ଜୁନ ତାଙ୍କର ସାହସ, ଶକ୍ତି ଓ ବୀରତ୍ୱ ବଳରେ ତୁମ ବ୍ୟୂହ

ଭେଦ କରି ସହଜରେ ଆଗକୁ ମାଡ଼ି ଯାଇଛନ୍ତି । ଅସ୍ତ୍ର ଗୁରୁ, ପୁଣି ବୃଦ୍ଧ ବ୍ରାହ୍ମଣ ଜ୍ଞାନରେ ଆପଣଙ୍କୁ ସେ ଆଘାତ ନକରି ଦୟାକରି ଛାଡ଼ି ଦେଇଛନ୍ତି । ମାତ୍ର ମୋ ଠାରୁ ଅର୍ଜୁନଙ୍କ ପରି ବ୍ୟବହାର ଆଶା କରନ୍ତୁ ନାହିଁ । ସମୟ ଥିଲା, ଯେତେବେଳେ ଆପଣ ଆମର ପିତାତୁଲ୍ୟ ପୂଜନୀୟ ବ୍ୟକ୍ତି ଥିଲେ । ଆମେ ଅପଣଙ୍କୁ ଉଚ୍ଚ ସମ୍ମାନ ଦେଉଥିଲୁ । ବର୍ତ୍ତମାନ ମୁଁ ଶତ୍ରୁ ବୋଲି ଅଳ୍ପକ୍ଷଣ ପୂର୍ବରୁ ଆପଣ କହି ସାରିଛନ୍ତି । ଏଣୁ ଶତ୍ରୁ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ଯାଆନ୍ତୁ ।" ଏହା କହି ଭୀମ ଗଦା ମାଡ଼ରେ ଦ୍ରୋଣଙ୍କ ରଥକୁ ଖଣ୍ଡ ଖଣ୍ଡ କରିଦେଲେ । ଦ୍ରୋଣ ଅନ୍ୟ ଏକ ରଥ ଉପରକୁ ଉଠୁ ନଉଠୁଣୁ ଭୀମ ତାକୁ ମଧ୍ୟ ଭାଙ୍ଗି ପକାଇଲେ । ଏପରି ଭାବରେ ଭୀମସେନ ଦ୍ରୋଣଙ୍କର ଗୋଟିକ ପରେ ଗୋଟିଏ କରି ଆଠ ଗୋଟି ରଥକୁ ମାଟିରେ ମିଶାଇ ଆଗେଇବାରେ ଲାଗିଲେ । ଅର୍ଜୁନଙ୍କ ନିକଟରେ ପହଞ୍ଚିବା ମାତ୍ରେ ସେ ଏକ ସିଂହନାଦ କରିବାରୁ କୃଷ୍ଣ ଓ ଅର୍ଜୁନ ଆନନ୍ଦିତ ହେଲେ । ଭୀମଙ୍କ ସିଂହରଡ଼ି ଶୁଣି ଯୁଧିଷ୍ଠିରଙ୍କ ମନରୁ ସମସ୍ତ ଆଶଙ୍କା ଦୂର ହୋଇଗଲା ।

## କର୍ଣ୍ଣଙ୍କ ସହିତ ଭୀମଙ୍କ ଯୁଦ୍ଧ

ଅର୍ଜୁନଙ୍କ ନିକଟରେ ତୁରନ୍ତ ପହଞ୍ଚିବା ପାଇଁ ଭୀମ ଅତ୍ୟନ୍ତ ବେଗରେ ଯାଉଥିବା ଦେଖି କର୍ଣ୍ଣ କହିଲେ, "ମୋତେ ଦେଖି ପାରୁଛ ଭୀମ ? ଯଦି ଦେଖି ପାରୁଛ, ତେବେ ଯୁଦ୍ଧ ନକରି ପଳାଇ ଯିବାକୁ ଚେଷ୍ଟା କରୁଛ କାହିଁକି ? ତୁମେ ପଳାଇ ଗଲେ କ'ଣ ମୋ ହାତରୁ ରକ୍ଷା ପାଇଯିବ ? ମୁଁ ଆଜି ତୁମକୁ ପାଦେ ହେଲେ ଆଗେଇ ଯିବାକୁ ଦେବି ନାହିଁ ।'' କର୍ଣ୍ଣଙ୍କ ଉଦ୍ଧତ କଥାଗୁଡ଼ାକ ଭୀମଙ୍କ ଦେହରେ ନିଆଁ ମାଡ଼ିଲା ପରି ଲାଗିଲା । ସେ ଗର୍ଜି ଉଠି କହିଲେ, "ଭୀମ ତା ଜୀବନରେ ପଳାଇ ଯିବା ଶିଖି ନାହିଁ । ହେ ମହାବୀର କର୍ଣ୍ଣ । ତୁମେ କେତେଥର ଯୁଦ୍ଧ ଭୂମିରୁ ପଳାଇ ଯାଇଛ ଯଦି ମନେ ପଡୁ ନାହିଁ ତେବେ ମନେ ପକାଇ ଦେବାକୁ ମୋତେ ଅଧିକ ସମୟ ଲାଗିବ ନାହିଁ । ତୁମର ମୁହଁ ଖୁବ୍ ଟାଣ ସିନା, କାମ ସେପରି ନୁହେଁ ।" କର୍ଣ୍ଣ ଆଉ ସମ୍ଭାଳି ପାରିଲେ ନାହିଁ । ସେ ଶରପରେ ଶରମାରି ଭୀମଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ଦେହରେ ଗଳି ଯାଇଥିବା ଶରଗୁଡ଼ାକ ବାହାର କରିଦେବା ମାତ୍ରେ ଧାର ଧାର ରକ୍ତ ବହି ଯାଉଥାଏ । ଯନ୍ତ୍ରଣାରେ ଅସ୍ଥିର ହୋଇ ସେ ଅତ୍ୟନ୍ତ ରାଗି ଉଠିଲେ । ଗଦା ପ୍ରହାର କରି କର୍ଣ୍ଣଙ୍କ ରଥ ସହିତ ଧନୁକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲେ । କର୍ଣ୍ଣ ଅନ୍ୟ ଏକ ରଥ ଉପରକୁ ଉଠି ଭୀଷଣ ବେଗରେ ଭୀମଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଭୀମ ଜୀବନକୁ ପାଣି ଛଡ଼ାଇ କର୍ଣ୍ଣଙ୍କ ସହିତ ଯୁଦ୍ଧ କରୁଥାନ୍ତି । ଦୁର୍ଯ୍ୟୋଧନଙ୍କୁ ଯାବତୀୟ କୁ-ପରାମର୍ଶ ଦେଉଥିବା କର୍ଣ୍ଣଙ୍କ ପ୍ରତି ଭୀମଙ୍କର ଖୁବ୍ ଘୃଣାଥିଲା । ଏବେ ମୁହାଁ ମୁହିଁ ଯୁଦ୍ଧ କରିବାର ସୁଯୋଗ ପାଇ ସେ ଅତ୍ୟନ୍ତ ନିଷ୍ଠୁର ହୋଇ ଉଠିଲେ । ରଥ ଭାଙ୍ଗି ଥରକୁ ଥର ଧନୁକୁ କାଟି ଦେବାରୁ କର୍ଣ୍ଣ ଗର୍ଜନ କରି କହିଲେ, "ମୂର୍ଖ ଭୀମ, ତୋ କାଳ ପୂରି ଆସିଲାଣି" – କହି ଭୀମଙ୍କୁ ଏକ ଶକ୍ତି ମାରିଦେଲେ । ଭୀମ ଅତ୍ୟନ୍ତ ଚତୁରତାର ସହିତ ଶକ୍ତିଟିକୁ ଏଡ଼ାଇ ଦେବା ଦେଖି କର୍ଣ୍ଣଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ କିଛି କ୍ଷଣ ନୀରବ ହୋଇ ରଥରେ ଠିଆ ହେଲେ ।

ଭୀମ ବାରମ୍ବାର କର୍ଣ୍ଣଙ୍କୁ ଅସୁବିଧାରେ ପକାଉଥିବା ଲକ୍ଷ୍ୟ କରି ଦୁର୍ଯ୍ୟୋଧନ ଦୁର୍ଜୟଙ୍କୁ କହିଲେ, "ଦେଖୁଛ, ଦୁଷ୍ଟ ଭୀମ ଆଜି କର୍ଣ୍ଣଙ୍କୁ ମାରି ପକାଇବ । ଶୀଘ୍ର ଯାଇ ତାଙ୍କୁ ଏ ରାକ୍ଷସ ଦାଉରୁ ରକ୍ଷା କର ।"

ଦୁର୍ଜୟ ଅତ୍ୟନ୍ତ ସାହସର ସହିତ ଆଗେଇ ଗଲେ । ମାତ୍ର ଅଳ୍ପ ସମୟ ମଧ୍ୟରେ ନିଜର ରଥ, ଘୋଡ଼ା ଓ ସାରଥୀଙ୍କ ସହିତ ଭୀମଙ୍କ ଗଦାମାଡ଼ରେ ଭୂଇଁରେ ଲୋଟିଲେ । ଏ ସବୁ ଦେଖି କର୍ଣ୍ଣଙ୍କ ଦୁଃଖର ସୀମା ରହିଲା ନାହିଁ । ଭୀମଙ୍କ ଆଗରେ କର୍ଣ୍ଣଙ୍କ ବ୍ୟତୀତ ଆଉ କେହି ନଥିବାରୁ ସେ ପୁଣି ଆକ୍ରମଣ କରିବାରେ ଲାଗିଲେ । ସେତେବେଳକୁ କର୍ଣ୍ଣ ଏକ ନୂତନ ରଥ ଉପରେ ବସିଥାନ୍ତି । ଭୀମ ଭୟଙ୍କର ଗର୍ଜନ କରି ଗଦାଘାତରେ କର୍ଣ୍ଣଙ୍କ ନୂତନ ରଥ, ଅଶ୍ୱ ଓ ସାରଥୀଙ୍କୁ ମାରି କର୍ଣ୍ଣଙ୍କୁ ଆକ୍ରମଣ କଲେ । ଅନ୍ୟ ଉପାୟ ନପାଇ କର୍ଣ୍ଣ ବାଧ୍ୟ ହୋଇ ତଳେ ଠିଆ ହୋଇଗଲେ ଓ ଭୀମଙ୍କ ଉପରକୁ ଶର ମାରିବାରେ ଲାଗିଲେ ।

କର୍ଣ୍ଣଙ୍କ ଏ ଅବସ୍ଥା ଦେଖି ଦୁର୍ଯ୍ୟୋଧନଙ୍କ ଚିନ୍ତା ବହୁ ଗୁଣରେ ବଢ଼ିଗଲା । ସେ ତାଙ୍କର ଅନ୍ୟ ଏକ ଭାଇ ଦୁର୍ମୁଖଙ୍କୁ ପଠାଇ କର୍ଣ୍ଣଙ୍କୁ ନିଜ ରଥ ଉପରକୁ ଆଣିଲେ ।

ଅନ୍ଧରାଜାର ଆଉ ଗୋଟିଏ ପୁଅକୁ ହାତ ପାଖରେ ପାଇ ଭୀମଙ୍କ ମନ ଆନନ୍ଦରେ କୁରୁଳି ଉଠିଲା । ସେ ବିଳମ୍ବ ନକରି ନୂଆ ହୋଇ ତାଙ୍କ ଆଗକୁ ଆସିଥିବା ଶତ୍ରୁଟିକୁ ମାତ୍ର ଦୁଇ ତିନିଗୋଟି ଶରମାରି ତଳେ ଗଡ଼ାଇ ଦେଲେ । ଦୁର୍ମୁଖଙ୍କ ରକ୍ତାକ୍ତ ଶରୀର ତଳେ ଗଡୁଥିବା ଦେଖି କର୍ଣ୍ଣ କିଛି ସମୟ ନୀରବ ହୋଇ ବସି ରହିଲେ ।

ଭୀମଙ୍କ କ୍ରୋଧର ସୀମା ନଥାଏ । ଅତୀତରେ ସମସ୍ତ ଘଟଣା ଓ ତହିଁରେ କର୍ଣ୍ଣ ଯାହା ସବୁ କହିଥିଲେ ସେ ସବୁ କଥା ଭୀମଙ୍କ ମନେପଡ଼ି ତାଙ୍କୁ ଅସ୍ଥିର କରି ପକାଉଥାଏ । ବିଶେଷ କରି ଦ୍ରୌପଦୀଙ୍କୁ ବେଶ୍ୟା ବୋଲି କହିଥିବା କଥା ତାଙ୍କ ମନକୁ ଆନ୍ଦୋଳିତ କରି ପକାଉଥାଏ । ସେ କର୍ଣ୍ଣଙ୍କୁ ଶର ପରେ ଶର ମାରିବାରେ ଲାଗିଲେ । ଦୁର୍ଯ୍ୟୋଧନର ଅନେକ ଗୁଡ଼ିଏ ଭାଇ ଭୀମଙ୍କ ହାତରେ ପ୍ରାଣ ଦେବା କର୍ଣ୍ଣଙ୍କୁ କଥା ଖୁବ୍ ବାଧୁଥାଏ । ତା ସାଙ୍ଗକୁ ଭୀମ ମାରିଥିବା ଶରଗୁଡ଼ାକର ଯନ୍ତ୍ରଣା ତାଙ୍କ ପକ୍ଷରେ ଅସହ୍ୟ ହୋଇ ଉଠୁଥାଏ । ସେ ଯୁଦ୍ଧଭୂମି ତ୍ୟାଗ କରି ଚାଲିଯିବା ପାଇଁ ସ୍ଥିର କଲେ ।

କର୍ଣ୍ଣଙ୍କ ଅବସ୍ଥା ଦେଖି ଦୁର୍ଯ୍ୟୋଧନ ଆଉ ପାଞ୍ଚଜଣ ଭାଇ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ । ସେମାନଙ୍କୁ ଦେଖି କର୍ଣ୍ଣ ପୁଣି ଯୁଦ୍ଧ କରିବାକୁ ସାହସ ବାନ୍ଧିଲେ । ଭୀମ ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କ ଆଡ଼କୁ ଚାହିଁ କର୍ଣ୍ଣଙ୍କୁ ଆକ୍ରମଣ କଲେ । କିନ୍ତୁ ଧୃତରାଷ୍ଟ୍ରଙ୍କ ପୁଅମାନେ ଭୀମଙ୍କୁ ଚାରିଆଡୁ ଘେରିଯିବା ଦେଖି ସେ କର୍ଣ୍ଣଙ୍କୁ ଛାଡ଼ି ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କୁ ଆକ୍ରମଣ କଲେ । ଗୋଟିକ ପରେ ଗୋଟିଏ ହୋଇ ପାଞ୍ଚଭାଇ ଭୀମଙ୍କ ହାତରେ ପ୍ରାଣ ଦେଲେ । କର୍ଣ୍ଣ ଆଉ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ । ତାଙ୍କୁ ରକ୍ଷା କରିବାକୁ ଆସି ଦୁର୍ଯ୍ୟୋଧନଙ୍କ ଅନେକ ଗୁଡ଼ିଏ ଭାଇ ଜୀବନ ହାରିଥିବା ଦେଖି ସେ ଭୀମଙ୍କୁ ପ୍ରଚଣ୍ଡ ବେଗରେ ଆକ୍ରମଣ କରିବାରେ ଲାଗିଲେ । ଭୀମ କି ସହଜରେ ଛାଡ଼ିବା ଯୋଦ୍ଧା ? ସେ ଗଦା ମାଡ଼ରେ କର୍ଣ୍ଣଙ୍କ ରଥକୁ ଖଣ୍ଡ ଖଣ୍ଡ କରିଦେଲେ । କର୍ଣ୍ଣ ରଥରୁ ଡେଇଁ ପଡ଼ି ଗଦା ହାତରେ ଭୀମଙ୍କୁ ଆକ୍ରମଣ କରିବା ପାଇଁ ଆଗେଇ ଆସିବାରୁ ଭୀମ ଶରପରେ ଶର ମାରି କର୍ଣ୍ଣଙ୍କୁ ଏପରି ଅସ୍ତବ୍ୟସ୍ତ କରି ପକାଇଲେ ଯେ, ସେ ପଛକୁ ହଟିଯିବାକୁ ବାଧ ହେଲେ ।

ଦୁର୍ଯ୍ୟୋଧନଙ୍କର ଖୁବ୍ ବଡ଼ ଆଶା କର୍ଣ୍ଣ ପାଣ୍ଡବମାନଙ୍କୁ ନିଶ୍ଚୟ ହତ୍ୟା କରିବ । ମାତ୍ର ଆଜିର ଯୁଦ୍ଧରେ ସେ ସମ୍ପୂର୍ଣ୍ଣ ହତାଶ ହୋଇପଡ଼ିଲେ । ତାଙ୍କ ସ୍ୱପ୍ନ ମିଥ୍ୟା ପ୍ରମାଣିତ ହେବାକୁ ଯାଉଛି ଦେଖି ସେ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଥିଲେ ସତ, ମାତ୍ର ସାହସ ହରାଇ ନଥିଲେ । ବର୍ତ୍ତମାନ ସେ ପୁଣି ତାଙ୍କର ଆଉ ସାତଜଣ ଭାଇଙ୍କୁ ପଠାଇଦେଲେ । ସେମାନଙ୍କୁ ଦେଖୁ ଦେଖୁ ଭୀମ କହିଲେ, "ଆରେ, ତୁମେ ସବୁ ଦଳ ଦଳ ପତଙ୍ଗ ପରି କାହିଁକି ମାଡ଼ି ଆସୁଛ ? ଆଜି ଦିନକ ଭିତରେ ତୁମ ଭିତରୁ ଅନେକ ଶେଷ ପାଇ ଗଲେଣି । ସମସ୍ତେ ଜ୍ଣ'ଣ ଆଜି ଏକା ବେଳେକେ ସ୍ୱର୍ଗକୁ ଯିବାକୁ ସ୍ଥିର କରିଛ ? ସତ କହୁଛି, ତୁମକୁ ଆଉ ମାରିବାକୁ ମୋ ମନ ହେଉନାହିଁ । ପୁଣି ଭାବୁଛି, ପ୍ରତିଜ୍ଞା ତ କରିଛି କୁରୁବଂଶ ଧ୍ୱଂସ କରିବି ବୋଲି । ଯେଉଁ ଦିନତ ହେଲେ ତୁମମାନଙ୍କୁ ଖୋଜିଲୋଡ଼ି ମାରିଥାନ୍ତି । ଆଜି ତୁମ୍ଭେମାନେ ଆପେ ଆପେ ମୋ ଆଗକୁ ଆସି ଯାଇଛ । ଏ ସୁଯୋଗ ଆଉ ହାତଛଡ଼ା କରିବି କାହିଁକି ?" ଭୀମଙ୍କ କଥାରେ ଭାଇମାନେ ରାଗିଯାଇ ପ୍ରବଳବେଗରେ ଆକ୍ରମଣ ଆରମ୍ଭ କରିଦେଲେ । ମାତ୍ର କଅଣ ହେବ, ବେଶୀ ସମୟ ଲାଗିଲା ନାହିଁ । ଗାନ୍ଧାରୀଙ୍କର ସାତୋଟି ଯାକ ସନ୍ତାନ ଭୀମଙ୍କ ମାଡ଼ରେ ଚିର ନିଦ୍ରାରେ ଶୋଇ ପଡ଼ିଲେ ।

ଦୁର୍ଯ୍ୟୋଧନ ସହଜରେ ଭାଙ୍ଗି ପଡ଼ିବା ଲୋକ ନୁହନ୍ତି । ସେ ବିଳମ୍ବ ନକରି ତାଙ୍କର ଆଉ ସାତଜଣ ଭାଇଙ୍କୁ ସଂଗେ ସଂଗେ ଯୁଦ୍ଧକୁ ପଠାଇ ଦେଲେ । ଭୀମ ସେମାନଙ୍କୁ ଦେଖିବା ମାତ୍ରେ ହସି ହସି କହିଲେ, "ମୁଁ ଯାହା ଆଗରୁ ଅନୁମାନ କରୁଥିଲି, ଏବେ ତାହା ସତ୍ୟରେ ପରିଣତ ହେବାକୁ ଯାଉଛି । ଦୁର୍ଯ୍ୟୋଧନ ଆଜି ସବୁ ଭାଇମାନଙ୍କୁ ବଳି ଦେବାକୁ ନିଶ୍ଚୟ ସ୍ଥିର କରିଛି । ଏଥିରେ ଦୁର୍ଯ୍ୟୋଧନର ଉଦ୍ଦେଶ୍ୟ ପୂରଣ ହେବ । ତା'ର ଏକାନ୍ତ ଇଚ୍ଛା ସେ ହସ୍ତିନା ଓ ଇନ୍ଦ୍ରପ୍ରସ୍ଥ ଉଭୟର ପ୍ରଭୁ ହୋଇ ବସିବ । ଭାଇମାନେ ରହିଥିଲେ କାଳେ ବିବାଦ ଲାଗିବ, ଏଥିପାଇଁ ସେ କୌଶଳରେ ସବୁ ଭାଇଙ୍କୁ ହତ୍ୟା କରିବାର ଯୋଜନା କରିଛି । ଭଲକଥା,

ତା'ର ପ୍ରଭୁ ହେବାର ଇଚ୍ଛା ପୂରଣ ହେବା ସଂଗେ ସଂଗେ ମୋ ପ୍ରତିଜ୍ଞା ମଧ୍ୟ ପୂରଣ ହୋଇଯିବ । ହଉ, ଆସିଗଲଣି ତ ! ଧନୁ ଧର । ଦେଖୁଛି ଆଜି ଦିନଟା କେବଳ ଅନ୍ଧରାଜାର ପୁଅଗୁଡ଼ାକୁ ମାରିବାରେ କଟି ଯିବ ।"

ଭୀମଙ୍କ କଥାଗୁଡ଼ାକ ଦୁର୍ଯ୍ୟୋଧନଙ୍କ ଭାଇମାନଙ୍କୁ ଅତ୍ୟନ୍ତ ରଗାଇ ଦେଲା । ସେମାନେ ଏକାବେଳେକେ ଭୀମଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଭୀମ ଆଗରୁ ଯୁଦ୍ଧ କରି କରି ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଥିଲେ । ତଥାପି ଶତ୍ରୁମାନଙ୍କ ଆକ୍ରମଣକୁ ଏଡ଼ାଇବାପାଇଁ ସେ ସିଂହ ବିକ୍ରମରେ ଗଦା ବୁଲାଇବାରେ ଲାଗିଲେ । ଅଳ୍ପ ସମୟ ମଧ୍ୟରେ ଗୋଟି ଗୋଟି ହୋଇ ସାତୋଟିଯାକ ଭାଇ ଭୂଇଁରେ ଟଳି ପଡ଼ିଲେ । ସବା ଶେଷରେ ବିକର୍ଣ୍ଣ ଟଳି ପଡ଼ିବା ଦେଖି ଭୀମ ଚିତ୍କାର କରି କହି ଉଠିଲେ, "ହାୟ ମୁଁ ପାଣ୍ଡବ କଅଣ କଲି । ହେ ବିକର୍ଣ୍ଣ ମୋତେ କ୍ଷମା କର । ଶତ୍ରୁମାନଙ୍କ ସହିତ ଥାଇ ମଧ୍ୟ ତୁମେ ଶତ୍ରୁ ନୁହଁ । ବିଛୁଆତି ବଣରେ ତୁମେ ଏକମାତ୍ର ତୁଳସୀ ଥିଲା । ଧର୍ମ, ନ୍ୟାୟ ଓ ସତ୍ୟ କଅଣ ତାହା ତୁମେ ହିଁ ଜାଣିଥିଲ । ବାସ୍ତବିକ ଏ ଯୁଦ୍ଧ ଏକ ଅଭିଶାପ ହୋଇ ମୋ ଆଗରେ ଦେଖା ଦେଲାଣି । ପିତାମହ ଭୀଷ୍ମଙ୍କ ପରେ ତୁମ ପରି ଜଣେ ଅତି ସାଧୁ ପ୍ରକୃତିର ବ୍ୟକ୍ତିକୁ ହତ୍ୟା କରି ଆମେ ଘୋର ଦୁଃଖ ଅନୁଭବ କରୁଛୁ । କୁରୁସଭାରେ ଦ୍ରୌପଦୀଙ୍କ ପ୍ରତି ହେଉଥିବା ଅନ୍ୟାୟର ଦୃଢ଼ ପ୍ରତିବାଦ କେବଳ ତୁମେ ହିଁ କରିଥିଲ । ତାହା ମନରେ ବାରମ୍ବାର ପଡ଼ି ମୋତେ ବିବ୍ରତ କରି ପକାଉଛି । ଧନ୍ୟ ତୁମେ ବିକର୍ଣ୍ଣ । କର୍ତ୍ତବ୍ୟ ଅନୁରୋଧରେ ତୁମେ ଯୁଦ୍ଧକୁ ଆସିଥିଲ ସତ; ମାତ୍ର ତୁମ ବିବେକ ଆମ ବିରୁଦ୍ଧରେ ନଥିଲା । ତୁମ ମୃତ୍ୟୁରେ ମୁଁ ଗଭୀର ଦୁଃଖିତ । ମୋତେ କ୍ଷମା କର ।"

ଦୁର୍ଯ୍ୟୋଧନଙ୍କର ଯେତେ ଯେତେ ଭାଇ ସାହାଯ୍ୟ କରିବାକୁ ଆସିଥିଲେ, ସେ ସମସ୍ତେ ଭୀମଙ୍କ ହାତରେ ପ୍ରାଣ ଦେବା ଦେଖି କର୍ଣ୍ଣ ଘୋର ଦୁଃଖରେ ବୁଡ଼ିଗଲେ । ତାଙ୍କୁ ଚାରିଆଡ଼ ଅନ୍ଧକାର ଦେଖାଗଲା । କିଛି ସମୟ ନୀରବରେ ବସି ରହିବା ପରେ ସେ ଭୀମଙ୍କୁ ଆକ୍ରମଣ କରବା ଆରମ୍ଭ କରିଦେଲେ । ସେତେବେଳକୁ ଭୀମ ଅତିଶୟ କ୍ଳାନ୍ତ ହୋଇ ପଡ଼ିଥାନ୍ତି । ଶସ୍ତ୍ର ଧରିବା ପାଇଁ ତାଙ୍କର ଇଚ୍ଛା ହେଉ ନଥାଏ । ଏଣେ ଯୁଦ୍ଧଭୂମି ଛାଡ଼ି ଚାଲିଯିବା ମଧ୍ୟ ସମ୍ଭବ ନୁହେଁ । ତେଣୁ ସେ ବାଧ୍ୟ ହୋଇ କର୍ଣ୍ଣଙ୍କ ସହିତ ଯୁଦ୍ଧ କରିବାରେ ଲାଗିଲେ । ଅତ୍ୟନ୍ତ କ୍ରୋଧରେ ଭୀମ କର୍ଣ୍ଣଙ୍କ ରଥ, ସାରଥୀ ଓ ଅଶ୍ୱମାନଙ୍କୁ ଆକ୍ରମଣ କଲେ । ତାଙ୍କ ଧନୁକୁ ଖଣ୍ଡାରେ ହାଣି ଖଣ୍ଡ ଖଣ୍ଡ କରିଦେଲେ । କର୍ଣ୍ଣ କୌଣସି ମତେ ନିଜକୁ ରକ୍ଷା କରିନେଲେ । ସଂଗେ ସଂଗେ ଅନ୍ୟ ଧନୁରୁ-ବଛା ବଛା ଶର ମାରି ଭୀମଙ୍କୁ ଅସ୍ତବ୍ୟସ୍ତ କରି ପକାଇବାରୁ ଭୀମ ତଳେ ମରିପଡ଼ିଥିବା ହାତୀମାନଙ୍କ ଆଢୁଆଳରେ ରହି ଶରମାଡ଼ରୁ ନିଜକୁ ରକ୍ଷା କରିବାକୁ ଚେଷ୍ଟା କଲେ । କର୍ଣ୍ଣ ଭୀମଙ୍କ ଏ ଅବସ୍ଥା ଦେଖି କହିଲେ, "ମୂର୍ଖ, ତୁ କାହିଁକି ଏ ଯୁଦ୍ଧ ଭୂଇଁକି ଚାଲି ଆସିଲୁ ? ଆରେ ପେଟୁ ଏଠାରେ ଖାଇବା ପାଇଁ କିଛି ନଥାଏ । ତୁ ଏ ସ୍ଥାନ ଛାଡ଼ି ଶୀଘ୍ର ବଣକୁ ପଳାଇ ଯା, ସେଠାରେ ପେଟଭରି ଫଳମୂଳ ଖାଇ ଆହୁରି ମୋଟା ହୋଇଯା । ତୋ ପରି ଗୋଟାଏ ଲୋକ କ୍ଷତ୍ରିୟମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ଯୋଗ୍ୟ ନୁହେଁ ।" ଅସହାୟ ଭୀମ କର୍ଣ୍ଣଙ୍କ କଥାରେ ରାଗି ଉଠି ଦାନ୍ତ କଡ଼ମଡ଼ କରିବାରେ ଲାଗିଥାନ୍ତି । ମାତ୍ର ସାରାଦିନ ଯୁଦ୍ଧ କରି ସେ ଏତେ କ୍ଳାନ୍ତ ହୋଇ ପଡ଼ିଥାନ୍ତି ଯେ, ଅସ୍ତ୍ର ଧରି ଯୁଦ୍ଧ କରିବାକୁ ସାହସ ଜୁଟାଇ ପାରୁ ନ ଥାନ୍ତି ।

ଭୀମଙ୍କ ଅବସ୍ଥା ଦେଖି ଅର୍ଜୁନ ଶ୍ରୀକୃଷ୍ଣଙ୍କ ସହ କର୍ଣ୍ଣଙ୍କ ନିକଟକୁ ଚାଲି ଆସିଲେ । କର୍ଣ୍ଣ ଭୀମଙ୍କୁ ଛାଡ଼ି ଅର୍ଜୁନଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେବାରୁ ଭୀମ ରକ୍ଷା ପାଇଗଲେ ।

## ଭୁରିଶ୍ରବାଙ୍କ ପରିଚୟ

ମହାଭାରତ ଯୁଦ୍ଧରେ ଭୁରିଶ୍ରବା କୌରବଙ୍କ ପକ୍ଷରେ ଯୋଗ ଦେଇଥିଲେ । ସାତ୍ୟକି ପାଣ୍ଡବ ପକ୍ଷରେ ରହି ଯୁଦ୍ଧ କରୁଥିଲେ । ସାତ୍ୟକି ସିନିଙ୍କ ନାତି । ଭୁରିଶ୍ରବା ଓ ସାତ୍ୟକି ଦୁଇଟି ବଂଶର ଲୋକ । ଉଭୟ ବଂଶ ମଧ୍ୟରେ ବହୁ ପୂର୍ବରୁ ବିବାଦ ଲାଗି ରହିଥିଲା ।

ଶ୍ରୀକୃଷ୍ଣଙ୍କ ମାତା ଦେବକୀଙ୍କୁ ବିବାହ କରିବା ପାଇଁ ବହୁ ରାଜପୁତ୍ର ଆଗ୍ରହୀ ଥିଲେ । ଏହି କାରଣରୁ ସିନା ଓ ସୋମଦତ୍ତଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହେଲା । ଶେଷରେ ସିନି ଜୟଲାଭ କରି ଦେବକୀଙ୍କୁ ଆଣି ବସୁଦେବଙ୍କ ସହ ବିବାହ କରାଇ ଦେଲେ । ଏହା ହିଁ ଉଭୟ ବଂଶ ମଧ୍ୟରେ ବିବାଦ ଲାଗିବାର ପ୍ରଧାନ କାରଣ ଥିଲା । ମହାଭାରତ ଯୁଦ୍ଧରେ ସିନିଙ୍କ ନାତି ସାତ୍ୟକି ପାଣ୍ଡବମାନଙ୍କ ପକ୍ଷରେ ରହିବା ଜାଣି ଭୁରିଶ୍ରବା ପୂର୍ବର ବଂଶ କଳହକୁ ନେଇ ମହାଭାରତ ଯୁଦ୍ଧରେ କୌରବଙ୍କ ପକ୍ଷରେ ଯୋଗ ଦେଇଥିଲେ ।

## ଭୁରିଶ୍ରବା ଓ ସାତ୍ୟକି

ସାତ୍ୟକିଙ୍କୁ ଦେଖି ଭୁରିଶ୍ରବା ଚିତ୍କାର କରି କହିଲେ, "ବହୁ ଦିନ ପରେ ଆଜି ଏ ସୁଯୋଗ ଆସିଛି । ମୁଁ ତୋତେ ଅଳ୍ପ ସମୟ ମଧ୍ୟରେ ଯମରାଜଙ୍କ ନିକଟକୁ ପଠାଇ ଦେବାର ବ୍ୟବସ୍ଥା କରିଦେବି । ପୂର୍ବରାଗ ଶୁଝାଇବାର ଏ ସବୁର୍ଣ୍ଣ ସୁଯୋଗ ଛାଡ଼ିବାର ନୁହେଁ ।"

ସାତ୍ୟକି କହିଲେ, "ତୁମ କଥା ମୋତେ ଶୁଣାଯାଇଛି । ମାତ୍ର ମନେରଖ, କଥାରେ ଯୁଦ୍ଧ ହୁଏ ନାହିଁ । ଯୋଦ୍ଧାକୁ ତୁଣ୍ଡରେ ହରାଇବା ଅପେକ୍ଷା ଯୁଦ୍ଧ କରି ବୀରତ୍ୱର ପ୍ରମାଣ ଦେବା ଉଚିତ ।"

କ୍ରମେ ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ଲାଗିଗଲା । ଦୁହିଁଙ୍କର ରଥମାନ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ଘୋଡ଼ାମାନେ ମରିଗଲେ । ଧନୁଗୁଡ଼ିକ ମଧ୍ୟ ଅକାମୀ ହୋଇଗଲା । ଶେଷକୁ ଦୁହେଁ ତଳେ ଠିଆ ହୋଇ ଖଣ୍ଡା ଯୁଦ୍ଧ ଆରମ୍ଭ କରିଦେଲେ । ଅଳ୍ପ ସମୟ ମଧ୍ୟରେ ଖଣ୍ଡାଗୁଡ଼ିକ ମଧ୍ୟ ଭାଙ୍ଗିଗଲା । ଅନ୍ୟ ଉପାୟ ନଦେଖି ଦୁହେଁ ଧରାଧରି ହୋଇ ମଲ୍ଲଯୁଦ୍ଧ ଆରମ୍ଭ କଲେ । କେତେବେଳେ ସାତ୍ୟକି ଭୁରିଶ୍ରବାଙ୍କୁ ତ କେତେବେଳେ ଭୁରିଶ୍ରବା ସାତ୍ୟକିଙ୍କୁ ଓଲଟାଇ ମାଡ଼ିବସୁଥାନ୍ତି । କେହି କାହାକୁ ଊଣା ନୁହନ୍ତି । ଅନେକ ସମୟ ଧରି ଏହିପରି ଚାଲିଲା । ଶେଷକୁ ଭୁରିଶ୍ରବା ସାତ୍ୟକିଙ୍କୁ ଏପରି ମାଡ଼ିବସିଲେ ଯେ କୌରବମାନେ ସାତ୍ୟକି ମରିଗଲେ ବୋଲି ଘୋଷଣା କରିଦେଲେ ।

ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ, "ସାତ୍ୟକି ଆମ ପକ୍ଷର ବୀର । ସେ ଯୁଦ୍ଧରେ ଯୋଗ ଦେଇ ବିପଦରେ ପଡ଼ିଛନ୍ତି । ଅଥଚ ତୁମେ କିଛି କରିବାକୁ ଇଚ୍ଛା କରୁନାହଁ । ଏହା ଆଦୌ ଉଚିତ ହେଉ ନାହିଁ । ଶୀଘ୍ର ସାତ୍ୟକିଙ୍କୁ ରକ୍ଷା କରିବା ପାଇଁ ଆଗେଇ ଯାଅ ।"

ଅର୍ଜୁନ ଦୁଃଖିତ ହୋଇ କହିଲେ, "ପ୍ରଭୁ, ବର୍ତ୍ତମାନ ମୋର କର୍ତ୍ତବ୍ୟ କଅଣ ମୁଁ ସ୍ଥିର କରି ପାରୁନାହିଁ । ଦେଖନ୍ତୁ, ଭୁରିଶ୍ରବା ମୋତେ ଯୁଦ୍ଧକୁ ଡାକିନାହାନ୍ତି କିମ୍ବା ମୁଁ ତାଙ୍କୁ ଯୁଦ୍ଧର ଡାକରା ଦେଇ ନାହିଁ । ସେ ଅନ୍ୟ ସହିତ ଯୁଦ୍ଧ କରୁଥିବା ବେଳେ ମୁଁ କିପରି ତାଙ୍କ ପ୍ରତି ଅସ୍ତ୍ର ପ୍ରୟୋଗ କରିବି ? ଏପଟେ ମୋ ପ୍ରିୟ ବନ୍ଧୁଙ୍କୁ ଜଣେ ହତ୍ୟା କରିବାକୁ ବସିଥିବା ବେଳେ ମୁଁ ନୀରବହୋଇ ଚାହିଁ ରହିବି କିପରି ?"

ଏହିପରି କହୁଥିବା ବେଳେ ଅର୍ଜୁନ ଦେଖିଲେ ଭୁରିଶ୍ରବା ସାତ୍ୟକିଙ୍କୁ ହାଣି ଦେବା ପାଇଁ ଖଣ୍ଡା ଉଞ୍ଚାଇ ଆଗେଇ ଆସୁଛନ୍ତି । ତାଙ୍କୁ ବୁଦ୍ଧି ଦେଖାଗଲା ନାହିଁ । ଏକ ତୀକ୍ଷ୍ଣ ଶର ମାରି ଭରିଶ୍ରବାଙ୍କ ଡାହାଣ ହାତକୁ କାଟି ଦେଲେ । ଖଣ୍ଡାଟିକୁ ଧରି ହାତଟା ତଳେ ଖସି ପଡ଼ିଲା । କିଏ ଏ କାର୍ଯ୍ୟ କଲା ବୋଲି ଚିତ୍କାର କରି ଭୁରିଶ୍ରବା ବୁଲିପଡ଼ି ପଛକୁ ଚାହିଁଦେଲେ ।

ଅର୍ଜୁନଙ୍କୁ ଦେଖି କହିଲେ, "-ବାଃ, ଅର୍ଜୁନ, ତୁମେ ଏକ ମହାନ ବୀର । ମୋତେ ପଛପଟୁ ଆକ୍ରମଣକରି ଗୋଟାଏ ବଡ଼ କୀର୍ତ୍ତି ରଖିଗଲ, ନୁହେଁ ? ଆକ୍ରମଣ କରିବାର ଥିଲା ତ ଆଗରୁ ଜଣାଇଥାନ୍ତ । ଚୋର ପରି ପଛରୁ ଆକ୍ରମଣ କରିବା ବୀରର ନୁହେଁ ଭୀରୁର କାର୍ଯ୍ୟ । ତୁମେ ଯାହା କରିଦେଲ, ତାହା ଯୁଦ୍ଧ ନିୟମର ବାହାରେ । ଲୋକେ ପଚାରିଲେ ତୁମେ କି ଉତ୍ତର ଦେବ । ଧିକ୍ ତୁମ ବୀରତ୍ୱକୁ ! ଶ୍ରୀକୃଷ୍ଣଙ୍କର କୁଶିକ୍ଷା ତୁମକୁ ଅନ୍ଧ କରି ପକାଇଛି । ତା କଥାରେ ଚାଲି ତୁମେ ଆଜି ଯେଉଁ ଅନ୍ୟାୟ କରିଛ, ତାହା କ୍ଷତ୍ରିୟମାନଙ୍କ ପକ୍ଷରେ ଏକ କଳଙ୍କ ହୋଇ ରହିଯିବ ।"

ଅର୍ଜୁନ କହିଲେ, "ବୃଦ୍ଧ ହୋଇ ଯାଇଥିବାରୁ ଆପଣଙ୍କ ବିଚାର ଶକ୍ତି ଲୋପ ପାଇଗଲାଣି । ଆଖି ଆଗରେ ମୋର ପ୍ରିୟ ମିତ୍ରକୁ ହତ୍ୟା କରାଯାଉଥିବା ଦେଖି ମୁଁ ନୀରବ ରହିଥାନ୍ତି କିପରି ? ସାତ୍ୟକି ମୋର ଡାହାଣ ହାତ ପରି । ଯୁଦ୍ଧରେ ସେ ମୋର ପ୍ରଧାନ ସାଥୀ । ସେ ଅସ୍ତ୍ରଶୂନ୍ୟ ହୋଇ ଭୂଇଁରେ ପଡ଼ିଥିବା ବେଳେ ଆପଣ ତାଙ୍କୁ ଖଣ୍ଡାରେ ଭୁଷି ଦେବାକୁ ଯାଉଥିଲେ । ଏପରି ଅବସ୍ଥାରେ ସାତ୍ୟକିଙ୍କୁ ରକ୍ଷା କରିବା ପାଇଁ ମୁଁ ଯାହା କରିଛି, ସେଥିରେ ମୋର ଯେଉଁ ପାପ ହେଲା ବା ନିନ୍ଦା ରଟନା ହେବ, ମୁଁ ତାକୁ ଆନନ୍ଦରେ ଗ୍ରହଣ କରିନେବି । ଶୁଣ, ଅସ୍ତ୍ରଶୂନ୍ୟ ବ୍ୟକ୍ତି ତଳେ ପଡ଼ିଥିବା ବେଳେ ତାଙ୍କୁ ଖଣ୍ଡାରେ ହାଣିଦେବା ଏକ ମହତ କାର୍ଯ୍ୟ, ଏହା କେଉଁ ନ୍ୟାୟ ଶାସ୍ତ୍ର ବା ଯୁଦ୍ଧ ନିୟମରେ ଲେଖା ହୋଇଛି ? ମୋ ପୁଅ ଅଭିମନ୍ୟୁ ଯେତେବେଳେ ଅସ୍ତ୍ରଶୂନ୍ୟ, ସହାୟ ଶୂନ୍ୟ ହୋଇପଡ଼ିଥିଲା, ଦେହରେ କବଚ ନଥିଲା, ସେତେବେଳେ ଜଣେ ନୁହେଁ ସାତଜଣ ଯୋଦ୍ଧା ଏକତ୍ର ହୋଇ ତାକୁ ହତ୍ୟା କଲେ ଓ ତୁମେ ବୃଦ୍ଧ ସେହି ହତ୍ୟାକାରୀମାନଙ୍କୁ ବଡ଼ ପାଟିରେ ପ୍ରଶଂସା ବାଣୀ ଶୁଣାଉଥିଲ । ଏ ପ୍ରକାର ଯୁଦ୍ଧ କେଉଁ ଶାସ୍ତ୍ରରେ ଉଚିତ ବୋଲି ଲେଖା ଅଛି ? ଆପଣ ନିଜ ଦୋଷ ପ୍ରତି ଅନ୍ଧ ହୋଇ ପଡ଼ିଛନ୍ତି ?"

ଭୁରିଶ୍ରବା କୌଣସି ଉତ୍ତର ନଦେଇ ନୀରବ ରହିଲେ । ପାଖରେ ପଡ଼ିଥିବା ଶର ଗୁଡ଼ିକୁ ବାମ ହାତରେ ଗୋଟାଇ ଗୋଟିଏ ସ୍ଥାନରେ ଗଦା କଲେ ଓ ତାହାରି ଉପରେ ବସି ଧ୍ୟାନମଗ୍ନ ହୋଇଗଲେ । ଏ ଦୃଶ୍ୟ ଦେଖି କୌରବମାନେ କୃଷ୍ଣ ଓ ଅର୍ଜୁନଙ୍କୁ ବହୁ କଟୁବାକ୍ୟ କହିବାରେ ଲାଗିଲେ ।

ସାତ୍ୟକି ଅଚେତା ହୋଇପଡ଼ିଥିଲେ । ଚେତା ଆସିବାପରେ ଭୁରିଶ୍ରବା ଯୋଗାସନରେ ବସିଥିବା ଦେଖି ତାଙ୍କ ଦେହ କ୍ରୋଧରେ ଜଳି ଉଠିଲା । ସେ ଆଗପଛ ବିଚାର ନକରି ଭୁରିଶ୍ରବାଙ୍କ ମୁଣ୍ଡ ହାଣି ତଳେ ଗଡ଼ାଇ ଦେଲେ । ମୁଣ୍ଡହୀନ ଗଣ୍ଡିଟି ପୂର୍ବପରି ଯୋଗରେ ବସି ରହିଥିଲା । ଦେବତା, ଋଷି ଓ ସାଧୁସନ୍ଥମାନେ ସାତ୍ୟକିଙ୍କ ଏ ପ୍ରକାର କାର୍ଯ୍ୟକୁ ଘୋର ନିନ୍ଦା କରିଥିଲେ ।

ସାତ୍ୟକି ବଡ଼ ପାଟିରେ କହିଲେ, "-ମୁଁ ଅଚେତ ହୋଇ ତଳେ ପଡ଼ିଥିବା ବେଳେ ଏ ବୃଦ୍ଧ ମୋ ଛାତି ଉପରେ ପାଦ ଥୋଇ ମୋତେ ହତ୍ୟା କରିବାକୁ ଯାଉଥିଲା । ତେଣୁ ସେ ଯେଉଁ ଅବସ୍ଥାରେ ଥାଉନା କାହିଁକି, ମୁଁ ତାକୁ ହତ୍ୟା କରିବାରେ ପାପ ନାହିଁ ।"

ଏସବୁ ସତ୍ତ୍ୱେ ସାତ୍ୟକିଙ୍କ କାର୍ଯ୍ୟକୁ କେହି ପସନ୍ଦ କରିନଥିଲେ । ମନୁଷ୍ୟ ଅତ୍ୟଧିକ କ୍ରୋଧ ପରବଶ ହୋଇ ପଡ଼ିଲେ ନ୍ୟାୟ, ଅନ୍ୟାୟ ବା ପାପ-ପୁଣ୍ୟର ବିଚାର ବୁଦ୍ଧି ହରାଇ ବସିଥାଏ ।

## ଜୟଦ୍ରଥର ମୃତ୍ୟୁ

ସୂର୍ଯ୍ୟ ପଶ୍ଚିମ ଆକାଶକୁ ଢଳିବା ଦେଖି ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ କହିଲେ, "ଯଦି ସନ୍ଧ୍ୟା ପୂର୍ବରୁ ଜୟଦ୍ରଥ ନାମରେ ତେବେ ଅର୍ଜୁନ ତା'ର ପ୍ରତିଜ୍ଞା ପୂରଣ ପାଇଁ ଆତ୍ମହତ୍ୟା କରିବ । ଅର୍ଜୁନ ମଲାପରେ ପାଣ୍ଡବମାନଙ୍କ ଅଣ୍ଟା ଭାଙ୍ଗିଯିବ । ଆଗପଛ ବିଚାର ନକରି ଅର୍ଜୁନ ଏପରି ଏକ ଅସମ୍ଭବ ପ୍ରତିଜ୍ଞା କରି ପକାଇବା ଦ୍ୱାରା ନିଜ ହାତରେ ନିଜେ ମଲା ଓ ସମସ୍ତଙ୍କୁ ବୁଡ଼ାଇ ମାଇଲା । ସମସ୍ତେ ଶୁଣ, ଆମେ ଏପରି ସତର୍କ ରହିବା ଯେ ସୂର୍ଯ୍ୟାସ୍ତ ପୂର୍ବରୁ ମାରିବା ତ ଦୂରର କଥା, ଅର୍ଜୁନ ଜୟଦ୍ରଥକୁ ଦେଖିବାକୁ ମଧ୍ୟ ପାଇବ ନାହିଁ ।"

କର୍ଣ୍ଣ କହିଲେ, "ଆଜି ଭୀମ ମୋତେ ଏପରି ଅସ୍ତବ୍ୟସ୍ତ କରି ପକାଇଛି ଯେ ସର୍ବାଙ୍ଗରେ ବ୍ୟଥା ଅନୁଭବ କରୁଛି । ମୋ ଶରୀରରେ ଜୀବନ ଥିବାପରି ଜଣାପଡୁନାହିଁ । ତଥାପି ମୋର ସମସ୍ତ ଶକ୍ତି ଦେଇ ମୁଁ ତୁମକୁ ନିଶ୍ଚୟ ସାହାଯ୍ୟ କରିବି ।"

ଅର୍ଜୁନ ନିଜର ପ୍ରତିଜ୍ଞା ପୂରଣ ପାଇଁ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଲେ । ସେ ଅସୀମ ବିକ୍ରମରେ କୌରବ ସେନାମାନଙ୍କୁ ଦଳି ଚକଟି ଆଗକୁ ମାଡ଼ି ଯିବାରେ ଲାଗିଲେ । ଜୟଦ୍ରଥଙ୍କୁ ଅନେକ ମହାବୀର ଓ ଅସଂଖ୍ୟ ସୈନ୍ୟ ଜଗି ରହିଥାନ୍ତି । ସେମାନଙ୍କୁ ପରାସ୍ତ କରି ଜୟଦ୍ରଥଙ୍କ ନିକଟରେ ପହଞ୍ଚିବା ପାଇଁ ଯଥେଷ୍ଟ ସମୟ ଲାଗିବ । ମାତ୍ର ସୂର୍ଯ୍ୟାସ୍ତ ହେବାକୁ ତ ଅପେକ୍ଷା କରି ପାରିବେ ନାହିଁ ।



ଜୟଦ୍ରଥଙ୍କର ମୃତ୍ୟୁ

ଏହି କଥା ଭାବି ଅର୍ଜୁନ ଯେତିକି ବ୍ୟସ୍ତ ହୋଇ ଉଠୁଥାନ୍ତି, ସୂର୍ଯ୍ୟାସ୍ତ ହୋଇ ଆସୁଥିବା ଦେଖି ଦୁର୍ଯ୍ୟୋଧନ ତାଠାରୁ ଅଧିକ ଆନନ୍ଦିତ ହେଉଥାନ୍ତି ।

ଏତିକିବେଳେ ଅନ୍ଧାର ଘୋଟି ଆସିଲା । ସୂର୍ଯ୍ୟାସ୍ତ ହୋଇଗଲା ଭାବି ପାଣ୍ଡବମାନେ ଦୁଃଖ ସାଗରରେ ବୁଡ଼ିଗଲେ । କୌରବମାନେ ଆନନ୍ଦରେ ନୃତ୍ୟ କରୁଥିବାବେଳେ ଜୟଦ୍ରଥ ବାହାରକୁ ଆସି ମନେ ମନେ ଭାବିଲେ, "ଓହୋ, ଆଜି ମୋର ଗୋଟାଏ ଗ୍ରହ କଟିଗଲା । ଯାହାହେଲେ ମଧ୍ୟ ଅର୍ଜୁନର ମୃତ୍ୟୁ ନିଜ ଆଖିରେ ନଦେଖିବା ପର୍ଯ୍ୟନ୍ତ ମୋ ପ୍ରାଣରେ ଶାନ୍ତି ଆସିବ ନାହିଁ । ଆଜି ତା ଗର୍ବର ଅନ୍ତିମ ଦିନ । ବଡ଼ ବୀର ବୋଲି ଧରାକୁ ସରା ମନେ କରୁଥିଲା । ଏଥର ପାଣ୍ଡବମାନଙ୍କ ଟାଣ କେତେଦିନ ରହିବ ଦେଖିବି ।

ଦୁଃଖର କଥା, ସୁଭଦ୍ରା, ଉଲୁପୀ ଏବଂ ଚିତ୍ରାଙ୍ଗନାଙ୍କ ଅବସ୍ଥା କଅଣ ହେବ ? ସେମାନେ ଏ ଦାରୁଣ ସଂବାଦ ପାଇବା ମାତ୍ରେ ଜୀବନ ହାରି ଦେବେ । ବିଧବା ହୋଇ ବଞ୍ଚିରହିବା ଠାରୁ ସେମାନେ ମୃତ୍ୟୁକୁ ବରଂ ପସନ୍ଦ କରିବେ । ହାୟ ନିଷ୍ଠୁର ଭଗବାନ । ତୁମର ଏ କି ଅବିଚାର ! ! ! ଦ୍ରୌପଦୀଙ୍କ ପାଇଁ ମୋର ଚିନ୍ତା ନାହିଁ । ଅର୍ଜୁନ ପରେ ତାଙ୍କର ଆହୁରି ଚାରିଜଣ ସ୍ୱାମୀ ଅଛନ୍ତି । ତାଙ୍କୁ ବିଧବା କହିବ କିଏ ? ସେ ଏ ଦୁଃଖ ଅନ୍ୟ ସ୍ୱାମୀମାନଙ୍କ ମୁହଁକୁ ଚାହିଁ ଭୁଲିଯିବ ।

ହଁ, ମୋ ସ୍ତ୍ରୀ-ସିନ୍ଧୁ ଦେଶର ପାଟରାଣୀ ଦୁଃଶୀଳା; ତାଙ୍କ କଥା ଭାବିଲା ବେଳକୁ ମୋ ମୁଣ୍ଡ ବୁଲାଇ ଦେଉଛି । ତାଙ୍କୁ କଅଣ

କହି ବୋଧ କରିବି ? ଭାଇ ଅର୍ଜୁନଙ୍କୁ ସେ ପ୍ରାଣଠାରୁ ବଳି ଭଲ ପାଆନ୍ତି । ଏ ଦୁଃଖ ସମ୍ବାଦ ପାଇବା ମାତ୍ରେ ତାଙ୍କ ଅବସ୍ଥା କଅଣ ହେବ, ମୁଁ କଳ୍ପନା ମଧ୍ୟ କରି ପାରୁନାହିଁ । ଗର୍ବରେ ଅନ୍ଧ ହୋଇ ଆଜି ଅର୍ଜୁନ ଯେଉଁ ଭୁଲ୍ କରି ବସିଲା, ତା'ର ଫଳ ଅନେକଙ୍କୁ ଭୋଗ କରିବାକୁ ପଡ଼ିବ । ଅର୍ଜୁନ ପରି ଏକ ମହାନ ଯୋଦ୍ଧାର ମୃତ୍ୟୁରେ ମୁଁ ଗଭୀର ଦୁଃଖ ଅନୁଭବ କରୁଛି । ହେଲେ, ସେ ତା ପ୍ରତିଜ୍ଞାରୁ କଦାପି ଓହରିବ ନାହିଁ । ଆଉ ଦୁଃଖ କରି ଲାଭ ନାହିଁ । ଯାହା ଘଟିବାକୁ ଥାଏ, ତାହା ଅବଶ୍ୟ ଘଟେ । ମନେ ହେଉଛି, କାଲିଠାରୁ ଏ ଯୁଦ୍ଧ ବନ୍ଦ ହୋଇଯିବ । ପାଣ୍ଡବମାନଙ୍କୁ ସାମାନ୍ୟ କିଛି ଦେଇ ବଞ୍ଚାଇ ରଖିଲେ ଦୁର୍ଯ୍ୟୋଧନଙ୍କର ମହତ୍ତ୍ୱ ବୃଦ୍ଧି ପାଇବ ।"

ଜୟଦ୍ରଥ ଏହିପରି ନାନା କଥା କହି ବାହାରେ ବୁଲୁଥିଲା ବେଳେ ଅର୍ଜୁନ ଅତ୍ୟନ୍ତ ବିମର୍ଷ ମନରେ ବସି ରହିଥାନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କ ମନ କଥା ଜାଣି ପାରି କହିଲେ, "ସଖା, ସୂର୍ଯ୍ୟାସ୍ତ ହୋଇନାହିଁ । ଆହୁରି ଅନେକ ସମୟ ବାକୀ ଅଛି । ମୁଁ ମାୟା ବଳରେ ସୂର୍ଯ୍ୟଙ୍କୁ ମେଘ ଦ୍ୱାରା ଘୋଡ଼ାଇ ଏ ଅନ୍ଧାର ସୃଷ୍ଟି କରିଛି । ଆଗକୁ ଚାହିଁ ଦେଖ, ଜୟଦ୍ରଥ କେଡ଼େ ନିର୍ଭୟ ମନରେ ବାହାରେ ବୁଲୁଛି । ବର୍ତ୍ତମାନ ସେ ତା ନିଜ କଥା ଭୁଲି ତୁମ ଆତ୍ମହତ୍ୟାର ଦୃଶ୍ୟ ଦେଖିବା ପାଇଁ ଅପେକ୍ଷା କରିଛି । ଅନ୍ଧାର ଘୋଟିଯିବାରୁ କୌରବମାନେ ମନେ ମନେ ବେଶ ଆନନ୍ଦିତ । ଜୟଦ୍ରଥକୁ ଘେରି ରହିଥିବା ମହାବୀର ଗଣ ଇତସ୍ତତଃ ହୋଇଗଲେଣି । ବର୍ତ୍ତମାନ ଅପୂର୍ବ ସୁଯୋଗ । ଜୟଦ୍ରଥକୁ ତୁରନ୍ତ ହତ୍ୟା କର । ସାବଧାନ ଜୟଦ୍ରଥର କଟାମୁଣ୍ଡ ତଳେ ପଡ଼ିଗଲେ ତୁମ ମୁଣ୍ଡ ଖଣ୍ଡ ଖଣ୍ଡ ହୋଇ ଫାଟିଯିବ ।"

ଜୟଦ୍ରଥର ଜନ୍ମ ସମୟରେ ଆକାଶରୁ ଶୂନ୍ୟବାଣୀ ହେଲା, "ରାଜା ବୃଦ୍ଧକ୍ଷତ୍ର, ତୁମର ଏ ପୁତ୍ର ଭବିଷ୍ୟତରେ ବଡ଼ ବୀର ହୋଇ ଖ୍ୟାତି ଲାଭ କରିବ । ମାତ୍ର ଯୁଦ୍ଧ ଭୂମିରେ ଜଣେ ମହାନ୍ ଯୋଦ୍ଧା ଏହାର ମୁଣ୍ଡ କାଟି ହତ୍ୟା କରିବ ।" ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ । ମର୍ତ୍ତ୍ୟମଣ୍ଡଳେ ଦେହ ବହି କେହି ଅମର ହୋଇ ରହି ପାରିବେ ନାହିଁ । ଏହି ମହାନ୍ ସତ୍ୟଟି ସିନ୍ଧୁରାଜ ବୃଦ୍ଧକ୍ଷତ୍ର ଭୁଲିଗଲେ । ପ୍ରିୟପୁତ୍ର ଜନ୍ମ ହେବା ମାତ୍ରେ ତା'ର ମୃତ୍ୟୁ ବାର୍ତ୍ତା ଶୁଣି ସେ ବିଚାର ବୁଦ୍ଧି ହରାଇ ବସିଲେ । ସଂଗେ ସଂଗେ ଅଭିଶାପ ଦେଇ କହିଲେ, "ଯେଉଁ ବୀର ମୋ ପୁଅର ମୁଣ୍ଡକାଟି ତଳେ ପକାଇବ, ସେ ସଂଗେ ସଂଗେ ମରିବ । ମୋ ପୁଅର ମୁଣ୍ଡ ଭୂମିକୁ ସ୍ପର୍ଶ କରିବା ମାତ୍ରେ ହତ୍ୟାକାରୀର ମୁଣ୍ଡ ଖଣ୍ଡ ଖଣ୍ଡ ହୋଇଯିବ । ତେଣୁ ପୁଣି ଥରେ ସାବଧାନ କରି ଦେଉଛି- ଜୟଦ୍ରଥର କଟା ମୁଣ୍ଡକୁ ଉଡ଼ାଇ ନେଇ କୁରୁକ୍ଷେତ୍ର ନିକଟରେ ତପସ୍ୟା କରୁଥିବା ବୃଦ୍ଧକ୍ଷତ୍ରଙ୍କ କୋଳରେ ପକାଇ ଦିଅ ।"

କାଳ ବିଳମ୍ବ ନକରି ଅର୍ଜୁନ ଏକ ଅଦ୍ଭୁତ ଶର ମାରି ଜୟଦ୍ରଥର ମୁଣ୍ଡ କାଟି ଦେଲେ । ସମସ୍ତେ ଦେଖିଲେ-କଟାମୁଣ୍ଡଟା ଆକାଶରେ ଉଡ଼ି ଉଡ଼ି କୁଆଡ଼େ ଚାଲିଗଲା । ଲୋକଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

କଟା ମୁଣ୍ଡଟା ଉଡ଼ି ଉଡ଼ି ଯାଇ ତପସ୍ୟା କରୁଥିବା ବୃଦ୍ଧକ୍ଷତ୍ରଙ୍କ କୋଳରେ ପଡ଼ିଗଲା । ତପସ୍ୟା ଶେଷରେ ବୃଦ୍ଧକ୍ଷତ୍ର ଉଠିବା ମାତ୍ରେ ଜୟଦ୍ରଥର କଟା ମୁଣ୍ଡଟା ତଳେ ଖସି ପଡ଼ିଲା । ସଂଗେ ସଂଗେ ବୃଦ୍ଧକ୍ଷତ୍ରଙ୍କ ମୁଣ୍ଡ ମଧ ଫାଟି ଖଣ୍ଡ ଖଣ୍ଡ ହୋଇଗଲା । ବୃଦ୍ଧକ୍ଷତ୍ର ଦେଇଥିବା ଅଭିଶାପର ଫଳ ନିଜେ ଭୋଗ କଲେ ।

ହଠାତ୍ ମେଘ ଘୁଞ୍ଚିଯାଇ ସୂର୍ଯ୍ୟ ଦେଖାଯିବାରୁ କୌରବମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ପାଣ୍ଡବମାନେ ଆନନ୍ଦରେ ନୃତ୍ୟ କରିବାରେ ଲାଗିଲେ । ଜୟଦ୍ରଥର ମୃତ୍ୟୁପରେ ଯୁଧିଷ୍ଠିର ଦ୍ରୋଣଙ୍କ ସହିତ ଯୁଦ୍ଧ କରିବାକୁ ଆଗେଇ ଗଲେ । ସେତେବେଳକୁ ସୂର୍ଯ୍ୟାସ୍ତ ହୋଇ ଯାଇଥିଲେ ମଧ ଯୁଦ୍ଧ ବନ୍ଦ ହୋଇ ପାରିନଥିଲା ।

କ୍ରମେ ଉଭୟ ପକ୍ଷ ବିଭିନ୍ନ ସମୟରେ ଯୁଦ୍ଧର ନିୟମ ପ୍ରତି ଆଉ ଦୃଷ୍ଟି ଦେଲେନାହିଁ ।

## ଘଟୋତ୍କଚର ମୃତ୍ୟୁ

ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ ଓ ଭୀମଙ୍କ ପୁତ୍ର ଘଟୋତ୍କଚ ଯେଉଁ ଅସୀମ ବୀରତ୍ୱ ଦେଖାଇ ଗଲା ତାହାର ତୁଳନା ନାହିଁ । ଏହି ଦୁଇଭାଇଙ୍କ ବୀରତ୍ୱ କାହାଣୀ କାଳ କାଳକୁ ଲୋକେ ଭୁଲି ପାରିବେ ନାହିଁ । ଅଭିମନ୍ୟୁଙ୍କ ମୃତ୍ୟୁ ପରେ ବୀର ଘଟୋତ୍କଚ ଯୁଦ୍ଧରେ ଯୋଗଦେଇ କୌରବ ସେନା ମଧ୍ୟରେ ଆତଙ୍କ ଖେଳାଇ ଦେଇଥିଲା ।

ଚତୁର୍ଦ୍ଦଶ ଦିବସର ଯୁଦ୍ଧ ଅତି ଭୟଙ୍କର ରୂପ ଧାରଣ କଲା । ଉଭୟ ପକ୍ଷର ଯୋଦ୍ଧାମାନେ ଯୁଦ୍ଧର ନିୟମ ଭଙ୍ଗ କରି ରାତିରେ ମଧ୍ୟ ଯୁଦ୍ଧ କରିବାରେ ଲାଗିଲେ । କୁରୁକ୍ଷେତ୍ର ରଣ ଭୂମିରେ ଅସଂଖ୍ୟ ଦିହୁଡ଼ି ଜଳାଯାଇ ଯୁଦ୍ଧ କରାଗଲା । ଭାରତର ପୁରାତନ ଇତିହାସରେ ଏପରି ଉଦାହରଣ ଆଦୌ ନଥିଲା । ଦୁଇ ପକ୍ଷଙ୍କ ମଧ୍ୟରେ କ୍ରୋଧର ପରିମାଣ ଏପରି ବୃଦ୍ଧି ପାଇ ଯାଇଥିଲା ଯେ କେହି ପୂର୍ବରୁ ଚଳି ଆସୁଥିବା ନିୟମ ପ୍ରତି ଦୃଷ୍ଟି ଦେବାକୁ ଇଚ୍ଛା କଲେ ନାହିଁ ।

ରାତିରେ ଅସୁରମାନେ ଖୁବ୍ ଶକ୍ତିଶାଳୀ ହୋଇ ଉଠନ୍ତି । ଏହି ସୁଯୋଗରେ ଘଟୋତ୍କଚ ଅଗଣିତ ଅସୁର ସୈନ୍ୟମାନଙ୍କ ସାହାଯ୍ୟରେ କୌରବ ପକ୍ଷର ହଜାର ହଜାର ସୈନ୍ୟଙ୍କୁ ମାରି ତଳେ ଗଡ଼ାଇ ଦେବାରେ ଲାଗିଲା । ଅସୁରମାନେ କେତେବେଳେ ଭୂଇଁ ଉପରେ ତ କେତେବେଳେ ଶୂନ୍ୟକୁ ଉଠିଯାଇ ଯୁଦ୍ଧ କରିବାରେ ଲାଗିଥାନ୍ତି । କିଏ କେଉଁଠି ରହି କୌରବ ସୈନ୍ୟମାନଙ୍କୁ ମାରି ପକାଉଛି କିଛି ଜାଣି ହେଉନଥାଏ । ଅସୁର ମାନଙ୍କ ଏ ଅଦୃଶ୍ୟ ଯୁଦ୍ଧ ଦେଖି ଦୁର୍ଯ୍ୟୋଧନ ମହାଚିନ୍ତାରେ ପଡ଼ିଲେ । ତାଙ୍କୁ ବୁଦ୍ଧି ବାଟ ଦେଖାଗଲା ନାହିଁ । ଶୀଘ୍ର ଏହାର କିଛି ପ୍ରତିକାର କରିବା ପାଇଁ ସେ କର୍ଣ୍ଣଙ୍କୁ କହିଲେ, "ବିପଦ ପରେ ବିପଦ ଆସି ମୋତେ ପାଗଳ କରିସାରିଲାଣି । ଅତିଶୀଘ୍ର ଘଟୋତ୍କଚ ନମଲେ ରାତି ପାହିଲା ବେଳକୁ ହୁଏତ କୌରବ ପକ୍ଷରେ ଆଉ ସୈନ୍ୟ ନଥିବେ । ଆମେ କାହା ବଳରେ ପାଣ୍ଡବମାନଙ୍କ ସହିତ ଯୁଦ୍ଧ କରିବା ? ଏ ମାୟାବୀ ଅସୁର ଅଦୃଶ୍ୟ ହୋଇ ଆମ ସୈନ୍ୟମାନଙ୍କୁ ଶେଷ କରିଦେବ । ବିଳମ୍ବ ନକରି ଉପାୟ ଚିନ୍ତା କର ।"

କର୍ଣ୍ଣ ମଧ୍ୟ ଅସୁରମାନଙ୍କ ଆକ୍ରମଣରେ ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲେ । ଘଟୋତ୍କଚଙ୍କୁ ହତ୍ୟା କରିବା ପାଇଁ ଉପାୟ ଚିନ୍ତା କରୁଥିବା ବେଳେ ହଠାତ୍ ତାଙ୍କର ଗୋଟିଏ କଥା ମନେ ପଡ଼ିଗଲା । ଦେବାରାଜ ଇନ୍ଦ୍ର ତାଙ୍କୁ ଏକ ଦିବ୍ୟ ଅସ୍ତ୍ର ଦେଇ କହିଥିଲେ "ଏହା ଥରେ ମାତ୍ର ବ୍ୟବହାର କରାଯିବ । ଯେତେବଡ଼ ଶକ୍ତିଶାଳୀ ବୀର ହେଲେ ମଧ୍ୟ ଏ ଅସ୍ତ୍ର ପ୍ରୟୋଗ କଲେ ସେ ନିଶ୍ଚୟ ମରିବ ।" କର୍ଣ୍ଣ ଏ ଅସ୍ତ୍ରଟି ଅତି ଯତ୍ନରେ ଅର୍ଜୁନଙ୍କୁ ମାରିବା ପାଇଁ ସାଇତି ରଖିଥିଲେ । ମାତ୍ର ଘଟୋତ୍କଚଙ୍କୁ ନମାରିଲେ ଅବସ୍ଥା ଅସମ୍ଭାଳ ହେବ ଜାଣି ସେ ଆଉ ଆଗ ପଛ ବିଚାର ନକରି ସେହି ଅସ୍ତ୍ରଟିରେ ଘଟୋତ୍କଚଙ୍କୁ ମାରିଦେଲେ । ଘଟୋତ୍କଚ ଶୂନ୍ୟରେ ରହି କୌରବ ସୈନ୍ୟଙ୍କୁ ମାରୁଥିବା ବେଳେ ସେହି ଅସ୍ତ୍ରଟି ତାକୁ ମାରି ତଳେ ପକାଇ ଦେଲା ।

ଅର୍ଜୁନ ରକ୍ଷା ପାଇଗଲେ ସତ; ମାତ୍ର ଭୀମଙ୍କ ମହାପରାକ୍ରମୀ ପୁତ୍ର ମରିବା ଦେଖି ପାଣ୍ଡବମାନେ ଦୁଃଖ ସାଗରରେ ବୁଡ଼ିଗଲେ ।

## ଦ୍ରୋଣଙ୍କ ଅସ୍ତ୍ରତ୍ୟାଗ

ଘଟୋତ୍କଚର ମୃତ୍ୟୁପରେ ମଧ୍ୟ ସେ ଦିନର ଯୁଦ୍ଧ ବନ୍ଦ ହେଲା ନାହିଁ । ଦ୍ରୋଣଙ୍କର ଭୟଙ୍କର ଅସ୍ତ୍ର ଚାଳନା ଓ ଶତ୍ରୁ ସଂହାର ଦେଖି ପାଣ୍ଡବ ସେନାମାନେ ତ୍ରାହି ତ୍ରାହି ଡାକ ଛାଡ଼ିଲେ । କୃଷ୍ଣ ଅର୍ଜନଙ୍କୁ କହିଲେ, "ଦ୍ରୋଣ ଆଜି କୌରବମାନଙ୍କୁ ଶତ୍ରୁ ଶୂନ୍ୟ କରିଦେବାକୁ ସ୍ଥିର କରିଥିବା ପରି ମନେ ହେଉଛି । ନିୟମକୁ ମାନି ଯୁଦ୍ଧ କଲେ ଆମର ପରାଜୟ ହିଁ ସାର ହେବ । ସାମାନ୍ୟ ଅଧର୍ମ

ପାଇଁ ଭୟକଲେ ଏ ଯୁଦ୍ଧରେ ଆମ ପକ୍ଷର ଜଣେ କେହି ବଞ୍ଚିପାରିବେ ନାହିଁ । ଏବେ ଦ୍ରୋଣଙ୍କ ଅସ୍ତ୍ରତ୍ୟାଗ କରିବାର ଉପାୟ ସ୍ଥିର କରାଯିବ । ଭାବୁଛି ଯଦି ପୁତ୍ର ଅଶ୍ୱତ୍ଥମା ଯୁଦ୍ଧରେ ନିହତ ହୋଇଛି ବୋଲି ଦ୍ରୋଣଙ୍କ ମନରେ ବିଶ୍ୱାସ ଜନ୍ମାଇ ଦିଆଯାଇପାରେ, ତେବେ ସେ ନିଶ୍ଚୟ ଅସ୍ତ୍ରତ୍ୟାଗ କରିବେ । ଦ୍ରୋଣ ଅସ୍ତ୍ର ନଧରିଲେ ପାଣ୍ଡବ ପକ୍ଷ ବଞ୍ଚିଯିବେ ଓ ହଜାର ହଜାର ସୈନ୍ୟଙ୍କ ଅମୂଲ୍ୟ ଜୀବନ ରକ୍ଷା ହୋଇଯିବ । ତେଣୁ 'ଅଶ୍ୱତ୍ଥାମା ମରିଛି' ଏତିକି କଥା ତାଙ୍କୁ କେହି କହିବାକୁ ପଡ଼ିବ ।"

ଏପରି ଏକ ସମ୍ପୂର୍ଣ୍ଣ ମିଥ୍ୟା କହିବା ପାଇଁ ଅର୍ଜୁନ ସ୍ପଷ୍ଟ ମନା କରିଦେଲେ । ପାଖରେ ଥିବା ଲୋକମାନେ ଶ୍ରୀକୃଷ୍ଣଙ୍କ ଏପରି ପ୍ରସ୍ତାବକୁ ଗ୍ରହଣ କରି ପାରିଲେ ନାହିଁ ।

ଯୁଧିଷ୍ଠିର କିଛି ସମୟ ଚିନ୍ତା କରି କହିଲେ, "-ଦ୍ୱାପରରେ ପ୍ରଭୁ ରାମଚନ୍ଦ୍ର ମିତ୍ର ସୁଗ୍ରୀବଙ୍କ ଜୀବନ ରକ୍ଷା ପାଇଁ ବାଳୀକୁ ହତ୍ୟା କରିଥିଲେ । ସେ ଜାଣିଶୁଣି ଏ ପାପ କରିଥିଲେ । ଦେବତାମାନଙ୍କୁ ରକ୍ଷା କରିବା ପାଇଁ ଶିବ ବିଷପାନ କରିଥିଲେ । ଅଗଣିତ ଲୋକଙ୍କ ଜୀବନ ରକ୍ଷା ପାଇଁ ଯଦି କିଛି ପାପ କରିବାକୁ ପଡ଼େ, ତେବେ ମୁଁ ସେ ପାପ କରିବାକୁ ପ୍ରସ୍ତୁତ ଅଛି ।" ସମସ୍ତେ ଯୁଧିଷ୍ଠିରଙ୍କ ପରି ଧର୍ମପ୍ରାଣ ବ୍ୟକ୍ତିଙ୍କଠାରୁ ଏପରି କଥା ଶୁଣି ନୀରବ ରହିଲେ । ମାତ୍ର ଶ୍ରୀକୃଷ୍ଣ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଲେ ।

ଯୁଦ୍ଧ ଭୂମିରେ ଅଶ୍ୱତ୍ଥାମା ନାମରେ ଏକ ପ୍ରକାଣ୍ଡ ହାତୀ ଥିଲା । ଭୀମ ଗଦା ପ୍ରହାର କରି ସେ ହାତୀଟାକୁ ମାରିଦେଲେ ଓ ସଙ୍ଗେ ସଙ୍ଗେ ଦ୍ରୋଣଙ୍କ ନିକଟକୁ ଯାଇ ବଡ଼ ପାଟିରେ କହିଲେ, "ବର୍ତ୍ତମାନ ମୁଁ ଅଶ୍ୱତ୍ଥାମାକୁ ହତ୍ୟା କରିଦେଇଛି ।" ଦ୍ରୋଣ ଧନୁରେ ବ୍ରହ୍ମାସ୍ତ୍ର ଯୋଖୁଥିବା ବେଳେ ଅଶ୍ୱତ୍ଥାମାର ମୃତ୍ୟୁ ସମ୍ବାଦରେ ଚମକି ପଡ଼ିଲେ । ତାଙ୍କର ସର୍ବାଙ୍ଗ ଥରିବାକୁ ଲାଗିଲା । ସେ ଅତ୍ୟନ୍ତ ବିଚଳିତ ହୋଇ ପାଖରେ ଥିବା ଯୁଧିଷ୍ଠିରଙ୍କୁ ପଚାରିଲେ, "ବତ୍ସ, ମୋ ପୁଅ ଅଶ୍ୱତ୍ଥାମା ମରିବା କଥା ପ୍ରକୃତରେ ସତ୍ୟ କି ?"

ଯୁଧିଷ୍ଠିରଙ୍କ ବ୍ୟାକୁଳତାକୁ ଲକ୍ଷ୍ୟ କରି ଶ୍ରୀକୃଷ୍ଣ ପୁଣି ଚିନ୍ତିତ ହୋଇ ପଡ଼ିଲେ । ଜୀବନରେ ଯେଉଁ ବ୍ୟକ୍ତି ପଦେ ହେଲେ ମିଛ କହି ନାହାନ୍ତି କିମ୍ବା ଥରକ ପାଇଁ କିଛି ଅନ୍ୟାୟ କରି ନାହାନ୍ତି, ତାଙ୍କ ତୁଣ୍ଡରୁ ଏତେ ବଡ଼ ମିଥ୍ୟା କଥା କିପରି ବାହାରିବ ବୋଲି ସେ ଭାବି ପାରିଲେ ନାହିଁ । ଯଦି ଏ ସମୟରେ ଯୁଧିଷ୍ଠିର ମିଛ ନ କହନ୍ତି, ତେବେ ଦ୍ରୋଣ ଧନୁରେ ଖଞ୍ଜିଥିବା ବ୍ରହ୍ମାସ୍ତ୍ର ପ୍ରୟୋଗ କରି ପାଣ୍ଡବ ପକ୍ଷକୁ ଶେଷ କରିଦେବେ । ଯୁଧିଷ୍ଠିରଙ୍କ ପଦେ କଥା ଉପରେ ପାଣ୍ଡବମାନଙ୍କ ଜୀବନ ନିର୍ଭର କରୁଥିଲା ।

ଗୁରୁ ଦ୍ରୋଣଙ୍କ ମନର ଅବସ୍ଥା ଦେଖି ଯୁଧିଷ୍ଠିରଙ୍କ ସର୍ବାଙ୍ଗ ଥରିବାକୁ ଲାଗିଲା । କିପରି ମିଛ କହିବେ-ଏଥିପାଇଁ ସେ ଖୁବ୍ ଆଗପଛ ହେଲେ । ମାତ୍ର ପର ମୁହୂର୍ତ୍ତରେ ସ୍ଥିର କରିନେଲେ ଯେ, ପାପ ହେଉ, ନର୍କର ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ପଡୁ ବରଂ ମୁଁ ସେ ସବୁ ସହ୍ୟ କରିବି କିନ୍ତୁ ବହୁ ଅମୂଲ୍ୟ ଜୀବନ ରକ୍ଷା କରିବାକୁ ସାମାନ୍ୟ ପଦୁଟିଏ ମିଛ କହିବାକୁ ପଛାଇବି ନାହିଁ । ଏପରି ଭାବି ସେ ବଡ଼ ପାଟିରେ କହିଲେ, "ଅଶ୍ୱତ୍ଥାମା ମରିବା ସମ୍ବାଦ ସତ୍ୟ ।" ଠିକ୍ ପରେ ପରେ ନିମ୍ନ ସ୍ୱରରେ କହିଲେ, "ମରିଛି ହାତୀ ଅଶ୍ୱତ୍ଥାମା ।" ଯୁଧିଷ୍ଠିର ପଛ କଥାପଦକ କହୁଥିବା ବେଳେ ଶ୍ରୀକୃଷ୍ଣ ଯୋର୍‌ରେ ଶଙ୍ଖ ନାଦ କରିବାରୁ ସେ କଥା ଶୁଣାଗଲା ନାହିଁ ।

ଅଶ୍ୱତ୍ଥାମା ଦ୍ରୋଣଙ୍କର ଜୀବନରୁ ବଳି ପ୍ରିୟ ଥିଲା । ଯୁଧିଷ୍ଠିର ତୁଣ୍ଡରୁ ଅଶ୍ୱତ୍ଥାମା ମରିଛି ବୋଲି ଶୁଣିବା ପରେ ଦ୍ରୋଣଙ୍କୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ତାଙ୍କ ଦେହରେ ଜୀବନ ଅଛି କି ନାହିଁ ସେ ଜାଣି ପାରିଲେ ନାହିଁ । ତାଙ୍କ ହାତରୁ ଧନୁଶର ଆପେ ଆପେ ଖସିପଡ଼ିଲା । ସେ ରଥ ଉପରେ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ ।

ଏତିକିବେଳେ ଭୀମ ଅତୀତ ଘଟଣାମାନଙ୍କରେ ଦ୍ରୋଣଙ୍କୁ ଦାୟୀ କରି ତାଙ୍କର କ୍ରୋଧ ବଢ଼ାଇବାକୁ ଲାଗିଲେ । ଦ୍ରୋଣଙ୍କର ଜୀବନ ପ୍ରତି ସମସ୍ତ ମମତା ତୁଟି ଯାଇଥିଲା । ତେଣୁ ସେ ଭୀମ ବା ଅନ୍ୟ କାହାରି କଥା ପ୍ରତି ଗୁରୁତ୍ୱ ଦେଉ ନଥିଲେ । ସେ କିଛି ଶୁଣିବି ପାରିନଥିଲେ । ଅସ୍ତ୍ର ଶସ୍ତ୍ର ଫିଙ୍ଗି ଦେଇ ସେ ରଥ ଉପରେ ବସିଥିଲେ । ଏବେ ଦେହରୁ କବଚ ବାହାର କରି ଦେଇ ରଥ

ଚଟାଣ ଉପରେ ଯୋଗାସନରେ ବସିଗଲେ । ଦ୍ରୋଣଙ୍କର ଏପରି ଅବସ୍ଥାରେ ଧୃଷ୍ଟଦ୍ୟୁମ୍ନ ତାଙ୍କୁ ହାଣିବା ପାଇଁ ଖଣ୍ଡା ବାହାର କରିବା ଦେଖି ଚାରିଆଡୁ ଅନ୍ୟାୟ, ଅନ୍ୟାୟ, ଘୋର ପାପ କାର୍ଯ୍ୟ ବୋଲି ପ୍ରବଳ ପାଟିତୁଣ୍ଡ ହେଲା । ଅନେକ ଧୃଷ୍ଟଦ୍ୟୁମ୍ନଙ୍କୁ ବାଧା ଦେବା ପାଇଁ ଧାଇଁ ଆସିଲେ । ମାତ୍ର ଧୃଷ୍ଟଦ୍ୟୁମ୍ନ କାହାର କଥା ପ୍ରତି କର୍ଣ୍ଣପାତ ନକରି ପିତା ଶତ୍ରୁ ଦ୍ରୋଣଙ୍କ ମୁଣ୍ଡ କାଟି ତଳେ ଗଡ଼ାଇ ଦେଲେ । ଲୋକେ ଏପ୍ରକାର ନୀଚ କାର୍ଯ୍ୟକୁ ଆଦୌ ପସନ୍ଦ କରି ନଥିଲେ ।

## (ଷୋଡ଼ଶ ଦିନର ଯୁଦ୍ଧ) କର୍ଣ୍ଣ ପର୍ବ: ଦୁଃଶାସନର ମୃତ୍ୟୁ

ଭୀଷ୍ମଙ୍କ ପରେ ପରେ ଦ୍ରୋଣଙ୍କ ମୃତ୍ୟୁ ହେବାରୁ କୌରବ ବୀରମାନେ ଆଉ ବିଜୟ ଆଶା ରଖି ନଥିଲେ । ଆଜି ମହାରଥୀ କର୍ଣ୍ଣ କୌରବ ପକ୍ଷର ପ୍ରଧାନ ସେନାପତି ଦାୟିତ୍ୱ ଗ୍ରହଣ କରିବାରୁ କୌରବ ସୈନ୍ୟମାନଙ୍କ ମଧ୍ୟରେ ନୂତନ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି ହେଲା । ଷୋଡ଼ଶ ଦିନ ଯୁଦ୍ଧରେ କର୍ଣ୍ଣ ପ୍ରଧାନ ସେନାପତି ହେଲେ ଓ ସପ୍ତଦଶ ଦିନ ଯୁଦ୍ଧରେ ତାଙ୍କର ପତନ ହେଲା ।

କର୍ଣ୍ଣ ଯୁଦ୍ଧକୁ ଅନୁକୂଳ କଲା ବେଳେ ଦୁର୍ଯ୍ୟୋଧନ ବ୍ୟାକୁଳ ହୋଇ କହି ଉଠିଲେ, "ହେ ମହାରଥୀ, ହେ କୌରବମାନଙ୍କର ଏକମାତ୍ର ରକ୍ଷାକର୍ତ୍ତା, ମୁଁ ଭୀଷ୍ମ ଓ ଦ୍ରୋଣଙ୍କ ଉପରେ ସମ୍ପୂର୍ଣ୍ଣ ଭରସା ରଖିଥିଲି । ସେମାନେ ନିଶ୍ଚୟ ଅର୍ଜୁନ ଓ ଭୀମଙ୍କୁ ପରାସ୍ତ କରି ଯୁଧିଷ୍ଠିରଙ୍କୁ ବନ୍ଦୀ ଭାବରେ ଆଣି ମୋତେ ଦେବେ । ମାତ୍ର ମୋର ସେ ଆଶା ସମ୍ପୂର୍ଣ୍ଣ ବିଫଳ ହୋଇଛି । ସେ ଦୁଇ ମହାବୀର ମୋ ଆଶା ପୂରଣ ଦିଗରେ କିଛି ହେଲେ କରି ପାରିଲେ ନାହିଁ । ଶେଷରେ ଦୁହିଁଙ୍କୁ ଦୁହେଁ ପାଣ୍ଡବମାନଙ୍କ ଦ୍ୱାରା ପରାଜିତ ହୋଇ ନିହତ ହେଲେ । ମୁଁ ବର୍ତ୍ତମାନ ଅଥଳ ସମୁଦ୍ରରେ ଭାସି ଯାଉଛି । ମୋତେ ରକ୍ଷା କରିବାର ଉପାୟ ସ୍ଥିର କର । ତୁମେ ଏ ବିରାଟ କୁରୁସେନାର ପ୍ରଧାନ ସେନାପତି । ହେ ମହାନ୍ ଯୋଦ୍ଧା, ତୁମେ ଆଜି ଯୁଧିଷ୍ଠିରଙ୍କୁ ବନ୍ଦୀ କର ଆଣ । ନଚେତ୍ ଭୀମ, ଅର୍ଜୁନ ଆଦି ପାଣ୍ଡବମାନଙ୍କୁ କଳେ ବଳେ କୌଶଳେ ହତ୍ୟା କର । ଏହା ହିଁ ମୋର ତୁମ ନିକଟରେ ଆକୁଳ ଅନୁରୋଧ ।"

କର୍ଣ୍ଣ ଅତ୍ୟନ୍ତ ଗମ୍ଭୀର ହୋଇ କହିଲେ, "ବ୍ୟସ୍ତ ହୁଅନାହିଁ ବନ୍ଧୁ, ମୁଁ କୌରବମାନଙ୍କ ପାଇଁ ଜୀବନ ଦେଇ ସେମାନଙ୍କୁ ଜୟଯୁକ୍ତ କରିବି ।"

ମହାବୀର ଶଲ୍ୟ କର୍ଣ୍ଣଙ୍କ ରଥର ସାରଥୀ ହୋଇଥିଲେ । ଯୁଦ୍ଧ ଆରମ୍ଭ ହୋଇଗଲା । ପାଣ୍ଡବମାନଙ୍କ ମଧ୍ୟରୁ ସମସ୍ତଙ୍କୁ ଛାଡ଼ି କେବଳ ଅର୍ଜୁନଙ୍କୁ ହତ୍ୟା କରିବାର ପ୍ରତିଜ୍ଞା କରିଥିବାରୁ କର୍ଣ୍ଣ ସମସ୍ତଙ୍କୁ ପଛରେ ପକାଇ ଅର୍ଜୁନଙ୍କ ନିକଟକୁ ଚାଲିଗଲେ । ଉଭୟଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ଆରମ୍ଭ ହୋଇଗଲା । କର୍ଣ୍ଣ ଓ ଅର୍ଜୁନଙ୍କ ଯୁଦ୍ଧ ଦେଖି ଦେବତାମାନେ ମଧ୍ୟ ଭୟ କରିବାରେ ଲାଗିଲେ । ଦୁହେଁ ମହାବୀର । କେହି କାହାଠାରୁ ଯୁଦ୍ଧ ବିଦ୍ୟାରେ ଊଣା ନଥିଲେ । ଅନେକ ସମୟ ଯାଏଁ ଯୁଦ୍ଧ ଚାଲିଲା । ଏତିକି ବେଳେ ଭୀମ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି ଅନ୍ଧରାଜାଙ୍କର ଅନେକ ଗୁଡ଼ିଏ ପୁତ୍ରଙ୍କୁ ମାରିବାରେ ଲାଗିଲେ । ଦୁଃଶାସନ ଦୂରରେ ଥାଇ ଯୁଦ୍ଧ କରୁଥିଲେ । ଭୀମଙ୍କ ହାତରୁ କୌରବମାନଙ୍କୁ ରକ୍ଷା କରିବା ପାଇଁ ସେ ଆଗେଇ ଆସିଲେ । ଭାଇମାନଙ୍କ ମୃତ ଦେହ ଦେଖି ସେ ରାଗରେ ଜଳିଉଠିଲେ । ଶର ପରେ ଶର ମାରି ଭୀମଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ ।

ଭୀମଙ୍କ କ୍ରୋଧ ପଞ୍ଚମକୁ ଉଠିଗଲା । ସେ ଗର୍ଜି ଉଠି କହିଲେ, "ଦୁରାଚାରୀ ଦୁଃଶାସନ, ତୋ ନିର୍ଲଜ ମୁହଁ ମୁଁ ଅଧିକ ସମୟ ଦେଖି ପାରିବି ନାହିଁ । ତୋତେ ଚାହିଁବା ମାତ୍ରେ ଅତୀତର ସମସ୍ତ ଘଟଣା ମୋ ଆଖି ଆଗରେ ଭାସି ଉଠୁଛି । ଆ, ମୋ ଆଗକୁ ଚାଲିଆ । ଦେଖିବି ଆଜି ମୋ ହାତରୁ ତୋତେ କିଏ ରକ୍ଷା କରିବ । ଆଜି ମୋ ପ୍ରତିଜ୍ଞା ପୂରଣର ସୁଯୋଗ ଦେଇଥିବାରୁ ତୋତେ ଧନ୍ୟବାଦ ଦେଉଛି । ସିଂହ ମୁହଁରୁ କେବେ ହେଲେ ଶିକାର ଖସି ଯାଏ ନାହିଁ ।" ଏହିପରି କହି ଭୀମ କୁଦାମାରି ଦୁଃଶାସନ ଉପରକୁ ଡେଉଁ ପଡ଼ିଲେ । ବାଘ ତା' ଶିକାର ମାଡ଼ି ବସିଲା ପରି ଭୀମ ଦୁଃଶାସନର ଛାତି ଉପରେ ବସିଗଲେ ଓ ତା' ଗୋଡ଼ ହାତକୁ ମଡ଼୍ ମଡ଼୍ କରି ଭାଙ୍ଗୁ ଭାଙ୍ଗୁ କହିଲେ, "-ଉପକାରୀ ଭାଇ ମୋର, ଏଇ ହାତରେ ତୁ ଦ୍ରୌପଦୀଙ୍କ କେଶ ଧରି ଭିଡ଼ି ଭିଡ଼ି ଆଣିଥିଲୁ ନା ?



ଦୁଃଶାସନ ବଧ

ଆରେ, କହୁନୁ କାହିଁକି ? ଏଇ ହାତରେ ଦ୍ରୌପଦୀଙ୍କ ଦେହରୁ ଲୁଗା ବାହାର କରି ତାଙ୍କୁ ଉଲଗ୍ନ କରାଇ ସଭାରେ ଠିଆ କରାଇବାର ଚେଷ୍ଟା କରିଥିଲୁଟି ? ନିର୍ଲ୍ଲଜ, ମାତୃଜାତି ପ୍ରତି ତୋର ଏତେ ଟିକିଏ ହେଲେ ସମ୍ମାନ ନାହିଁ । ଦେଖ୍, ସେଇ ପାପୀ ହାତକୁ ବର୍ତ୍ତମାନ ଉପାଡ଼ି ଦେଇ ତୋ ଦେହରୁ ଅଲଗା କରି ଦେଉଛି । ଯଦି ଏ ଯୁଦ୍ଧକ୍ଷେତ୍ରରେ କୌଣସି ବୀର ତୋତେ ସାହାଯ୍ୟ କରିବାକୁ ଇଚ୍ଛା କରୁଛନ୍ତି, ତେବେ ସେମାନେ ଅବିଳମ୍ବେ ଆଗେଇ ଆସନ୍ତୁ ।

ହେ ଅର୍ଜୁନ, ତୁମେ ମହାବୀର । ପାରିଲେ ଏ ଭାଇଟିର ଜୀବନ ରକ୍ଷା କର । ହେ ଚକ୍ରଧାରୀ କୃଷ୍ଣ, ଦୁଃଶାସନକୁ ରକ୍ଷା କରିବାର ସାହସ ଥିଲେ ଆଗେଇ ଆସ ।"

ଅର୍ଜୁନ ସବୁ ଶୁଣି ନୀରବ ରହିଥିଲେ ମାତ୍ର ଶ୍ରୀକୃଷ୍ଣଙ୍କ ପ୍ରତି ଭୀମ ଯେଉଁ କଟୂବାକ୍ୟ ପ୍ରୟୋଗ କଲେ ସେଥିରେ ସେ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି ଗାଣ୍ଡୀବ ଉଠାଇ କହିଲେ, "ମୁଁ ସବୁ ସହ୍ୟ କରି ପାରେ; ମାତ୍ର ଶ୍ରୀକୃଷ୍ଣଙ୍କୁ ଯେ ନିନ୍ଦା କରିବ ମୁଁ ତାକୁ କ୍ଷମା କରି ପାରିବି ନାହିଁ । ଆଜି ଭୀମ ବା ଅର୍ଜୁନ ଯେ କେହି ଏ ସଂସାରୁ ନିଶ୍ଚୟ ବିଦାୟ ନେବେ ।"

ଅର୍ଜୁନଙ୍କ ଉଗ୍ରମୂର୍ତ୍ତି ଦେଖି ଶ୍ରୀକୃଷ୍ଣ କହିଲେ, "ସଖା, ଶାନ୍ତ ହୁଅ, ଭୀମ ବର୍ତ୍ତମାନ କ୍ରୋଧରେ ଅନ୍ଧ ହୋଇ ଉଠିଛି । ତା ଦେହରେ ଶତ ସିଂହର ପରାକ୍ରମ ପ୍ରକାଶ ପାଉଛି । ଟିକିଏ ଅପେକ୍ଷା କରିଯାଅ ।"

ଆଖି ପିଛୁଳାକେ ଭୀମ ଦୁଃଶାସନର ଗୋଟିଏ ହାତ ଛିଣ୍ଡାଇ କହିଲେ, "ହେ କୁରୁ ସମ୍ରାଟ, ଗୋଟିଏ ଉପହାର ଗ୍ରହଣ କର । ସଂଗେ ସଂଗେ ଛିଣ୍ଡା ହାତଟାକୁ ଯୁଦ୍ଧ ଭୂମିକୁ ଫିଙ୍ଗି ଦେଲେ । ଏତିକିରେ ତାଙ୍କ କ୍ରୋଧ ଶାନ୍ତ ହେଲା ନାହିଁ । ସେ ଦୁଃଶାସନର ଛାତି ଚିରି ରକ୍ତ ପିଇବାରେ ଲାଗିଲେ । ରଣଭୂମିରେ ପାଗଳଙ୍କ ପରି ନାଚି କହିଲେ, "ପାପୀ ଦୁଃଶାସନକୁ ହତ୍ୟାକରି ମୁଁ ମୋର ଗୋଟିଏ ମାତ୍ର ପ୍ରତିଜ୍ଞା ପୂରଣ କଲି । ମହାପାପୀ ଦୁର୍ଯ୍ୟୋଧନ ଏ ପର୍ଯ୍ୟନ୍ତ ବଞ୍ଚିଛି । ମଶାଣିରେ ତା ଚିତା ଦାଉ ଦାଉ ହୋଇ ଜଳି ଉଠିବାର ମୋତେ ଦେଖା ଗଲାଣି । ଶୀଘ୍ର ଏ ନିର୍ଲ୍ଲଜ, କୁରୁକୁଳ କଳଙ୍କକୁ ଶେଷ କରି ମୁଁ ମୋର ଅନ୍ୟ ପ୍ରତିଜ୍ଞାଟି ପୂରଣ କରିବି । ହେ ଦ୍ରୌପଦୀ, ଶୀଘ୍ର ଏ ସ୍ଥାନକୁ ଆସ । ବହୁ ଦିନରୁ ତୁମର କେଶ ମୁକୁଳା ରହିଛି । ଦୁଃଶାସନର ତାଜା ରକ୍ତରେ ଆଜି ତୁମର ବେଣୀ ବାନ୍ଧି ଦେବାକୁ କହିଥିଲି । ସେ କଥା ମଧ ଆଜି ପୂରଣ କରିବି ।" କିଛି ସମୟ ପାଇଁ ଯୁଦ୍ଧ ବନ୍ଦ ହୋଇଗଲା । ସମସ୍ତେ ଭୀମଙ୍କର ପ୍ରଚଣ୍ଡ ମୂର୍ତ୍ତି ଦେଖି କାଠପିତୁଳା ପରି ଠିଆ ହୋଇ ରହିଲେ । ମନେ ହେଲା ସତେ ଯେପରି ମହାରୁଦ୍ର ପ୍ରଳୟକାଳର ସଂହାର ମୂର୍ତ୍ତିଧରି ଭୀମ ରୂପରେ ଏ ଯୁଦ୍ଧ ଭୂଇଁରେ ଉପସ୍ଥିତ ହୋଇ ଯାଇଛନ୍ତି !

ଦୁଃଶାସନଙ୍କ ପିଣ୍ଡରୁ ପ୍ରାଣ ଛାଡ଼ିଗଲା । ଯୁଦ୍ଧ ଭୂଇଁରେ ତାଙ୍କ ମୃତ ଦେହ ଏକ ଖଣ୍ଡିଆ ପର୍ବତ ପରି ପଡ଼ି ରହିଥାଏ । କୌରବ ପକ୍ଷର ବୀର ଓ ସୈନ୍ୟମାନେ ଦୁଃଖ ଓ ଭୟରେ ଅତ୍ୟନ୍ତ କାତର ହୋଇ ପଡ଼ିଲେ । ସବୁଠାରୁ ବେଶୀ ଦୁଃଖ ହେଲା ଦୁର୍ଯ୍ୟୋଧନଙ୍କର । ସେ ଯୁଦ୍ଧଭୂଇଁରେ କାନ୍ଦି କାନ୍ଦି ତଳେ ଲୋଟିଗଲେ । ନିଜକୁ ନିତାନ୍ତ ଅସହାୟ ମନେ କରି ସେ ଗଭୀର ଚିନ୍ତାରେ ବୁଡ଼ିଗଲେ ।

## କର୍ଣ୍ଣଙ୍କ ପତନ

## ସପ୍ତଦଶ ଦିନର ଯୁଦ୍ଧ

ଦୁଃଶାସନର ଶୋଚନୀୟ ମୃତ୍ୟୁପରେ କର୍ଣ୍ଣ ଅତି ବିବ୍ରତ ହୋଇ ପଡ଼ିଲେ । ତାଙ୍କ ଅବସ୍ଥା ଦେଖି ଶଲ୍ୟ କହିଲେ, "-ଦୁର୍ଯ୍ୟୋଧନ ବର୍ତ୍ତମାନ ହତାଶ ହୋଇ ପଡ଼ିଛନ୍ତି । ଏତେବେଳେ ତାଙ୍କ ମନରେ ସାହସ ଦେବା କଥା । ତୁମେ ଅଧୈର୍ଯ୍ୟ ହେଲେ ସମୁଦାୟ କୌରବ ବାହିନୀର ମନ ବଳ ଭାଙ୍ଗି ପଡ଼ିବ । ବର୍ତ୍ତମାନ ତୁମେ ହିଁ କେବଳ କୌରବମାନଙ୍କର ଆଶା ଓ ଭରସା । ଆଉ ବିଳମ୍ବ ନକରି ଅର୍ଜୁନ ସହିତ ଯୁଦ୍ଧରେ ଲାଗିଯାଅ । ଆଜି ଯୁଦ୍ଧ କରି କରି ଅର୍ଜୁନ ଅତ୍ୟନ୍ତ କ୍ଲାନ୍ତ ହୋଇ ପଡ଼ିଛି । ସେ ତୁମ ଆଗରେ ଅଧିକ ସମୟ ଗାଣ୍ଡୀବ ଧରି ଠିଆ ହୋଇ ପାରିବ ନାହିଁ । ଏହା ହିଁ ଉପଯୁକ୍ତ ସମୟ । ଏତିକିବେଳେ ଅର୍ଜୁନକୁ ପରାସ୍ତ କରି ତୁମେ ନିଜକୁ ପୃଥିବୀର ସର୍ବଶ୍ରେଷ୍ଠ ବୀର ରୂପେ ପ୍ରମାଣ କରିଦିଅ । ସୁଯୋଗ ଆସିଛି । ଏତେବେଳେ ତାକୁ ହାତଛଡ଼ା କଲେ ହୁଏତ ଆଉ ଥରେ ସେ ସୁଯୋଗ ଆସି ନପାରେ । ଶୀଘ୍ର ଅଗ୍ରସର ହୁଅ ।"

ଶଲ୍ୟଙ୍କ କଥାରେ ଉତ୍ସାହିତ ହୋଇ କର୍ଣ୍ଣ ଅର୍ଜୁନଙ୍କ ଆଗକୁ ରଥ ନେବା ପାଇଁ ଆଦେଶ ଦେଲେ ।

ଅଶ୍ୱତ୍ଥାମା ଯୁଦ୍ଧର ଗତି ଦେଖି ଖୁବ୍ ଦୁର୍ବଳ ହୋଇ ପଡ଼ିଥିଲେ । ସେ ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇ କହିଲେ, "ମହାରାଜ, ଯୁଦ୍ଧର ଶେଷ ଫଳ ବିଷୟରେ ଟିକିଏ ଚିନ୍ତା କରନ୍ତୁ । ପିତାମହ ଭୀଷ୍ମ ଓ ମୋର ପିତାଙ୍କ ମୃତ୍ୟୁପରେ ଯୁଦ୍ଧର ଫଳାଫଳ ଅନୁମାନ କରିବା ସହଜ ହୋଇ ଯାଇଛି । ଆଜି ପୁଣି ମହାବୀର ଦୁଃଶାସନଙ୍କ ମୃତ୍ୟୁ ସମସ୍ତଙ୍କ ମନରେ ଗଭୀର ଦୁଃଖ ଓ ନିରାଶା ସୃଷ୍ଟି କରି ଦେଇଛି । ଏପରି ଅବସ୍ଥାରେ ଆଉ ଯୁଦ୍ଧ ପାଇଁ ଆଗକୁ ନ ବଢ଼ି ପାଣ୍ଡବମାନଙ୍କ ସହିତ ସନ୍ଧି କରିବା ହିଁ ବୁଦ୍ଧିମାନର କାମ ହେବ । ପାଣ୍ଡବମାନେ ଆଦୌ ଯୁଦ୍ଧ କରିବାକୁ ଚାହୁଁ ନଥିଲେ । ମୋର ବିଶ୍ୱାସ ଅର୍ଜୁନ ମୋ କଥା ରକ୍ଷା କରି ଯୁଦ୍ଧ କରିବେ ନାହିଁ । ଯୁଧିଷ୍ଠିରଙ୍କ ସ୍ୱଭାବ ବିଷୟରେ ତୁମକୁ ବା ଅଜଣା କଅଣ ? ଶ୍ରୀକୃଷ୍ଣ ଯୁଦ୍ଧର ପକ୍ଷପାତୀ ନୁହନ୍ତି, ମୋ ପରାମର୍ଶ ଗ୍ରହଣ କଲେ ମୁଁ କର୍ଣ୍ଣଙ୍କୁ ମଧ ଯୁଦ୍ଧ ନକରିବାକୁ ଅନୁରୋଧ କରବି । ପାଣ୍ଡବମାନେ ଜନ୍ମରୁ ତୁମର ଭାଇ । ତେଣୁ ସନ୍ଧି କରି ଶାନ୍ତିରେ ରହିବା ହିଁ ବୁଦ୍ଧିମାନର କାର୍ଯ୍ୟ ।"

ଦୁର୍ଯ୍ୟୋଧନ କହିଲେ, "ନାଁ ନାଁ ସେ କଥା କଦାପି ହୋଇ ପାରିବ ନାହିଁ । ଯୁଦ୍ଧ ବନ୍ଦ କରିବା କଥା ମୋତେ କେହି କହ ନାହିଁ । ଭୀମ ମୋ ଆଖି ଆଗରେ ମୋ ଭାଇର ଛାତି ଚିରି ରକ୍ତ ପାନ କରିଥିବା କ'ଣ ତୁମ ଦୃଷ୍ଟିରେ ପଡ଼ିନାହିଁ । ସେ ରାକ୍ଷସ ମୋତେ ଯେଉଁ କଟୁକଥା ମାନ କହିଗଲା, ସେ ସବୁ ଶୁଣିବା ପରେ ମଧ ତୁମେ ଯୁଦ୍ଧ ବନ୍ଦ କରି ସନ୍ଧି କରିବାକୁ ପ୍ରସ୍ତାବ ଦେଇପାରୁଛ ? ତୁମ ବିବେକ ବାଧା ଦେଉନାହିଁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି । ଟିକିଏ ଅପେକ୍ଷା କରି ଦେଖ, ଆଜି ଅର୍ଜୁନ କର୍ଣ୍ଣଙ୍କ ଶରରେ ମରୁଛି କି ନାହିଁ । ସାରାଦିନ ଯୁଦ୍ଧ କରି କରି ଅର୍ଜୁନ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଛି । କର୍ଣ୍ଣଙ୍କ ପରି ଜଣେ ମହାବୀରଙ୍କ ସହିତ ଯୁଦ୍ଧ କରିବା ପାଇଁ ତା ଦେହରେ ଯଥେଷ୍ଟ ଶକ୍ତି ଆଉ ନାହିଁ । ଏହି ସୁଯୋଗରେ କର୍ଣ୍ଣ ନିଶ୍ଚୟ ତାକୁ ସଂହାର କରି କୌରବମାନଙ୍କ ବିଜୟ-ବାନା ଉଡ଼ାଇ ଦେବେ । ଯୁଦ୍ଧର ଗତି କେଉଁ ଆଡ଼କୁ ଯାଉଛି ସ୍ଥିର ହୋଇ ଲକ୍ଷ୍ୟ କର ।"

କର୍ଣ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ଘମାଘୋଟ ଲଢ଼ାଇ ଆରମ୍ଭ ହୋଇଗଲା । କର୍ଣ୍ଣ ଅଗ୍ନି ଶର ଛାଡ଼ିଦେବା ମାତ୍ରେ ପାଣ୍ଡବ ସେନାମାନଙ୍କ ଆଡ଼କୁ ନିଆଁ ମାଡ଼ିଯିବାରେ ଲାଗିଲା । ଅର୍ଜୁନ କାଳ ବିଳମ୍ବ ନକରି ବରୁଣ-ଅସ୍ତ୍ର ପ୍ରୟୋଗ କରିବାରୁ ମେଘ ବର୍ଷା ହୋଇ ନିଆଁ ଲିଭିଗଲା । ଏହାପରେ କର୍ଣ୍ଣ ବାୟୁ-ଅଗ୍ନି ଛାଡ଼ି ଦେବାରୁ ଅର୍ଜୁନ ନାଗ-ଅସ୍ତ୍ର ପ୍ରୟୋଗ କରିଦେଲେ । ହଜାର ହଜାର ଭୟଙ୍କର ନାଗ ସାପ ଗର୍ଜନ କରି ରଣଭୂମିରେ ଖେପିଯିବା ଦେଖି କର୍ଣ୍ଣ ଗରୁଡ଼ାସ୍ତ୍ର ମାରି ନାଗସାପମାନଙ୍କୁ ଘଉଡ଼ାଇ ଦେଲେ । ଅର୍ଜୁନଙ୍କ ନିକଟରେ ନାରାୟଣାସ୍ତ୍ର ଥିଲା । ତା ଦ୍ୱାରା ସେ ଅସମ୍ଭବକୁ ସମ୍ଭବ କରି ପାରିଥାନ୍ତେ । ମାତ୍ର ମନୁଷ୍ୟ ମାନଙ୍କ ଯୁଦ୍ଧରେ ଉକ୍ତ ଅସ୍ତ୍ର ବ୍ୟବହାର କରିବାକୁ ମନାଥିବାରୁ ଅର୍ଜୁନ ତାହା ପ୍ରୟୋଗ କଲେ ନାହିଁ । ଅର୍ଜୁନ ଅନେକ ଅସ୍ତ୍ର ପ୍ରୟୋଗ କରି କର୍ଣ୍ଣଙ୍କ ସୈନ୍ୟମାନଙ୍କୁ ମାରିବାରେ ଲାଗିଲେ । କର୍ଣ୍ଣ ଆଉ ସମ୍ଭାଳି ପାରିଲେ ନାହିଁ । ସେ ଅର୍ଜୁନଙ୍କୁ ଲକ୍ଷ୍ୟ କରି ଏକ ଦିବ୍ୟ ଅସ୍ତ୍ର ମାରିଦେଲେ । ଅସ୍ତ୍ରଟା ଭୟଙ୍କର ବେଗରେ ଅର୍ଜୁନଙ୍କ ଆଡ଼କୁ ମାଡ଼ି ଆସୁଛି ଦେଖି ଶ୍ରୀକୃଷ୍ଣ ଅର୍ଜୁନଙ୍କ ରଥକୁ ତଳକୁ ଚାପିଦେଲେ । କର୍ଣ୍ଣଙ୍କ ଶର ଅର୍ଜୁନଙ୍କ ମୁକୁଟକୁ ଉଡ଼ାଇ ନେଇ ଚାଲିଗଲା । ଅର୍ଜୁନ ରକ୍ଷା ପାଇଗଲେ ।

କର୍ଣ୍ଣ ଅର୍ଜୁନଙ୍କୁ ଓ ଅର୍ଜୁନ କର୍ଣ୍ଣଙ୍କୁ ଶର ପରେ ଶର ମାରିବାରେ ଲାଗିଥାନ୍ତି । ଦୁହିଁଙ୍କ ଦେହରୁ ଧାର ଧାର ରକ୍ତ ବହି ଯାଉଥାଏ । ଏତିକିବେଳେ ହଠାତ୍ କର୍ଣ୍ଣଙ୍କ ରଥର ଚକ କାଦୁଅରେ ଗଳି ପଡ଼ିଲା । ରଥରୁ ଓହ୍ଲାଇ ଚକକୁ ଉଠାଇବାକୁ ଚେଷ୍ଟା କରୁଥିବା ବେଳେ ଅର୍ଜୁନଙ୍କୁ ଚାହିଁ କହିଲେ, "ଦେଖ, ମୋର ରଥର ଚକ ମାଟିରେ ଗଳି ପଡ଼ିଛି । କିଛି ସମୟ ଅପେକ୍ଷା କର । ଏ ସମୟରେ ଯୁଦ୍ଧ ନକରିବା ହିଁ ଉଚିତ । ଅସ୍ତ୍ରହୀନ ଯୋଦ୍ଧା ସହିତ ଯୁଦ୍ଧ କରିବା ଘୋର ଅନ୍ୟାୟ । ତେଣୁ ମୋ କଥା ମାନି ରହି ଯାଅ । ରଥ ଚକ ଉପରକୁ ଉଠିଆସିଲେ ଆମେ ପୁଣି ଯୁଦ୍ଧରେ ଲାଗିଯିବା ।"

କର୍ଣ୍ଣଙ୍କ କଥାରେ ଅର୍ଜୁନ ଟିକିଏ ଚିନ୍ତିତ ହୋଇ ପଡ଼ିଲେ । ଏତିକିବେଳେ ଶ୍ରୀକୃଷ୍ଣ କହିଲେ, "ହେ ମହାବୀର, ହେ ଧାର୍ମିକଶ୍ରେଷ୍ଠ । ବର୍ତ୍ତମାନ ତୁମେ ବିପଦରେ ପଡ଼ିଛ । ତେଣୁ ଧର୍ମ, ନ୍ୟାୟ, ଯୁଦ୍ଧ ନୀତି ଆଦି ସବୁ କଥା ତୁମର ଗୋଟି ଗୋଟି ହୋଇ ମନେ ପଡ଼ି ଯାଉଛି । ତୁମ ପରି ଲୋକ ତୁଣ୍ଡରୁ ଧର୍ମ କଥା ଶୁଣି ମୁଁ ନ ହସି ରହି ପାରୁ ନାହିଁ । ଯେତେବେଳେ ଦ୍ରୌପଦୀଙ୍କୁ ସଭା ମଧ୍ୟରେ ଉଲଗ୍ନ କରା ଯାଉଥିଲା, ତୁମେ ସେତେବେଳେ ଆନନ୍ଦରେ ତାଳି ମାରୁ ନଥିଲ କି ? ଦ୍ରୌପଦୀଙ୍କୁ ବେଶ୍ୟା ବୋଲି କହି ଅନ୍ୟ ପତି ଗ୍ରହଣ କରିବାକୁ ତୁମେ ପରାମର୍ଶ ଦେଇଥିଲଟି ? ସରଳ ଯୁଧିଷ୍ଠିରଙ୍କୁ ପଶା ଖେଳରେ ହରାଇ ବଣକୁ ପଠାଇବାରେ ତୁମେ ଶକୁନି ଓ ଦୁର୍ଯ୍ୟୋଧନ ସହିତ ମନ୍ତ୍ରଣା କରିନଥିଲ ? ଜଉଘରେ ପାଣ୍ଡବମାନଙ୍କୁ ପୋଡ଼ି ମାରିବାର ଯୋଜନା ତୁମ ଅଜ୍ଞାତରେ ହୋଇଥିଲା କି ? ବନବାସରୁ ଫେରି ଆସିବା ପରେ ପରେ ପାଣ୍ଡବମାନଙ୍କୁ ସେମାନଙ୍କର ପୈତୃକ ରାଜ୍ୟ ଫେରାଇଦେବାରେ ଅନ୍ୟାୟ ଥିଲା କେଉଁଠି ? ଲାଜ ମାଡୁ ନାହିଁ ? ଯେତେବେଳେ ତୁମେ ମହା ମହା ରଥୀ ମାନଙ୍କୁ ନେଇ ଏକୁଟିଆ ହୋଇ ଯୁଦ୍ଧ କରୁଥିବା ବାଳକ ଅଭିମନ୍ୟୁକୁ ହତ୍ୟାକଲ, ସେତେବେଳେ ଧର୍ମ, ନ୍ୟାୟ ଓ ଯୁଦ୍ଧ ନୀତିଗୁଡ଼ିକୁ କେଉଁଠି ଲୁଚାଇ ରଖିଥିଲ ?



**ଅର୍ଜୁନ ଓ କର୍ଣ୍ଣ**

ଜୀବନ ଯାକ ଅନ୍ୟାୟ ଓ ଅଧର୍ମ ମାର୍ଗରେ ଚଳି ବିପଦ ସମୟରେ ଧର୍ମକୁ ଡାକ ପକାଇଲେ ଧର୍ମ ଦେଖାନଦେଇ ଦେଖା ଦେବେ ଯମଦୂତମାନେ ।"

କୃଷ୍ଣ ଅର୍ଜୁନଙ୍କ ମନରେ କ୍ରୋଧ ସୃଷ୍ଟି କରିବା ପାଇଁ ଜାଣିଶୁଣି କର୍ଣ୍ଣଙ୍କୁ ଅତି କଟୁବାକ୍ୟ ପ୍ରୟୋଗ କରିବାରେ ଲାଗିଲେ । କର୍ଣ୍ଣ ଲଜ୍ଜା, ଦୁଃଖ ଓ କ୍ରୋଧରେ ମୁଣ୍ଡ ତଳକୁ ପୋତି ଦେଲେ । ପ୍ରାଣ ପଣେ ଚେଷ୍ଟା କରି ମଧ୍ୟ କର୍ଣ୍ଣ ରଥ ଚକ ଉପରକୁ ଉଠାଇ ପାରିଲେ ନାହିଁ । ସେ ରଥ ଉପରକୁ ଉଠି ଆସି ଅର୍ଜୁନଙ୍କୁ ଏକ ଶକ୍ତିଶାଳୀ ଶର ମାରି ଅଚେତ କରିଦେଲେ । ଅର୍ଜୁନ ଅଚେତ ହୋଇ ପଡ଼ିରହିବା ଦେଖି କର୍ଣ୍ଣ ପୁଣି ଗଳି ପଡ଼ିଥିବା ରଥ ଚକକୁ ଉଠାଇବାରେ ଲାଗିପଡ଼ିଲେ । ମାତ୍ର ଅଳ୍ପ ସମୟ ପରେ ଅର୍ଜୁନଙ୍କ ଚେତା ଫେରି ଆସିଲା । କର୍ଣ୍ଣ ରଥ ଚକକୁ ଉଠାଉଥିବା ଦେଖି ଅର୍ଜୁନ ତାଙ୍କୁ ଆଉ ଶର ନମାରିବାରୁ କୃଷ୍ଣ କହିଲେ, "ପାର୍ଥ ଏହା ହିଁ ଉପଯୁକ୍ତ ସମୟ । କର୍ଣ୍ଣଙ୍କୁ ହତ୍ୟା କର । ଯଦି ରଥ ଚକ ଉପରକୁ ଉଠି ଆସେ ତେବେ କର୍ଣ୍ଣଙ୍କୁ କେହି ହତ୍ୟା କରିପାରିବେ ନାହିଁ । ଅର୍ଜୁନ ଧନୁରେ ଶର ଯୋଖିବା ଦେଖି କର୍ଣ୍ଣ ଦିବ୍ୟଅସ୍ତ୍ରମାନ ପ୍ରୟୋଗ କରିବାକୁ ବାହାରିଲେ । ମାତ୍ର ଦୁର୍ଭାଗ୍ୟକୁ ଗୋଟିଏ ହେଲେ ମନ୍ତ୍ର ତାଙ୍କର ମନେ ପଡ଼ିଲା ନାହିଁ । କର୍ଣ୍ଣ ଅସ୍ତ୍ରଶିକ୍ଷା କରୁଥିବା ସମୟରେ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେଇଥିଲେ । ପରେ କର୍ଣ୍ଣଙ୍କ ପ୍ରକୃତ ପରିଚୟ ପାଇ ପର୍ଶୁରାମ କ୍ରୋଧରେ ଅଭିଶାପ ଦେଇ କହିଥିଲେ, "ଗୁରୁଙ୍କୁ ମିଥ୍ୟା କହିଥିବାରୁ ବିପଦ ବେଳେ ତୋର ମନ୍ତ୍ର ସ୍ମରଣ ହେବ ନାହିଁ ।"

ଶ୍ରୀକୃଷ୍ଣ ରାଗି ଉଠି କହିଲେ, "ଅର୍ଜୁନ ଆଉ ସମୟ ନଷ୍ଟ କର ନାହିଁ । ଏ ପାପୀ, କୁଚକ୍ରୀ ଓ ଗର୍ବୀ କର୍ଣ୍ଣଙ୍କୁ ଯେତେ ଶୀଘ୍ର ପାର ହତ୍ୟା କର । କୃଷ୍ଣଙ୍କ କଥା ଶୁଣି ଅର୍ଜୁନ ଏକ ଶକ୍ତିଶାଳୀ ଶର ମାରି କର୍ଣ୍ଣଙ୍କ ମୁଣ୍ଡ କାଟି ଦେଲେ । କର୍ଣ୍ଣଙ୍କ ମୃତ୍ୟୁପରେ କୌରବମାନଙ୍କ ମଧ୍ୟରେ ହାହାକାର ପଡ଼ିଗଲା । ଏଣେ ପାଣ୍ଡବମାନେ ଆନନ୍ଦରେ ନାଚିବାରେ ଲାଗିଲେ । ଦୁର୍ଯ୍ୟୋଧନ ଦୁଃଖର ଅତଳ ସମୁଦ୍ରରେ ବୁଡ଼ିଗଲେ । ତାଙ୍କର ସମସ୍ତ ଆଶା ଭରସା ଶେଷ ହୋଇଗଲା ।

ସୂର୍ଯ୍ୟାସ୍ତ ହୋଇଯିବାରୁ ଯୁଦ୍ଧ ବନ୍ଦ କରି ଯୋଦ୍ଧାମାନେ ନିଜ ନିଜ ଶିବିରକୁ ଚାଲିଗଲେ ।

## କୃପାଚାର୍ଯ୍ୟ ଓ ଦୁର୍ଯ୍ୟୋଧନ

କର୍ଣ୍ଣଙ୍କ ମୃତ୍ୟୁପରେ ଦୁର୍ଯ୍ୟୋଧନ ସମସ୍ତ ଆଶା ଭରସା ହରାଇ ହତାଶ ହୋଇପଡ଼ିଲେ । ଯାହାଙ୍କ ବଳ ଉପରେ ସବୁଠାରୁ ଅଧିକ ବିଶ୍ୱାସ ଥିଲା, ସେହି କର୍ଣ୍ଣଙ୍କ ପତନ ପରେ ଦୁର୍ଯ୍ୟୋଧନ ଆଉ ବଞ୍ଚିରହିବାକୁ ଇଚ୍ଛା କଲେ ନାହିଁ । ଏହିପରି ଦାରୁଣ ଦୁଃଖରେ ବୁଡ଼ି ରହିଥିବା ବେଳେ କୃପାଚାର୍ଯ୍ୟ କହିଲେ, "ମହାରାଜ, ହିଂସା ଓ ଲୋଭ ଯୋଗୁ ଆମେ ଆମର ବହୁ ନିର୍ଦ୍ଦୋଷ ବନ୍ଧୁଙ୍କୁ ଯୁଦ୍ଧ ବେଦୀରେ ବଳି ପକାଇ ସାରିଲେଣି । ଆଉ ଅଧିକ ଅଗ୍ରସର ନହୋଇ ଏ ବଂଶନାଶକାରୀ ଯୁଦ୍ଧ ବନ୍ଦ କରିଦିଅନ୍ତୁ ।"

ଶେଷ ମୁହୂର୍ତ୍ତରେ ମଧ୍ୟ ଦୁର୍ଯ୍ୟୋଧନ ଆଚାର୍ଯ୍ୟଙ୍କ କଥା ପ୍ରତି କର୍ଣ୍ଣପାତ ନକରି କହିଲେ, "ଶାନ୍ତି ବା ସନ୍ଧିର ସମୟ ବହୁ ଆଗରୁ ଚାଲିଯାଇଛି । ବର୍ତ୍ତମାନ ସେ ବିଷୟରେ ଚିନ୍ତା କରି କିଛି ଲାଭ ହେବ ନାହିଁ । ଯଦି ଆପଣଙ୍କ ପ୍ରସ୍ତାବ ଗ୍ରହଣ କରାଯାଏ, ତେବେ ମୁଁ ନିଶ୍ଚୟ ବଞ୍ଚିଯିବି । ମାତ୍ର ସେ ବଞ୍ଚିବା ମରିବାଠାରୁ ଅଧିକ ଦୁଃଖଦାୟକ ହେବ । ସଂସାରଯାକର ଲୋକେ ମୋତେ କଅଣ ବୋଲି କହିବେ ? ବଞ୍ଚିରହି ମୁଁ ଆଉ କଅଣ ବା କରିପାରିବି ? ଭାଇ, ବନ୍ଧୁ, ସାଙ୍ଗ, ସାଥୀ ସମସ୍ତଙ୍କୁ ଯୁଦ୍ଧରେ ମରାଇ ସାରି ବଞ୍ଚିରହିବା ଠାରୁ ବରଂ ମରିଯିବା ହିଁ ଭଲ ।"

ଉପସ୍ଥିତ କୌରବ ପକ୍ଷର ଲୋକେ ଦୁର୍ଯ୍ୟୋଧନଙ୍କ କଥାକୁ ହିଁ ଗ୍ରହଣ କଲେ । ଶେଷ ମୁହୂର୍ତ୍ତରେ ସନ୍ଧି କରିବା ଅତି ନିନ୍ଦନୀୟ ଓ ଅପମାନର କଥା ହେବ ବୋଲି ସମସ୍ତେ ସ୍ୱୀକାର କରିବା ସଂଗେ ସଂଗେ ଶଲ୍ୟଙ୍କୁ ପ୍ରଧାନ ସେନାପତି ପଦରେ ବରଣ କଲେ ।

## (ଶଲ୍ୟ ପର୍ବ)

## ଅଷ୍ଟାଦଶ ଦିବସର ଯୁଦ୍ଧ

ଶଲ୍ୟ ମଦ୍ର ଦେଶର ରାଜା । ତାଙ୍କ ଭଉଣୀ ମାଦ୍ରୀ ପାଣ୍ଡୁଙ୍କୁ ବିବାହ କରଥିଲେ । ନକୁଳ ଓ ସହଦେବ ମାଦ୍ରୀଙ୍କ ଦୁଇ ପୁଅ । ପାଣ୍ଡବମାନଙ୍କ ମାମୁଁ ଶଲ୍ୟ, ଭଣଜାଙ୍କୁ ଛାଡ଼ି କୌରବ ପକ୍ଷରେ ଯୁଦ୍ଧ କରୁଥିଲେ । ମହାଭାରତ ଯୁଦ୍ଧରେ ଏହା ଏକ ନିନ୍ଦନୀୟ ଘଟଣା ରୂପେ ରହିଯାଇଛି ।

ଶଲ୍ୟ ପ୍ରଧାନ ସେନାପତି ହେବାପରେ ନାନା କଥା କହି କୌରବ ସେନାମାନଙ୍କୁ ଉତ୍ସାହିତ କରିବାରେ ଲାଗିଲେ । ଯୁଦ୍ଧ ଭୟଙ୍କର ହୋଇଉଠିଲା । ମହାବୀର ଶଲ୍ୟ ଅତ୍ୟନ୍ତ ନିର୍ଦ୍ଦୟ ଭାବରେ ପାଣ୍ଡବ ପକ୍ଷର ସୈନ୍ୟମାନଙ୍କୁ ହତ୍ୟା କରିବାରେ ଲାଗିଲେ । ଯୁଧିଷ୍ଠିର ହଠାତ୍ ମାମୁଁ ଶଲ୍ୟଙ୍କ ଆଗରେ ଠିଆ ହୋଇଗଲେ । ଦୁଇ ବୀରଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ଲାଗିଗଲା । ଶଲ୍ୟ ଯୁଧିଷ୍ଠିରଙ୍କ ଧନୁ କାଟି ଦେବାରୁ ସେ ଅନ୍ୟ ଏକ ଧନୁଧରି ପ୍ରବଳ ଆକ୍ରମଣ କରିବାରେ ଲାଗିଲେ । ଯୁଧିଷ୍ଠିର କେତୋଟି ଶର ମାରି ମାମୁଁଙ୍କ ସାରଥୀ ଓ ଘୋଡ଼ାମାନଙ୍କୁ ମାରିଦେଲେ । ଶଲ୍ୟଙ୍କୁ ସାହାଯ୍ୟ କରିବା ପାଇଁ ଅଶ୍ୱତ୍ଥାମା ଆଗେଇ ଆସିବା ଦେଖି ଯୁଧିଷ୍ଠିରଙ୍କୁ ସାହାଯ୍ୟ କରିବା ପାଇଁ ଅନେକ ଯୋଦ୍ଧା ଆସି ପହଞ୍ଚିଗଲେ । ଚାରିପଟୁ ଶରମାଡ଼ ଖାଇ ଶଲ୍ୟ ବ୍ୟାକୁଳ ହୋଇଉଠିଲେ । ଅନ୍ୟ ଉପାୟ ନଦେଖି ସେ ଢାଲ ଓ ତଲୱାର ଧରି ଯୁଧିଷ୍ଠିରଙ୍କୁ ହାଣି ଦେବା ଉଦ୍ଦେଶ୍ୟରେ ରଥରୁ ଡେଇଁ ପଡ଼ିଲେ । ଯୁଧିଷ୍ଠିର ସଂଗେ ସଂଗେ

ଏକ ଶର ମାରି ଶଲ୍ୟଙ୍କ ଦେହରୁ ମୁଣ୍ଡକୁ ଅଲଗା କରିଦେଲେ । ପାଣ୍ଡବମାନଙ୍କ ଜୟ ଜୟ ନାଦରେ ଯୁଦ୍ଧଭୂମି କମ୍ପିଉଠିଲା । କୌରବ ସେନାମାନେ ଭୟଭୀତ ହୋଇ ଏଣେତେଣେ ପଳାଇବାରେ ଲାଗିଲେ । ଦୁର୍ଯ୍ୟୋଧନ ଏକଥା ସହ୍ୟ କରିପାରିଲେ ନାହିଁ । ସେ ନିଜେ ଯୁଦ୍ଧ କରିବା ଦେଖି ସୈନ୍ୟମାନେ ପୁଣି ପାଣ୍ଡବମାନଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଧୃତରାଷ୍ଟ୍ରଙ୍କର ଆଉ କେତୋଟି ମାତ୍ର ପୁଅ ବଞ୍ଚି ରହିଥିଲେ । ସେମାନଙ୍କ ଭିତରୁ କେତେଜଣ ଭୀମଙ୍କୁ ବେଢ଼ି ଯିବାରୁ ଭୀମ କହିଲେ, "ଯମ ଡାକୁଥିବା ଲୋକମାନେ ଏହିପରି ଭାବରେ ଆପେ ଆପେ ମରଣ ମୁହଁକୁ ଚାଲିଆସନ୍ତି ସିନା !" ସମସ୍ତ କୌରବ ମଲେ ସତ, ମାତ୍ର କୁରୁସଭା ତଳେ ଦ୍ରୌପଦୀଙ୍କୁ ଅପମାନ ଦେଇଥିବା ମହାନ୍ ବ୍ୟକ୍ତି, ମହାମାନ କୁରୁ ସମ୍ରାଟ ଦୁର୍ଯ୍ୟୋଧନ ଏ ପର୍ଯ୍ୟନ୍ତ ବଞ୍ଚି ରହିଥିବାରୁ ମୋତେ ଆଦୌ ଶାନ୍ତି ମିଳୁ ନାହିଁ । ଅତିଶୀଘ୍ର ସେ ମହାପୁରୁଷଙ୍କୁ ସାକ୍ଷାତ କରିବା ପାଇଁ ମୋ ମନ ବ୍ୟାକୁଳ ହୋଇଉଠୁଛି ।"

ଏହି ସମୟରେ ସହଦେବ ନିଜ ପ୍ରତିଜ୍ଞା ପୂରଣ ପାଇଁ ମାମୁଁ ଶକୁନିଙ୍କ ଆଗରେ ଆସି ଠିଆ ହୋଇଗଲେ । ଶକୁନିଙ୍କ ପୁଅ ଉଲ୍ଲୁବ ପିତାଙ୍କୁ ରକ୍ଷା କରିବା ପାଇଁ ସହଦେବଙ୍କ ଆଗକୁ ଚାଲିଆସିଲେ । ମାତ୍ର ସହଦେବ ଏକା ଶରକେ ତାଙ୍କୁ ଶେଷ କରିଦେଲେ ଓ ଶକୁନିଙ୍କୁ ଚାହିଁ କହିଲେ, "ମାମୁଁ, ଆଜି ତୁମ ମୁଣ୍ଡ ଉପରେ ଶାଗୁଣା ଉଡ଼ିଲେଣି । ମନେରଖ ଏ ଯୁଦ୍ଧ କ୍ଷେତ୍ର ପଶା ଖେଳିବା ସ୍ଥାନ ନୁହେଁ, ଏଠାରେ କୂଟ କପଟ ନୁହେଁ ବୀରତ୍ୱ ଦେଖାଇବାକୁ ହେବ । ଏପରି କହି ସେ ତୀକ୍ଷ୍ଣ ଶରମାରି ଶକୁନିଙ୍କୁ ତଳେ ଗଡ଼ାଇଦେଲେ । କୌରବ ଓ ପାଣ୍ଡବଙ୍କ ମଧ୍ୟରେ ପାଚେରୀ ଠିଆ କରାଇଥିବା କପଟୀ ଶକୁନିର ମଲା ଦେହ ଯୁଦ୍ଧ ଭୂଇଁରେ ପଡ଼ିରହିଲା ।

## ମହାଭାରତର ଶେଷ ଯୋଦ୍ଧା

ଶକୁନିଙ୍କ ମୃତ୍ୟୁପରେ କୌରବମାନେ ଅତ୍ୟନ୍ତ ଭୟଭୀତ ହୋଇପଡ଼ିଲେ । ଦୁର୍ଯ୍ୟୋଧନ ଦେଖିଲେ ତାଙ୍କ ପକ୍ଷରେ ଥିବା ଏଗାର ଅକ୍ଷୌହିଣୀ ସୈନ୍ୟ ଶେଷ ପାଇଗଲେଣି । ସେ ଅତ୍ୟନ୍ତ ଦୁଃଖିତ ହୋଇ ଭାବିଲେ, "ପାଣ୍ଡବମାନେ ସେମାନଙ୍କ ବନ୍ଧୁ ବାନ୍ଧବ, ସଖା ଓ ସାଥୀମାନଙ୍କ ସହିତ ବଞ୍ଚି ରହିଛନ୍ତି । ଅଥଚ ମୁଁ ମୋ କର୍ମର ଫଳସ୍ୱରୂପ ଭାଇ, ବନ୍ଧୁ ଓ ପ୍ରିୟଜନମାନଙ୍କୁ ହରାଇ ଶେଷକୁ ରାଜ୍ୟ ମଧ୍ୟ ହରାଇ ବସିଲି । ଅତୀତରେ କାହାରି ଉପଦେଶକୁ ମୁଁ ଗ୍ରହଣ କରିନାହିଁ । ଗର୍ବ ଓ ଲୋଭ ମୋତେ ଅନ୍ଧ କରି ପକାଇଥିଲା । ଏବେ ସେ ସବୁକୁ ମନେପକାଇ ଲାଭ ବା କଅଣ ? ଯାହା ହେବାର ଥିଲା, ତାହା ହୋଇଗଲାଣି । ଅସହ୍ୟ ଯନ୍ତ୍ରଣାରେ ସେ ଛଟପଟ ହେବାରେ ଲାଗିଲେ । ତାଙ୍କର ସର୍ବାଙ୍ଗ ଜଳି ଉଠିବାପରି ବୋଧ ହେଲା । ସେ ଆଉ ସ୍ଥିର ରହି ପାରିଲେନାହିଁ । ନିଜର ଗଦାଟିକୁ କାନ୍ଧରେ ପକାଇ ପାଦରେ ଚାଲି ଚାଲି କିଛି ଦୂରରେ ପୁଷ୍କରିଣୀର ଏକ ଗୁପ୍ତ ସ୍ଥାନରେ ଲୁଚି କରି ରହିଗଲେ ।

ସଂଜୟ ପ୍ରତିଦିନ ଯୁଦ୍ଧର ବର୍ଣ୍ଣନା କରୁଥାନ୍ତି । ଧୃତରାଷ୍ଟ୍ର ଗତ ଦିନର ଘଟଣା ଓ ଆଜି ଦୁର୍ଯ୍ୟୋଧନଙ୍କ ଅବସ୍ଥା ଶୁଣିବା ମାତ୍ରେ ଆଉ ସମ୍ଭାଳି ପାରିଲେ ନାହିଁ । ନିଜକୁ କୁରୁବଂଶ ଧ୍ୱଂସର ମୂଳ କାରଣ ବୋଲି କହି ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଲେ ।

ଯୁଦ୍ଧ କ୍ଷେତ୍ରରେ ଦୁର୍ଯ୍ୟୋଧନଙ୍କୁ ନପାଇ ପାଣ୍ଡବମାନେ ଏଣେତେଣେ ଖୋଜିବାରେ ଲାଗିଲେ । ମହାଭାରତ ଯୁଦ୍ଧର ମୂଳ କାରଣ ଓ ସେମାନଙ୍କର ପ୍ରଧାନ-ଶତ୍ରୁ ଦୁର୍ଯ୍ୟୋଧନଙ୍କୁ ନପାଇ ସେମାନେ ଅତ୍ୟନ୍ତ ବ୍ୟସ୍ତ ହୋଇଉଠିଲେ । ଶ୍ରୀକୃଷ୍ଣ କହିଲେ, "ଦୁର୍ଯ୍ୟୋଧନ ନମରିବା ପର୍ଯ୍ୟନ୍ତ ତୁମ୍ଭମାନଙ୍କର ପୂର୍ଣ୍ଣ ବିଜୟ ହୋଇନପାରେ । ତେଣୁ ଯେ କୌଣସିମତେ ଦୁର୍ଯ୍ୟୋଧନଙ୍କୁ ହତ୍ୟା କରିବାକୁ ହେବ । ସମସ୍ତେ ଚାରିଆଡ଼େ ଖୋଜିବାରେ ଲାଗିଯାଅ ।"

ଦୁର୍ଯ୍ୟୋଧନ ସରୋବର ମଧ୍ୟରେ ଲୁଚିଯାଉଥିବା ବେଳେ ପାଖ ଗାଆଁର ଲୋକ କେତେଜଣ ତାଙ୍କୁ ଦେଖିଥିଲେ । ପାଣ୍ଡବମାନେ ପଚରା ଉଚରା କରି ବୁଝିଲେ ଯେ, ଜଣେ ମୁକୁଟଧାରୀ ବ୍ୟକ୍ତି ଏଇ ପୁଷ୍କରିଣୀ ନିକଟରେ ଲୁଚି ବସିଥିଲେ । ତାଙ୍କ ହାତରେ ଏକ ପ୍ରକାଣ୍ଡ ଗଦା ଥିଲା । ପାଣ୍ଡବମାନଙ୍କର ସନ୍ଦେହ ଦୂର ହୋଇଗଲା । ସମସ୍ତେ କୃଷ୍ଣଙ୍କୁ ସଙ୍ଗରେ ନେଇ ସେହି ସରୋବର ନିକଟକୁ ଗଲେ ।

ଯୁଧିଷ୍ଠିର ବଡ଼ ପାଟିରେ କହିଲେ, "ହେ ଲୁଚିଥିବା କୁରୁସମ୍ରାଟ ! ତୁମ ବୁଦ୍ଧିକୁ ଧନ୍ୟ । ନିଜର ବଂଶ ଓ ପ୍ରିୟ ଲୋକମାନଙ୍କୁ ଯମରାଜଙ୍କୁ ଭେଟି ଦେବା ପରେ ବି ନିଜେ ବଞ୍ଚି ରହିବାକୁ ଏତେ ଲୋଭ ? ଶେଷକୁ ତୁମ ପରି ମହାବୀରଙ୍କୁ ଲୁଚିବାକୁ ମଧ୍ୟ ପଡ଼ିଲା । ହାୟ, ତୁମର ପୂର୍ବ ବୀରତ୍ୱ ଓ ଦମ୍ଭର ଶେଷ ଫଳ କ'ଣ ଏଇଆ ଥିଲା ? କର୍ଣ୍ଣ ଓ ଶକୁନିଙ୍କ ପରାମର୍ଶ ତୁମକୁ ଅମୃତପରି ବୋଧ ହେଉଥିଲା । ଏବେ ସେମାନଙ୍କଠାରୁ ଆଉ ପରାମର୍ଶ ମିଳିପାରିବ ନାହିଁ । ଅତୀତରେ କରିଥିବା ସମସ୍ତ ପାପର ପ୍ରାୟଶ୍ଚିତ କରିବାର ବେଳ ଆସିଗଲାଣି । ଆଉ ବିଳମ୍ବ ନକରି ପଦାକୁ ବାହାରିପଡ଼ । ତୁମର ସେ ପୂର୍ବ ଗର୍ବ ଓ କୁରୁସଭାରେ ପ୍ରକାଶ କରିଥିବା ଦମ୍ଭର ପ୍ରମାଣ ଦିଅ । ତୁମ ପରି ବୀର ପ୍ରାଣ ଭୟରେ ଲୁଚି ରହିଲେ ଲୋକେ କଅଣ କହିବେ ?"

ଦୁର୍ଯ୍ୟୋଧନ ପୋଖରୀର ଗୁପ୍ତ ସ୍ଥାନରେ ଥାଇ କହିଲେ, "ବର୍ତ୍ତମାନ ତୁମର କହିବାର ବେଳ ପଡ଼ିଛି ଯୁଧିଷ୍ଠିର । ଶୁଣ, ମୁଁ ଜୀବନ ଭୟରେ ଏଠାରେ ଲୁଚି ରହିନାହିଁ । ମୁଁ ମୋ ଜୀବନରେ କାହାକୁ ଭୟ କରେ ନାହିଁ, ଏକଥା ତୁମେ ନିଶ୍ଚୟ ମାନିବ । ଦେହର ଉତ୍ତାପ ମୋତେ ଏପରି ଅସ୍ଥିର କରି ପକାଉଛି ଯେ ମୁଁ ଶୀତଳ ଜଳରେ ଆଶ୍ରୟ ନେବାକୁ ବାଧ ହେଉଛି । ମୁଁ ମରିବାକୁ ଭୟ କରୁନାହିଁ; କିମ୍ବା ଯୁଦ୍ଧକୁ ଡରି ଏଠାରେ ଲୁଚିନାହିଁ । ସଂସାରରେ ମୋ ପାଇଁ ଆଉ କଅଣ ବାକି ଅଛି ଯେ ମୁଁ ବଞ୍ଚି ରହିବାକୁ ବ୍ୟାକୁଳ ହେବି ? ମୁଁ ସମଗ୍ର ରାଜ୍ୟ ତୁମକୁ ଛାଡ଼ିଦେଲି । ଶତ୍ରୁଶୂନ୍ୟ ହୋଇ ଆନନ୍ଦରେ ରାଜ୍ୟ ଭୋଗକର ।"

ଯୁଧିଷ୍ଠିର ଉଚ୍ଚସ୍ୱରରେ ହସି ଉଠି କହିଲେ, "ତୁମ ତୁଣ୍ଡରୁ ଏପରି ମହତ କଥା ଶୁଣି ଯେ କେହି ଆଶ୍ଚର୍ଯ୍ୟ ନହୋଇ ରହିପାରିବ ନାହିଁ । ହେ ଉଦାର, ହେ ତ୍ୟାଗବୀର, କିଛିଦିନ ପୂର୍ବରୁ ଏଇ କଥା ପଦକ କହି ପାରିଥିଲେ ଆଜି ବଂଶନାଶ ସହିତ ବନ୍ଧୁନାଶ ହୋଇନଥାନ୍ତା । ମନେପଡୁଛି ? ଆମେ ରାଜ୍ୟର ଆଶା ଛାଡ଼ି ପାଞ୍ଚଖଣ୍ଡ ପଡ଼ା ମାତ୍ର ଭିକ୍ଷା କରିଥିଲୁ । ମାତ୍ର ମହାମାନୀ କୁରୁସମ୍ରାଟ ତା'ର ଉତ୍ତରରେ କହିଥିଲେ "ବିନା ଯୁଦ୍ଧରେ ମୁଁ ଛୁଞ୍ଚ ମୂନରେ ମୂନେ ସୁଦ୍ଧା ଜାଗା ଦେବି ନାହିଁ । ବଳଥିଲେ ବୀର ପରି ଲଢ଼ି ମୋ ଠାରୁ ନିଜର ପ୍ରାପ୍ୟ ଛଡ଼ାଇ ନିଅ । ବୀରର ଗୌରବ ଯୁଦ୍ଧ, ଭିକ୍ଷା ନୁହେଁ । ଏସବୁ କଥା ତୁମେ କହିଥିଲ ନାଁ ? ଭଲ କରି ମନେପକାଅ । ବର୍ତ୍ତମାନ ସର୍ବସ୍ୱ ଦାନ କଲ ବୋଲି କେଉଁ ମୁହଁରେ କହୁଛ ? ବରଂ ସର୍ବସ୍ୱ ହରାଇ ପରାଜିତ ହେଲ ବୋଲି କହ । ଆମେ ଆମ ଉଚିତ ପ୍ରାପ୍ୟ ପାଇଛୁ । ତାହା ତୁମ ଦୟାରୁ ନୁହେଁ, ଆମ ବାହୁ ବଳରୁ । ଆମେ ରାଜ୍ୟ, ଧନ ବା ସମ୍ପତ୍ତି ପାଇଁ ଏ ଯୁଦ୍ଧ କରିନଥିଲୁ । ତୁମ କରିଥିବା ଯାବତୀୟ ଅନ୍ୟାୟ, ଅତ୍ୟାଚର, ଗର୍ବ ଓ ଲୋଭ ସହିତ କୁଳବଧୂ ଦ୍ରୌପଦୀଙ୍କୁ ଦେଇଥିବା ଅସହ୍ୟ ଅପମାନର ପ୍ରତିଶୋଧ ପାଇଁ ଆମେ ଜୀବନକୁ ପଣ କରି ଯୁଦ୍ଧକୁ ଡେଇଁଥିଲୁ । ତୁମ ଜୀବନ ବଦଳରେ ହିଁ ଆମେ ସେ ଅପମାନର ପ୍ରତିଶୋଧ ନେବୁ । ସମସ୍ତେ ଗଲେଣି, ଏକମାତ୍ର ତୁମେ ଏପର୍ଯ୍ୟନ୍ତ ବଞ୍ଚି ରହିଛ । ଆଉ ବିଳମ୍ବ ନକରି ଶୀଘ୍ର ପଦାକୁ ବାହାରିଆସ । କୁରୁକୁଳର ଶେଷ ଦୀପ ଶିଖାଟିକୁ ଲିଭାଇଦେଇ ଆମେ ରଣ-ଯଜ୍ଞର ପୂର୍ଣ୍ଣାହୁତି କରିବୁ ।"

ଯୁଧିଷ୍ଠିରଙ୍କ କଥାଗୁଡ଼ାକ ମହାମାନୀ ଦୁର୍ଯ୍ୟୋଧନଙ୍କ କ୍ରୋଧକୁ ବହୁଗୁଣ ବଢ଼ାଇଦେଲା । ସେ ଆଉ ଅଧିକ ସମୟ ନିଜକୁ ଲୁଚାଇ ରଖି ନପାରି ପଦାକୁ ବାହାରିଆସିଲେ । ଆଗରେ ସମସ୍ତ ପାଣ୍ଡବ ଓ ଶ୍ରୀକୃଷ୍ଣଙ୍କୁ ଦେଖି କହିଲେ, "ଦେଖ, ମୋ ଦେହରେ କବଚ ନାହିଁ । ସାରା ଦେହ ଶସ୍ତ୍ରାଘାତରେ କ୍ଷତବିକ୍ଷତ । ଏକମାତ୍ର ଗଦା ବ୍ୟତୀତ ମୋ ନିକଟରେ ଅନ୍ୟ କୌଣସି ଅସ୍ତ୍ର ନାହିଁ । ଏଣୁ ତୁମେ ସମସ୍ତେ ଏକାବେଳେକେ ମୋତେ ଆକ୍ରମଣ ନକରି ଜଣକ ପରେ ଜଣେ ଆସ । ଏହା ହିଁ ଯୁଦ୍ଧର ନିୟମ ।"

ଯୁଧିଷ୍ଠିର ହସି ହସି କହିଲେ, "ସାବାସ୍, ତୁମପରି ବିବେକୀ ଆଉ ବିଚାରବନ୍ତ ଲୋକ କେବେ ଅନ୍ୟାୟ କଥା କହିବ ନାହିଁ, ଏକଥା ମୁଁ ଜାଣେ । ଜଣେ ଯୋଦ୍ଧାକୁ ଏକାବେଳେକେ ଅନେକ ଯୋଦ୍ଧା ଆକ୍ରମଣ କରିବା ଘୋର ଅନ୍ୟାୟ ଓ ଯୁଦ୍ଧ ନିୟମର ବିରୁଦ୍ଧ । ଏଥିରେ ଅମତ ହେବାର କିଛି ନାହିଁ । ମାତ୍ର ଦୟାକରି ମନେ ପକାଇବେ କି, ଅଭିମନ୍ୟୁ ପ୍ରତି କିଛି ଅନ୍ୟାୟ କରାଯାଇଥିଲା କି ? ଅସ୍ତ୍ରଶୂନ୍ୟ, କବଚହୀନ ବାଳକ ଅଭିମନ୍ୟୁକୁ ହତ୍ୟା କରିବା ପାଇଁ ତୁମେ ବହୁ ଯୋଦ୍ଧାଙ୍କୁ ଏକାବେଳେକେ ଆକ୍ରମଣ କରିବା ପାଇଁ ଆଦେଶ ଦେଇନଥିଲ କି ? ସେତେବେଳେ ଏ ବୁଦ୍ଧି ତୁମେ କେଉଁଠି ଲୁଚାଇ ରଖିଥିଲ କି ? ଯେତେବେଳେ ମଣିଷ ନିଜେ

ବିପଦରେ ପଡ଼େ, ସେତିକିବେଳେ ଧର୍ମ, ବିବେକ, ନ୍ୟାୟ, ଯୁଦ୍ଧନୀତି ଆଦି ଅନ୍ୟକୁ ବୁଝାଇବାକୁ ଚେଷ୍ଟା କରିଥାଏ । ଶୀଘ୍ର କବଚ ପିନ୍ଧ । ଆମ ଭିତରୁ ଯେ କୌଣସି ଜଣକୁ ତୁମ ସହିତ ଲଢ଼ିବା ପାଇଁ ବାଛି ନିଅ । ଯୁଦ୍ଧରେ ମରି ସ୍ୱର୍ଗକୁ ଯାଅ । ନଚେତ୍ ଆମକୁ ପରାସ୍ତ କରି ପୁଣି ରାଜଗାଦି ଭୋଗ କର ।"

ଏହି ସମୟରେ ବଳରାମ ତୀର୍ଥ ଯାତ୍ରାରୁ ଫେରି ଦୁର୍ଯ୍ୟୋଧନଙ୍କ ନିକଟରେ ପହଞ୍ଚିଲେ । ଦୁର୍ଯ୍ୟୋଧନ ଗୁରୁଙ୍କୁ ପ୍ରଣାମ କରି ପାଦ ବନ୍ଦନା କଲେ । ବଳରାମ ଦୁର୍ଯ୍ୟୋଧନଙ୍କୁ ଗଦା ଯୁଦ୍ଧ ଶିଖାଇ ଥିବାରୁ ତାଙ୍କର ଅସ୍ତ୍ରଗୁରୁ ରୂପେ ପରିଚିତ ଅଟନ୍ତି । ବଳରାମ ମହାଭାରତ ଯୁଦ୍ଧର ସମସ୍ତ ଘଟଣା ଜାଣି ସାରିଥାନ୍ତି । ଏହି ସମୟରେ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କୁ କହିଲେ, "ଆଉ ବିଳମ୍ବ ନକରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯାଅ ।"

ଦୁର୍ଯ୍ୟୋଧନ କହିଲେ, "ମୁଁ ପ୍ରସ୍ତୁତ । ମାତ୍ର ମୋ ଗୁରୁ ବଳରାମଙ୍କ ଆଗରେ ଏ ଧର୍ମଯୁଦ୍ଧ ହେବ । ମୋ ପାଖରେ ଗଦାଟିଏ ବ୍ୟତୀତ ଅନ୍ୟ କିଛି ଅସ୍ତ୍ର ନଥିବାରୁ କେବଳ ଗଦା ଯୁଦ୍ଧ ହିଁ କରାଯିବ ।" ଦୁର୍ଯ୍ୟୋଧନ ଓ ତାଙ୍କ ଭାଇମାନଙ୍କୁ ମାରିବାପାଇଁ ଭୀମସେନ ପୂର୍ବରୁ ପ୍ରତିଜ୍ଞା କରିଥିଲେ । ତେଣୁ ଭୀମ ଓ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ଗଦାଯୁଦ୍ଧ ଆରମ୍ଭ ହୋଇଗଲା । ନିଜର ପ୍ରିୟ ଶିଷ୍ୟ ଦୁର୍ଯ୍ୟୋଧନଙ୍କର ରଣ କୌଶଳ ଦେଖି ବଳରାମ ଅତ୍ୟନ୍ତ ପ୍ରସନ୍ନ ହୋଇଉଠିଲେ । ଦୁର୍ଯ୍ୟୋଧନ ଯେ ନିଶ୍ଚୟ ଜୟଲାଭ କରିବେ, ଏଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ମାତ୍ର ଶ୍ରୀକୃଷ୍ଣ ଭୀମଙ୍କ ଶକ୍ତି ଓ ଧୈର୍ଯ୍ୟ ବିଷୟରେ ନିଃସନ୍ଦେହ ଥିଲେ । ସେ ଉତ୍ତମ ରୂପେ ଜାଣିଥିଲେ ଯେ, କିଛି ସମୟ ଯୁଦ୍ଧପରେ ଦୁର୍ଯ୍ୟୋଧନ ଥକି ପଡ଼ିବେ ଓ ତାଙ୍କ ହାତ ଦୁର୍ବଳ ହୋଇଯିବ ।

ଦୁର୍ଯ୍ୟୋଧନ ଓ ଭୀମ ପ୍ରବଳ ବେଗରେ ପରସ୍ପରକୁ ଗଦାରେ ପ୍ରହାର କରିବାରେ ଲାଗିଥାନ୍ତି, କ୍ରମେ ଯୁଦ୍ଧ ଭୟଙ୍କର ହୋଇ ଉଠିଲା । ଯୁଦ୍ଧ କରୁଥିବା ସମୟରେ ଭୀମଙ୍କ ଦୃଷ୍ଟି ହଠାତ୍ କୃଷ୍ଣଙ୍କ ଉପରେ ପଡ଼ିଗଲା । କୃଷ୍ଣ ଭୀମଙ୍କୁ ଚାହିଁ ଜଙ୍ଘରେ ଚାପୁଡ଼ା ମାରିଲେ । ଦୁର୍ଯ୍ୟୋଧନଙ୍କ ଜଙ୍ଘହାଡ଼ ଭାଙ୍ଗିବା ପାଇଁ ପ୍ରତିଜ୍ଞା କରିଥିବା କଥା ଭୀମଙ୍କ ମନେପଡ଼ିଗଲା । ଗଦା ଯୁଦ୍ଧରେ ଅଣ୍ଟାତଳକୁ ଆଘାତ କରାଯାଇପାରିବ ନାହିଁ ବୋଲି ନିୟମ ଥିଲା । ଦୁର୍ଯ୍ୟୋଧନ ଗଦା ଉଠାଇ ଭୀମଙ୍କ ମୁଣ୍ଡରେ ପ୍ରହାର କରିବାକୁ ବାହାରିଥିବା ବେଳେ, ଭୀମ ଅତ୍ୟନ୍ତ ବେଗରେ ଦୁର୍ଯ୍ୟୋଧନଙ୍କ ଜଙ୍ଘକୁ ଗଦାରେ ପିଟିଦେଲେ । ଜଙ୍ଘର ହାଡ଼ ଭାଙ୍ଗିଗଲା ଓ ଦୁର୍ଯ୍ୟୋଧନ ତଳେ କଚାଡ଼ି ହୋଇପଡ଼ିଲେ । ଏହା ଅନ୍ୟାୟ ଯୁଦ୍ଧ ବୋଲି କହି ବଳରାମ ଭୀମଙ୍କୁ ମାରିବାପାଇଁ ଦୌଡ଼ିଗଲେ । ଶ୍ରୀକୃଷ୍ଣ ତାଙ୍କୁ ଅଟକାଇ ଦେଇ କହିଲେ, "ଭାଇ, ଦୁର୍ଯ୍ୟୋଧନ କୁରୁସଭା ତଳେ ଦ୍ରୌପଦୀଙ୍କୁ ନିଜ କୋଳରେ ବସାଇବାକୁ କହି ଜଙ୍ଘରେ ଚାପୁଡ଼ା ମାରିଥିବାରୁ ଭୀମ ଦୁର୍ଯ୍ୟୋଧନର ସେହି ଜଙ୍ଘକୁ ଭାଙ୍ଗିଦେବାର ପ୍ରତିଜ୍ଞା କରିଥିଲେ । ଆପଣ ଶାନ୍ତ ହୁଅନ୍ତୁ । ଭୀମ ତାଙ୍କର ପ୍ରତିଜ୍ଞା ପୂରଣ କରିଛନ୍ତି ।"

ଦୁର୍ଯ୍ୟୋଧନ ଚିତ୍ ହୋଇ ତଳେ ପଡ଼ିଥିବାବେଳେ ଭୀମ ତାଙ୍କ ଛାତି ଉପରେ ଠିଆ ହୋଇ ମୁଣ୍ଡକୁ ଗୋଇଠା ମାରିବାରେ ଲାଗିଲେ ଓ କ୍ରୋଧରେ ଜର୍ଜର ହୋଇ କହିଲେ, "ଆଜି ମୁଁ ମୋ ପ୍ରତିଜ୍ଞା ପୂରଣ କଲି । ଯେଉଁ ଜଙ୍ଘରେ ଦ୍ରୌପଦୀଙ୍କୁ ବସାଇବା ପାଇଁ ହସି ହସି ସଂକେତ ଦେଉଥିଲୁ, ଆଜି ସେଇ ଜଙ୍ଘକୁ ଭାଙ୍ଗି ଗୁଣ୍ଡ କରିଦେଇଛି । ରେ ନିର୍ଲଜ ଦୁର୍ଯ୍ୟୋଧନ, ଗୁରୁଜନମାନଙ୍କ ଆଗରେ ବିରାଟ କୁରୁସଭା ମଧ୍ୟରେ ତୁ ସତୀ ଦ୍ରୌପଦୀଙ୍କୁ ଉଲଗ୍ନ କରିବା ପାଇଁ ଆଦେଶ ଦେଇପାରିଲୁ ? ଏ ଦଣ୍ଡ ତୋ ପରି ପାପୀ ପାଇଁ ଯଥେଷ୍ଟ ହୋଇନାହିଁ ବୋଲି ମୋର ଧାରଣା ।"

ଅତ୍ୟନ୍ତ ଉତ୍ତେଜିତ ହୋଇ ଭୀମ ଦୁର୍ଯ୍ୟୋଧନଙ୍କ ମୁଣ୍ଡରେ ବାରମ୍ବାର ପଦାଘାତ କରୁଥିବା ଦେଖି ଯୁଧିଷ୍ଠିର କହିଲେ, "ଭୀମସେନ, ଶାନ୍ତ ହୁଅ । ତୁମେ ପ୍ରତିଜ୍ଞା ପୂରଣ କରିଛ, ତାହା ହିଁ ଯଥେଷ୍ଟ । ଦୁର୍ଯ୍ୟୋଧନ ଆମର ଭାଇ ଓ ମହାରାଜ ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠ ପୁତ୍ର । ତାଙ୍କ ମୁଣ୍ଡରେ ପଦାଘାତ କରିବା ଅତ୍ୟନ୍ତ ଅନ୍ୟାୟ । ତୁମର ଏ ଅନୁଚିତ କାର୍ଯ୍ୟ ମୁଁ ସହ୍ୟ କରିପାରିବି ନାହିଁ । ଅଧିକ

କିଛି ନକରିବା ପାଇଁ ମୁଁ ତୁମକୁ ଆଦେଶ ଦେଉଛି, ସାବଧାନ ।" ଯୁଧିଷ୍ଠିର ଖୁବ୍ ଗମ୍ଭୀର ଓ କ୍ରୋଧାନ୍ୱିତ ହୋଇ ଉଠୁଥିବା ଦେଖି ଶ୍ରୀକୃଷ୍ଣ କହିଲେ, "ଶାନ୍ତ ହୁଅ । ପାପୀ ଦୁର୍ଯ୍ୟୋଧନ ଆଉ ଅଧିକ ସମୟ ବଞ୍ଚିବ ନାହିଁ । ତା ପାଇଁ ଦୁଃଖ ପ୍ରକାଶ କରିବାକୁ ଭାଇବନ୍ଧୁ କେହି ନାହାନ୍ତି । ଦୁର୍ଯ୍ୟୋଧନ ଭାଗ୍ୟରେ ଏହା ହିଁ ଲେଖା ଅଛି ବୋଲି ମୁଁ ବହୁ ପୂର୍ବରୁ ଜଣାଇଛି । ଚାଲ ଏଠାରୁ ଶିବିରକୁ ଫେରିଯିବା ।"

ଜଙ୍ଘହାଡ଼ ଭାଙ୍ଗି ଗୁଣ୍ଡ ହୋଇଯାଇଛି, ଦେହ ସାରା ରକ୍ତରେ ଜୁଡୁବୁଡୁ, ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୋଇ ଦୁର୍ଯ୍ୟୋଧନ କେବଳ ମୃତ୍ୟୁକୁ ଅପେକ୍ଷା କରି ଛଟପଟ ହେଉଥାନ୍ତି । ତଥାପି କଡ଼ ଲେଉଟାଇ କହିଲେ, "ହେ ଶ୍ରୀକୃଷ୍ଣ, ତୁମେ ଅତ୍ୟନ୍ତ ନିର୍ଲଜ । ବଂଶ ଦୃଷ୍ଟିରୁ ତୁମର କୌଣସି ଗୌରବ ନାହିଁ । ତୁମେ ଯାବତୀୟ ଅନ୍ୟାୟ କରି ମୋ ପକ୍ଷର ବୀର ଓ ମହାରଥୀମାନଙ୍କୁ ହତ୍ୟା କରାଇଛ । ନିୟମ ମାନି ଯୁଦ୍ଧ କରିଥିଲେ ଯୁଦ୍ଧର ଗତି ଭିନ୍ନ ପ୍ରକାର ହୋଇଥାନ୍ତା । ମୋର ଜାନୁରେ ଆଘାତ କରିବା ପାଇଁ ତୁମେ ହିଁ ଭୀମଙ୍କୁ ସଂକେତ ଦେଇଥିଲ । ଏପରି ହୀନ କାର୍ଯ୍ୟ ପାଇଁ ତୁମକୁ ମୁଁ ଶତ ଧିକ୍କାର କରୁଛି ।"

କୃଷ୍ଣ କହିଲେ, "ଦୁର୍ଯ୍ୟୋଧନ, ତୁମର ମନ୍ଦବୁଦ୍ଧି, ପାପ ଆଶା, ଅତ୍ୟନ୍ତ ଲୋଭ ଓ ଗର୍ବ ଯୋଗୁ କୁରୁବଂଶର ନାମ ଲୋପ ପାଇଗଲା । ଶେଷକୁ ତୁମେ ମଧ୍ୟ ବିଦାୟ ନେଲ । ତୁମର ଅହଂକାରର ଫଳ ସ୍ୱରୂପ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଆଦି ବିନାଶ ପାଇଗଲେ । ବୃଥାରେ ଅନ୍ୟକୁ ଯେତେ ଦୋଷ ଦେଲେ ମଧ୍ୟ ସଂସାରରେ କେହି ଜଣେ ହେଲେ ତୁମକୁ ସାଧୁ ବୋଲି କହିବେ ନାହିଁ । ତୁମର ଗର୍ବ ଓ କ୍ଷମତାଲୋଭ ତୁମକୁ ଏ ଦାରୁଣ ବିପତ୍ତିରେ ବୁଡ଼ାଇ ମାରିଲା । ତୁମେ ଲଗାଇଥିବା ବିଷ ବୃକ୍ଷରୁ ଅମୃତ ଫଳ ମିଳିବ କୁଆଡୁ ?"

ଘୋର ଯନ୍ତ୍ରଣାରେ ଅସ୍ଥିର ହେଉଥିଲେ ମଧ୍ୟ ଦୁର୍ଯ୍ୟୋଧନ କହିଲେ, "କୃଷ୍ଣ, ମୋ ପରି ସୁଖୀ କିଏ ଅଛି ? ମୁଁ ମୃତ୍ୟୁ ପର୍ଯ୍ୟନ୍ତ ରାଜକୀୟ ଭୋଗ ବିଳାସରେ ଦିନ କଟାଇଛି । ମଲାବେଳେ ବୀର ପରି ମରି ସ୍ୱର୍ଗକୁ ଯିବି । ମୋ ବୀର ଭାଇମାନେ ମୋତେ ସ୍ୱର୍ଗରେ ଅପେକ୍ଷା କରିଛନ୍ତି । ତୁମେ ପୃଥିବୀରେ ପଡ଼ି ରହି ଘାଣ୍ଟି ହେବ । ମୋ ଜଙ୍ଘହାଡ଼ ଭାଙ୍ଗିଯାଇଛି । ମୁଁ ଅସହାୟ ଅବସ୍ଥାରେ ତଳେ ପଡ଼ିଥିବା ବେଳେ ଭୀମ ମୋ ମୁଣ୍ଡକୁ ବାରମ୍ବାର ଗୋଇଠା ମାରିଛି । ସେଥିପାଇଁ ଦୁଃଖ କରିବି କାହିଁକି ? ଆଉ କିଛି ସମୟପରେ ତ କାଉ ଶାଗୁଣା ମୋ ମୁଣ୍ଡ ଉପର ବସି ମାଂସ ଝିଙ୍କି ଖାଇବେ ।" ଦୁର୍ଯ୍ୟୋଧନ ଏପରି କହୁଥିବା ବେଳେ ଶୂନ୍ୟରୁ ପୁଷ୍ପ ବୃଷ୍ଟି ହେଲା ।

ଦୁର୍ଯ୍ୟୋଧନଙ୍କ ମନ୍ଦ ବୁଦ୍ଧି, ଅତ୍ୟନ୍ତ ଗର୍ବ ଓ ଲୋଭ ତାଙ୍କୁ ଭୁଲ ବାଟରେ ଚଳାଇନେଲା । ସେ ଧର୍ମ ବାଟ ଛାଡ଼ି କେବଳ ଅଧର୍ମ ଓ ଅନ୍ୟାୟ କରି ଶେଷରେ ତା'ର ବିଷମୟ ଫଳ ଭୋଗକଲେ ।

ଦୁର୍ଯ୍ୟୋଧନଙ୍କ ପ୍ରତି ଭୀମଙ୍କ ବ୍ୟବହାରକୁ କେହି ପସନ୍ଦ କରିନଥିଲେ ।

ପାଣ୍ଡବମାନେ ଶିବିରକୁ ଲେଉଟି ଆସିବା ପରେ ଦୁର୍ଯ୍ୟୋଧନ ଏକାକୀ ଅତ୍ୟନ୍ତ ଅସହାୟ ଅବସ୍ଥାରେ ପଡ଼ିରହିଲେ । କୌରବମାନଙ୍କର ଦୁଃଖର ସୀମା ରହିଲା ନାହିଁ । ଏ ଦାରୁଣ ସମ୍ବାଦ ଶୁଣିବା ମାତ୍ରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଶୋକରେ ଅଧୀର ହୋଇ ତଳେ ଲୋଟିଗଲେ ।

## ଅଶ୍ୱତ୍ଥାମା ସେନାପତି ହେଲେ

ଏବେ କୌରବ ପକ୍ଷରେ କେବଳ ତିନିଜଣ ମହାରଥୀ ଜୀବିତ ରହିଲେ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ଓ କୃତବର୍ମା । ଦୁର୍ଯ୍ୟୋଧନ ମୃତ୍ୟୁ ମୁଖରେ ପଡ଼ି ଛଟପଟ ହେଉଥିବା ସମ୍ବାଦ ପାଇ ତିନିଜଣ ମହାରଥୀ ତାଙ୍କ ନିକଟରେ ପହଞ୍ଚିଲେ । ସେମାନଙ୍କୁ ଦେଖିବା ମାତ୍ରେ ଦୁର୍ଯ୍ୟୋଧନ କାନ୍ଦି କାନ୍ଦି କହିଲେ, "ମୋ ପକ୍ଷରେ କେଡ଼େ କେଡ଼େ ମହା ଧନୁର୍ଦ୍ଧର ଯୋଦ୍ଧା ନଥିଲେ ? କିନ୍ତୁ କଅଣ ହେବ,

ପାଣ୍ଡବମାନେ ସେ ସମସ୍ତଙ୍କୁ କୂଟ କପଟ କରି ଅନ୍ୟାୟ ଯୁଦ୍ଧରେ ମାରିଦେଲେ । ମୋର ଭାଗ୍ୟ ମୋ ଇଚ୍ଛା ବିରୁଦ୍ଧରେ ଗଲା । ସମ୍ମୁଖ ଯୁଦ୍ଧରେ ପ୍ରାଣ ଦେଲେ ମନୁଷ୍ୟ ଦେବଲୋକକୁ ଯାଏ ବୋଲି କଥା ଅଛି । ଯଦି ଏହା ସତ୍ୟ ହୋଇଥାଏ, ତେବେ ମୁଁ ନିଶ୍ଚୟ ସ୍ୱର୍ଗରେ ସ୍ଥାନ ପାଇବି । କିନ୍ତୁ ଭୀମ ମୋତେ ଅନ୍ୟାୟ ଯୁଦ୍ଧରେ ମାରିଛି ଏବଂ ତଳେ ପଡ଼ି ଛଟପଟ ହେଉଥିବାବେଳେ ସେ ମୋ ମୁଣ୍ଡକୁ ଗୋଇଠା ମାରିଛି । ହାୟ, ଏହା ମୋର ଚରମ ଦୁର୍ଭାଗ୍ୟ ।" ଏହିପରି କହି ଦୁର୍ଯ୍ୟୋଧନ କାନ୍ଦିବାରେ ଲାଗିଲେ । ଅଶ୍ୱତ୍ଥାମା ଅତ୍ୟନ୍ତ ଦୁଃଖିତ ହୋଇ କହିଲେ, "ମହାରାଜ, ପାଣ୍ଡବମାନେ କପଟ ଆଚରଣ କରି ତାଙ୍କ କାମନା ପୂର୍ଣ୍ଣ କରିଦେଲେ । ଲୋକେ ତାଙ୍କୁ ସାଧୁ, ଦୟାଳୁ ଓ ଧାର୍ମିକ ବୋଲି କହନ୍ତି । ମାତ୍ର ସେମାନେ ନୀଚ ଓ ଅଧର୍ମୀ ଅଟନ୍ତି । ସେମାନଙ୍କର ଅନ୍ୟାୟ ଯୁଦ୍ଧ ହିଁ ପିତାମହ ଭୀଷ୍ମ, ଆଚାର୍ଯ୍ୟ ଦ୍ରୋଣ ଓ ମହାବୀର କର୍ଣ୍ଣଙ୍କ ମୃତ୍ୟୁର କାରଣ । ଆପଣଙ୍କୁ ମଧ ଭୀମ ଅଧର୍ମ ଯୁଦ୍ଧରେ ଏ ଶୋଚନୀୟ ଦଶା ଦେଇଛି । ପ୍ରତିଜ୍ଞା କରୁଛି, ଯେକୌଣସି ଉପାୟରେ ହେଉନା କାହିଁକି ମୁଁ ପାଣ୍ଡବମାନଙ୍କୁ ଅବଶ୍ୟ ହତ୍ୟାକରିବି ।"

ଅଶ୍ୱତ୍ଥାମାଙ୍କ ପ୍ରତିଜ୍ଞା ଶୁଣି ଦୁର୍ଯ୍ୟୋଧନ ଆଶ୍ୱସ୍ତ ହେଲେ । ବୁଡ଼ିଯାଉଥିବା ଲୋକ କୁଟାଖିଅକୁ ଆଶ୍ରା କଲା ପରି ସେ ଅଶ୍ୱତ୍ଥାମାଙ୍କୁ ସେନାପତି ରୂପେ ବରଣ କରି ପାଣ୍ଡବମାନଙ୍କୁ ହତ୍ୟା କରିବା ପାଇଁ ଉତ୍ତେଜିତ କରିବାରେ ଲାଗିଲେ ।

ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଆଦି ତିନିବୀର ପାଣ୍ଡବମାନଙ୍କ ଶିବିର ଆଡ଼କୁ ଅଗ୍ରସର ହେଲେ ।

## ସୌପ୍ତିକ ପର୍ବ

## ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀଙ୍କ ସହିତ ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କ ନିଧନ

ଦୁର୍ଯ୍ୟୋଧନଙ୍କୁ ଦରମଲା ଅବସ୍ଥାରେ ଛାଡ଼ି ପାଣ୍ଡବମାନେ ଯୁଦ୍ଧକ୍ଷେତ୍ରରୁ ଫେରିଆସିଲେ । ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ସଙ୍ଗରେ ନେଇ ଅନ୍ୟ ଏକ ସ୍ଥାନକୁ ଗଲେ । ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ପାଣ୍ଡବମାନଙ୍କ ଶିବିର ନିକଟରେ ଥିବା ଏକ ଗଛ ମୂଳରେ ବସି ଆସନ୍ତା କାଲିର ଯୁଦ୍ଧ ପାଇଁ ଚିନ୍ତା କରିବାରେ ଲାଗିଲେ । କୃପାଚାର୍ଯ୍ୟ ଓ କୃତବର୍ମାଙ୍କ ଆଖିକୁ ନିଦ ଆସିଗଲା । ମାତ୍ର ଦୁଃଖ, ହତାଶା ଓ କ୍ରୋଧରେ ଜଳୁଥିବାରୁ ଅଶ୍ୱତ୍ଥାମାଙ୍କ ଆଖିକୁ ନିଦ ଆସୁନଥାଏ । କ୍ରମେ ରାତି ବେଶୀ ହେବାକୁ ଲାଗିଲା । ଯେଉଁ ଗଛ ମୂଳରେ ସେମାନେ ବିଶ୍ରାମ କରିଥିଲେ, ସେଇ ଗଛରେ ଗୁଡ଼ିଏ କାଉ ବସା କରିଥିଲେ । ରାତିର ଅନ୍ଧାରରେ କିଛି ଦେଖାଯାଉ ନଥାଏ । ଏହି ସୁଯୋଗରେ ଗୋଟାଏ ପେଚା ଆସି ଶୋଇଥିବା କାଉମାନଙ୍କୁ ଆକ୍ରମଣ କଲା । ଚାହୁଁ ଚାହୁଁ ପେଚାଟି ଗୋଟିକ ପରେ ଗୋଟିଏ କରି ଅନେକ କୁଆଙ୍କୁ ମାରି ପକାଇଲା । ଏକୁଟିଆ ଲୋକ କିପରି ଶତ୍ରୁ ମାନଙ୍କ ଉପରେ ଦାଉ ସାଧିପାରେ ଅଶ୍ୱତ୍ଥାମା ତାହାର ଉପାୟ ପାଇଗଲେ । ସେ ମନେ ମନେ ଭାବିଲେ, କାଉମାନେ ଶୋଇଥିବା ଅବସ୍ଥାରେ ପେଚାଟା ଯେପରି ଶିକାର କଲା, ମୁଁ ଠିକ୍ ସେହିପରି ପାଣ୍ଡବମାନେ ଶୋଇଥିବା ବେଳେ ଆକ୍ରମଣ କରି ହତ୍ୟାକରିବି । ଧର୍ମ, ନ୍ୟାୟ ବା ଯୁଦ୍ଧନୀତି ଆଉ ଆବଶ୍ୟକ ନାହିଁ । କଳେ ବଳେ ପାଣ୍ଡବମାନଙ୍କ ସହିତ କପଟୀ କୃଷ୍ଣଙ୍କୁ ମଧ୍ୟ ହତ୍ୟା କରିବାରେ ଆଦୌ ଦୋଷ ନାହିଁ ।" ନିଦରେ ଶୋଇଥିବା କୃତବର୍ମା ଓ କୃପାଚାର୍ଯ୍ୟଙ୍କୁ ଉଠାଇ ଅଶ୍ୱତ୍ଥାମା ତାଙ୍କ ମନକଥା ଜଣାଇ ଦେଲେ ।

କୃପାଚାର୍ଯ୍ୟ ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ଏ କି କଥା କହୁଛ ? ନିଦରେ ଶୋଇଥିବା ଲୋକକୁ ହତ୍ୟା କରିବା କେବେ ଶୁଣାଯାଇନାହିଁ । କ୍ଷତ୍ରିୟ ଧର୍ମରେ ଏହା ଘୋର ନିନ୍ଦାର କଥା ହେବ । ଦେଖ, ଆମେ ଅତ୍ୟନ୍ତ ଲୋଭୀ ଓ ଅହଂକାରୀ ଦୁର୍ଯ୍ୟୋଧନ ପକ୍ଷରେ ରହି ଯୁଦ୍ଧ କରୁଥିଲୋ ବର୍ତ୍ତମାନ ସେ ମରିବା ଉପରେ । ଏବେ ପାଣ୍ଡବମାନଙ୍କୁ ହତ୍ୟାକରି କି ଲାଭ ହେବ ? ବରଂ ଆମେ ମହାରାଜ ଧୃତରାଷ୍ଟ୍ର, ମାତା ଗାନ୍ଧାରୀ ଓ ମହାମତି ବିଦୂରଙ୍କ ସହିତ ପରାମର୍ଶ କରି କାର୍ଯ୍ୟ କରିବା ଉଚିତ ହେବ ।"

କୃପାଚାର୍ଯ୍ୟଙ୍କ କଥା ଶୁଣି ଅଶ୍ୱତ୍ଥାମା କ୍ରୋଧରେ ଗର୍ଜି ଉଠି କହିଲେ, "ପାଣ୍ଡବମାନେ ସମ୍ପୂର୍ଣ୍ଣ ଦୋଷୀ । ସେମାନେ ଅତି ଅନ୍ୟାୟ ଭାବରେ ମୋ ପିତାଙ୍କୁ ହତ୍ୟା କଲେ । ଯୁଦ୍ଧର ନିୟମକୁ ଗୋଡରେ ଆଡ଼େଇଦେଇ ଦୁର୍ଯ୍ୟୋଧନଙ୍କୁ ମଧ ମାରିଲେ । ମୁଁ

ଯାହା କରିବି ବୋଲି ସ୍ଥିର କରିଛି, ତାହା ହିଁ ସେ ଦୁରାତ୍ମା ପାଣ୍ଡବମାନଙ୍କ ପ୍ରତି ଉପଯୁକ୍ତ ଶାସ୍ତି ହେବ । ଏହା କରିନପାରିଲେ ମୁଁ ବନ୍ଧୁ ଦୁର୍ଯ୍ୟୋଧନ ଓ ପିତା ଦ୍ରୋଣଙ୍କ ଋଣରୁ ମୁକ୍ତ ହେବି କିପରି ? ମୁଁ ମୋ ନିଷ୍ପତ୍ତିକୁ କୌଣସି ମତେ ବଦଳାଇପାରିବି ନାହିଁ ।" ଅଶ୍ୱତ୍ଥାମା ପ୍ରତିଶୋଧ ନେବା ପାଇଁ ଜଳି ଉଠୁଥିଲେ । ସେ ପାଣ୍ଡବମାନଙ୍କ ଶିବିର ଆଡ଼କୁ ଆଗେଇ ଯିବା ଦେଖି କୃତବର୍ମା ଓ କୃପାଚାର୍ଯ୍ୟ ସେନାପତି ଅଶ୍ୱତ୍ଥାମା ପଛେ ପଛେ ଧାଇଁଲେ ।

ଅଶ୍ୱତ୍ଥାମା କହିଲେ, "ଆପଣ ଦୁହେଁ ଶିବିର ଦ୍ୱାରରେ ଅପେକ୍ଷା କରନ୍ତୁ । ଯେ ବାହାରକୁ ଆସିବ ଦେଖିବେ, ତାକୁ ସଂଗେ ସଂଗେ ହତ୍ୟା କରିଦେବେ ।"

ସେମାନେ ଧୃଷ୍ଟଦ୍ୟୁମ୍ନଙ୍କ ଶିବିର ନିକଟରେ ପହଞ୍ଚିଯିବା ପରେ ଅଶ୍ୱତ୍ଥାମା ଏକାକୀ ଭିତରକୁ ପ୍ରବେଶ କଲେ । ସେତେବେଳକୁ ଧୃଷ୍ଟଦ୍ୟୁମ୍ନ ଅସ୍ତ୍ରଶସ୍ତ୍ର ଥୋଇ ଦେଇ ଗଭୀର ନିଦ୍ରାରେ ଶୋଇ ପଡ଼ିଥିଲେ । ଅଶ୍ୱତ୍ଥାମା ଛପି ଛପି ଯାଇ ଅତି ନିଷ୍ଠୁର ଭାବରେ ତାଙ୍କୁ ହାଣି ଦେଲେ । ଧୃଷ୍ଟଦ୍ୟୁମ୍ନ ପାଟି କରିବା କିମ୍ବା ସତର୍କ ହେବା ଆଗରୁ ତାଙ୍କ ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଯାଇଥିଲା । କୋଳାହଳ ଶୁଣି ଶୋଇଥିବା ସୈନ୍ୟମାନେ ଶିବିରରୁ ପଦାକୁ ପଳାଇ ଆସିଲେ । ମାତ୍ର ଦ୍ୱାର ଦେଶରେ ଥିବା କୃତବର୍ମା ଓ କୃପାଚାର୍ଯ୍ୟ ସେମାନଙ୍କୁ ଗୋଟି ଗୋଟି କରି ହତ୍ୟା କରିଦେଲେ । ଠିକ୍ ସେହି ଉପାୟରେ ଅଶ୍ୱତ୍ଥାମା ଶିଖଣ୍ଡୀ ଓ ଧୃଷ୍ଟଦ୍ୟୁମ୍ନଙ୍କ ଅନ୍ୟ ଭାଇମାନଙ୍କୁ ହତ୍ୟା କରିଦେଇ ପାଣ୍ଡବଙ୍କ ଶିବିର ଆଡ଼କୁ ଅଗ୍ରସର ହେଲେ । ଅଶ୍ୱତ୍ଥାମା ଶିବିର ମଧ୍ୟରେ ପ୍ରବେଶ କଲେ । ନିଦରେ ଶୋଇଥିବା ଦ୍ରୌପଦୀଙ୍କର ପାଞ୍ଚପୁଅଙ୍କୁ ଗୋଟି ଗୋଟି କରି ହାଣି ଦେଇ ଶିବିରରେ ନିଆଁ ଲଗାଇଦେଲେ । କ୍ରୋଧ ଓ ପ୍ରତିହିଂସା ତାଙ୍କ ବିବେକକୁ ଧ୍ୱଂସ କରି ଦେଇଥିଲା । ତେଣୁ ସେ ଯେ କୌଣସି ଅନ୍ୟାୟ କାର୍ଯ୍ୟ କରିବାକୁ ପଛାଉନଥିଲେ ।

ଏହି ଜଘନ୍ୟ କାଣ୍ଡ ଘଟାଇ ସାରି ଅଶ୍ୱତ୍ଥାମା କହିଲେ, "ଆମେ ଆମର କର୍ତ୍ତବ୍ୟ ଶେଷ କରିଛୁଁ । ଚାଲ, ଶୀଘ୍ର ପାଣ୍ଡବମାନଙ୍କ କଟାମୁଣ୍ଡ ମହାରାଜା ଦୁର୍ଯ୍ୟୋଧନଙ୍କୁ ଭେଟିଦେବା । ଯଦି ସେ ଆମେ ଯିବା ପର୍ଯ୍ୟନ୍ତ ଜୀବିତ ଥିବେ, ତେବେ ବହୁତ ଖୁସି ହେବେ ଓ ସୁଖରେ ମରିବେ ।"

ଅଶ୍ୱତ୍ଥାମା, କୃତବର୍ମା ଓ କୃପାଚାର୍ଯ୍ୟ ଦ୍ରୌପଦୀଙ୍କ ପାଞ୍ଚପୁତ୍ରଙ୍କ କଟାମୁଣ୍ଡକୁ ପାଞ୍ଚପାଣ୍ଡବଙ୍କ ବୋଲି ମନେକରିଥିଲେ । ଏମାନେ ଦୁର୍ଯ୍ୟୋଧନଙ୍କ ପାଖରେ ପହଞ୍ଚିଲାବେଳକୁ ସେ ଅଚେତ ହୋଇ ଶୋଇପଡ଼ିଥିଲେ । ଅଶ୍ୱତ୍ଥାମା ତାଙ୍କୁ ହଲାଇ ହଲାଇ ଚେତା କରାଇଦେଲେ ଓ କହିଲେ, "ମହାରାଜ, ମୁଁ ଧୃଷ୍ଟଦ୍ୟୁମ୍ନ ଓ ଶିଖଣ୍ଡୀ ସହିତ ପାଣ୍ଡବମାନଙ୍କୁ ହତ୍ୟା କରିଦେଇଛି ।" ଏକଥା ଶୁଣିବା ମାତ୍ରେ ଦୁର୍ଯ୍ୟୋଧନ ଉଠି ବସିବାକୁ ଚେଷ୍ଟା କଲେ । ଅଶ୍ୱତ୍ଥାମା ତାଙ୍କୁ ଉଠିବସିବାରେ ସାହାଯ୍ୟ କରୁଥିବାବେଳେ କହିଲେ, "ମହାରାଜ, ମୁଁ ପାଣ୍ଡବମାନଙ୍କ କଟାମୁଣ୍ଡଗୁଡ଼ିକ ଆପଣ ଦେଖିବା ପାଇଁ ନେଇଆସିଛି ।" ଏକଥା ଶୁଣିବା ମାତ୍ରେ ଦୁର୍ଯ୍ୟୋଧନ ଭୋଗୁଥିବା ଅସହ୍ୟ ଯନ୍ତ୍ରଣା ଭୁଲିଗଲେ ଓ ମୋତେ ଶୀଘ୍ର ଭୀମର ମୁଣ୍ଡଟା ଦିଅ ବୋଲି କହିଲେ । ସେ ପ୍ରତିଶୋଧ ନେବା ପାଇଁ ଅଶ୍ୱତ୍ଥାମା ଦେଇଥିବା ମୁଣ୍ଡରେ ଏକ ମୁଥ ମାରିଦେଲେ । ଗୋଟିଏ ମୁଥ ମାଡ଼ରେ ମୁଣ୍ଡଟା କଞ୍ଚା ହାଣ୍ଡି ପରି ଖଣ୍ଡ ଖଣ୍ଡ ହୋଇ ଫାଟି ଗଲା । ଦୁର୍ଯ୍ୟୋଧନ ଭାବିଲେ, "ଭୀମର ମୁଣ୍ଡ ବଜ୍ର ଠାରୁ ଆହୁରି ଟାଣ । ଏ ମୁଣ୍ଡ କଦାପି ଭୀମର ହୋଇନପାରେ ।

ସକାଳ ହେବା ପରେ ଦୁର୍ଯ୍ୟୋଧନ କଟାମୁଣ୍ଡ ଗୁଡ଼ିକ ଭଲ କରି ଦେଖି ଜାଣିଗଲେ ଯେ ସେଗୁଡ଼ିକ ପାଣ୍ଡବମାନଙ୍କର ନୁହେଁ, ଦ୍ରୌପଦୀଙ୍କ ପାଞ୍ଚ ପୁତ୍ରଙ୍କର ମୁଣ୍ଡ । ତାଙ୍କ ମନରେ ଗଭୀର ଦୁଃଖ ଜାତ ହେଲା । ସେ ଅତି ବିକଳ ହୋଇ କହି ଉଠିଲେ, "ହାୟ କୁରୁକୁଳ ଧ୍ୱଂସ ହୋଇଥିଲା । ଏବେ ପାଣ୍ଡବଙ୍କ କୁଳରେ ମଧ୍ୟ ପିଣ୍ଡ ଦେବା ପାଇଁ କେହି ରହିଲେ ନାହିଁ । ମୁଁ ଦୁଇ କୁଳ ବୁଡ଼ାଇ ବସିଲି । ଧିକ ମୋ ଜୀବନକୁ ।" ଏହାପରେ ତାଙ୍କ ପ୍ରାଣବାୟୁ ଉଡ଼ିଗଲା ।

## ଧୃତରାଷ୍ଟ୍ର ଓ ସଂଜୟ

ସଂଜୟ ପ୍ରତିଦିନର ଯୁଦ୍ଧ ବିବରଣୀ ଧୃତରାଷ୍ଟ୍ରଙ୍କୁ ଜଣାଇବାରେ ଲାଗିଥାନ୍ତି । ଆଜି ମହାଭାରତ ଯୁଦ୍ଧର ଶେଷଦିନ । ସଂଜୟ କହିଲେ, "ମହାରାଜ, ଆପଣଙ୍କ ବୀରପୁତ୍ର ଦୁର୍ଯ୍ୟୋଧନ ଅତ୍ୟନ୍ତ ଅସହାୟ ଅବସ୍ଥାରେ ଯୁଦ୍ଧକ୍ଷେତ୍ରରେ ପଡ଼ିଛନ୍ତି । ତାଙ୍କ ଦେହରୁ ମାଂସ ଝୁଣି ଖାଇବା ପାଇଁ ଶିଆଳ, କୁକୁରମାନେ ଭେଳା ଭେଳା ହେଉଛନ୍ତି । ମୃତ୍ୟୁ ଯନ୍ତ୍ରଣାରେ ଅସ୍ଥିର ହୋଇ ସେ ବେଳେ ବେଳେ ଚିତ୍କାର କରୁଛନ୍ତି । ମଝିରେ ମଝିରେ ସେ ଅଚେତ ମଧ୍ୟ ହୋଇପଡୁଛନ୍ତି । ଅଶ୍ୱତ୍ଥାମା ଆସି ପାଣ୍ଡବ ଶିବିରର ଦୁର୍ଦ୍ଦଶା ବର୍ଣ୍ଣନା କରିବା ପରେ ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନନ୍ଦିତ ହୋଇଉଠିଥିଲେ । ମାତ୍ର ପରେ ପରେ ଅଶ୍ୱତ୍ଥାମା କରିଥିବା ଭୁଲ ପାଇଁ ଦୁଃଖ କରୁ କରୁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଅଶ୍ୱତ୍ଥାମା ଆଦି ତିନି ବୀର ତାଙ୍କ ମୃତ ଶରୀରକୁ କୁଣ୍ଢାଇ ଧରି ବହୁ ଶୋକ କରିବାରେ ଲାଗିଲେ । ଏବେ ସେମାନେ ହସ୍ତିନା ଫେରିଆସୁଛନ୍ତି । ମହାରାଜ, କେବଳ ଆପଣଙ୍କ ଲାଗି କୌରବ ଓ ପାଣ୍ଡବ ଉଭୟ କୁଳ ଧ୍ୱଂସ ପାଇଗଲା । ଏ ସମସ୍ତ ଅପକର୍ମ ପାଇଁ ଆପଣ ହିଁ ଦାୟୀ । ଆପଣଙ୍କ ପରି ଦୁର୍ବଳମନା ରାଜା ଏ ପବିତ୍ର ରାଜ ବଂଶରେ ଆଗରୁ କେହି ରାଜତ୍ୱ କରିନଥିଲେ । ଆପଣ କୁରୁକୁଳର କଳଙ୍କ ବୋଲି କହି ଲୋକେ ନିନ୍ଦା କରିବାରେ ଲାଗିଲେଣି । ବର୍ତ୍ତମାନ ଆଉ ଚିନ୍ତା କରି ଲାଭ ନାହିଁ । ସବୁ ପୋଡ଼ି ଜଳି ପାଉଁଶ ହୋଇ ସାରିଲାଣି । ଆଉ ଯୁଦ୍ଧ ହେବାର ନାହିଁ । ମହର୍ଷି ବ୍ୟାସଦେବ ମୋତେ ଯେଉଁ ଦିବ୍ୟ ଦୃଷ୍ଟି ଦେଇଥିଲେ, ତାହା ବର୍ତ୍ତମାନଠାରୁ ଶେଷ ପାଇଗଲା । ଯୁଦ୍ଧକ୍ଷେତ୍ରର କୌଣସି ଘଟଣା ମୋତେ ଆଉ ଦେଖା ଯାଉନାହିଁ ।" ଏତିକି କହି ସଂଜୟ ନୀରବ ରହିଲେ ।

ଯୁଦ୍ଧ କ୍ଷେତ୍ରର ନିର୍ମମ ଦୃଶ୍ୟ ବର୍ଣ୍ଣନା ଶୁଣି ଧୃତରାଷ୍ଟ୍ରଙ୍କ ହୃଦୟ ଦୁଃଖରେ ଅସ୍ଥିର ହୋଇଉଠିଲା । ସେ ଅଚେତ ହୋଇ ଭୂମିରେ ଲୋଟିଗଲେ ।

## ପାଣ୍ଡବଙ୍କ କ୍ରୋଧ

ସକାଳେ ଶ୍ରୀକୃଷ୍ଣ ଓ ପାଣ୍ଡବମାନେ ଶିବିରକୁ ଫେରି ଆସିବା ମାତ୍ରେ ଗତ ରାତ୍ରିର ଧ୍ୱଂସଲୀଳା ଦେଖି କାଠ ପାଲିଟିଗଲେ । କାହାରି ତୁଣ୍ଡରୁ କଥା ବାହାରିଲା ନାହିଁ ।

ଦ୍ରୌପଦୀ ପ୍ରିୟ ପୁତ୍ରମାନଙ୍କ ମୃତ୍ୟୁରେ ଅତ୍ୟନ୍ତ ବ୍ୟାକୁଳ ହୋଇ ବାଷ୍ପରୁଦ୍ଧ କଣ୍ଠରେ ଯୁଧିଷ୍ଠିରଙ୍କୁ କହିଲେ, "ସ୍ୱାମୀ, ମୋ ବୀରପୁତ୍ରମାନଙ୍କୁ ପାପିଷ୍ଠ ଅଶ୍ୱତ୍ଥାମା ଚୋର ପରି ଆସି ହତ୍ୟାକରିଛି । ସେମାନଙ୍କ ମୃତ ଦେହ ଦେଖି ମୋ ଛାତି ଫାଟିଯାଉଛି । ଏ ଦାରୁଣ ଦୁଃଖର ପ୍ରତିଶୋଧ ନେବାପାଇଁ ମୋର କଅଣ କେହି ନାହାନ୍ତି ?"

ଯୁଧିଷ୍ଠିର ଶୋକରେ ଅଧୀର ହୋଇ କହିଲେ, "ବିଜୟ ଲାଭର ଶେଷ ମୁହୂର୍ତ୍ତରେ ଆମର ସବୁଠାରୁ ବଡ଼ ପରାଜୟ ହେଲା ।" ସେ ଚିତ୍କାର କରି କହିଲେ, "ହେ ଭଗବାନ, ମଝି ଦରିଆରେ ମୋର ଡଙ୍ଗା ବୁଡ଼ିଗଲା । ବଞ୍ଚିରହି ମୁଁ ଆଉ କି ସୁଖ ଭୋଗ କରିବି ? ପାପିଷ୍ଠ ଅଶ୍ୱତ୍ଥାମା ମୋର ବଂଶ ନାଶ କରିଦେଲା ।"

ଭୀମ କ୍ରୋଧରେ ନିଆଁ ପରି ହୋଇ ଅଶ୍ୱତ୍ଥାମାକୁ ଖୋଜିବାକୁ ବାହାରିଗଲେ । କୃଷ୍ଣଙ୍କ ଚିନ୍ତା ବଢ଼ିଗଲା । କାରଣ ସେ ଜାଣନ୍ତି ଅଶ୍ୱତ୍ଥାମା ନିକଟରେ ବ୍ରହ୍ମଶୀରା ନାମକ ଏକ ମହାନ୍ ଅସ୍ତ୍ର ଅଛି । ସେ ଏହାକୁ ପ୍ରୟୋଗ କଲେ ଭୀମ କୌଣସି ଉପାୟରେ ମଧ୍ୟ ବଞ୍ଚି ପାରିବେ ନାହିଁ । ତେଣୁ ଶ୍ରୀକୃଷ୍ଣ ଯୁଧିଷ୍ଠିର ଓ ଅର୍ଜୁନଙ୍କୁ ସଙ୍ଗରେ ନେଇ ଭୀମଙ୍କ ପଛେ ପଛେ ଧାଇଁବାରେ ଲାଗିଲେ । ସେମାନେ ଭୀମଙ୍କ ବହୁତ ବୁଝାଇଲେ, "ମାତ୍ର ଭୀମ କୌଣସି କଥା ଶୁଣୁନଥିଲେ । ତେଣୁ ଯୁଧିଷ୍ଠିର, ଅର୍ଜୁନ ଓ କୃଷ୍ଣ ତାଙ୍କ ଆଗକୁ ଆଗକୁ ଯିବାରେ ଲାଗିଲେ । କିଛି ଦୂର ଯିବାପରେ ଦେଖାଗଲା, ଅଶ୍ୱତ୍ଥାମା ପ୍ରାଣ ଭୟରେ ମହର୍ଷି ବ୍ୟାସ ଓ ଅନ୍ୟ କେତେକ ଋଷିଙ୍କ

ମେଳରେ ବସି ଯାଇଛନ୍ତି । ଭୀମ ଅଶ୍ୱତ୍ଥାମାଙ୍କୁ ଦେଖିବା ମାତ୍ରେ ଗର୍ଜନ କରି କହିଲେ, "ଚୋରଙ୍କ ପରି ରାତି ଅଧରେ ଯେଉଁ ଅପକର୍ମ କରିଛୁ, ଆଜି ତା'ର ଉପଯୁକ୍ତ ଶାସ୍ତି ପାଇବୁ । ଶୀଘ୍ର ମୋ ଆଗକୁ ଚାଲିଆ ।" ଭୀମଙ୍କ ସହିତ ଅର୍ଜୁନ ଓ ଯୁଧିଷ୍ଠିରଙ୍କୁ ଦେଖି ଅଶ୍ୱତ୍ଥାମା ଭୟରେ ଥରିବାକୁ ଲାଗିଲେ । ଅନ୍ୟ ଉପାୟ ନଦେଖି ସେ "ସବୁ ପାଣ୍ଡବଙ୍କୁ ହତ୍ୟା କର" କହି ବ୍ରହ୍ମଶୀରା ଅସ୍ତ୍ର ପ୍ରୟୋଗ କରିଦେଲେ । ଏହି ଅସ୍ତ୍ର ଗତି କଲା ବେଳେ ଆକାଶ ପୃଥିବୀ କମ୍ପି ଉଠିଲା । ଠିକ୍ ଏତିକିବେଳେ ବ୍ରାହ୍ମଶୀରା ଅସ୍ତ୍ରକୁ ଅଟକାଇବା ପାଇଁ ଅର୍ଜୁନ ପାଶୁପତ ଅସ୍ତ୍ର ଛାଡ଼ିଦେଲେ । ଦୁଇ ଅସ୍ତ୍ର ମୁହାଁମୁହିଁ ହୋଇଯିବାମାତ୍ରେ ଚାରିଆଡ଼େ ନିଆଁ ଜଳିଉଠିଲା । ବିଜୁଳି ତେଜରେ ସମଗ୍ର ପୃଥିବୀ ଭସ୍ମ ହୋଇଯିବାର ଆଶଙ୍କା ଉପୁଜିଲା । ମହର୍ଷି ବ୍ୟାସ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ନାରଦଙ୍କ ସହିତ ଉଭୟ ଅସ୍ତ୍ରର ମଝିରେ ଆସି ଠିଆ ହୋଇ କହିଲେ, " ଏହି ଅସ୍ତ୍ରମାନ ମନଷ୍ୟ ଉପରେ ପ୍ରୟୋଗ କରାଯାଏ ନାହିଁ । ବର୍ତ୍ତମାନ ତୁମ୍ଭେମାନେ ନିଜ ନିଜର ଅସ୍ତ୍ର ଫେରାଇନିଅ ।" ଅର୍ଜୁନ ବ୍ୟାସଙ୍କ ଆଦେଶ ମାନିନେଲେ; ମାତ୍ର ଅଶ୍ୱତ୍ଥାମା କହିଲେ, "-ମୁଁ ଅସ୍ତ୍ର ଫେରାଇ ଆଣିବାର ମନ୍ତ୍ର ଶିକ୍ଷା କରିନାହିଁ ।" ଦୁଇ ଋଷି ଦୁଃଖିତ ହୋଇ କହିଲେ"-ତୁମ ଅସ୍ତ୍ର ଯୋଗେ ଅଭିମନ୍ୟୁ ପତ୍ନୀ ଉତ୍ତରାଙ୍କ ଗର୍ଭ ନଷ୍ଟ ହେବ । ଅର୍ଜୁନ ନିଜର ଅସ୍ତ୍ର ଫେରାଇ ନେଇଥିବାରୁ ତୁମେ ପାଣ୍ଡବମାନଙ୍କୁ ତୁମ୍ଭର କୌଣସି ବହୁମୂଲ୍ୟ ପଦାର୍ଥ ଦେବାକୁ ପଡ଼ିବ ।" ଏକଥା ଶୁଣି ଅଶ୍ୱତ୍ଥାମା ନିଜ ମସ୍ତକରେ ଧାରଣ କରିଥିବା ବହୁମୂଲ୍ୟ ମଣିଟିକୁ ପାଣ୍ଡବମାନଙ୍କୁ ଦେଲେ । ମଣି ବାହାର କରିବା ସମୟରେ ଅଶ୍ୱତ୍ଥାମାଙ୍କୁ ଅସହ୍ୟ ଯନ୍ତ୍ରଣା ସହିବାକୁ ପଡ଼ିଲା । ଏହି ମଣିଟି ହିଁ ଅଶ୍ୱତ୍ଥାମାଙ୍କୁ ଶକ୍ତି, ତେଜ ଓ ଅଜେୟ ହେବାର କାରଣ ହୋଇଥିଲା । ମଣିଟି ଦେଇଦେବା ପରେ ସେ ଅତ୍ୟନ୍ତ ଦୁର୍ବଳ ଓ ନିସ୍ତେଜ ହୋଇପଡ଼ିଲେ ଏବଂ ବ୍ୟାସଙ୍କ ଆଶ୍ରମରେ ରହି ଏକ ତପସ୍ୱୀ ଭାବରେ ଦିନ କଟାଇଲେ ।

ଅଶ୍ୱତ୍ଥାମାଙ୍କ ଅସ୍ତ୍ରଯୋଗୁ ଉତ୍ତରାଙ୍କ ଗର୍ଭ ନଷ୍ଟ ହେବାର କଥା । ମାତ୍ର ଶ୍ରୀକୃଷ୍ଣଙ୍କ ଶକ୍ତି ବଳରେ ଉତ୍ତରାଙ୍କ ଗର୍ଭରେ ଥିବା ସନ୍ତାନର କିଛି ମାତ୍ର କ୍ଷତି ହେଲା ନାହିଁ ।"

ଭୀମ ଅଶ୍ୱତ୍ଥାମାଙ୍କ ମଣିଟି ଦ୍ରୌପଦୀଙ୍କୁ ଦେଇ କହିଲେ, "ଦେବୀ, ଯେଉଁ ପାପୀ ତୁମ ପୁତ୍ରମାନଙ୍କୁ ହତ୍ୟା କରିଥିଲା, ବର୍ତ୍ତମାନ ସେ ପରାଜୟ ସ୍ୱୀକାର କରି ତପସ୍ୟା କରୁଛି । ମୁଁ ଦୁଃଶାସନର ରକ୍ତପାନ କରି ମୋ ପ୍ରତିଜ୍ଞା ପୂରଣ କରିଛି । ଦୁର୍ଯ୍ୟୋଧନ ଆଉ ଏ ସଂସାରରେ ନାହିଁ ।

ଦ୍ରୌପଦୀ ମଣିଟିକୁ ଯୁଧିଷ୍ଠିରଙ୍କ ପାଦତଳେ ଥୋଇ କହିଲେ, "ଧର୍ମରାଜ, ଏ ମଣିଟି ଆପଣଙ୍କ ମୁକୁଟରେ ଶୋଭାପାଉ । ଏହା ହିଁ ମୋର ପ୍ରାର୍ଥନା ।"

ଯୁଧିଷ୍ଠିର ମଣିଟିକୁ ଗ୍ରହଣ କଲେ ।

## ଧୃତରାଷ୍ଟ୍ରଙ୍କୁ ସାନ୍ତ୍ୱନା

ମହାରାଜା ଦୁର୍ଯ୍ୟୋଧନଙ୍କ ମୃତ୍ୟୁ ପରେ ହସ୍ତିନାପୁରରେ ଶୋକର କଳାଛାଇ ଘୋଟିଗଲା । ହଜାର ହଜାର ବିଧବା ରମଣୀଙ୍କର ବିକଳ ବିଳାପରେ ଗଗନ କମ୍ପି ଉଠିଲା । ମହାରାଣୀ ଭାନୁମତୀଙ୍କ ଶୋକ ସୀମା ଟପି ଗଲା । ସେ କାନ୍ଦି କାନ୍ଦି ଅଚେତ ହୋଇ ତଳେ ପଡ଼ିଗଲେ । ଶତପୁତ୍ରର ଜନନୀ ଗାନ୍ଧାରୀ ପୁତ୍ରଶୂନ୍ୟ ହୋଇ ମୁଣ୍ଡପିଟି ଭୂଇଁରେ ଲୋଟି ଯାଉଥାନ୍ତି । ମହାରାଜ ଧୃତରାଷ୍ଟ୍ରଙ୍କୁ ଦେଖିଲେ ସେ ଜୀବିତ କି ମୃତ ବାରି ହେଉ ନଥାଏ । ମହାମତି ବିଦୁର ମଧ ଶୋକସମ୍ଭାଳି ନପାରି ଅତି ଅଧୈର୍ଯ୍ୟ ହୋଇ ପଡୁଥାନ୍ତି । ଅନ୍ତଃପୁରର ରାଣୀମାନେ ପାଗଳଙ୍କ ପରି ଅସ୍ତବ୍ୟସ୍ତ ହୋଇ ଯୁଦ୍ଧକ୍ଷେତ୍ର ଆଡ଼କୁ ଦଉଡ଼ିବାରେ ଲାଗିଥାନ୍ତି । ଗାନ୍ଧାରୀ ଓ ଧୃତରାଷ୍ଟ୍ର ମଧ ସେମାନଙ୍କ ପଛେ ପଛେ ଗଲେ ।

ସଞ୍ଜୟ କହିଲେ, "ମହାରାଜ, ଯାହା ହେବାର ଥିଲା, ତାହା ହୋଇସାରିଛି । ଗତ କଥା ପାଇଁ ଦୁଃଖ କରି କିଛି ଲାଭ ହେବ ନାହିଁ । ଆପଣଙ୍କ ପୁଅ ପାଇଁ ଆଜି ଭାରତ ବୀରଶୂନ୍ୟ ହୋଇଯାଇଛି । ହଜାର ହଜାର ସ୍ତ୍ରୀ ଶଙ୍ଖା, ସିନ୍ଦୁର ହରାଇ ଅଭାଗିନୀ ହୋଇପଡ଼ିଛନ୍ତି । ଲକ୍ଷ ଲକ୍ଷ ଶିଶୁ ଆଜି ଅନାଥ ହୋଇଗଲେ । ବର୍ତ୍ତମାନ ଆପଣ ସେମାନଙ୍କ ପାଇଁ କିଛି କରିପାରିବେ ନାହିଁ । କେବଳ ମୃତ ବ୍ୟକ୍ତିମାନଙ୍କର ପ୍ରେତ କାର୍ଯ୍ୟର ବ୍ୟବସ୍ଥା କରନ୍ତୁ । ଆପଣଙ୍କ ପୁଅମାନଙ୍କ ସହିତ ଆପଣଙ୍କର କୌଣସି ସଂପର୍କ ନାହିଁ । ମୃତ୍ୟୁ ପୂର୍ବରୁ ଆତ୍ମା କେଉଁଠି ଥାଏ ଓ ମୃତ୍ୟୁ ପରେ କୁଆଡ଼େ ଯାଏ, ସେ କଥା କାହାକୁ ଜଣା ନାହିଁ । ମୃତ ଲୋକମାନଙ୍କ ପାଇଁ ଅଧିକ ଶୋକ କଲେ ସ୍ୱର୍ଗକୁ ଯାଇଥିବା ଆତ୍ମା କଷ୍ଟ ପାଏ । ଆଉ ଶୋକ ନକରି ଶାନ୍ତ ହୁଅନ୍ତୁ ।"

ଶୋକାକୁଳ ଧୃତରାଷ୍ଟ୍ରଙ୍କୁ ସାନ୍ତ୍ୱନା ଦେବାପାଇଁ ବିଦୂର କହିଲେ, "ମହାରାଜ, ଆପଣ ପଣ୍ଡିତ ଓ ଜ୍ଞାନୀ । ଜ୍ଞାନୀ ଲୋକମାନେ ମୃତବ୍ୟକ୍ତି ପାଇଁ ଶୋକ କରିବା ଅନୁଚିତ । ଯାହାର ଜନ୍ମଅଛି, ତା'ର ମୃତ୍ୟୁ ନିଶ୍ଚୟ ହେବ । କେହି ଏହି ନିରାଟ ସତ୍ୟକୁ ଅସ୍ୱୀକାର କରି ପାରିବେ ନାହିଁ । ମହାବୀର, ମହାରାଜା, ଜ୍ଞାନୀ, ପଣ୍ଡିତ, ମୂର୍ଖ, ଚୋର, ଆଦି ସମସ୍ତେ ମୃତ୍ୟୁର ଅଧୀନ । ଶାସ୍ତ୍ର କହେ, ମନୁଷ୍ୟର ଦେହ ଗୋଟିଏ ଲୁଗା ପରି । ଲୁଗାଟିଏ ଚିରିଗଲେ ଯେପରି ନୂଆ ଲୁଗାଟିଏ ଲୋଡ଼ା ହୋଇଥାଏ, ଠିକ୍ ସେହିପରି ଦେହଟା ପୁରୁଣା ହୋଇଗଲେ ଆତ୍ମା ସେ ଦେହ ଛାଡ଼ି ଅନ୍ୟ ନୂତନ ଦେହକୁ ଚାଲିଯାଏ । ତେଣୁ ଆତ୍ମାର ମୃତ୍ୟୁ ନାହିଁ ଜାଣି ପଣ୍ଡିତମାନେ ଶୋକ କରନ୍ତି ନାହିଁ । ପୁତ୍ର ଓ ବନ୍ଧୁମାନେ ଯୁଦ୍ଧରେ ପ୍ରାଣତ୍ୟାଗ କରି ମହାସୁଖରେ ସ୍ୱର୍ଗବାସ କରୁଛନ୍ତି । ଆପଣ ଆଉ ଚିନ୍ତା ନକରି ସ୍ଥିର ହୁଅନ୍ତୁ ।"

ଏହି ସମୟରେ ବ୍ୟାସଦେବ ଉପସ୍ଥିତ ହୋଇ କହିଲେ, "ପୁତ୍ର, ତୁମକୁ ଅଜଣା କିଛି ନାହିଁ । ଜନ୍ମହେଲେ ନିଶ୍ଚୟ ମୃତ୍ୟୁ, ଏକଥା କାହାକୁ ବୁଝାଇବା ଦରକାର ନାହିଁ । ଏ ଯେଉଁ ଯୁଦ୍ଧ ଘଟିଗଲା, ଏହାକୁ କେହି ଅଟକାଇ ପାରିନଥାନ୍ତେ । ପୃଥିବୀର ଭାର ଉଶ୍ୱାସ କରିବା ପାଇଁ ଏ ଯୁଦ୍ଧ ଭଗବାନଙ୍କ ଇଚ୍ଛାରେ ହିଁ ହୋଇଥିଲା । ଦୁର୍ଯ୍ୟୋଧନ ନିମିତ୍ତ ମାତ୍ର । ସେ କେବଳ ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ କରିଛନ୍ତି । ଏଥିରେ ପାଣ୍ଡବମାନଙ୍କୁ ମଧ ଦାୟୀ କରାଯାଇ ନପାରେ । ଯୁଧିଷ୍ଠିର ତୁମରି ପୁଅ । ପାଣ୍ଡବମାନଙ୍କୁ ଭଲ ପାଅ । ସେମାନଙ୍କୁ ସ୍ନେହ, ଶ୍ରଦ୍ଧା ଦେଖାଇଲେ ତୁମର ଦୁଃଖ ଦୂରହେବ ।"

## ଧୃତରାଷ୍ଟ୍ରଙ୍କୁ ପାଣ୍ଡବମାନେ ଭେଟିଲେ

ସଂଜୟ, ବିଦୂର ଓ ବ୍ୟାସଦେବଙ୍କ କଥାରେ ଧୃତରାଷ୍ଟ୍ର ଆଶ୍ୱସ୍ତ ହେଲେ । କିଛି ପରିମାଣରେ ତାଙ୍କ ମନରେ ପରିବର୍ତ୍ତନ ଦେଖାଗଲା । ସେ ନିଜର ରାଣୀ ଗାନ୍ଧାରୀ ଓ ବିଧବା ବୋହୂମାନଙ୍କୁ ନେଇ କୁରୁକ୍ଷେତ୍ର ଆଡ଼କୁ ଗଲେ ।

ଧୃତରାଷ୍ଟ୍ର ନିଜର ବିଧବା ବୋହୂମାନଙ୍କ ସହିତ କୁରୁକ୍ଷେତ୍ର ଯାଉଥିବା ସମ୍ବାଦପାଇ ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ତାଙ୍କୁ ସାକ୍ଷାତ କରିବା ପାଇଁ ବାହାରିଲେ । ଶ୍ରୀକୃଷ୍ଣ ମଧ ସେମାନଙ୍କ ସହିତ ଯାଇଥିଲେ ।

ସାକ୍ଷାତ ହେଲା । ଯୁଧିଷ୍ଠିର ମହାରାଜାଙ୍କ ପାଦତଳେ ପଡ଼ି ପ୍ରଣାମ କରିବାରୁ ଧୃତରାଷ୍ଟ୍ର ତାଙ୍କୁ କୁଣ୍ଢାଇ ପକାଇଲେ । ମାତ୍ର ଏ ଆଲିଙ୍ଗନରେ ଆଦୌ ସ୍ନେହର ଚିହ୍ନ ନଥିଲା ।

ଧୃତରାଷ୍ଟ୍ର କୃଷ୍ଣ ଉପସ୍ଥିତ ଥିବା ଜାଣି କହିଲେ, "ହେ କୃଷ୍ଣ, ତୁମରି କଥା ସତ ହେଲା । ଧର୍ମର ଜୟ ହେଲା । ମାତ୍ର ଦୁଃଖ ଏତିକି ଯେ ଅତି ବଡ଼ ବଡ଼ ଯୋଦ୍ଧାମାନେ ମଲେ । ଅଗଣିତ ସୈନ୍ୟସାମନ୍ତ ମାଟିରେ ମିଶିଗଲେ । ଭୀମ ଏକାକୀ ମୋର ଶହେ ପୁଅଙ୍କୁ ଗୋଟି ଗୋଟି କରି ମାରିଦେଲା । ଦୁର୍ଯ୍ୟୋଧନପରି ମହାଯୋଦ୍ଧାକୁ ଯେଉଁ ଭୀମ ହତ୍ୟା କରିଛି, ତାକୁ ଆଲିଙ୍ଗନ କରିବା ପାଇଁ ମୋର ପ୍ରବଳ ଇଚ୍ଛା ହେଉଛି । ସେଇ ଭୀମ ମୋର ପୁଅ ସମାନ । ଶୀଘ୍ର ତାକୁ ମୋ ପାଖକୁ ପଠାଅ ।"

ଧୃତରାଷ୍ଟ୍ରଙ୍କ ଏ କପଟ ସ୍ନେହ ପଛରେ ଯେ ପ୍ରତିହିଂସା ନିଆଁ ଦାଉ ଦାଉ ହୋଇ ଜଳୁଛି, ଏକଥା କୃଷ୍ଣଙ୍କୁ ଅଜଣା ନଥିଲା । ଭୀମଙ୍କୁ ପାଖରେ ପାଇଲେ ସେ ନିଶ୍ଚୟ କିଛି ଅନର୍ଥ ଘଟାଇଦେବେ । ସେଥିରୁ ଉଦ୍ଧାର ପାଇବା ପାଇଁ ଶ୍ରୀକୃଷ୍ଣ ଏକ ଉପାୟ ଚିନ୍ତା କଲେ । ପୂର୍ବେ ଦୁର୍ଯ୍ୟୋଧନ ଭୀମର ଏକ ଲୁହା ମୂର୍ତ୍ତି ତିଆରି କରି ସେଇ ମୂର୍ତ୍ତି ସହିତ ଲଢୁଥିଲେ । ଯୁଦ୍ଧ ଆରମ୍ଭ ହେବା ସମୟରେ ଶ୍ରୀକୃଷ୍ଣ ସେ ଲୁହାଭୀମକୁ କୁରୁକ୍ଷେତ୍ରକୁ ନେଇ ଆସିଥିଲେ ।

ଭୀମ ଧୃତରାଷ୍ଟ୍ରଙ୍କ ନିକଟକୁ ଯିବାକୁ ଆଗେଇ ଯାଉଥିବାବେଳେ ଶ୍ରୀକୃଷ୍ଣ ତାଙ୍କୁ ଅଟକାଇଦେଲେ ଓ ଲୁହାର ଭୀମ ମୂର୍ତ୍ତିଟିକୁ ଧୃତରାଷ୍ଟ୍ରଙ୍କ ଆଗରେ ଠିଆ କରିଦେଲେ । ନିଜର ପୁତ୍ରମାନଙ୍କୁ ଅତି ନିର୍ଦ୍ଦୟ ଭାବରେ ହତ୍ୟା କରିଥିବାରୁ ଧୃତରାଷ୍ଟ୍ରଙ୍କ ହୃଦୟ ରାଗରେ ଜଳିଉଠୁଥିଲା । ସେ ଲୁହା ମୂର୍ତ୍ତିଟିକୁ ପ୍ରକୃତ ଭୀମ ବୋଲି ଭାବି ଛାତିରେ ଲଗାଇ ଏପରି ଚିପି ଦେଲେ ଯେ ଅଳ୍ପ ସମୟ ମଧ୍ୟରେ ସେ ଲୁହା ମୂର୍ତ୍ତି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ଧୃତରାଷ୍ଟ୍ର ହାୟ ମୋର ପ୍ରିୟ ପୁତ୍ର ଭୀମ ବୋଲି କହି କାନ୍ଦିବାରେ ଲାଗିଲେ । କୃଷ୍ଣ ହସିଉଠି କହିଲେ, "ମହାରାଜ, ସବୁ ବୃଥା ହୋଇଗଲା । ଆପଣ କେବଳ ଭୀମଙ୍କ ଲୁହା ମୂର୍ତ୍ତିଟିକୁ ଚୂନା କରିଛନ୍ତି । ମାତ୍ର ପ୍ରକୃତ ଭୀମ ଅକ୍ଷତ ଅବସ୍ଥାରେ ଆପଣଙ୍କ ଆଗରେ ଉପସ୍ଥିତ ଅଛନ୍ତି ।"

ଧୃତରାଷ୍ଟ୍ରଙ୍କ କ୍ରୋଧ ଶାନ୍ତ ହୋଇଯାଇଥିଲା । ସେ ଭୀମଙ୍କୁ ଆଶୀର୍ବାଦ ଦେବା ପରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ନେଇ ମାତା ଗାନ୍ଧାରୀଙ୍କ ନିକଟକୁ ଗଲେ ।

ବ୍ୟାସ ଗାନ୍ଧାରୀଙ୍କ ନିକଟରେ ଥିଲେ । ସେ କହିଲେ, "ରାଣୀ, ପାଣ୍ଡବମାନଙ୍କ ଉପରେ କ୍ରୋଧ ପ୍ରକାଶ କରନାହିଁ । ସେମାନେ ତୁମ ନିକଟକୁ ଆସୁଛନ୍ତି । ମନେପକାଅ, ଯେତେବେଳେ ଯୁଦ୍ଧ ଆରମ୍ଭ ହେବା ଉପରେ, ସେତେବେଳେ ତୁମେ ସେମାନଙ୍କୁ କହିଥିଲ, ଧର୍ମର ହିଁ ଜୟ ହେବ । ବର୍ତ୍ତମାନ ତାହା ହିଁ ହୋଇଛି । ସଂଖ୍ୟାରେ ଅଳ୍ପ ଓ ସେନା ବଳରେ ଊଣା ହୋଇ ମଧ୍ୟ ପାଣ୍ଡବମାନେ ଜୟଲାଭ କରିଛନ୍ତି । ତେଣୁ ମନରୁ କ୍ରୋଧ ଦୂର କରି ପାଣ୍ଡବମାନଙ୍କୁ ପୁତ୍ରସ୍ନେହରେ କୋଳେଇନିଅ ।" ଗାନ୍ଧାରୀ କହିଲେ, "ପ୍ରଭୁ, ପାଣ୍ଡବମାନଙ୍କ ବିଜୟରେ ମୁଁ ଈର୍ଷା କରୁନାହିଁ । ମୁଁ ଶତପୁତ୍ର ଜନନୀ ହୋଇ ମଧ୍ୟ ଆଜି ଗୋଟିଏ ହେଲେ ପୁଅକୁ ଜୀବିତ ଥିବାର ଜାଣିଲି ନାହିଁ । ପୁତ୍ର ଶୋକରେ ମୁଁ ଜ୍ଞାନଶୂନ୍ୟ ହୋଇପଡ଼ିଛି । ଶକୁନି, କର୍ଣ୍ଣ ଓ ଦୁଃଶାସନର ମନ୍ଦବୁଦ୍ଧି ଓ କୁ-ପରାମର୍ଶ ଦୁର୍ଯ୍ୟୋଧନକୁ ଅନ୍ଧ କରିଦେଲା । ତାହାରି ଫଳ ସ୍ୱରୂପ ଆଜି ବିରାଟ କୁରୁବଂଶ ଧ୍ୱଂସ ପାଇଗଲା । ମୋ ପୁଅମାନଙ୍କର ଯାହା ହେବାର ଥିଲା, ହୋଇଯାଇଛି । ସେ ବିଷୟରେ କିଛି କହିବାର ନାହିଁ ।"

ଏହାପରେ ଗାନ୍ଧାରୀ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ କହିଲେ, "ହେ କୃଷ୍ଣ, ତୁମର ଆଖି ଆଗରେ ଦୁର୍ଯ୍ୟୋଧନ ଭୀମ ସହିତ ଲଢୁଥିଲା । ଏ କଥା ସମ୍ପୂର୍ଣ୍ଣ ସତ୍ୟ ଯେ, ଗଦା ଯୁଦ୍ଧରେ ଭୀମ କଦାପି ଦୁର୍ଯ୍ୟୋଧନକୁ ପରାସ୍ତ କରି ପାରିନଥାନ୍ତା । ଦୁଇ ଜଣଙ୍କ ମଧ୍ୟରେ ଯୁଦ୍ଧ ହେଲେ କେହି କାହାରି ନାଭି ତଳ ଆଡ଼କୁ ଆକ୍ରମଣ କରିବା ଯୁଦ୍ଧ ନିୟମରେ ନାହିଁ । ମାତ୍ର ହାୟ, ଭୀମ ଦୁର୍ଯ୍ୟୋଧନର ଜଙ୍ଘରେ ଗଦା ପ୍ରହାର କରି ତାକୁ ତଳେ ପକାଇଦେଲା । ହେ କୃଷ୍ଣ, ତୁମ ଉପସ୍ଥିତିରେ ଭୀମ ଯେଉଁ ଘୋର ଅନ୍ୟାୟ କରି ମୋ ପୁଅକୁ ହତ୍ୟା କଲା, ସେ କଥା ମନେପଡ଼ି ମୋର ମାତୃ ହୃଦୟ ଫାଟିଯାଉଛି । ମୋର କ୍ରୋଧ ଶତ ଗୁଣ ବଢ଼ିଯାଉଛି ।"

ଭୀମ ସବୁ ଶୁଣି କହିଲେ, "ମା' ଆପଣଙ୍କ କଥା ସତ୍ୟ । ମୁଁ ମୋ ପ୍ରାଣ ରକ୍ଷା ପାଇଁ ସେପରି କରିବାକୁ ବାଧ୍ୟ ହୋଇଛି । ଆପଣଙ୍କ ପୁଅକୁ ଦ୍ୱନ୍ଦ ଯୁଦ୍ଧରେ ପରାସ୍ତ କରିବା ଆଦୌ ସମ୍ଭବ ନଥିଲା, ଏକଥା ମଧ୍ୟ ସତ୍ୟ । ମୁଁ ଜାଣି ଶୁଣି ମରିବା ଅପେକ୍ଷା ମୋ ପ୍ରତିଜ୍ଞା ପୂରଣପାଇଁ ଅତ୍ୟନ୍ତ ବ୍ୟଗ୍ର ହୋଇ ଯେଉଁ ଭୁଲ୍ କରିଛି, ସେଥିପାଇଁ ମୋତେ କ୍ଷମା ଦିଅନ୍ତୁ । ମନେ ପକାନ୍ତୁ, ଦୁର୍ଯ୍ୟୋଧନ କପଟ କରି ପଶା ଖେଳରେ ଯୁଧିଷ୍ଠିରଙ୍କୁ ପରାସ୍ତ କରିଦେଲା । ତା ପୂର୍ବରୁ ମୋତେ ବିଷ ଲଡ଼ୁ ଦେଇ ମାରିବାକୁ ଉଦ୍ୟମ ମଧ୍ୟ

କରିଥିଲା । ଆମ ସମସ୍ତଙ୍କୁ ଜଉ ଘରେ ପୂରାଇ ନିଆଁ ଲଗାଇଦେଲା । ଘୋର ଲଜ୍ଜା ଓ ଅପମାନର କଥା ଏହି ଯେ, ଆପଣଙ୍କ ପୁତ୍ରବଧୂ ଦ୍ରୌପଦୀଙ୍କୁ ନାନା ଅସଭ୍ୟ କଥା କହି ସଭାରେ ଉଲଗ୍ନ କରାଇବା ପରି ହୀନ କାର୍ଯ୍ୟ କରିବାକୁ ଟିକିଏ ହେଲେ ପଛାଇଲା ନାହିଁ । ସେହି କୁରୁସଭାରେ ମୁଁ ଦୁର୍ଯ୍ୟୋଧନଙ୍କୁ ହତ୍ୟା କରିଦେଇଥିଲେ, ଆପଣ ମୋତେ ନିନ୍ଦା କରିନଥାନ୍ତେ । କେବଳ ଧର୍ମରାଜଙ୍କ ଆଦେଶ ପାଳନ କରିବା ପାଇଁ ମୁଁ ଓ ମୋ ଭାଇମାନେ ଅତି କଷ୍ଟରେ ନିଜ ନିଜକୁ ସମ୍ଭାଳି ନେଇଥିଲୁ । ବେଳ ଆସିଲେ ଦୁଃଶାସନ ରକ୍ତପାନ କରିବି ଓ ଦୁର୍ଯ୍ୟୋଧନ ଯେଉଁ ଜଙ୍ଘ ଉପରେ ଦ୍ରୌପଦୀଙ୍କୁ ବସାଇବା ପାଇଁ ହସି ହସି ଡାକୁଥିଲା, ସେହି ଜଙ୍ଘକୁ ନିଶ୍ଚୟ ଭାଙ୍ଗିଦେବି ବୋଲି ସଭାରେ ପ୍ରତିଜ୍ଞା କରିଥିଲି । ମୁଁ ସେ ପ୍ରତିଜ୍ଞା ପୂରଣ କରି ପାରିଥିବାରୁ ସନ୍ତୋଷ ଲାଭ କରିଛି ।”

ଗାନ୍ଧାରୀ କହିଲେ, “ବାବୁ, ମୁଁ ଶହେଟି ପୁଅର ମାଆ ଥିଲି । ସେଥିପାଇଁ ମୋ ମନରେ କେତେ ଗର୍ବ, କେତେ ଆନନ୍ଦ ନଥିଲା ! ଯଦି ତୁ ସେମାନଙ୍କ ମଧ୍ୟରୁ ଗୋଟିଏ ପୁଅକୁ ମୋ କୋଳରେ ଛାଡ଼ିଦେଇଥାନ୍ତୁ, ତେବେ ଏ ବୃଦ୍ଧା ବୟସରେ ମୁଁ ଓ ମୋ ସ୍ୱାମୀ କିଛିହେଲେ ଶାନ୍ତି ପାଇଥାନ୍ତୁ । ତାହା ମଧ୍ୟ ଆମର ମନ୍ଦ ଭାଗ୍ୟରେ ଘଟିପାରିଲା ନାହିଁ । ଶତପୁତ୍ରର ଜନନୀ ଆଜି ପୁତ୍ରଶୂନ୍ୟ ହୋଇ ବିଳାପ କରିବା ସାର ହୋଇଛି । ସର୍ବତ୍ର ପ୍ରଭୁଙ୍କ ଇଚ୍ଛା ହିଁ ପୂର୍ଣ୍ଣ ହୁଏ । ମନୁଷ୍ୟର ନିଜର ଇଚ୍ଛା ବୋଲି କିଛି ନାହିଁ । ଯୁଧିଷ୍ଠିର କାହିଁ ? ତାକୁ ମୋ ପାଖକୁ ଡାକ ।”

ଯୁଧିଷ୍ଠିର ଗାନ୍ଧାରୀଙ୍କ ଆଗରେ ଠିଆ ହୋଇ କହିଲେ, “ମା’, ଯେଉଁ ନିଷ୍ଠୁର ଯୁଧିଷ୍ଠିର ଆପଣଙ୍କ ପୁତ୍ରମାନଙ୍କର ମୃତ୍ୟୁର କାରଣ, ସେହି ଯୁଧିଷ୍ଠିର ଆପଣଙ୍କ ଆଗରେ ଠିଆ ହୋଇଛି । ଅଭିଶାପ ଦେଇ ତା’କୁ ଭସ୍ମ କରିଦିଅନ୍ତୁ । ଆପଣଙ୍କ ପୁତ୍ର-ଶୋକ ଦୂର ହେଉ । ମା, ମୁଁ ମହାପାପୀ । ମୁଁ ରାଜ୍ୟ, ଧନ, ସମ୍ପଦ ଏପରିକି ତୁଚ୍ଛ ଜୀବନକୁ ମଧ୍ୟ ଲୋଭ କରୁନାହିଁ ।” ଏହିପରି କହି ସେ ଗାନ୍ଧାରୀଙ୍କ ପାଦତଳରେ ପଡ଼ିଗଲେ । ।

ଗାନ୍ଧାରୀଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ସେ କିଛି ସମୟ ନୀରବ ରହି ମୁହଁ ବୁଲାଇଦେଲେ । ସେ ଉତ୍ତମ ରୂପେ ଜାଣିଥିଲେ ଯଦି ଆଖି ଉପରେ ବନ୍ଧାଥିବା କନା ପଟି ମଧ୍ୟ ଦେଇ ତାଙ୍କ ଦୃଷ୍ଟି ଯୁଧିଷ୍ଠିରଙ୍କ ଉପରେ ପଡ଼ିଯିବ, ତେବେ ଯୁଧିଷ୍ଠିର ପୋଡ଼ି ପାଉଁଶ ହୋଇଯିବ । ତେଣୁ ସେ ତାଙ୍କ ଦୃଷ୍ଟି ଅନ୍ୟ ଆଡ଼େ ଫେରାଇ ନେଇଥିଲେ । ମାତ୍ର ଦୃଷ୍ଟି ଫେରାଇ ନେଉଥିବା ବେଳେ ଆଖି ପଟିର ଫାଙ୍କ ଦେଇ ତାଙ୍କ ନଜର ଯୁଧିଷ୍ଠିରଙ୍କ ପାଦ ଆଙ୍ଗୁଠି ଉପରେ ପଡ଼ିଯାଇଥିଲା । ସଙ୍ଗେ ସଙ୍ଗେ ଯୁଧିଷ୍ଠିରଙ୍କ ସେ ଆଙ୍ଗୁଠିଟି ପୋଡ଼ି କଳା ପଡ଼ିଗଲା ।

ଅର୍ଜୁନ ଗାନ୍ଧାରୀଙ୍କ ଚକ୍ଷୁର ଅଦ୍ଭୁତ ଶକ୍ତି ବିଷୟ ଜାଣି ଶ୍ରୀକୃଷ୍ଣଙ୍କ ପଛପଟେ ଲୁଚି ଯାଇଥିଲେ । ଗାନ୍ଧାରୀ ପାଣ୍ଡବମାନଙ୍କୁ କୁନ୍ତୀଙ୍କ ନିକଟକୁ ପଠାଇ ଦେଇ ଦ୍ରୌପଦୀଙ୍କୁ କହିଲେ, “ମା’, ଦୁଃଖ କରନାହିଁ । ତୁ ମଧ୍ୟ ମୋରି ଦଶା ଭୋଗ କରୁଛୁ । ଆମ ଦୁଇ ଅଭାଗିନୀଙ୍କୁ କିଏ ସାନ୍ତ୍ୱନା ଦେବ ? କେବଳ ମୋ ଦୋଷରୁ ଆମ ବଂଶର ଏ ଦୁର୍ଦ୍ଦଶା ହେଲା ।”

## ପାଣ୍ଡବମାନଙ୍କର ମା’ କୁନ୍ତୀଙ୍କ ସହିତ ସାକ୍ଷାତ

ପାଣ୍ଡବମାନେ ଦୀର୍ଘ ତେରବର୍ଷ କାଳ ବଣରେ କଟାଇ ଅସହ୍ୟ ଯନ୍ତ୍ରଣା ଭୋଗ କରିଥିଲେ । ସେହି ସମୟତକ ମା କୁନ୍ତୀ ଦେବୀ ବିଦୁରଙ୍କ ଗୃହରେ ବାସ କରୁଥିଲେ । ବଣରୁ ଫେରିବା ପରେ ପରେ ପାଣ୍ଡବମାନେ ଯୁଦ୍ଧରେ ଲାଗିଗଲେ । କୁନ୍ତୀଙ୍କୁ ସାକ୍ଷାତ କରିବାକୁ ସେମାନଙ୍କ ସୁଯୋଗ ନଥିଲା । ଯୁଦ୍ଧ ସରିବାପରେ ପାଣ୍ଡବମାନେ କୁନ୍ତୀଙ୍କୁ ସାକ୍ଷାତ କରିବାକୁ ଗଲେ । ବିଦୁରଙ୍କ ଗୃହରେ ଥାଇ କୁନ୍ତୀ ସବୁକଥା ଶୁଣୁଥାନ୍ତି । ଦୁର୍ଯ୍ୟୋଧନ କୃଷ୍ଣଙ୍କୁ ଖାଲି ହାତରେ ଫେରାଇଦେବା ପରେ ଯୁଦ୍ଧ ନିଶ୍ଚୟ ଲାଗିବ, ଏଥିରେ କୁନ୍ତୀଙ୍କର ଆଦୌ ସନ୍ଦେହ ନଥିଲା । ମାତ୍ର ଯୁଦ୍ଧରେ କଅଣ ଘଟିବ, ଏ ବିଷୟରେ ଖୁବ୍ ଚିନ୍ତିତ ଥିଲେ ।

ମହାଭାରତ ଯୁଦ୍ଧ ଶେଷ ହେଲା । ପୁଅମାନେ ତାଙ୍କର ଜୟଲାଭ କରିଛନ୍ତି ଶୁଣି ସେ ଆନନ୍ଦିତ ହେବା କଥା । ଯୁଧିଷ୍ଠିର ରାଜା ହେବେ, ସେ ରାଜମାତା ହେବେ । ଏହା କମ୍ ଗୌରବର କଥା ନୁହେଁ । ତଥାପି କୁନ୍ତୀଙ୍କ ମନରେ ସୁଖ ନଥାଏ । କର୍ଣ୍ଣ କୁନ୍ତୀଙ୍କର ପ୍ରଥମ ସନ୍ତାନ । ଏକଥା ସେ ତାଙ୍କ ପୁଅମାନଙ୍କୁ ଜଣାଇ ନଥିଲେ । ଲଜ୍ଜା ଓ ଲୋକନିନ୍ଦା ତାଙ୍କ ମୁହଁ ବନ୍ଦ କରିଦେଇଥିଲା । ତଥାପି ସେ ଓ ଶ୍ରୀକୃଷ୍ଣ କର୍ଣ୍ଣଙ୍କୁ ମୃତ୍ୟୁ ମୁଖରୁ ରକ୍ଷା ପାଇବା ପାଇଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରିଛନ୍ତି । ମାତ୍ର ଫଳ କିଛି ହେଲା ନାହିଁ । କର୍ଣ୍ଣ କୌଣସି କଥା ଶୁଣିଲେ ନାହିଁ । ଭାଇମାନଙ୍କ ବିରୁଦ୍ଧରେ ଲଢ଼ି ଜୀବନ ଦେଲେ । ନିଜର ପ୍ରଥମ ସନ୍ତାନ, ପୃଥିବୀର ସର୍ବଶ୍ରେଷ୍ଠ ବୀର କର୍ଣ୍ଣଙ୍କୁ ହରାଇଥିବାରୁ ସେ ମନେ ମନେ ଖୁବ୍ ଦୁଃଖ କରୁଥାନ୍ତି ।

ପାଣ୍ଡବମାନଙ୍କ ସହିତ ଦ୍ରୌପଦୀଙ୍କୁ ଦେଖି କୁନ୍ତୀ କାନ୍ଦି ଉଠିଲେ । ପୁତ୍ରମାନଙ୍କୁ ଆଲିଙ୍ଗନ କରୁଥିବାବେଳେ ସେମାନଙ୍କ ଦେହରେ ଥିବା ଅସଂଖ୍ୟ ଘା' ଚିହ୍ନକୁ ଦେଖି ସେ ଅତ୍ୟନ୍ତ ଅଧୀର ହୋଇ କାନ୍ଦି ଉଠିଲେ । ଦ୍ରୌପଦୀଙ୍କୁ କୋଳରେ ଧରି ଗଦ୍‌ଗଦ୍ କଣ୍ଠରେ କହିଲେ, "କଲ୍ୟାଣୀ, ତୋତେ କଅଣ କହି ବୋଧ ଦେବି ? ସଂସାରର କୌଣସି ବସ୍ତୁ ଏ କ୍ଷତି ପୂରଣ କରିପାରିବ ନାହିଁ । ପାଞ୍ଚ ବୀର ପୁତ୍ରଙ୍କୁ ଜନ୍ମ ଦେଇ ତୁ ଆଜି ପୁତ୍ରହୀନା । ତୋତେ 'ମାଆ' ବୋଲି ଡାକିବାକୁ ଜଣେ ହେଲେ ଜୀବିତ ରହିଲେ ନାହିଁ । ସମଗ୍ର ସଂସାର ଆଜି ତୋତେ ଶୂନ୍ୟ ଦେଖାଯାଉଛି । ମାତୃ ହୃଦୟର ଦାରୁଣ ବ୍ୟଥାକୁ କେହି ଦୂର କରିପାରିବ ନାହିଁ । ଜୀବନରେ ତୁ ଯେଉଁ ଦୁଃଖ, କଷ୍ଟ ଓ ଅପମାନ ସହ୍ୟ କରିଲୁ, ତା'ର ତୁଳନା ନାହିଁ । ତୋ ପରି ବୋହୂଟିଏ ପାଇ ମୁଁ ନିଜକୁ ଧନ୍ୟ ମନେକରୁଛି । ଯାହା ଘଟି ଯାଇଛି, ସେଥିପାଇଁ ଦୁଃଖ କଲେ ଦିନକୁ ଦିନ ଦୁଃଖ ବଢ଼ିବ ସିନା, ଲାଭ କିଛି ହେବ ନାହିଁ । ମୋ କଥା ମାନି ମନରୁ ଦୁଃଖ ଦୂର କରିବାକୁ ଚେଷ୍ଟା କର ମା । ନିଜ ଜୀବନ ବଦଳରେ ମଧ୍ୟ ତୋ ହଜିଲା ଧନ ଫେରିପାଇବୁ ନାହିଁ । ଏଣୁ ଦୁଃଖ ଭୁଲିବାକୁ ଚେଷ୍ଟା କରିବା ହିଁ ଉଚିତ ।"

ଏହାପରେ କୁନ୍ତୀ ପୁତ୍ରମାନଙ୍କ ସହିତ ଅନେକ ସମୟ ଯାଏ କଥାବାର୍ତ୍ତା କରିବାରେ ଲାଗିଲେ ।

## ଗାନ୍ଧାରୀଙ୍କ ଶ୍ରୀକୃଷ୍ଣଙ୍କୁ ଅଭିଶାପ

ହସ୍ତିନା ରାଜପୁରୀରେ ବିଧବା ବୋହୂମାନଙ୍କର ବିକଳ କ୍ରନ୍ଦନରେ ଗାନ୍ଧାରୀଙ୍କ ଛାତି ଫାଟିଗଲା ପରି ଲାଗୁଥାଏ । ଯେତେ ଚେଷ୍ଟା କଲେ ମଧ୍ୟ ସେ ନିଜକୁ ସମ୍ଭାଳି ପାରୁନଥାନ୍ତି । ପାଖରେ କୃଷ୍ଣ ଥିବାର ଜାଣି ସେ ଅତି ବ୍ୟାକୁଳ କଣ୍ଠରେ କହିଲେ, "ବାସୁଦେବ, ତୁମେ ପଣ୍ଡିତ, ଜ୍ଞାନୀ, ବୁଦ୍ଧିମାନ୍ ଓ ଅସାଧାରଣ ବ୍ୟକ୍ତି । ତୁମ ତେଜ ଓ ପରାକ୍ରମର ତୁଳନା ନାହିଁ । କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଶତ୍ରୁତା ଥିବା କଥା ତୁମକୁ ଅଜଣା ନଥିଲା । ସେଇ ଶତ୍ରୁତା ବଢ଼ି ବଢ଼ି ମହା ଯୁଦ୍ଧରେ ଶେଷହେଲା । କହ କୃଷ୍ଣ, ଏ ବୃଦ୍ଧ ବୟସରେ ଆମେ କାହା ମୁହଁକୁ ଚାହିଁ ଦିନ କାଟିବୁ ? ମୁଁ ଶହେ ପୁଅର ମାଆ । ଏ ସଂସାରରେ ଏପରି ଗୌରବ କେତେଜଣ ମାଆଙ୍କ ଭାଗ୍ୟରେ ଘଟିଛି ? ମାତ୍ର ଆଜି କଅଣ ହୋଇଗଲା ? ଗୋଟି ଗୋଟି ହୋଇ ଶହେ ପୁଅ ମୋର ଯୁଦ୍ଧରେ ମରିଗଲେ । ମାଆ ହୋଇ ମୁଁ ଏ ଦାରୁଣ ଦୁଃଖ କିପରି ସହିବି ଭାବି ପାରୁନାହିଁ । ମୋ ଛାତି ଫାଟି ଯାଉନାହିଁ କି ମୋ ପିଣ୍ଡରୁ ପ୍ରାଣ ମଧ୍ୟ ଛାଡ଼ି ଯାଉନାହିଁ । କେଉଁ ସୁଖ ଆଶାରେ ଏ ନିର୍ଲ୍ଲଜ ଜୀବନ ଅଛି, ବୁଝି ପାରୁନାହିଁ । ବାସୁଦେବ, ରାଜ୍ୟ, ଧନ ବା କ୍ଷମତାରେ ଶାନ୍ତି ନଥାଏ । ଶାନ୍ତି ଆମଠାରୁ ଚିରଦିନ ପାଇଁ ବିଦାୟ ନେଇଯାଇଛି । ସେ ସବୁର ଏକମାତ୍ର କାରଣ ତୁମେ ଶ୍ରୀକୃଷ୍ଣ । ତୁମେ ଚେଷ୍ଟା କରିଥିଲେ କୌରବ ଓ ପାଣ୍ଡବଙ୍କ ମଧ୍ୟରେ ଗୋଟାଏ ବୁଝାମଣା ହୋଇପାରିଥାନ୍ତା । କହିପାର ତୁମେ ଚେଷ୍ଟା କରିଛ, ମାତ୍ର ସେ ଚେଷ୍ଟାରେ ସେତେ ଆନ୍ତରିକତା ନଥିଲା ପରି ମୁଁ ଅନୁଭବ କରିଛି । ଯୁଦ୍ଧ ହେଉ, ଏହା ହିଁ ତୁମର ଇଚ୍ଛା ଥିଲା । ତେଣୁ ତା' ପୂର୍ବରୁ ତୁମେ ଯେତେ ଯାହା କରିଛ ସେ ସବୁ ଲୋକ ଦେଖାଣିଆ ଥିଲା ।

ମୁଁ ତୁମ ସହିତ ଯୁକ୍ତି କରିବି ନାହିଁ । କାରଣ ତୁମେ ଅନେକ କଥା କହି ନିଜ ଉପରୁ ଦୋଷ ଛଡ଼ାଇ ଦେବ । ନା, ସେ ସବୁର ଆବଶ୍ୟକତା ମଧ୍ୟ ନାହିଁ । ପୁଣି ଥରେ କହି ରଖୁଛି, କେବଳ ତୁମରି ଲାଗି ମୁଁ ଶହେ ପୁଅ, ବନ୍ଧୁ ଓ ଆତ୍ମୀୟଶୂନ୍ୟ ହୋଇ ଦୁଃଖ ସାଗରରେ ଭାସୁଛି । ଶୁଣ କୃଷ୍ଣ, ମୁଁ ଜୀବନରେ କିଛି ପାପ କରିନାହିଁ । ମୋର ସମସ୍ତ ପୁଣ୍ୟ ବଦଳରେ ମୁଁ ତୁମକୁ ଅଭିଶାପ ଦେଉଛି, ଆଜି ଏ କୁରୁବଂଶ ଯେପରି ଶୂନ୍ୟ ହୋଇଗଲା, ଠିକ୍ ସେହିପରି ତୁମ ଯଦୁବଂଶ ଅଳ୍ପ କାଳ ମଧ୍ୟରେ ଧ୍ୱଂସ ପାଇବ । ଯାଦବମାନେ ନିଜ  ନିଜ ଭିତରେ କଳହ କରି ଶେଷ ପାଇଯିବେ । କୁରୁକୁଳର ବିଧବା ନାରୀମାନଙ୍କ ଆକୁଳ କ୍ରନ୍ଦନ ଶୁଣୁଛ । ସେହିପରି ବିଧବା ଯାଦବ ରମଣୀମାନଙ୍କ ଆକୁଳ କ୍ରନ୍ଦନରେ ଆକାଶ ଫାଟି ପଡ଼ିଲାପରି ଲାଗିବ । ତୁମେ ତୁମ ବଂଶର ଏ ଦାରୁଣ ଦୃଶ୍ୟ ନିଜ ଆଖିରେ ଦେଖିବ ।"

ଗାନ୍ଧାରୀଙ୍କ କଥାରେ କୃଷ୍ଣ ଅଳ୍ପ ହସି କହିଲେ "ମା', ଶାନ୍ତ ହୁଅନ୍ତୁ । କ୍ରୋଧରେ ଆପଣଙ୍କ ଦେହର ସର୍ବାଙ୍ଗ ଥରୁଛି । ଆପଣଙ୍କ ଦୁଃଖ ମୁଁ ଅନୁଭବ କରିପାରୁଛି । ଏବେ ଆଉ କିଛି କରିବାର ଉପାୟ ନାହିଁ । ଯାହା ଘଟିବାର ଘଟିଗଲାଣି । ଆପଣଙ୍କୁ ସାନ୍ତ୍ୱନା ଦେବା ପାଇଁ ମୋ ତୁଣ୍ଡରେ  ଭାଷା ନାହିଁ । ମା', ମୁଁ ଇଚ୍ଛା କଲେ ହିଁ ଯଦୁବଂଶ ଧ୍ୱଂସ ହେବ । ଅନ୍ୟଥା ଦେବତାମାନେ ମଧ ଯଦୁବଂଶର କୌଣସି ଅନିଷ୍ଟ କରିବାକୁ ସମର୍ଥ ନୁହନ୍ତି । ମୁଁ ଆପଣଙ୍କ ଅଭିଶାପର ବହୁ ପୂର୍ବରୁ ଯଦୁବଂଶର ଧ୍ୱଂସ ବିଷୟରେ ସ୍ଥିର କରିସାରିଛି । ଆଜିଠାରୁ ଛତିଶ ବର୍ଷ ପରେ ଯଦୁ ବଂଶର ଲୋକମାନେ ନିଜ ନିଜ ଭିତରେ କଳହକରି ମୃତ୍ୟୁବରଣ କରିବେ । ତେଣୁ ଆପଣ ଆଜି ଯେଉଁ ଅଭିଶାପ ଦେଲେ, ତହିଁରେ ମୋ ମନର ଭାବନା ହିଁ ପ୍ରକାଶ ପାଉଛି । ଆପଣଙ୍କ ଅଭିଶାପ ନିଶ୍ଚୟ ଫଳିବ  । ମୁଁ ତାହା ମୁଣ୍ଡପାତି ଗ୍ରହଣ କରୁଛି ।"

## ପାଣ୍ଡବମାନଙ୍କ ସହିତ ନାରଦ

ପାଣ୍ଡବମାନେ ଯୁଦ୍ଧରେ ମରିଥିବା ବୀରମାନଙ୍କ ପାଇଁ ଗଙ୍ଗାନଦୀରେ ତିଳତର୍ପଣ କରିଥିଲେ ଓ ଗଙ୍ଗାକୂଳରେ ଏକମାସ ପର୍ଯ୍ୟନ୍ତ ରହିଥିଲେ  । ଦିନେ ମହର୍ଷି ନାରଦ ସେମାନଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "-ବତ୍ସ, କୃଷ୍ଣଙ୍କ କୃପା, ଅର୍ଜୁନଙ୍କ ବୀରତ୍ୱ ଓ ତୁମର ଅସୀମ ଧର୍ମବଳ ଯୋଗୁଁ ତୁମେ ଜୟଲାଭ କରିଛ । ଆଜି ତୁମେ ହସ୍ତିନାର ରାଜା । ଆନନ୍ଦରେ ଅଛ ତ ?"

ଯୁଧିଷ୍ଠିର କହିଲେ, "ମହାମୁନି, ମୁଁ ରାଜ୍ୟ ଲାଭ କରି ରାଜା ହୋଇଛି । ଏକଥା ସତ, ମାତ୍ର ମୋର ଭାଇ, ବନ୍ଧୁ, କୁଟୁମ୍ବ, ଦ୍ରୌପଦୀଙ୍କ ପାଞ୍ଚପୁତ୍ର ସହିତ ବୀର ଅଭିମନ୍ୟୁକୁ ହରାଇବା ଫଳରେ ଏ ବିଜୟ ମୋ ପକ୍ଷରେ ଏକ ଦାରୁଣ ପରାଜୟ ହୋଇପଡ଼ିଛି । । ଆମ୍ଭେମାନେ ଆମର ଭାଇମାନଙ୍କୁ ଅତି ନିର୍ଦ୍ଦୟ ଭାବରେ ହତ୍ୟା କରିଛୁ । ବିଶେଷ କରି ମାତା କୁନ୍ତୀଙ୍କଠାରୁ ମହାବୀର କର୍ଣ୍ଣଙ୍କ ଜନ୍ମ, ଏକଥା ଜାଣିବା ପରେ ମୁଁ ନିଜକୁ ଶତାଧିକ୍କାର କରୁଛି । ମହାମତି କର୍ଣ୍ଣ ମୋର ବଡ଼ ଭାଇ, ଏକଥା ଆଗରୁ ଜାଣିଥିଲେ ମହାଭାରତ ଯୁଦ୍ଧର ଗତି ବଦଳିଯାଇଥାନ୍ତା । କର୍ଣ୍ଣ ଅର୍ଜୁନଙ୍କ ବ୍ୟତୀତ ଅନ୍ୟ କୌଣସି ପାଣ୍ଡବଙ୍କୁ ହତ୍ୟାକରିବ ନାହିଁ ବୋଲି ସେ ମାତା କୁନ୍ତୀଙ୍କ ନିକଟରେ ଶପଥ କରିଥିଲେ । ସେ ତାହା ପାଳନ କରିଛନ୍ତି । ଅର୍ଜୁନ ବା କର୍ଣ୍ଣ ଯେ କେହି ମଲେ ତୁମେ ପାଞ୍ଚପୁତ୍ରର ଜନନୀ ହୋଇ ରହିବ ବୋଲି ମଧ୍ୟ ସେ ମାତାଙ୍କୁ ଜଣାଇ ଦେଇଥିଲେ । ଏପରି ଜଣେ ଉଦାର ନୀତିବାନ୍ ମହାନ୍ ବ୍ୟକ୍ତିଙ୍କୁ ହତ୍ୟାକରି ମୁଁ ଘୋର ପାପ କରିଛି ।"

ନାରଦ ଯୁଧିଷ୍ଠିରଙ୍କ ଦୁଃଖ ଦେଖି ତାଙ୍କ ମନ ବଦଳାଇବା ପାଇଁ କର୍ଣ୍ଣଙ୍କ ବିଷୟରେ ଅଧିକ କିଛି ଜଣାଇବାକୁ ଚେଷ୍ଟା କଲେ । ।

# କର୍ଣ୍ଣଙ୍କୁ ଅଭିଶାପ

ନାରଦ କହିଲେ, "ଯୁଧିଷ୍ଠିର, ସବୁକଥା ଜାଣିବା ପରେ ତୁମ ମନ ବଦଳିଯିବ । ଅଧିରଥଙ୍କ ଘରେ ପୁଅ ରୂପେ କର୍ଣ୍ଣ କ୍ରମେ ବଡ଼ ହେଲେ । ବିଦ୍ୟାଶିକ୍ଷା ଆଦି ଶେଷ କରି ଯେତେବେଳେ ଜାଣିଲେ, ଅର୍ଜୁନ ତାଙ୍କଠାରୁ ଧନୁର୍ବିଦ୍ୟାରେ ଅଧିକ ପାରିବାର, ସେତେବେଳେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିକରେ ବ୍ରହ୍ମାସ୍ତ୍ର ଶିକ୍ଷା କରିବା ପାଇଁ ବିନୀତ ପ୍ରାର୍ଥନା କଲେ । ଦ୍ରୋଣ କହିଲେ, "ବ୍ରହ୍ମାସ୍ତ୍ର ଶିକ୍ଷା ସମସ୍ତଙ୍କୁ ଦିଆଯାଇପାରେ ନାହିଁ । ଏଥିପାଇଁ କଠୋର ନିୟମମାନ ଅଛି । ଅଧିକନ୍ତୁ ବ୍ରାହ୍ମଣ କିମ୍ବା ସାଧୁ ସ୍ୱଭାବର କ୍ଷତ୍ରିୟମାନେ ହିଁ ଏହି ବିଦ୍ୟା ଶିକ୍ଷଣ ପାଇଁ ଉପଯୁକ୍ତ ବୋଲି ବିଚାର କରାଯାଇଥାଏ । ତୁମେ ବ୍ରାହ୍ମଣ ବା କ୍ଷତ୍ରିୟ ବଂଶରେ ଜନ୍ମ ହୋଇନାହଁ । ତେଣୁ ବ୍ରହ୍ମାସ୍ତ୍ର ଶିକ୍ଷା ପାଇଁ ତୁମେ ଯୋଗ୍ୟ ନୁହଁ ।"

ଏକଥା ଶୁଣି କର୍ଣ୍ଣଙ୍କ ମନରେ ଗଭୀର ଦୁଃଖ ହେଲା । ଜାତିଭେଦରେ ବିଦ୍ୟା ଶିକ୍ଷା ଦିଆଯିବା କଥା ଶୁଣି ସେ ବଡ଼ ଦୁଃଖିତ ହୋଇପଡ଼ିଲେ । ମଣିଷ ଭିତରେ ଥିବା ଉଚ୍ଚ ନୀଚ ଜାତି ପ୍ରଥାକୁ ସେ ଅତ୍ୟନ୍ତ ଘୃଣା କରୁଥିଲେ । ମାତ୍ର ପ୍ରତିବାଦ କରିବାର ଉପାୟ ନଥିଲା । ସେ ଗଭୀର ଚିନ୍ତାରେ ବୁଡ଼ିଗଲେ ଓ ବ୍ରହ୍ମାସ୍ତ୍ର ଶିକ୍ଷା କରିବା ପାଇଁ ନିଜ ଜୀବନକୁ ପଣ କରିବାକୁ ପଛେଇବେ ନାହିଁ ବୋଲି ପ୍ରତିଜ୍ଞା କଲେ ।

ସେହି ସମୟରେ ମହାବୀର ପର୍ଶୁରାମ ମହେନ୍ଦ୍ର ପର୍ବତରେ ଆଶ୍ରମ କରି ବାସ କରୁଥାନ୍ତି । କର୍ଣ୍ଣ ତାଙ୍କୁ ସାକ୍ଷାତ କରି କହିଲେ, "ମହାଭାଗ, ମୁଁ ବ୍ରାହ୍ମଣ କୂଳରେ ଜନ୍ମ । ଆପଣଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିବାପାଇଁ ବିନୀତ ପ୍ରାର୍ଥନା କରୁଛି । ଶିଷ୍ୟ ରୂପେ ଗ୍ରହଣକରି ମୋତେ କୃତାର୍ଥ କରନ୍ତୁ ।"

କ୍ଷତ୍ରିୟ ଜାତି ପର୍ଶୁରାମଙ୍କର ପରମ ଶତ୍ରୁ । ବ୍ରାହ୍ମଣ ପିଲାଟିଏ ଅସ୍ତ୍ରଶିକ୍ଷା ପାଇଁ ଆସିଛି ଶୁଣି ସେ ଆନନ୍ଦରେ ଶିଷ୍ୟ ରୂପେ ଗ୍ରହଣ କଲେ । ନାନା ଅସ୍ତ୍ରବିଦ୍ୟା ସହିତ ବ୍ରହ୍ମାସ୍ତ୍ର ପ୍ରୟୋଗ ବିଷୟରେ ମଧ୍ୟ ଶିକ୍ଷା ଦେଇଦେଲେ । କର୍ଣ୍ଣ ଆନନ୍ଦରେ ଆଶ୍ରମରେ ଦିନ କାଟୁଥାନ୍ତି ।

ଦିନେ ଏକ ଦୁର୍ଘଟଣା ଘଟିଲା । କର୍ଣ୍ଣ ଅସ୍ତ୍ରଚାଳନା କରୁଥିବାବେଳେ ତାଙ୍କ ଅଜାଣତରେ ଏକ ଶର ଜଣେ ବ୍ରାହ୍ମଣଙ୍କର ଗାଈଟିକୁ ମାରିଦେଲା । ଏଥିରେ ବ୍ରାହ୍ମଣ ଅତ୍ୟନ୍ତ ରାଗିଯାଇ କର୍ଣ୍ଣଙ୍କୁ ଅଭିଶାପ ଦେଇ କହିଲେ, "ନିର୍ଦ୍ଦୋଷରେ ତୁ ମୋ ଗାଈକୁ ହତ୍ୟା କଲୁ । ମନେରଖ, ଯାହାକୁ ଯୁଦ୍ଧରେ ଜିଣିବାକୁ ତୁ ଏ ଅସ୍ତ୍ରଶିକ୍ଷା କରୁଛୁ, ତା ସହିତ ଯୁଦ୍ଧ କରୁଥିବା ବେଳେ ତୋ ରଥର ଚକ ମାଟି ଭିତରେ ପଶିଯିବ ଓ ସେତିକିବେଳେ ତୁ ଶତ୍ରୁ ହାତରେ ମରିବୁ ।" ହଠାତ୍ ଏପରି ଅଭିଶାପ ପାଇ କର୍ଣ୍ଣ ଅତ୍ୟନ୍ତ ବିଚଳିତ ହୋଇପଡ଼ିଲେ ।

ଆଉ ଦିନକର କଥା, ଗୁରୁ ପର୍ଶୁରାମ କ୍ଳାନ୍ତ ହୋଇ କର୍ଣ୍ଣଙ୍କ କୋଳରେ ମୁଣ୍ଡରଖି ବିଶ୍ରାମ କରୁଥିଲେ । କିଛି ସମୟ ପରେ ତାଙ୍କୁ ନିଦ ଲାଗିଗଲା । କର୍ଣ୍ଣ ଗୁରୁଙ୍କ ମୁଣ୍ଡଟିକୁ କୋଳରେ ରଖି ବସିଥାନ୍ତି । କିଛି ସମୟ ପରେ ଗୋଟାଏ ବଡ଼ ପୋକ କର୍ଣ୍ଣଙ୍କ ଜଙ୍ଘକୁ କାମୁଡ଼ିବାରେ ଲାଗିଲା । ସେ ଯନ୍ତ୍ରଣାରେ ଅଧୀର ହୋଇପଡ଼ିଲେ । ତଥାପି ଗୁରୁଙ୍କ ନିଦ ଭାଙ୍ଗିଯିବା ଭୟରେ ଟିକଏ ହଲଚଲ ମଧ୍ୟ ହେଲେ ନାହିଁ । ତାଙ୍କ ଜଙ୍ଘରୁ ବହୁ ପରମାଣରେ ରକ୍ତ ବହିବାରେ ଲାଗିଲା । ସେ ସମସ୍ତ କଷ୍ଟକୁ ସହ୍ୟ କରି ସ୍ଥିର ହୋଇ ବସିରହିଲେ । କିଛି ସମୟ ପରେ ପର୍ଶୁରାମ ନିଦରୁ ଉଠି ଦେଖିଲେ, କର୍ଣ୍ଣଙ୍କ ଜଙ୍ଘରୁ ପ୍ରଚୁର ରକ୍ତ ବହି ଭୂମି ଓଦା ହୋଇଗଲାଣି । ସେ ବିଚଳିତ ହୋଇ ରକ୍ତ ବହିବାର କାରଣ ପଚାରନ୍ତେ କର୍ଣ୍ଣ ପୋକ କାମୁଡ଼ିବା ଓ ହଲ୍‌ଚଲ୍ ହେଲେ ନିଦ ଭାଙ୍ଗିଯିବା ଆଶଙ୍କାରେ ସବୁ କଷ୍ଟକୁ ସହି ସ୍ଥିର ଭାବରେ ବସି ରହିଛନ୍ତି ବୋଲି ଜଣାଇଲେ । ଗୁରୁ ଭୀଷଣ ରାଗିଯାଇ କହିଲେ, "ପାପିଷ୍ଠ, ତୁ କଦାପି ବ୍ରାହ୍ମଣ ସନ୍ତାନ ନୋହୁଁ । କ୍ଷତ୍ରିୟ ବ୍ୟତୀତ ଅନ୍ୟ କେହି ଏ ଦାରୁଣ କଷ୍ଟ ସହ୍ୟ କରିପାରିବ ନାହିଁ । ତୋର ପ୍ରକୃତ ପରିଚୟ ଅତି ଶୀଘ୍ର ପ୍ରଦାନକର । ନଚେତ୍ ମୋ ଅଭିଶାପରେ ତୁ ଭସ୍ମ ହୋଇଯିବୁ ।"

କର୍ଣ୍ଣ ବରଡ଼ାପତ୍ର ପରି ଥରିବାକୁ ଲାଗିଲେ । ସେ ବ୍ୟାକୁଳ କଣ୍ଠରେ କହିଲେ, "ଗୁରୁଦେବ, ମୁଁ ଏକ ସାରଥୀର ପୁତ୍ର । ବ୍ରାହ୍ମଣ ବୋଲି ପରିଚୟ ଦେଇ ମୁଁ ଆପଣଙ୍କ ନିକଟରେ ଘୋର ଅପରାଧ କରିଛି । ମୋତେ କ୍ଷମା କରି ଦିଅନ୍ତୁ ପ୍ରଭୁ ।" ଏତିକି କହି ସେ ଗୁରୁଙ୍କ ପାଦତଳେ ଲମ୍ୱ ହୋଇ ପଡ଼ିଗଲେ ।

ପର୍ଶୁରାମଙ୍କ ଆଖି ନିଆଁ ପରି ଜଳୁଥାଏ । ସେ ଗର୍ଜି ଉଠି କହିଲେ, "ତୋର ସାହସ ତ କମ୍ ନୁହେଁ ? ଉଦ୍ଦେଶ୍ୟ ସିଦ୍ଧି ପାଇଁ ତୁ ଗୁରୁଙ୍କୁ ମଧ ମିଥ୍ୟା କହିବାକୁ ଭୟ କଲୁନାହିଁ । ଏ ପାପର ଦଣ୍ଡ ତୋତେ ଅବଶ୍ୟ ଭୋଗ କରିବାକୁ ପଡ଼ିବ । ଯେଉଁ ବ୍ରହ୍ମାସ୍ତ୍ର ଶିକ୍ଷା କରିବାକୁ ମୋ ପାଖକୁ ଆସିଥିଲୁ, ସେହି ବ୍ରହ୍ମାସ୍ତ୍ର ପ୍ରୟୋଗ ସମୟରେ ତାହାର ମନ୍ତ୍ର ମନେପଡ଼ିବ ନାହିଁ ।" କର୍ଣ୍ଣଙ୍କ ଛାତି ଫାଟିଗଲା ପରି ଲାଗିଲା । ସେ ଅପରାଧୀ ପରି ଗୁରୁଙ୍କ ଆଗରେ ହାତଯୋଡ଼ି ଠିଆ ହୋଇ ରହିଲେ । ମାତ୍ର ଗୁରୁ ତାଙ୍କ ଆଡ଼କୁ ଟିକିଏ ହେଲେ ଚାହିଁଲେ ନାହିଁ ।

ନାରଦ କହିଲେ, "ମହାରାଜ, ଯୁଧିଷ୍ଠିର, କର୍ଣ୍ଣ ସାରଥୀ ପୁତ୍ର ନୁହନ୍ତି । ସେ ତୁମର ବଡ଼ ଭାଇ । ମାତା କୁନ୍ତୀଙ୍କର ପ୍ରଥମ ସନ୍ତାନ କର୍ଣ୍ଣ ପ୍ରଥମେ ବ୍ରାହ୍ମଣଙ୍କଠାରୁ, ଦ୍ୱିତୀୟରେ ଗୁରୁ ପର୍ଶୁରାମଙ୍କଠାରୁ ଅଭିଶାପ ପାଇବା କଥା ଶୁଣିଲ । ସେ ମହାଧନୁର୍ଦ୍ଧର, ଏକଥା ସତ୍ୟ । କେବଳ ପୂର୍ବ ଅଭିଶାପ ଯୋଗୁ ସେ ଅତ୍ୟନ୍ତ ଅସହାୟ ହୋଇ ମଲେ । ଏଥିପାଇଁ ତୁମେ ଶୋକ କରିବା ଅନୁଚିତ । ସେ କିପରି ମରିବେ, ଏକଥା ପୂର୍ବରୁ ସ୍ଥିର ହୋଇ ସାରିଥିଲା ।" ନାରଦ ଯେତେ ଯାହା ବୁଝାଇଲେ ମଧ ଯୁଧିଷ୍ଠିରଙ୍କ ମନରେ ଶାନ୍ତି ଆସିଲା ନାହିଁ ।

## ଯୁଧିଷ୍ଠିର ଓ କୁନ୍ତୀ

କୁନ୍ତୀଦେବୀ ନୀରବ ହୋଇ ନାରଦଙ୍କ ବର୍ଣ୍ଣନା ସବୁ ଶୁଣୁଥିଲେ । ସେ ଯୁଧିଷ୍ଠିରଙ୍କୁ ଚାହିଁ କହିଲେ, "କର୍ଣ୍ଣଙ୍କୁ ତୁମେ ହତ୍ୟା କରିଛ ବୋଲି ଭାବି ନିଜକୁ ଖୁବ୍ ଧିକ୍କାର କରୁଛ । ମାତ୍ର କର୍ଣ୍ଣଙ୍କ ମୃତ୍ୟୁର କାରଣ ମୁଁ ନିଜେ । ଶୁଣ, ସୂର୍ଯ୍ୟଦେବତା କର୍ଣ୍ଣଙ୍କର ପିତା । ଦୁର୍ଯ୍ୟୋଧନ ପରି ଏକ ଅହଂକାରୀ, ଗର୍ବୀ ଓ ପାପୀ ପକ୍ଷ ଗ୍ରହଣ ନକରିବାକୁ ସେ କର୍ଣ୍ଣଙ୍କୁ ବହୁତ ବୁଝାଇଥିଲେ । ଆହୁରି ମଧ କହିଥିଲେ ଯେ, ନିଜ ଭାଇମାନଙ୍କ ସହିତ ମିଳିତ ହେଲେ ତୁମେ ଯଥେଷ୍ଟ ସମ୍ମାନ ପାଇବା ସଂଗେ ସଂଗେ ହସ୍ତିନାର ରାଜା ରୂପେ ପୂଜା ପାଇବ । ମାତ୍ର କର୍ଣ୍ଣ କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନଥିବାରୁ ସୂର୍ଯ୍ୟଦେବ ଅସନ୍ତୁଷ୍ଟ ହୋଇ ଫେରିଆସିଲେ ।"

କର୍ଣ୍ଣ ଅତ୍ୟନ୍ତ ଦାନୀ ଥିଲେ । ଯେ ଯାହା ମାଗେ ସେ ତାକୁ ତାହା ଦେବାରେ ବିଳମ୍ୱ କରନ୍ତି ନାହିଁ । ଜନ୍ମ ସମୟରେ ସ୍ୱର୍ଗୀୟ କବଚ ଓ କୁଣ୍ଡଳ ପିନ୍ଧି ଜନ୍ମ ହୋଇଥିଲେ । ଏହି ଦିବ୍ୟ କବଚ ଓ କୁଣ୍ଡଳ ଥିବାଯାଏ କର୍ଣ୍ଣଙ୍କୁ କେହି ପରାସ୍ତ କରିପାରିବେ ନାହିଁ, ଏକଥା ଜାଣି ଅର୍ଜ୍ଜୁନଙ୍କ ପିତା ଇନ୍ଦ୍ର ପାଣ୍ଡବମାନଙ୍କୁ ରକ୍ଷା କରବା ପାଇଁ ଏକ ଉପାୟ ସ୍ଥିର କଲେ । ଦିନେ ସେ ବୃଦ୍ଧ ବ୍ରାହ୍ମଣ ବେଶରେ କର୍ଣ୍ଣଙ୍କୁ ତାଙ୍କ କବଚ ଓ କୁଣ୍ଡଳକୁ ଭିକ୍ଷା ମାଗିଲେ । କର୍ଣ୍ଣଙ୍କୁ କିଛି ଅଛପା ରହିଲା ନାହିଁ । ତଥାପି ସେ ବିଳମ୍ୱ ନକରି ନିଜର କବଚ ଓ କୁଣ୍ଡଳ ଦାନ କରିଦେଲେ । ମୁଁ କର୍ଣ୍ଣର ମାଆ । ଦିନେ ଗଙ୍ଗାକୂଳରେ ସୂର୍ଯ୍ୟଙ୍କୁ ପ୍ରଣାମ କରୁଥିବା ସମୟରେ ମୁଁ ତା ଆଗରେ ଠିଆ ହୋଇ ତା ଜନ୍ମର ସମସ୍ତ ଘଟଣା କହିଲି ଓ ନିଜର ଭାଇମାନଙ୍କ ସହିତ ଏକତ୍ର ରହିବା ପାଇଁ ବହୁ ଅନୁରୋଧ କଲି । ତା ହାତ ଧରି କୋଳକୁ ନେଲି । ମୋ ଆଖି ଲୁହରେ ତା ଛାତି ଓଦା ହୋଇ ଯାଉଥାଏ । ଆଶ୍ଚର୍ଯ୍ୟର କଥା, ନିଜ ଜନ୍ମକଲା ମାଆର ଆଖିଲୁହ ତା ହୃଦୟକୁ ଟିକିଏ ହେଲେ ବଦଳାଇ ପାରିଲା ନାହିଁ । ସେ ତା' ମତରେ ଦୃଢ଼ ରହି ମୋତେ ଖାଲି ହାତରେ ଫେରାଇଦେଲା । ସେ ଜାଣି ଶୁଣି ଅନ୍ୟାୟ ପକ୍ଷରେ ରହି ନିଜ ମୃତ୍ୟୁକୁ ଆମନ୍ତ୍ରଣ କରି ଆଣିଲା । ଏଥିପାଇଁ ତୁମେ ନିଜକୁ ଦୋଷୀ କରିବା ଠିକ୍ ନୁହେଁ ।"

ଯୁଧିଷ୍ଠିର କହିଲେ, "ମା', ତୁମେ କର୍ଣ୍ଣଙ୍କ ଜନ୍ମ ବିଷୟର ଗୋପନ କଥା ଆମଠାରୁ ଲୁଚାଇ ରଖିଥିଲ । ତେଣୁ କର୍ଣ୍ଣଙ୍କ

ମୃତ୍ୟୁରେ ଆମେ ଯେଉଁ ପାପ ଅର୍ଜନ କଲୁ, ତୁମେ ହିଁ ତା'ର ମୂଳ କାରଣ ଅଟ । ସ୍ତ୍ରୀ ଲୋକମାନଙ୍କ ହୃଦୟ ସାଧାରଣତଃ କୋମଳ । ସେମାନେ କୌଣସି କଥା ଗୋପନ ରଖିପାରନ୍ତି ନାହିଁ ବୋଲି ମୋର ଧାରଣା ଥିଲା । ତୁମେ ସ୍ତ୍ରୀଲୋକ ହୋଇ ଏତେ ବଡ଼ ଘଟଣାକୁ ଲୁଚାଇରଖିବା ଫଳରେ ଆମେ ଆମ ବଡ଼ଭାଇଙ୍କୁ ନାନା ଅପମାନ ଜନକ କଥା କହିଲୁ, ଏପରିକି ହତ୍ୟା କରିବାକୁ ମଧ୍ୟ ପଛାଇଲୁ ନାହିଁ । ମୁଁ ଆଜି ସମଗ୍ର ସ୍ତ୍ରୀ ଜାତିକୁ ଏହି ଅଭିଶାପ ଦେଉଛି--ସେମାନେ କୌଣସି କଥା ଗୋପନ ରଖି ପାରିବେ ନାହିଁ ।"

## ଯୁଧିଷ୍ଠିରଙ୍କ ଦୁଃଖ

ପ୍ରଥମେ ନାରଦ ପରେ ମାତା କୁନ୍ତୀଙ୍କଠାରୁ କଥା ଶୁଣି ଯୁଧିଷ୍ଠିର ଦୁଃଖରେ ଭାଙ୍ଗିପଡ଼ିଲେ । କୌଣସି କାର୍ଯ୍ୟରେ ତାଙ୍କର ମନ ଲାଗିଲା ନାହିଁ । ଯେତେ ଯେ ବୁଝାଇଲେ ମଧ୍ୟ ଫଳ କିଛି ହେଲା ନାହିଁ । ବରଂ ଦୁଃଖର ପରିମାଣ ଦିନକୁ ଦିନ ବଢ଼ିବାରେ ଲାଗିଲା । ଶେଷରେ ସେ କହିଲେ, "ଯୁଦ୍ଧ କରି ଆମେ ଗୌରବ ଅର୍ଜନ କରିନାହୁଁ । ବରଂ ଆମେ ଆମକୁ ହିଁ ହତ୍ୟା କରିଛୁ । ଏହା ଘୋର ପାପ ଓ ଅନ୍ୟାୟ । ଏ ପାପରୁ ମୁକ୍ତି ପାଇବା ପାଇଁ ମୁଁ ଅରଣ୍ୟରେ ବାସ କରି ତପସ୍ୟା କରିବି ।" ସେ ଅନ୍ୟ ଚାରିଭାଇଙ୍କୁ ଡାକି କହିଲେ, "ତୁମ୍ଭେମାନେ ରାଜ୍ୟ ଶାସନ କର । ରାଜ୍ୟ ଭୋଗ କରିବାରେ ମୋର ଆଉ ଆଗ୍ରହ ନାହିଁ । ମୋ ପକ୍ଷରେ ବର୍ତ୍ତମାନ ଅରଣ୍ୟବାସ ହିଁ ଶ୍ରେୟ ।"

ସବୁ ଶୁଣି ଅର୍ଜୁନ କହିଲେ, "ମହାରାଜ, ଯଦି ଏପରି ହେବାର ଥିଲା, ତେବେ ସମସ୍ତ ଶକ୍ତି ଲଗାଇ ଯୁଦ୍ଧ କଲେ କାହିଁକି ? କାହିଁକି ଦେହ ହାତରେ ଅସଂଖ୍ୟ ଘା' ଚିହ୍ନ ରଖାଇଲେ ? ଯୁଦ୍ଧରେ ଜୟଲାଭ ପରେ ଆପଣ ତପସ୍ୟା କରିବାକୁ ମନ ବଳାଇଛନ୍ତି । ତେବେ ଅକାରଣରେ ଅସଂଖ୍ୟ ଲୋକଙ୍କୁ ଯୁଦ୍ଧରେ ମରାଇଲେ କେଉଁ ସୁଖ ଆଶାରେ ? ଯୁଦ୍ଧ ନକରି, ଲୋକ କ୍ଷୟ ନକରି କ'ଣ ତପସ୍ୟା କରାଯାଇ ପାରିନଥାନ୍ତା ? ମନୁଷ୍ୟ ସଂସାରରେ ରହି ସାଧୁ ଭାବରେ ଜୀବନ କଟାଇପାରେ । ବଣରେ ତପସ୍ୟା କରିବାଠାରୁ ଉତ୍ତମ ସଂସାରୀ ଜୀବନ କୌଣସି ଗୁଣରେ ଊଣା ନୁହେଁ । ଆପଣ ରାଜା । ରାଜାର କର୍ତ୍ତବ୍ୟ ବନବାସ ବା ତପସ୍ୟା ନୁହେଁ । ରାଜ୍ୟ ଶାସନ କରି ପ୍ରଜାମାନଙ୍କ ମଙ୍ଗଳ ଚିନ୍ତା ହିଁ ରାଜଧର୍ମ ଓ ମହାନ ତପସ୍ୟା । ଆପଣଙ୍କୁ ଉତ୍ତମ ରୂପେ ଜଣାଥିଲା ଯେ ଯୁଦ୍ଧ ହେଲେ ଭାଇ, ବନ୍ଧୁ ଓ ଅନେକ ପ୍ରିୟ ଲୋକଙ୍କୁ ହରାଇବାକୁ ପଡ଼ିବ । ତେଣୁ ସେଥିପାଇଁ ଚିନ୍ତିତ ନହୋଇ ମନରେ ସାହସ ସଞ୍ଚୟ କରନ୍ତୁ । ନହେଲେ ଲୋକେ ଆପଣଙ୍କୁ ଦୁର୍ବଳମନା ଓ ଭୀରୁ ବୋଲି କହି ଥଟ୍ଟା କରିବେ ।"

ଭୀମ ମଧ୍ୟ ଗମ୍ଭୀର ହୋଇ କହିଲେ, "ମହାରାଜ, ଆପଣ ମନା କରିଥିଲେ ଯୁଦ୍ଧ ଆଦୌ ହୋଇନଥାନ୍ତା । ଆପଣ ଆଦେଶ ଦେଇଥିଲେ ଆମେ ମୃତ୍ୟୁ ପର୍ଯ୍ୟନ୍ତ ଫଳମୂଳ ଖାଇ ବଣରେ ବୁଲିଥାନ୍ତୁ । ଯଦି ସେପରି ଇଚ୍ଛା ଥିଲା, ତେବେ ଏତେ ବଡ଼ କୌରବ ବଂଶକୁ ଲୋପ କରିଦେଲେ କାହିଁକି ? ଯଦି ରାଜାହେବାକୁ ଇଚ୍ଛା ନଥିଲା, ତେବେ ବହୁତ ଆଗରୁ ଅରଣ୍ୟକୁ ଚାଲିଯାଇଥାନ୍ତେ । ଆପଣ କ୍ଷତ୍ରିୟ ଓ ରାଜକୁଳରେ ଜନ୍ମ । ରାଜ୍ୟଶାସନ ଆପଣଙ୍କ କର୍ତ୍ତବ୍ୟ । ସେଥିରୁ ଓହରି ଯିବାକୁ ଚେଷ୍ଟା କଲେ ନିଶ୍ଚୟ ଆହୁରି କିଛି ପାପ ଅର୍ଜନ କରିବେ ।"

ଏ ସମୟରେ ବନବାସ ଚିନ୍ତା କରିବା ଏକ ପାଗଳାମି ବୋଲି କହି ନକୁଳ ବହୁତ ବୁଝାଇଲେ । ଶେଷରେ ସହଦେବ କହିଲେ, "ମୁଁ ଆପଣଙ୍କ ଆଗରେ ପିଲା । ଆପଣ ଏକାଧାରରେ ବାପ, ମାଆ, ଶିକ୍ଷକ ଓ ବଡ଼ଭାଇ । ଆପଣ ଆମ ସହିତ ରହିବା ପାଇଁ ମୁଁ ବିନୀତ ପ୍ରାର୍ଥନା କରୁଛି ।"

ଦ୍ରୌପଦୀ ସମସ୍ତଙ୍କ କଥା ଶୁଣିବା ପରେ କହିଲେ, "ଦୁଷ୍ଟ ଲୋକଙ୍କୁ ଦମନ କରିବା ରାଜାର କର୍ତ୍ତବ୍ୟ । ଅନ୍ୟାୟ, ଅତ୍ୟାଚାରକୁ ଦୂର କରି ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ପାଇଁ ରାଜା ଯୁଦ୍ଧ କରିଥାନ୍ତି । ଏହା ଶାସ୍ତ୍ର ସମ୍ମତ । ଯୁଦ୍ଧରେ ଭାଇ ବନ୍ଧୁ କୁଟୁମ୍ବ, ସ୍ନେହ ବା ମମତା ପ୍ରତି ଦୃଷ୍ଟି ରଖାଯାଏ ନାହିଁ । ଆପଣ ପ୍ରକୃତ ରାଜାର କର୍ତ୍ତବ୍ୟ ହିଁ ପାଳନ କରିଛନ୍ତି । ତେବେ ହଠାତ୍ ଏ ବୈରାଗ୍ୟ ଜନ୍ମିବାର କାରଣ

କଅଣ ? ଦ୍ୱୈତ ବନରେ ଥିବାବେଳେ ଆପଣ କହିଥିଲେ "ନାଁ ଏ ଦୁଷ୍ଟ ଦୁର୍ଯ୍ୟୋଧନ ଓ ତାକୁ ସାହାଯ୍ୟ କରୁଥିବା ଲୋକଙ୍କୁ ହତ୍ୟା କରି ଆମେ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା କରିବା ଓ ବନବାସର ସମସ୍ତ କଷ୍ଟ ଭୁଲିଯିବା ।" ଏକଥା ମୋତେ ପୁଣି ମନେପକାଇ ଦେବାକୁ ପଡ଼ିଲା । ଅତୀତର ସମସ୍ତ କଥା ଭୁଲିଯାଇ ଆପଣ ପୁଣି ବନବାସ କରିବାକୁ ଚିନ୍ତା କରିପାରିଲେ କିପରି ? ବହୁ ଦୁଃଖ କଷ୍ଟ ସହି ଭାଇମାନେ କେତେ ଆଶାବାନ୍ଧି ବସିଛନ୍ତି ? ଆପଣ କ'ଣ ସେମାନଙ୍କର ଆଶାକୁ ପୋଡ଼ି ପାଉଁଶ କରିଦେବେ ? ନାଁ, ସେପରି କରନ୍ତୁ ନାହିଁ । ମନରେ ବୈରାଗ୍ୟ ତ୍ୟାଗ କରନ୍ତୁ । ପ୍ରାଣପ୍ରିୟ ଭାଇମାନଙ୍କୁ ନେଇ ଆନନ୍ଦରେ ରାଜତ୍ୱ କରନ୍ତୁ । ତାହା ହିଁ ହେବ ଆପଣଙ୍କର ଶ୍ରେଷ୍ଠ ତପସ୍ୟା ଓ ସେଥିରୁ ହିଁ ଆପଣ ଅକ୍ଷୟ ଯଶ ଅର୍ଜନ କରିବେ । ପାଞ୍ଚ ପୁତ୍ରର ଜନନୀ ହୋଇ ମଧ୍ୟ ମୁଁ ଆଜି ପୁତ୍ରହୀନା । ସେଥିଲାଗି ମୁଁ ଯେଉଁ ଦାରୁଣ ଦୁଃଖ ଭୋଗ କରୁଛି ତାହା କେବଳ ଜଣେ ମାଆ ହିଁ ଅନୁଭବ କରିପାରେ । ଏପରି ଅବସ୍ଥାରେ ଆପଣ ବନବାସ କଥା କହି ମୋର ସେ ଅସରନ୍ତି ଦୁଃଖକୁ ଆହୁରି ଯନ୍ତ୍ରଣାମୟ କରନ୍ତୁ ନାହିଁ ମହାରାଜ । ମୋର ଆକୁଳ ପ୍ରାର୍ଥନା ଗ୍ରହଣ କରନ୍ତୁ ।" ଏତିକି କହି ଦ୍ରୌପଦୀ କାନ୍ଦିବାରେ ଲାଗିଲେ ।

ପାଣ୍ଡବ ପରିବାରରେ ଏହିପରି ଆଲୋଚନା ଚାଲିଥିବା ବେଳେ ମହର୍ଷି ବ୍ୟାସଦେବ ଉପସ୍ଥିତ ହୋଇ କହିଲେ, "ଆଉ ଅଧିକ ଆଲୋଚନାର ପ୍ରୟୋଜନ ନାହିଁ । ମୋ ପରାମର୍ଶ ଗ୍ରହଣ କରି ଏବେ ହସ୍ତିନା ଫେରିଯାଅ ଓ ସେଠାରେ ରାଜପଦ ଗ୍ରହଣ କରି ପ୍ରଜାମାନଙ୍କ ସୁଖ ସୁବିଧା ପ୍ରତି ଦୃଷ୍ଟି ଦିଅ ।"

ମହର୍ଷି ବ୍ୟାସଙ୍କୁ ଯୁଧିଷ୍ଠିର କି ଉତ୍ତର ଦେବେ ? ତାଙ୍କ ଦୃଷ୍ଟିରେ ବ୍ୟାସଦେବ ସାକ୍ଷାତ ଈଶ୍ୱର ବୋଲି ବିବେଚିତ ହୁଅନ୍ତି । ସେ ସଙ୍ଗରେ ଭାଇ, ବନ୍ଧୁ, ସ୍ତ୍ରୀ ଓ ମାତା କୁନ୍ତୀଙ୍କୁ ନେଇ ହସ୍ତିନାପୁର ଯାତ୍ରାକଲେ । ସେତେବେଳକୁ ପିତାମହ ଭୀଷ୍ମ ଶରଶଯ୍ୟା ଉପରେ ରହି ମୃତ୍ୟୁକୁ ଅପେକ୍ଷା କରିଥାନ୍ତି । ଯୁଧିଷ୍ଠିର ତାଙ୍କ ପାଦତଳେ ବସି ତାଙ୍କଠାରୁ ରାଜାର କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ବହୁ ଉପଦେଶ ଗ୍ରହଣ କଲେ । ଅଳ୍ପ ସମୟ ପରେ ଭୀଷ୍ମଙ୍କ ଶରୀରରୁ ପ୍ରାଣବାୟୁ ଉଡ଼ିଗଲା । ଯୁଧିଷ୍ଠିର ଗଙ୍ଗାକୂଳକୁ ଯାଇ ପୂର୍ବରୁ ଚଳି ଆସୁଥିବା ବିଧି ଅନୁସାରେ ଭୀଷ୍ମଙ୍କ ଆତ୍ମାର ସଦ୍‌ଗତି ନିମନ୍ତେ ପୂଜା ପ୍ରାର୍ଥନା ଶେଷ କଲେ । ଭୀଷ୍ମଙ୍କ ମୃତ୍ୟୁ ପରେ ଯୁଧିଷ୍ଠିରଙ୍କ ମନର ଅବସ୍ଥା ପୁଣି ବଦଳିଗଲା । ସେ ଗତ କଥା ମାନ ମନେ ପକାଇ ବିଚଳିତ ହୋଇଉଠିଲେ ଓ ଅଚେତ ହୋଇ ତଳେ ପଡ଼ିଗଲେ । ଭୀମ ଧାଇଁ ଆସି ଯୁଧିଷ୍ଠିରଙ୍କୁ ଚେତା କରାଇଲେ । ଏହି ସମୟରେ ଧୃତରାଷ୍ଟ୍ର ତାଙ୍କ ନିକଟରେ ପହଞ୍ଚି କହିଲେ, "ବତ୍ସ, ମନରୁ ଦୁଃଖ ଦୂର କର । ସିଂହାସନ ଆରୋହଣ କରି ଭାଇମାନଙ୍କ ସହ ଆନନ୍ଦରେ ରାଜପଣ କର । ଯେତେ ଦୁଃଖ ଅଛି, ସେ ସବୁକୁ ମୋତେ ଓ ଗାନ୍ଧାରୀଙ୍କୁ ଦେଇଦିଅ । ମୁଁ ମୂର୍ଖ, ମହାମତି ବିଦୁରଙ୍କ କଥା ପ୍ରତି କାନ ନଦେଇ ସବୁ ସାରିବସିଲି । ଦୁର୍ଯ୍ୟୋଧନର କଥା ଶୁଣି ମୁଁ ନିଜେ ଠକି ଗଲି । ଶହେ ପୁଅଙ୍କୁ ହରାଇ ମୁଁ ତୁମକୁ ଆଶ୍ରା କରିଛି । ଏବେ ତୁମକୁ ଦେଖି ପୁତ୍ର ଶୋକ ପାସୋରିବି । ଯାଅ କର୍ତ୍ତବ୍ୟରେ ମନଦିଅ ।"

## ଶ୍ରୀକୃଷ୍ଣ ଓ ଉତଙ୍ଗ

ମହାଭାରତ ଯୁଦ୍ଧ ପରେ ଶ୍ରୀକୃଷ୍ଣ ଦ୍ୱାରିକା ଫେରିଗଲେ । ଅଧାବାଟରେ ବହୁଦିନର ବନ୍ଧୁ ଉତଙ୍ଗ ବ୍ରାହ୍ମଣଙ୍କ ସହିତ ସାକ୍ଷାତ ହେଲା । କୃଷ୍ଣ ରଥରୁ ଓହ୍ଲାଇ ପ୍ରିୟବନ୍ଧୁଙ୍କୁ ନମସ୍କାର କଲେ । ବିଭିନ୍ନ କୁଶଳ ପ୍ରଶ୍ନ ପରେ ଉତଙ୍ଗ ପଚାରିଲେ, "ବନ୍ଧୁ, କୌରବ ପାଣ୍ଡବମାନଙ୍କର ସବୁ କୁଶଳ ତ ? ସେମାନେ ପରସ୍ପରକୁ ସ୍ନେହ ଆଦର କରି ସୁଖରେ ଅଛନ୍ତି ତ ?"

ନିରୀହ ବ୍ରାହ୍ମଣ ବନ୍ଧୁଙ୍କ ଏ ପ୍ରଶ୍ନର କି ଉତ୍ତର ଦେବେ, କିଛି ଚିନ୍ତା କରି ନପାରି କୃଷ୍ଣ କିଛି ସମୟ ପାଇଁ ନୀରବ ରହିଗଲେ । ତା ପରେ ଅତି ନମ୍ର ଭାବରେ ସମସ୍ତ ଘଟଣା କହିବାରେ ଲାଗିଲେ ।

ମହାଭାରତ ଯୁଦ୍ଧର ବର୍ଣ୍ଣନା ଶୁଣିବାପରେ ଉତ୍ତଙ୍କ ଅତ୍ୟନ୍ତ ରାଗିଉଠିଲେ । ତାଙ୍କର ଦୁଇ ଆଖିରୁ ନିଆଁ ବାହାରିବା ପରି ଦେଖାଗଲା । ସେ ଗର୍ଜି ଉଠି କହିଲେ, "ହେ କୃଷ୍ଣ, ତୁମେ ଏ ସବୁ ଘଟିବାକୁ ଦେଲ କିପରି ? ତୁମରି ଆଖି ଆଗରେ ଦୁଇ ଦୁଇଟା ବଂଶ ଧ୍ୱଂସ ହୋଇଗଲା । ନିଶ୍ଚୟ ଏ ସବୁର ମୂଳ କାରଣ ତୁମେ । ମୁଁ ବର୍ତ୍ତମାନ ତୁମକୁ ଅଭିଶାପ ଦେଇ ଭସ୍ମ କରିଦେବି ।

କୃଷ୍ଣ ରାଗିଉଠିଥିବା ବ୍ରାହ୍ମଣଙ୍କ ଆଗରେ ନିଜର ବିଶ୍ୱରୂପ ପ୍ରକଟ କରି କହିଲେ, "-ମୁଁ ବିଭିନ୍ନ ରୂପରେ ପୃଥିବୀରେ ଜନ୍ମନେଇ ଶାନ୍ତି ସ୍ଥାପନ କରିଥାଏ । ମୁଁ ଦୁଷ୍ଟ କୌରବମାନଙ୍କ ନିକଟରେ ହାତ ପତାଇ ଭିକ୍ଷା ମାଗିଛି । ମୋର ସମସ୍ତ ବୁଦ୍ଧି ଖଟାଇ ସେମାନଙ୍କୁ ବାରମ୍ବାର ବୁଝାଇଛି। ମାତ୍ର ଗର୍ବୀ ଓ ଅତ୍ୟନ୍ତ ଉଦ୍ଧତ କୌରବମାନେ ମୋ କଥା, ମୋ ପରାମର୍ଶ ଏପରିକି ମୋ ପ୍ରାର୍ଥନା ପ୍ରତି ମଧ୍ୟ କାନ ଦେଲେ ନାହିଁ । ଶେଷରେ ସେମାନେ ସେମାନଙ୍କର ମନ୍ଦ କର୍ମର ଫଳ ଭୋଗକଲେ । ତେଣୁ ହେ ବ୍ରାହ୍ମଣ, କ୍ରୋଧ ଶାନ୍ତ କରନ୍ତୁ ।"

କୃଷ୍ଣଙ୍କ ବର୍ଣ୍ଣନା ଶୁଣିବା ପରେ ଉତ୍ତଙ୍କଙ୍କ କ୍ରୋଧ ଶାନ୍ତ ହେଲା । ସେ ନୀରବ ହୋଇ ବସିରହିଲେ ।

କୃଷ୍ଣ ବନ୍ଧୁ ଉତ୍ତଙ୍କଙ୍କ ମନର ଅବସ୍ଥା ବୁଝି ଅତ୍ୟନ୍ତ ଖୁସି ହେଲେ ଓ ତାଙ୍କୁ ଏକ ବରଦେବା ପାଇଁ କହିଲେ ।

ଉତ୍ତଙ୍କ କହିଲେ, "ମୁଁ ତୁମର ବିଶ୍ୱରୂପ ଦର୍ଶନ କରି କୃତାର୍ଥ ହୋଇଗଲି । ମୋର କୌଣସି ବର ପ୍ରାର୍ଥନା କରିବାର ଇଚ୍ଛା ନାହିଁ ।"

କୃଷ୍ଣ ବାରମ୍ବାର ଅନୁରୋଧ କରିବାରୁ ସରଳ ଉତ୍ତଙ୍କ କହିଲେ, "ପ୍ରଭୁ, ଯଦି ମୋତେ ବର ଦେବା ପାଇଁ ଆପଣ ଏକାନ୍ତ ଇଚ୍ଛା କରୁଛନ୍ତି, ତେବେ ଏହି ବର ଦିଅନ୍ତୁ, ଶୋଷ ହେବା ସମୟରେ ମୁଁ ସଙ୍ଗେ ସଙ୍ଗେ ପାଣି ପାଇ ପାରିବି ।" କୃଷ୍ଣ ଅଳ୍ପ ହସି କହିଲେ, "ଏତିକି ତ ? ବେଶ୍, ତାହା ହିଁ ହେବ ।" ଏହା ପରେ ଶ୍ରୀକୃଷ୍ଣ ଦ୍ୱାରିକା ଚାଲିଗଲେ ।

କିଛି ଦିନ ବିତିଗଲା । ଦିନେ ଉତ୍ତଙ୍କ ମରୁଭୂମି ମଧ୍ୟରେ ବୁଲୁଥିବା ସମୟରେ ହଠାତ୍ ତୃଷାରେ ଆକୁଳ ହୋଇଉଠିଲେ । ଶ୍ରୀକୃଷ୍ଣ ଦେଇଥିବା ବର କଥା ତାଙ୍କର ମନେପଡ଼ିଗଲା । ଠିକ୍ ଏହି ସମୟରେ ଜଣେ ଶବର ତାଙ୍କ ଆଗରେ ଆସି ଠିଆ ହୋଇଗଲା । କାନ୍ଧରେ ତା'ର ଚମଡ଼ାର ଏକ ଜଳପୂର୍ଣ୍ଣ ଥଳି । ଶବରଟି ଉତ୍ତଙ୍କଙ୍କୁ କହିଲା, "-ମହାଶୟ, ଆପଣଙ୍କୁ ଖୁବ୍ ଶୋଷ ହେଉଛି । ମୁହଁ ଶୁଖିଗଲାଣି, ନିଅନ୍ତୁ ପାଣି ପିଇଦିଅନ୍ତୁ ।"

ଉତ୍ତଙ୍କ ଶବରର ଅପରିଷ୍କୃତ ଦେହ ଓ ପୋଷାକ ଦେଖି ପ୍ରଥମରୁ ଘୃଣା କରୁଥିଲେ । ଚମଡ଼ା ଥଳିରୁ ପାଣି ପିଇବା କଥା ଶୁଣି ତାଙ୍କ ମନ ଅତ୍ୟନ୍ତ ଖରାପ ହୋଇଗଲା । ସେ ଶବରକୁ କହିଲେ, "ନାଁ, ମୋର ପାଣି ଦରକାର ନାହିଁ । ଏଠାରୁ ଚାଲିଯାଅ ।"

ଉତ୍ତଙ୍କ ମନେ ମନେ ଭାବିଲେ, "ବାଃ, ଶ୍ରୀକୃଷ୍ଣ ମୋତେ ଆଚ୍ଛା ବର ଦେଇଥିଲେ ।" ଶବରଟି ବାରମ୍ବାର ଉତ୍ତଙ୍କଙ୍କୁ ଜଳପାନ କରିବାକୁ ଅନୁରୋଧ କରିବାରୁ ଉତ୍ତଙ୍କଙ୍କ କ୍ରୋଧ ବଢ଼ିବାରେ ଲାଗିଲା । ସେ ବିରକ୍ତ ହୋଇ କହିଲେ, "କେତେଥର କହିବି ମୋର ପାଣି ପିଇବା ଆବଶ୍ୟକ ନାହିଁ ବୋଲି ।" ଉତ୍ତଙ୍କଙ୍କ କ୍ରୋଧ ଦେଖି ଶବରଟି କୁଆଡ଼େ ଚାଲିଗଲା ।

ହଠାତ୍ ଶବରଟି ଅଦୃଶ୍ୟ ହୋଇଯିବା ପରେ ଉତ୍ତଙ୍କ ଚିନ୍ତାକଲେ-- "ଏ ଶବର କିଏ ? ନିଶ୍ଚୟ ସେ ମୋ ପ୍ରତି କୃଷ୍ଣଙ୍କର ଏହା ଏକ ପରୀକ୍ଷା । ମୁଁ ମସ୍ତବଡ଼ ଭୁଲ୍ କରିବସିଲି । ଶବରଠାରୁ ଜଳ ଗ୍ରହଣ ନକରି ମୁଁ ନିଜକୁ ମହାମୂର୍ଖ ବୋଲି ପ୍ରମାଣିତ କରିଦେଲି ।"

ଉତ୍ତଙ୍କ କ୍ରମେ ଅସ୍ଥିର ହୋଇଉଠିଲେ । ତାଙ୍କ ମୁଣ୍ଡ ବୁଲାଇ ହୋଇଗଲା । ଏହି ସମୟରେ ଶଙ୍ଖ ଚକ୍ରଧାରୀ ଶ୍ରୀକୃଷ୍ଣ ତାଙ୍କ ଆଗରେ ଆସି ଠିଆ ହୋଇଗଲେ ।

ଉତ୍ତଙ୍କ କହିଲେ, "ହେ ମାଧବ, ତୁମେ ମୋତେ ଏକ ବିଷମ ପରୀକ୍ଷାରେ ପକାଇଦେଲ । ଜଣେ ଅଛୁଆ ଶବରର ଅପରିଷ୍କୃତ ଚମଡ଼ା ମୁଣିରୁ ବ୍ରାହ୍ମଣ ହୋଇ ମୁଁ କିପରି ଜଳପାନ କରିଥାନ୍ତି । ଏହା କ'ଣ ତୁମର ମୋ ପ୍ରତି ଦୟାର ଚିହ୍ନ ? ମୁଁ ଏହି ବର ପାଇଁ ପ୍ରାର୍ଥନା କରିଥିଲି କି ?"

ଉତଙ୍କଙ୍କ ବିରକ୍ତି ଭାବ ଲକ୍ଷ୍ୟ କରି ଶ୍ରୀକୃଷ୍ଣ ଅଳ୍ପ ହସି କହିଲେ, "ହେ ବ୍ରାହ୍ମଣ, ତୁମେ ଯେତେବେଳେ ମୋ ବରକୁ କାର୍ଯ୍ୟକାରୀ କରିବାକୁ ଚାହିଁଲ, ମୁଁ ସେତିକିବେଳେ ଇନ୍ଦ୍ରଦେବଙ୍କୁ ଅମୃତ ନେଇ ତୁମକୁ ଜଳରୂପେ ଦେବା ପାଇଁ କହିଥିଲି ? ଇନ୍ଦ୍ର କହିଲେ, "ଜଣେ ମର୍ତ୍ତ୍ୟବାସୀକୁ ଅମୃତ ପାନ କରାଇ କିପରି ଅମର କରିବି ?" ମୁଁ କହିଲି, ସେ ଯାହା ହେଉନା କାହିଁକି ଉତଙ୍କକୁ ଜଳରୂପେ ଅମୃତ ଦେବାକୁ ହିଁ ହେବ । ତେଣୁ ପରୀକ୍ଷା ପାଇଁ ଇନ୍ଦ୍ର ଏକ ଚଣ୍ଡାଳ ବେଶରେ ତୁମ ନିକଟକୁ ଯାଇଥିଲେ । ମୋ ବିଶ୍ୱାସ ଥିଲା ତୁମେ ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯିବ । ମାତ୍ର ତୁମର ମୂର୍ଖତା ମୋତେ ଇନ୍ଦ୍ରଙ୍କ ନିକଟରେ ଛୋଟ କରିଦେଲା ।" ଉତଙ୍କ ନିଜର ଭ୍ରମ ବୁଝିପାରି ଅତ୍ୟନ୍ତ ଲଜ୍ଜିତ ହେଲେ ।

## ଅଶ୍ୱମେଧ ଯଜ୍ଞ ଓ ସୁନା ନେଉଳ

କୁରୁକ୍ଷେତ୍ର ଯୁଦ୍ଧ ପରେ ଯୁଧିଷ୍ଠିର ହସ୍ତିନା ସିଂହାସନରେ ବସିଲେ । ବ୍ୟାସଦେବ ଓ ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଏକ ଅଶ୍ୱମେଧ ଯଜ୍ଞର ଆୟୋଜନ କରାଗଲା । ଏଥିପାଇଁ ପ୍ରଥମେ ଗୋଟିଏ ଶ୍ୟାମ ବର୍ଣ୍ଣର ଅଶ୍ୱ ବନ୍ଧା ଯାଇ ତହିଁରେ ଲେଖାଥିଲା, "ହସ୍ତିନାପୁରର ମହାରାଜାଧିରାଜ ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ କରୁଛନ୍ତି । ଯେଉଁ ଦେଶର ରାଜା ବା ମହାରାଜା ଯୁଧିଷ୍ଠିରଙ୍କ ଅଧୀନତା ସ୍ୱୀକାର କରିବାକୁ ଇଚ୍ଛା ପ୍ରକାଶ କରୁନାହାନ୍ତି, ସେମାନେ ଘୋଡ଼ାକୁ ବାନ୍ଧନ୍ତୁ ଓ ଯୁଦ୍ଧ କରି ନିଜର ଜୟ-ପରାଜୟ ପରୀକ୍ଷା କରି ନିଅନ୍ତୁ ।" ମହାବୀର ଅର୍ଜୁନ ଏହି ଘୋଡ଼ାର ରକ୍ଷକ ରୂପେ ବିଭିନ୍ନ ଦେଶ ଭ୍ରମଣ କରିବାରେ ବାହାରିଲେ । ଅର୍ଜୁନଙ୍କ ପରି ମହାଧନୁର୍ଦ୍ଧରଙ୍କ ସହିତ ଯୁଦ୍ଧ କରିବାକୁ କୌଣସି ରାଜା ସାହସ କରିପାରିଲେ ନାହିଁ । ଘୋଡ଼ା ତ୍ରିଗର୍ତ୍ତ ରାଜ୍ୟରେ ପହଞ୍ଚିବାରୁ ସେ ଦେଶର ରାଜା କେତୁବର୍ମା ଘୋଡ଼ାକୁ ବାନ୍ଧି ପକାଇଲେ । ଅର୍ଜୁନଙ୍କ ସହିତ କେତୁବର୍ମାଙ୍କର ଯୁଦ୍ଧ ହେଲା; ମାତ୍ର ଅଳ୍ପ ସମୟ ପରେ କେତୁବର୍ମା ଅଧୀନତା ସ୍ୱୀକାର କରି ଘୋଡ଼ାକୁ ଛାଡ଼ିଦେଲେ । ଏହିପରି ପ୍ରାଗଜ୍ୟୋତିଷପୁର, ସିନ୍ଧୁ, ମଣିପୁର ଆଦି କେତେକ ଦେଶରେ ଅର୍ଜୁନଙ୍କୁ କିଛି କିଛି ବାଧା ଦିଅଯାଇଥିଲା । ମାତ୍ର ସେ ସହଜରେ ସେମାନଙ୍କୁ ହଟାଇ ଦେଇ ହସ୍ତିନାପୁର ଲେଉଟି ଆସିଲେ । ଯଜ୍ଞ ଅଶ୍ୱ ଫେରିଆସିବା ଦେଖି ହସ୍ତିନାବାସୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ଯଥାରୀତି ଅଶ୍ୱମେଧ ଯଜ୍ଞ କାର୍ଯ୍ୟ ଶେଷହେଲା । ମହାରାଜା ଯୁଧିଷ୍ଠିର ନିମନ୍ତ୍ରଣ କରି ଆଣିଥିବା ରାଜା ଓ ମହାରଜାଙ୍କୁ ଆଦରରେ ବିଦାୟଦେଲେ । ସମସ୍ତେ ଯୁଧିଷ୍ଠିରଙ୍କୁ ପ୍ରଶଂସା କରି ନିଜ ନିଜ ରାଜ୍ୟକୁ ବାହୁଡ଼ିଗଲେ ।

ଅଶ୍ୱମେଧ ଯଜ୍ଞ ଶେଷ ହେବା ପରେ ପରେ ଏକ ଅଦ୍ଭୁତ ଘଟଣା ଘଟିଲା । ମଣ୍ଡପରେ ବହୁ ରାଜା, ରାଜପୁତ୍ର, ଋଷି, ବ୍ରାହ୍ମଣ ଓ ଅନ୍ୟ ଗଣମାନ୍ୟ ଲୋକ ଉପସ୍ଥିତ ଥିଲେ । ହଠାତ୍ ଗୋଟିଏ ନେଉଳ ଯଜ୍ଞ ସ୍ଥଳକୁ ଆସି ଯଜ୍ଞ ବେଦୀରେ ପାଉଁଶ ଉପରେ ଗଡ଼ିବାକୁ ଲାଗିଲା । ନେଉଳଟିର ଗୋଟିଏ ପାଖ ସୁନାପରି ଝଟକୁ ଥାଏ । ବିଚିତ୍ର ନେଉଳଟିକୁ ଦେଖି ସମସ୍ତେ ଭାବିଲେ, "ଏ ପବିତ୍ର ଯଜ୍ଞକୁ ନଷ୍ଟ କରିବା ପାଇଁ କୌଣସି ଦୁଷ୍ଟ ପ୍ରେତ ନିଶ୍ଚୟ ନେଉଳ ରୂପରେ ଏଠାକୁ ଆସିଛି ।"

ନେଉଳଟି ମଣ୍ଡପରେ ସମସ୍ତ ଲୋକଙ୍କୁ ଚାହିଁ କହିଲା, "ଦେଖୁଛି, ମହା ଆଡ଼ମ୍ବରରେ ଅଶ୍ୱମେଧ ଯଜ୍ଞ କରାଯାଇଛି । ବହୁ ଧନରତ୍ନ ଦାନ ସାଙ୍ଗକୁ ଦୁଃଖୀ ଦରିଦ୍ରମାନଙ୍କୁ ପେଟପୂରା ଖାଇବାକୁ ମଧ୍ୟ ଦିଆଯାଇଛି । କିନ୍ତୁ କୁରୁକ୍ଷେତ୍ରର ଅଳ୍ପ ଦୂରରେ ବାସ କରୁଥିବା ଜଣେ ଦରିଦ୍ର ବ୍ରାହ୍ମଣ ମୁଠାଏ ଛତୁ ଦାନକରି ଯେଉଁ ପୁଣ୍ୟ ଅର୍ଜନ କରିଥିଲେ, ତା ତୁଳନାରେ ଆପଣଙ୍କର ଏ ଆଡ଼ମ୍ବରପୂର୍ଣ୍ଣ ଯଜ୍ଞ ଅତି ତୁଚ୍ଛ ଅଟେ ।"

ମଣ୍ଡପରେ ବ୍ରାହ୍ମଣମାନେ ପଚାରିଲେ, "ହେ ନେଉଳ, ତୁମେ କିଏ ? କେଉଁଠୁ ଏଠାକୁ ଆସିଛ ? ଯେଉଁ ଯଜ୍ଞ ଅତି ବିଦ୍ୱାନ ବ୍ରାହ୍ମଣ, ଋଷି ଓ ପୁରୋହିତମାନଙ୍କ ଦ୍ୱାରା ପବିତ୍ର ଭାବରେ କରାଯାଇଛି, ତାକୁ ତୁମେ ତୁଚ୍ଛ ବୋଲି କହି ନିନ୍ଦା କରିବାକୁ ସାହସ କଲ କିପରି ? ଏପରି କହିବାର କାରଣ କଅଣ ?"

ସୁନାନେଉଳଟି ହସି ଦେଇ ନିର୍ଭୟରେ କହିଲା, "ତେବେ ଶୁଣନ୍ତୁ, ମହାରାଜ ଯୁଧିଷ୍ଠିରଙ୍କ ଯଜ୍ଞପ୍ରତି ମୋର ଆଦୌ ଈର୍ଷା ନାହିଁ । ମାତ୍ର ମୁଁ ଏତିକି ଜାଣିଲି ଯେ କୁରୁକ୍ଷେତ୍ରର ସେହି ଦରିଦ୍ର ବ୍ରାହ୍ମଣଙ୍କ ମୁଠାଏ ଛତୁ ତୁଳନାରେ ଏ ଯଜ୍ଞ କିଛି ନୁହେଁ । ମୁଁ ଯାହା ଆଖିରେ ଦେଖିଛି ତାକୁ ଅବିଶ୍ୱାସ କରିବି କିପିରି ? ମୁଠାଏ ମାତ୍ର ଛତୁ ଦେଇ ସେ ବ୍ରାହ୍ମଣ, ତାଙ୍କ ସ୍ତ୍ରୀ, ପୁଅ ଓ ବୋହୂ ସମସ୍ତେ ସ୍ୱର୍ଗକୁ ଚାଲିଗଲେ । ଏବେ କଥାଟି ଶୁଣନ୍ତୁ ।"

ନେଉଳ କହିଲା, "ଆପଣଙ୍କର ମହାଭାରତ ଯୁଦ୍ଧର ବହୁ ପୂର୍ବରୁ କୁରୁକ୍ଷେତ୍ରରେ ଜଣେ ଦରିଦ୍ର ବ୍ରାହ୍ମଣ ପରିବାର ବାସ କରୁଥିଲେ । ଦିନଯାକ ବିଲରୁ ଧାନ, ଯଅ, ମକ୍କା ଆଦି ଗୋଟାଇ ଯେତିକି ଶସ୍ୟ ପାଉଥିଲେ, ସେତକ ଖାଇ ପରିବାରର ସମସ୍ତେ ଜୀବନ ଧାରଣ କରୁଥିଲେ । ଯେଉଁଦିନ ଯେତିକି ଶସ୍ୟ ମିଳିଥାଏ, ତାହାକୁ ପରିବାରର ସମସ୍ତେ ଏକାଠି ବସି ସନ୍ଧ୍ୟାବେଳେ ଦିନକୁ ଥରେ ମାତ୍ର ଭୋଜନ କରନ୍ତି । ଯେଉଁଦିନ କିଛି ଖାଦ୍ୟ ମିଳିନଥାଏ, ସେଦିନ ସମସ୍ତେ ଉପବାସରେ କଟାନ୍ତି । ଏହିପରି ଅନେକ ଦିନ କଟିଗଲା । ଦେଶରେ ଦୁର୍ଭିକ୍ଷ ପଡ଼ିଲା । ବିଲରେ ଶସ୍ୟ ବୁଣା ହେଲା ନାହିଁ । ଫସଲ ଆସିବ କୁଆଡୁ ଯେ ବ୍ରାହ୍ମଣ ପରିବାର ବିଲରେ ବୁଲି ଶସ୍ୟ ସଂଗ୍ରହ କରିବେ ? ଅନେକ ଦିନ ସେମାନଙ୍କୁ ଉପବାସ ରହିବାକୁ ପଡ଼ିଲା । ଦିନକର କଥା; ସେମାନେ ବୁଲିବୁଲି କିଛି ଯଅ ସଂଗ୍ରହ କରି ଆଣିଲେ । ଘରେ ପହଞ୍ଚି ଯଅ ତକ ଚୁରି ଛତୁ ତିଆରି କଲେ । ସମସ୍ତେ ସନ୍ଧ୍ୟା ପ୍ରାର୍ଥନା ସାରିବା ପରେ ଛତୁ ତକ ସମାନ ଚାରିଭାଗ କରି ଖାଇବାକୁ ବସିଲେ । ଠିକ୍ ଏତିକିବେଳେ ଜଣେ ଭୋକିଲା ବ୍ରାହ୍ମଣ ଆସି ପହଞ୍ଚିଗଲେ । ହଠାତ୍ ଘରେ ଅତିଥି ପହଞ୍ଚିବାରୁ ସମସ୍ତେ ଖାଇବା ଛାଡ଼ି ବ୍ରାହ୍ମଣଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇ ଆସନରେ ବସାଇଲେ । ବ୍ରାହ୍ମଣ କହିଲେ, "ପ୍ରଭୁ, ମୁଁ ଅତି ପବିତ୍ର ଭାବରେ ଛତୁ ତକ ପ୍ରସ୍ତୁତ କରିଛି । ଆପଣ ଏହାକୁ ଗ୍ରହଣ କରନ୍ତୁ । ବ୍ରାହ୍ମଣ ତାଙ୍କ ଭାଗ ଛତୁ ତକ ଅତିଥିଙ୍କୁ ପରଶିଦେଲେ । ସେଇ ଅଳ୍ପ ମାତ୍ର ଛତୁରେ ବ୍ରାହ୍ମଣଙ୍କର ପେଟ ପୂରିଲା ନାହିଁ । ଏକଥା ଜାଣି ବ୍ରାହ୍ମଣୀ କହିଲେ, "ସ୍ୱାମୀ, ଅତିଥିଙ୍କୁ ମୋ ଭାଗ ଛତୁ ତକ ଦେଇ ସନ୍ତୁଷ୍ଟ କରନ୍ତୁ ।"

ବ୍ରାହ୍ମଣ କହିଲେ, "ନାଁ ମୁଁ ଏକଥା କରିପାରିବି ନାହିଁ । ତୁମକୁ ବଞ୍ଚାଇ ରଖିବା ମୋର କର୍ତ୍ତବ୍ୟ । ଦେଖୁଛି ତୁମ ଦେହରେ ହାଡ଼ ଚମ ବ୍ୟତୀତ ଆଉ କିଛି ନାହିଁ । ଦୀର୍ଘଦିନ ଉପାସ ପରେ ଆଜି ମୁଠାଏ ମାତ୍ର ଛତୁ ଦିଆଯାଇଛି । ତୁମକୁ ଭୋକରେ ରଖି ମୁଁ ଅତିଥି ସେବା କରିପାରିବି ନାହିଁ ।"

ବ୍ରହ୍ମଣୀ କହିଲେ, "ସ୍ତ୍ରୀ ଭାବରେ ମୁଁ ଆପଣଙ୍କ ସମସ୍ତ କାର୍ଯ୍ୟରେ ସାହାଯ୍ୟ କରିବା କଥା । ବୃଦ୍ଧ ବୟସରେ ଆପଣ ଭୋକର କଷ୍ଟ ସହି ନିଜର ଆହାରକୁ ଅତିଥିଙ୍କୁ ଦେଇପାରିଲେ, ତେଣୁ ମୋ ଖାଦ୍ୟତକ ଅତିଥିଙ୍କୁ ଦେଇ ଆପଣଙ୍କ ଅଧାକାମକୁ ପୂରା କରିବାର ଗୌରବ ମୋତେ ପ୍ରଦାନ କରନ୍ତୁ ।"

ବ୍ରାହ୍ମଣ ସ୍ତ୍ରୀଙ୍କ ଭାଗ ଛତୁତକ ଅତିଥିଙ୍କୁ ଦେଲେ । ମାତ୍ର ଅତିଥି ସେତକ ଖାଇ ମଧ୍ୟ ସନ୍ତୁଷ୍ଟ ହେଲାପରି ଜଣାଗଲା ନାହିଁ ।

ଅତିଥିଙ୍କୁ ସନ୍ତୁଷ୍ଟ କରି ପାରିନଥିବାରୁ ବ୍ରହ୍ମଣ ଖୁବ୍ ଦୁଃଖିତ ହେଉଥିବା ଲକ୍ଷ୍ୟ କରି ତାଙ୍କ ପୁଅ କହିଲା, "ବାପା, ଆପଣ ଅତିଥି ଚର୍ଚ୍ଚାରେ ସୁଖୀ ହୋଇପାରି ନାହାନ୍ତି । ଆପଣଙ୍କୁ ଆନନ୍ଦ ଦେବା ମୋର କର୍ତ୍ତବ୍ୟ । ଏଣୁ ପ୍ରାର୍ଥନା କରୁଛି ମୋ ଭାଗ ଛତୁତକ ଅତିଥିଙ୍କୁ ଦେଇ ସନ୍ତୁଷ୍ଟ କରନ୍ତୁ ।"

ବ୍ରାହ୍ମଣ କହିଲେ, "ବାବୁ, ପୁଅ ଯେତେ ବଡ଼ ହେଲେ ମଧ୍ୟ ବାପ ମାଆଙ୍କ ନିକଟରେ ସେ ପିଲା । ମୁଁ ତ ବୁଢ଼ା ହେଲଣି । ତେଣୁ ମୋର ଭୋକ ମରିଗଲାଣି । ପିଲାମାନେ ଭୋକ ସମ୍ଭାଳି ପାରନ୍ତି ନାହିଁ । ମୁଁ କଦାପି ତୋ କଥା ଗ୍ରହଣ କରିପାରିବି ନାହିଁ ।"

ପୁଅ କହିଲା, "ବୃଦ୍ଧାବସ୍ଥାରେ ଆପଣଙ୍କୁ ଖୁଆଇ ପିଆଇ ସୁଖରେ ରଖିବା ମୋର କର୍ତ୍ତବ୍ୟ । ତେଣୁ ମୋ ଭାଗ ଛତୁ ମଧ୍ୟ ଆପଣଙ୍କର । ଏଣୁ ପ୍ରାର୍ଥନା କରୁଛି ଏତକ ମଧ୍ୟ ଅତିଥିଙ୍କୁ ପ୍ରଦାନ କରନ୍ତୁ ।"

ବ୍ରାହ୍ମଣ କହିଲେ, "ତୋ ପରି ପୁଅ ପାଇ ମୁଁ ଆଜି ନିଜକୁ ଧନ୍ୟ ମନେକରୁଛି ।" ସେ ପୁଅର ଭାଗଟି ଅତିଥିଙ୍କୁ ଖୁଆଇ ଦେଲେ । ତିନିଜଣଙ୍କ ଖାଦ୍ୟତକ ଖାଇ ମଧ୍ୟ ଅତିଥିଙ୍କ ପେଟ ପୂରିଲା ନାହିଁ ଦେଖି ବ୍ରାହ୍ମଣ ଚିନ୍ତିତ ହୋଇପଡ଼ିଲେ ।

ଶ୍ୱଶୁରଙ୍କ ମନକଥା ବୁଝିପାରି ବୋହୂ କହିଲା, "ମୁଁ ମଧ୍ୟ ମୋ ଭାଗ ଛତୁତକ ଅତିଥିଙ୍କୁ ଦେବା ପାଇଁ ଅନୁରୋଧ କରୁଛି ।"

ବୋହୂଠାରୁ ଏପରି ଶୁଣି ବ୍ରାହ୍ମଣଙ୍କ ମୁହଁ ବିରସ ଦିଶିଲା । ସେ କହିଲେ, "ଯଦି ମୁଁ ତୋ କଥାରେ ରାଜି ହୁଏ, ତେବେ ମୋତେ ସମସ୍ତେ ଅତି ନିଷ୍ଠୁର ଓ ଅବିବେକୀ ବୋଲି କହିବେ । ତୋ ଶୁଖିଲା ମୁହଁ ଦେଖି ମୁଁ ଧୈର୍ଯ୍ୟ ଧରିପାରିବି ନାହିଁ ।"

ବୋହୂ ବାରମ୍ବାର ଅନୁରୋଧ କରି କହିଲା, "ଆପଣମାନେ ଅତିଥି ଚର୍ଚ୍ଚା କରି ଯେଉଁ ପୁଣ୍ୟ ଅର୍ଜନ କରିଛନ୍ତି, ମୋତେ ସେଥିରୁ ବଞ୍ଚିତ କରନ୍ତୁ ନାହିଁ ବାପା । ଅତିଥି ସନ୍ତୁଷ୍ଟ ହେଲେ ମୋର ଖାଲି ପେଟ ପୂରି ଉଠିଲାପରି ଲାଗିବ । ମୋ ଶୁଖିଲା ମୁହଁରେ ଆନନ୍ଦର ଲହରୀ ଖେଳିଯିବ ।"

ବ୍ରାହ୍ମଣଙ୍କର ଉପାୟ ନଥିଲା । ସେ ବୋହୂ ଭାଗର ଛତୁ ତକ ନେଇ ବ୍ରାହ୍ମଣଙ୍କୁ ପରଶି ଦେଲେ । ସେତକ ଖାଇବାପରେ ବ୍ରାହ୍ମଣ ଅତ୍ୟନ୍ତ ସନ୍ତୋଷ ଲାଭ କରି କହିଲେ, "ବ୍ରାହ୍ମଣ, ତୁମେ ଓ ତୁମ ପରିବାର ଧନ୍ୟ । କ୍ଷୁଧା ମନୁଷ୍ୟର ଜ୍ଞାନ, ବୁଦ୍ଧି, ବିବେକ ଓ ବିଚାର ଶକ୍ତିକୁ ନଷ୍ଟ କରିଦିଏ । ତୁମ ପରିବାରର ସମସ୍ତେ ଅତି ଭୟାନକ କ୍ଷୁଧାକୁ ଜୟ କରିପାରିଥିବାରୁ ମୁଁ ଆଶ୍ଚର୍ଯ୍ୟ ନହୋଇ ରହିପାରୁ ନାହିଁ । ସ୍ୱର୍ଗ ଜୟ କରିବା ତୁମ ପକ୍ଷରେ ଅତି ସାମାନ୍ୟ । ଦେଖ, ତୁମ କାର୍ଯ୍ୟରେ ପ୍ରୀତ ହୋଇ ଦେବତାମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେଣି । ତୁମେ ଓ ତୁମ ପରିବାର ଉତ୍କଟ କ୍ଷୁଧାର ଦାଉକୁ ସମ୍ଭାଳି ଅତି ପ୍ରଫୁଲ୍ଲ ମନରେ ଯେପରି ଅତିଥି ଚର୍ଚ୍ଚା କଲ ତାହାର ପୁଣ୍ୟ, ଆଡ଼ମ୍ବରପୂର୍ଣ୍ଣ ଅଶ୍ୱମେଧ ଯଜ୍ଞ ବା ରାଜସୂୟ ଯଜ୍ଞରୁ ମିଳେ ନାହିଁ । ଏହି ପୁଣ୍ୟର ଫଳ ସ୍ୱରୂପ ତୁମେ ପରିବାର ସହ ସ୍ୱର୍ଗକୁ ଯିବ । ଦେବରାଜ ଇନ୍ଦ୍ର ବିମାନ ପଠାଇସାରିଲେଣି । ଶୀଘ୍ର ପ୍ରସ୍ତୁତ ହୋଇଯାଅ । ମୁଁ ଭିକାରୀ ବ୍ରାହ୍ମଣ ନୁହେଁ । ସ୍ୱୟଂ ଧର୍ମଦେବତା । ଛଦ୍ମ ବେଶରେ ତୁମକୁ ପରୀକ୍ଷା କରିବା ପାଇଁ ଆସିଥିଲି । ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ ।"

ବ୍ରାହ୍ମଣ ପରିବାର ବିମାନରେ ବସି ସ୍ୱର୍ଗକୁ ଚାଲିଗଲେ । ନେଉଳଟି କହିଲା, "ମୁଁ ସେହି ବ୍ରାହ୍ମଣଙ୍କ ଘର ପାଖରେ ରହୁଥିଲି । ତାଙ୍କ ଘରୁ ଅପୂର୍ବ ସୁଗନ୍ଧ ଭାସି ଆସୁଥାଏ, ମୁଁ ସେହି ସୁଗନ୍ଧରେ ମୋହିତ ହୋଇ ଘର ଭିତରକୁ ପଶିଗଲି । ଆନନ୍ଦରେ ମୋ ମନ ଉଚ୍ଛନ୍ନ ହୋଇ ଉଠୁଥାଏ । ଅତିଥି ଭୋଜନ କରୁଥିବା ସ୍ଥାନରେ ଅଳ୍ପ କିଛି ଛତୁ ଚୂନା ବିଞ୍ଚି ଯାଇଥାଏ । କେଜାଣି କାହିଁକି ମୁଁ ସେ ଚୂନା ଉପରେ ଗଡ଼ିବାକୁ ଲାଗିଲି । ସଙ୍ଗେ ସଙ୍ଗେ ମୋ ମୁଣ୍ଡଟି ଓ ଦେହର ଗୋଟିଏ ପଟ ସୁନା ରଙ୍ଗର ହୋଇଗଲା । ଆର ପଟଟି ସେହିପରି କରିବା ପାଇଁ ମୁଁ ପୁଣି ଗଡ଼ିବାରେ ଲାଗିଲି ମାତ୍ର ସେଠାରେ ଆଉ ଅଧିକ ଛତୁ ଚୂନା ନଥିବାରୁ କିମ୍ବା ଅନ୍ୟ କୌଣସି କାରଣରୁ ମୋ ଦେହର ଅନ୍ୟ ପଟଟିର କୌଣସି ପରିବର୍ତ୍ତନ ହେଲା ନାହିଁ । ସେଥିପାଇଁ ମୋ ମନରେ ଗଭୀର ଦୁଃଖ । ଆରପଟଟି ସୁନା କରିବା ପାଇଁ ମୁଁ ବାରମ୍ବାର ଚେଷ୍ଟା କରିଆସୁଛି । ଏପରିକି ଯେକୌଣସି ସ୍ଥାନରେ ବଡ଼ ବଡ଼ ଯଜ୍ଞ ହେଉଥିବାର ଶୁଣିଲେ ମୁଁ ସେଠାକୁ ଯାଇ ଯଜ୍ଞ ବେଦୀର ବିଭିନ୍ନ ସ୍ଥାନରେ ଗଡୁଛି । ହେଲେ ମୋ ଆଶା ଏ ଯାଏ ପୂର୍ଣ୍ଣ ହୋଇ ପାରିନାହିଁ । ଯୁଧିଷ୍ଠିର ମହାରାଜ ଅଶ୍ୱମେଧ ଯଜ୍ଞ କରୁଥିବା ସମ୍ବାଦ ଶୁଣି ବଡ଼ ଆନନ୍ଦରେ ଏଠାକୁ ଧାଇଁ ଆସିଥିଲି । ଯଜ୍ଞ ସ୍ଥାନରେ ଚାରିଆଡ଼େ ବୁଲିଲି । ମାତ୍ର ଦୁଃଖର କଥା, ମହାରାଜାଙ୍କ ଅଶ୍ୱମେଧ ଯଜ୍ଞ ସେହି ଦରିଦ୍ର ବ୍ରାହ୍ମଣଙ୍କ ସାମାନ୍ୟ ମୁଠାଏ ଛତୁ ଦାନର ମହିମା ସହିତ ତୁଳନା କରିବାର ନୁହେଁ ବୋଲି ଏବେ ଅନୁଭବ କରୁଛି ।"

ଏତିକି କହିବା ପରେ ନେଉଳଟି ଅଦୃଶ୍ୟ ହୋଇଗଲା ।

## ନେଉଳର ପ୍ରକୃତ ରୂପ

ମହାବୀର ପର୍ଶୁରାମଙ୍କ ପିତାଙ୍କ ନାମ ଜମଦଗ୍ନି । ସେ ଜଣେ ଆସାଧାରଣ ତପସ୍ୱୀ ଥିଲେ । ତପ ବଳରେ ସେ ଅସାଧ୍ୟ ସାଧନ କରିପାରୁଥିଲେ । ଥରେ ଏକ ଘଟଣାରେ ଜମଦଗ୍ନି ଧର୍ମଦେବତାଙ୍କ ଉପରେ ଭୟଙ୍କର ରାଗିଗଲେ ଓ ସଂଗେ ସଂଗେ ଅଭିଶାପ ଦେଇ କହିଲେ, "-ହେ ଧର୍ମ, ତୁମେ ଏକ ନେଉଳ ରୂପ ଧାରଣ କରି ବୁଲିବ । ମନେରଖ, ଧର୍ମସ୍ଥାନ, ଧର୍ମକାର୍ଯ୍ୟର ନିନ୍ଦା କଲେ ତୁମକୁ ନେଉଳ ଜନ୍ମରୁ ମୁକ୍ତି ମିଳିବ ।" ଧର୍ମଦେବ ନେଉଳ ରୂପ ଧରି ବିଭିନ୍ନ ସ୍ଥାନରେ ବୁଲିବାକୁ ଲାଗିଲେ । ସେ ଧର୍ମସ୍ଥାନ, ଯଜ୍ଞ ଆଦିର ନିନ୍ଦା ଗାଇବାରେ ଲାଗିଥାନ୍ତି । ଶେଷରେ ସେ ମହାରାଜ ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞକୁ ମଧ ନିନ୍ଦାକଲେ । ଯୁଧିଷ୍ଠିର ସ୍ୱୟଂ ଧର୍ମଙ୍କ ଅବତାର ହୋଇଥିବାରୁ ନେଉଳରୂପ ଧରିଥିବା ଧର୍ମଦେବତା ସଂଗେ ସଂଗେ ଅଭିଶାପମୁକ୍ତ ହୋଇ ସ୍ୱର୍ଗକୁ ଚାଲିଗଲେ ।

## ଯୁଧିଷ୍ଠିରଙ୍କ ରାଜ୍ୟ ଶାସନ

ଯୁଧିଷ୍ଠିର ହସ୍ତିନାର ରାଜ ସିଂହାସନରେ ବସିଲେ । ଶତ୍ରୁ ଦମନ କରିବା କ୍ଷତ୍ରିୟର କର୍ତ୍ତବ୍ୟ ହେଲେ ମଧ ପାଣ୍ଡବମାନେ ନିଜର ଭାଇ, ବନ୍ଧୁ, କୁଟୁମ୍ବ ଓ ଗୁରୁଜନମାନଙ୍କୁ ହତ୍ୟାକରି ଯୁଦ୍ଧ ଜୟ କରିଥିବାରୁ ସେମାନଙ୍କ ମନରେ ସୁଖଶାନ୍ତି ନଥିଲା । ଯୁଦ୍ଧ ଆରମ୍ଭ ସମୟରେ ଅର୍ଜୁନ ନିଜର ଆତ୍ମୀୟ ସ୍ୱଜନଙ୍କୁ ହତ୍ୟା ନକରିବା ପାଇଁ ଅତି ଦୃଢ଼ ଭାବରେ ଶ୍ରୀକୃଷ୍ଣଙ୍କୁ କହିଥିଲେ । ମାତ୍ର ଶ୍ରୀକୃଷ୍ଣ କ୍ଷତ୍ରିୟର ଧର୍ମ ଓ କର୍ତ୍ତବ୍ୟ ବିଷୟରେ ବହୁ ଯୁକ୍ତି ତର୍କ କରି ଶେଷରେ ତାଙ୍କୁ ଯୁଦ୍ଧ କରିବାକୁ ରାଜି କରାଇଲେ । ମାତ୍ର ଅର୍ଜୁନଙ୍କ ଅନୁମାନ ଶେଷରେ ସତ୍ୟରେ ପରିଣତ ହେଲା । ପାଣ୍ଡବମାନେ ଦୀର୍ଘ ଛତିଶ ବର୍ଷ ଶାସନ କରିଥିଲେ ଓ ରାଜ୍ୟରେ ସୁଖଶାନ୍ତି ବିରାଜୁଥିଲା ସତ; ମାତ୍ର ପାଣ୍ଡବମାନେ ଯେଉଁ ସୁଖଶାନ୍ତି ଚାହୁଁଥିଲେ ତାହା ସେମାନେ ପାଇ ପାରିନଥିଲେ ।

ରାଜ୍ୟ ଶାସନର ପ୍ରଥମ କେତେବର୍ଷ ପାଣ୍ଡବମାନେ ମହାରାଜ ଧୃତରାଷ୍ଟ୍ରଙ୍କ ପରାମର୍ଶ ନେଇଥିଲେ । ଯୁଧିଷ୍ଠିର ଭାଇମାନଙ୍କୁ ପାଖରେ ବସାଇ କହିଲେ, "ଧୃତରାଷ୍ଟ୍ର ବର୍ତ୍ତମାନ ଗଭୀର ଶୋକରେ ବୁଡ଼ିରହିଛନ୍ତି । ମାତା ଗାନ୍ଧାରୀଙ୍କ ଅବସ୍ଥା ଆହୁରି ଶୋଚନୀୟ । ଶହେ ପୁଅଙ୍କୁ ହରାଇ ଥିବା ପିତାମାତାଙ୍କ ମନର ଅବସ୍ଥା କିଏ ବା ବର୍ଣ୍ଣନା କରିପାରିବ ? ତେଣୁ ଆମେ ସମସ୍ତେ ସେ ଦୁହିଁଙ୍କ ସେବାରେ ଏପରି ମନ ପ୍ରାଣ ଢାଳି ଦେବା ଯେପରି ସେ ଧୀରେ ଧୀରେ ସମସ୍ତ ଦୁଃଖ ଭୁଲିଯିବେ । ତାଙ୍କ ପୁଅମାନଙ୍କଠାରୁ ଅଧିକ ସେବାଯତ୍ନ କରିବା ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ । ମହାରାଜାଙ୍କ ପରାମର୍ଶ ଅନୁସାରେ କୁନ୍ତୀ, ଦ୍ରୌପଦୀ, ସୁଭଦ୍ରା, ସଞ୍ଜୟ, ବିଦୁର ଆଦି ସମସ୍ତେ ଅନ୍ଧରାଜା ଓ ମାତା ଗାନ୍ଧାରୀଙ୍କ ସେବାରେ ଲାଗିପଡ଼ିଲେ ।

ପାଣ୍ଡବମାନଙ୍କ ଅକପଟ ସେବାରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଅତ୍ୟନ୍ତ ଖୁସିରେ ଦିନ କାଟୁଥାନ୍ତି । ମାତ୍ର ଭୀମଙ୍କ ଉପସ୍ଥିତି ଜାଣିଲେ ଗାନ୍ଧାରୀଙ୍କର ମହାଭାରତ ଯୁଦ୍ଧର ଭୟଙ୍କର ଦୃଶ୍ୟ ଓ ନିଜ ପୁତ୍ରମାନଙ୍କ ଶୋଚନୀୟ ମୃତ୍ୟୁ ଘଟଣା ଆପେ ଆପେ ମନେ ପଡ଼ିଯାଏ । ସେ ଅତ୍ୟନ୍ତ ମାନସିକ ଯନ୍ତ୍ରଣାରେ ଅସ୍ଥିର ହୋଇଉଠନ୍ତି । ଭୀମ ତାଙ୍କ ବ୍ୟବହାରରେ ଆଦୌ ତ୍ରୁଟି କରୁନଥିଲେ ମଧ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଭୀମଙ୍କୁ ଆଦୌ ଶ୍ରଦ୍ଧା କରିପାରୁ ନଥାନ୍ତି । ଏକଥା ଅନୁଭବ କଲାପରେ ଭୀମ କ୍ରମେ ବିରକ୍ତି ଭାବ ପ୍ରକାଶ କରିବାକୁ ଲାଗିଲେ । ଭାଇମାନଙ୍କ ଅଜ୍ଞାତରେ ନିଜର ସାଙ୍ଗମାନଙ୍କୁ କହିଲେ, "-ଜାଣିଛ, ମୋର ଏଇ ହାତରେ ମୁଁ କୌରବ ଶହେଭାଇଙ୍କୁ ଗୋଟି ଗୋଟି କରି ହତ୍ୟାକରିଛି ।"

ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ କାନକୁ କଥାଟି ଯାଏ । ସେମାନେ ଦୁଃଖ ଓ ଶୋକରେ ଅଧୀର ହୋଇପଡ଼ନ୍ତି । ତାଙ୍କୁ କିଛି ସୁଖ ଲାଗେ ନାହିଁ । ପାଣ୍ଡବମାନଙ୍କ ସକଳ ସେବା ଯତ୍ନକୁ ସେମାନେ ଦଣ୍ଡକ ମଧ୍ୟରେ ଭୁଲିଯାଆନ୍ତି । ଅନେକ ଦିନ ସହି ସହି ଶେଷକୁ ଧୃତରାଷ୍ଟ୍ର କହିଲେ, "କୁରୁବଂଶର ଧ୍ୱଂସ ପାଇଁ ମୁଁ ଏକୁଟିଆ ଦାୟୀ । ମୁଁ କାହାରି ପରାମର୍ଶ ଗ୍ରହଣ କରିନାହିଁ । ପୁତ୍ର ସ୍ନେହ ମୋତେ

ପାଗଳ କରିଦେଇଥିଲା । ବର୍ତ୍ତମାନ ସେଇ କଥା ଭାବି ମୁଁ ଅତ୍ୟନ୍ତ ଦୁଃଖ ପାଉଛି । ଏ ସଂସାର ମୋତେ ବିଷ ପରି ଲାଗିଲାଣି । ପାଣ୍ଡବମାନେ ମୋତେ ଯେଉଁ ସୁଖଶାନ୍ତି ଦେଇଛନ୍ତି, ଯେଉଁ ଅକୃତ୍ରିମ ସେବା ଯତ୍ନ କରିଛନ୍ତି, ତାହାର ତୁଳନା ନାହିଁ । ଏତେ କଥା ସତ୍ତ୍ୱେ ମୋ ମନରେ ଆଦୌ ଶାନ୍ତି ଆସୁନାହିଁ । ତେଣୁ ଭୋଗରେ ବୁଡ଼ିରହି ଆଉ ଅଧିକ ଦିନ ମୁଁ ଏ ରାଜପୁରୀରେ ରହିବାକୁ ଇଚ୍ଛା କରୁନାହିଁ ।"

## ଧୃତରାଷ୍ଟ୍ର ଓ ଯୁଧିଷ୍ଠିର

ଗାନ୍ଧାରୀଙ୍କ ସହିତ ବଣକୁ ଯିବା ପାଇଁ ସ୍ଥିର କରି ଧୃତରାଷ୍ଟ୍ର ଉପବାସରେ ରହିଲେ । ସେ ରାଜଭବନର କୌଣସି ଖାଦ୍ୟ ଗ୍ରହଣ କଲେ ନାହିଁ । ଏକଥା ଶୁଣି ଯୁଧିଷ୍ଠିରଙ୍କ ପ୍ରାଣ ବିକଳ ହୋଇଉଠିଲା ।

ଧୃତରାଷ୍ଟ୍ର କହିଲେ, "ବତ୍ସ ! ଦୀର୍ଘ ପନ୍ଦର ବର୍ଷ କାଳ ଆମେ ତୁମ ଆଦର ଯତ୍ନ ଲାଭ କରି ଅତ୍ୟନ୍ତ ଆନନ୍ଦରେ ଦିନ କଟାଇଲୁଣି । ଗାନ୍ଧାରୀ ନିଜର ଅସୀମ ଦୁଃଖ ସତ୍ତ୍ୱେ ପାଖେ ପାଖେ ରହି ମୋ ସେବା ଯତ୍ନରେ କେବେ ହେଲେ ତ୍ରୁଟି କରିନାହାନ୍ତି । କିନ୍ତୁ କଅଣ ହେବ ? ମୋ କଲା କର୍ମମାନ ମୋତେ ଯନ୍ତ୍ରଣାରେ ଅସ୍ଥିର କରିପକାଉଛି । ମୋର ଗର୍ବୀ ଓ ଉଦ୍ଧତ ପୁତ୍ରମାନେ ଅନ୍ୟର କୁଶିକ୍ଷାରେ ପଡ଼ି ତୁମ୍ଭମାନଙ୍କୁ ଉଚିତ ପ୍ରାପ୍ୟ ନଦେଲେ ନାହିଁ, ଅଧିକନ୍ତୁ ଦ୍ରୌପଦୀଙ୍କୁ ଯେଉଁ ଅପମାନ ଦେଲେ, ସେହି ପାପର ଫଳ ସ୍ୱରୂପ ଗୋଟି ଗୋଟି ହୋଇ ଜୀବନ ଦେଲେ । ସେମାନେ ଯୁଦ୍ଧରେ ମୃତ୍ୟୁ ବରଣ କରିଥିବାରୁ ସମସ୍ତେ ସ୍ୱର୍ଗକୁ ଚାଲିଗଲେଣି । ମୋତେ ଏ ରାଜପୁରୀ ଓ ରାଜଭୋଗ ଆଉ ସୁଖ ଲାଗୁନାହିଁ । ବର୍ତ୍ତମାନଠାରୁ ମୁଁ ଗାନ୍ଧାରୀଙ୍କ ସହିତ ଅରଣ୍ୟରେ ଆଶ୍ରମ ଜୀବନ କଟାଇବା ପାଁଇ ନିଷ୍ପତ୍ତି ନେଇସାରିଛି । ଆମର ପୂର୍ବ ପୁରୁଷମାନେ ଜୀବନର ଅନ୍ତିମ ସମୟତକ ଅରଣ୍ୟରେ କଟାଇଥିବା କଥା ତୁମକୁ ଅଜଣା ନାହିଁ । ଏ ବୃଦ୍ଧ ବୟସରେ ଆମେ ସେଇ ଆଦର୍ଶ ଗ୍ରହଣ କରିବା ହିଁ ଉଚିତ ହେବ । ଏଥିପାଇଁ ତୁମେ ଆମକୁ ଆନନ୍ଦରେ ଅନୁମତି ଦିଅ ।"

ଯୁଧିଷ୍ଠିର ଅତ୍ୟନ୍ତ ଦୁଃଖିତ ହୋଇ କହିଲେ, "ମହାରାଜ, ଆପଣ ଉପବାସ କରି ମାଟି ଉପରେ ଖାଲି ଦେହରେ ଶୋଉଥିବା କଥା ମୁଁ ବା ମୋର ଭାଇମାନେ ଆଦୌ ଜାଣି ନାହୁଁ । ଆପଣଙ୍କ ଦୁଃଖର ସୀମା ନାହିଁ । କଅଣ କହି ଆପଣଙ୍କୁ ବୋଧ କରିହେବ ? ମୁଁ ରାଜାହୋଇ ମଧ୍ୟ ଦିନକ ପାଇଁ ଶାନ୍ତି ପାଇ ପାରୁନାହିଁ । ମୋର ଆଶା ମୋତେ ଘୋର ପାପ ଭିତରକୁ ଟାଣି ନେଇଛି । ବର୍ତ୍ତମାନ ଆପଣଙ୍କ ପୁତ୍ର ଯୁଯୁତ୍ସୁଙ୍କୁ ଏ ରାଜ ଗାଦି ଅର୍ପଣ କରନ୍ତୁ କିମ୍ବା ଅନ୍ୟ ଯେକୌଣସି ବ୍ୟକ୍ତିଙ୍କୁ ରାଜା କରିବା ପାଇଁ ପ୍ରସ୍ତାବ ଦିଅନ୍ତୁ । ନଚେତ୍ ଆପଣ ନିଜେ ଦାୟିତ୍ୱ ବହନ କରି ପ୍ରଜା ପାଳନ କରନ୍ତୁ । ମୋତେ ରାଜା ବୋଲି ଆଦୌ ସମ୍ବୋଧନ କରନ୍ତୁ ନାହିଁ । ବନବାସ କରିବା ପାଇଁ ମୋତେ ଅନୁମତି ମାଗୁଛନ୍ତି । ଆପଣଙ୍କ ପରି ମହାନ୍ ପୂଜ୍ୟ ବ୍ୟକ୍ତିଙ୍କୁ ଅନୁମତି ଦେବାକୁ ମୁଁ କିଏ ? ଜୀବନ ଥିବା ଯାଏ ଯେ ଆପଣଙ୍କ ଅନୁମତି ଭିକ୍ଷା କରିବା କଥା, ସେ ପୁଣି ଆପଣଙ୍କୁ ଅନୁମତି ଦେବ ? ଭାଗ୍ୟ ଆମ୍ଭମାନଙ୍କୁ ଏ ଦାରୁଣ ଦୁଃଖ ଦେଇଛି । ଆମେ ସମସ୍ତେ ଆପଣଙ୍କ ସନ୍ତାନ । ଗାନ୍ଧାରୀ ଓ କୁନ୍ତୀ ଉଭୟ ଆମର ଜନନୀ । ଯଦି ଆପଣ ବଣକୁ ଯିବାକୁ ଶେଷ ନିଷ୍ପତ୍ତି ଗ୍ରହଣ କରନ୍ତି, ତେବେ ମୁଁ ନିଶ୍ଚୟ ଏ ରାଜଭୋଗ ତ୍ୟାଗକରି ଆପଣଙ୍କ ପଛେ ପଛେ ବଣକୁ ଯିବି । ମୋତେ ଛାଡ଼ି ଆପଣ ବଣକୁ ଗଲେ ମୁଁ ଆଦୌ ଶାନ୍ତିରେ ରହିପାରିବି ନାହିଁ । ସେଠାରେ ଆପଣଙ୍କ ପାଖେ ପାଖେ ରହି ସେବା କରିବାରେ ହିଁ ମୋତେ ପ୍ରକୃତ ଆନନ୍ଦ ମିଳିବ । ମୁଁ ପାଦ ତଳେ ପଡ଼ି ପ୍ରାର୍ଥନା କରୁଛି ଆମର ସବୁ ଦୋଷ କ୍ଷମା କରିଦିଅନ୍ତୁ । ଆମ୍ଭମାନଙ୍କୁ ଛାଡ଼ି ଏ ବୟସରେ ଆପଣ କୁଆଡ଼େ ଯାଆନ୍ତୁ ନାହିଁ ।"

ଧୃତରାଷ୍ଟ୍ର ସବୁ ଶୁଣି କହିଲେ, "ଧର୍ମପୁତ୍ର, ଅରଣ୍ୟରେ ଶେଷ ଜୀବନ କଟାଇବା ପାଇଁ ମୁଁ ନିଷ୍ପତ୍ତି କରିସାରିଛି । ବହୁଦିନ ଧରି ତୁମ୍ଭେମାନେ ଆମର ଅଶେଷ ସେବାଯତ୍ନ କରିଛ । ଅବୁଝା ନହୋଇ ମୋର ଶେଷ ଇଚ୍ଛା ପୂରଣରେ ବାଧା ଦିଅନାହିଁ ।"

ଧୃତରାଷ୍ଟ୍ର, କୃପାଚାର୍ଯ୍ୟ ଓ ବିଦୁରଙ୍କୁ ନିଜ ମନକଥା ଜଣାଇବା ପରେ ପରେ ଅଚେତ ହୋଇପଡ଼ିଲେ । ଯୁଧିଷ୍ଠିର ଦେଖିଲେ, ଯେଉଁ ଅସୀମ ବଳଶାଳୀ, ମହା ପରାକ୍ରମୀ ଧୃତରାଷ୍ଟ୍ର ଲୁହାରେ ତିଆରି ଭୀମ ମୂର୍ତ୍ତିକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ, ସେହି ମହାବୀର ଆଜି ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଛନ୍ତି । ତାଙ୍କ ପୂରିଲା ଦେହର ହାଡ଼ ସବୁ ଗଣି ହୋଇଯାଉଛି । ସେ କଥା କହୁ,କହୁ ଅଚେତ ହୋଇପଡ଼ୁଛନ୍ତି । ନିଜର ପୂଜ୍ୟ ଜ୍ୟେଷ୍ଠ ପିତାଙ୍କର ଏ ଶୋଚନୀୟ ଅବସ୍ଥା ଦେଖି ଯୁଧିଷ୍ଠିର ବିଚଳିତ ହୋଇଉଠିଲେ । ପାଣି ସିଞ୍ଚି ଅତି କଷ୍ଟରେ ତାଙ୍କୁ ଚେତା କରାଇଲେ । ଧୀରେ ଧୀରେ ତାଙ୍କ ଦେହରେ ହାତ ବୁଲାଇ ଆଉଁଶିବାରେ ଲାଗିଲେ । ଚେତା ଫେରିପାଇବା ପରେ ଧୃତରାଷ୍ଟ୍ର ତାଙ୍କୁ କୋଳକରି କହିଲେ, "ବତ୍ସ, ତୋ ହାତ କେଡ଼େ କୋମଳ ଲାଗୁଛି ? ମୁଁ ଏବେ ତୋ ହାତର ସୁନ୍ଦର ସ୍ପର୍ଶରେ ଅପାର ଶାନ୍ତି ଅନୁଭବ କରୁଛି ।"

ଏହି ସମୟରେ ବ୍ୟାସଦେବ ସେଠାରେ ହଠାତ୍ ଉପସ୍ଥିତ ହୋଇ କହିଲେ, "ଯୁଧିଷ୍ଠିର, ଆଉ ଆପତ୍ତି ନକରି ବୃଦ୍ଧ ଧୃତରାଷ୍ଟ୍ରଙ୍କ ଅନ୍ତିମ ଇଚ୍ଛା ପୂର୍ଣ୍ଣକର । ସେ ପୁତ୍ର ଶୋକରେ ଅତ୍ୟନ୍ତ କାତର ହୋଇପଡ଼ିଛନ୍ତି । ବନବାସ କରି ଶେଷ ଜୀବନ କଟାଇବା ପାଇଁ ତାଙ୍କର ଇଚ୍ଛା, ଏଥିରେ ବାଧାଦେବା ଉଚିତ ନୁହେଁ ।"

ଯୁଧିଷ୍ଠିର ଗୁରୁ କୃପାଚାର୍ଯ୍ୟ ଓ ମହାମତି ବିଦୁରଙ୍କ ସହିତ ପରାମର୍ଶ କରି ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ବନବାସ ଯିବାରେ ଆଉ ଆପତ୍ତି କଲେ ନାହିଁ ।

## କୁନ୍ତୀଦେବୀଙ୍କ ବନଗମନ

ଧୃତରାଷ୍ଟ୍ର ଓ ଗାନ୍ଧାରୀ ବଣକୁ ଯିବା ପାଇଁ ପ୍ରସ୍ତୁତ ହେଲେ । ପ୍ରଜାମାନଙ୍କୁ ବହୁ ବୁଝାଇ ସେମାନଙ୍କ ମନ ପରିବର୍ତ୍ତନ କରିବାକୁ ଚେଷ୍ଟା କଲେ । ମାତ୍ର କିଛି ଫଳ ହେଲା ନାହିଁ । ମହାରାଜାଙ୍କ ବନଗମନ ଦୃଶ୍ୟ ଦେଖି ପ୍ରଜାକୁଳ ଅତ୍ୟନ୍ତ ବ୍ୟାକୁଳ ହୋଇ କ୍ରନ୍ଦନ କରିବାରେ ଲାଗିଲେ । ମହାରାଜା ଅତି ଦୁଃଖରେ ପ୍ରଜାମାନଙ୍କଠାରୁ ବିଦାୟ ନେଇ ପାଣ୍ଡବମାନଙ୍କୁ ବହୁ ଆଶୀର୍ବାଦ ଦେଲେ । କୁନ୍ତୀ ହାତଧରି ଗାନ୍ଧାରୀଙ୍କୁ ବାଟ କଢାଇ ନେଉଥାନ୍ତି । କିଛି ଦୂର ଯିବା ପରେ ଯୁଧିଷ୍ଠିର କହିଲେ, "ମା, ବଡ଼ବାପା ଓ ବଡ଼ ବୋଉଙ୍କୁ ବିଦାୟ ଦେଇ ତୁମେ ଏହିଠାରୁ ନଅରକୁ ଫେରିଯାଅ ।"

କୁନ୍ତୀ କହିଲେ, "ବାବୁ, ମୁଁ ମଧ୍ୟ ଏଇ ମୁହୂର୍ତ୍ତରୁ ଗାନ୍ଧାରୀଙ୍କ ସହିତ ବନବାସ କରିବି । ରାଜପୁରୀକୁ ଫେରିବା ଆଉ ମୋ ପକ୍ଷରେ ସମ୍ଭବ ନୁହେଁ । ଜୀବନରେ ଯେଉଁ ଭୁଲ କରିଛି ତାହାର ପ୍ରାୟଶ୍ଚିତ ପାଇଁ ମୁଁ ଅରଣ୍ୟରେ ରହି ତପସ୍ୟା କରିବି ଓ ମହାରାଜ ଧୃତରାଷ୍ଟ୍ର ଏବଂ ଦେବୀ ଗାନ୍ଧାରୀଙ୍କ ସେବା କରି ମୋର ଅନ୍ତିମ ଜୀବନ କଟାଇବି । କର୍ଣ୍ଣ ମୋର ପ୍ରଥମ ସନ୍ତାନ । ତା ପ୍ରତି ମୁଁ ଯେଉଁ ଅବିଚାର କରିଛି, ତାହା ସବୁବେଳେ ମୋର ମନକୁ ଅସ୍ଥିର କରିପକାଉଛଛି । ତୁମେ ନଅରକୁ ଫେରିଯାଅ । ସମସ୍ତଙ୍କ ପ୍ରତି ସର୍ବଦା ସ୍ନେହ ରଖି ଆନନ୍ଦରେ ରାଜ୍ୟ ଶାସନ କର ।"

ହଠାତ୍ କୁନ୍ତୀଙ୍କ ତୁଣ୍ଡରୁ ଏପରି କଥା ଶୁଣି ପାଣ୍ଡବମାନଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା । ଯୁଧିଷ୍ଠିର ବ୍ୟାକୁଳ ହୋଇ କହିଲେ, "ମା, ଶତ୍ରୁମାନଙ୍କୁ ମାରିବା ପାଇଁ ଆପଣ ଆମ ସମସ୍ତଙ୍କୁ ବାରମ୍ବାର ସାହସ ଓ ଉତ୍ସାହ ପ୍ରଦାନ କରିଛନ୍ତି । ଆପଣଙ୍କ ଆଦେଶ ପାଳନ କରି ରାଜ୍ୟ ଲାଭ କଲୁ । ଏତିକି ବେଳେ ଆମ୍ଭମାନଙ୍କୁ ଛାଡ଼ି ବନକୁ ଯିବା ଉଚିତ ହେବ ନାହିଁ ।"

ଭୀମ ଦୁଃଖିତ ହୋଇ କହିଲେ, "ମା, ତୁମର ଯଦି ଏପରି ଇଚ୍ଛା ଥିଲା, ତେବେ ଆମ୍ଭମାନଙ୍କୁ ଉତ୍ସାହ ଦେଇ ଭାରତକୁ ବୀର ଶୂନ୍ୟ କରିଦେଲ କାହିଁକି ? କାହିଁକି ଆମକୁ ବଣରୁ ରାଜବାଟୀକୁ ଆଣିଲ ? ଆମେ ବଣରେ ଜନ୍ମିଥିଲୁ । ବଣରେ ରହିଥିଲେ ଭଲ ହୋଇଥାନ୍ତା । ଯେ ସନ୍ୟାସିନୀ ହେବାର ଇଚ୍ଛା ପୋଷଣ କରିଥିଲା, ସେ ଏସବୁ କରାଇବାର ଉଦ୍ଦେଶ୍ୟ କଅଣ ? ପାଦ ଧରି ପ୍ରାର୍ଥନା କରୁଛି ଉଆସକୁ ଫେରିଆସ ମା ।"

କୁନ୍ତୀ କହିଲେ, "ମୋତେ କେହି ଭୁଲ ବୁଝ ନାହିଁ । ନିଜ ସୁଖ ବା ଆନନ୍ଦ ପାଇଁ ମୁଁ ତୁମ୍ଭମାନଙ୍କ ଦ୍ୱାରା ଯୁଦ୍ଧ କରାଇ ନଥିଲି । ପଶାଖେଳ ପରେ ମୁଁ ତୁମମାନଙ୍କ ମନର ଅବସ୍ଥା ଲକ୍ଷ୍ୟ କରିଛି । କୁରୁସଭା ମଧ୍ୟରେ ସତୀ ଦ୍ରୌପଦୀଙ୍କୁ ଯେଉଁ ଅପମାନ ଦିଆଗଲା, ତାହା କିଏ ବା ସହ୍ୟ କରି ପାରନ୍ତା ? ତେଣୁ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଅଣ୍ଟା ଭିଡ଼ିବା ପାଇଁ ମୁଁ ତୁମ୍ଭମାନଙ୍କୁ ଉତ୍ସାହ ଦେଇଥିଲି । ତୁମ ପରି ମହାବୀରମାନେ ଶତ୍ରୁ ନିକଟରେ ମୁଣ୍ଡ ନୁଆଇଁ ରହିବା ଠାରୁ ମୃତ୍ୟୁ କୋଟି ଗୁଣରେ ଭଲ । କେବଳ ଅନ୍ୟାୟର ପ୍ରତିବାଦ କରି ନ୍ୟାୟ ଓ ଧର୍ମ ସ୍ଥାପନ ପାଇଁ ମୋର ପ୍ରବଳ ଇଚ୍ଛାଥିଲା । ରାଜମାତା ହୋଇ ରାଜଭୋଗ କରିବା ପାଇଁ ମୁଁ କେବେହେଲେ ଆଗ୍ରହୀ ନଥିଲି । କିଛି ଦିନ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ସେବା କରି ମୁଁ ମୋ ସ୍ୱାମୀଙ୍କ ନିକଟକୁ ଚାଲିଯିବି । ସେ ମୋତେ ବହୁ ଦିନୁ ଅପେକ୍ଷା କରିଛନ୍ତି । କେହି ମୋତେ ବାଧା ଦିଅନାହିଁ । ସମସ୍ତେ ରାଜ୍ୟକୁ ଫେରିଯାଇ ଆନନ୍ଦରେ ପ୍ରଜା ପାଳନ କର ।"

କୁନ୍ତୀଙ୍କ ଆଖିରେ ଲୋତକର ଧାର । ସେ ପୁଅମାନଙ୍କ ସହିତ ଦ୍ରୌପଦୀଙ୍କୁ କୋଳ କରି ଆଶୀର୍ବାଦ କଲେ । ପାଣ୍ଡବମାନେ ମାତା କୁନ୍ତୀ, ମହାରାଜ ଧୃତରାଷ୍ଟ୍ର ଓ ଦେବୀ ଗାନ୍ଧାରୀଙ୍କଠାରୁ ବିଦାୟ ନେଇ ଅଶ୍ରୁପୂର୍ଣ୍ଣ ନୟନରେ ନଅରକୁ ଫେରିଆସିଲେ ।

କୁନ୍ତୀ, ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ସହିତ ବିଦୂର ଏବଂ ସଂଜୟ ମଧ୍ୟ ବନବାସ କରିବା ପାଇଁ ଗଲେ ।

## ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କ ଦେହତ୍ୟାଗ

ଦିନେ ମହର୍ଷି ବ୍ୟାସଦେବ କହିଲେ, "କୁରୁକ୍ଷେତ୍ର ଯୁଦ୍ଧରେ ମୃତ୍ୟୁବରଣ କରିଥିବା ବୀରମାନଙ୍କ ବିଧବା ପତ୍ନୀମାନଙ୍କ ମଧ୍ୟରୁ ଯେଉଁମାନେ ସ୍ୱର୍ଗକୁ ଯିବାକୁ ଇଚ୍ଛା କରନ୍ତି, ସେମାନେ ଗଙ୍ଗାରେ ଝାସ ଦେଲେ ସେମାନଙ୍କର ଇଚ୍ଛା ପୂରଣ ହେବ ।"

ବ୍ୟାସଦେବଙ୍କ କଥା ଶୁଣି ସମସ୍ତ ବିଧବା ନାରୀ ଗଙ୍ଗାରେ ଝାସ ଦେଇ ସ୍ୱର୍ଗକୁ ଚାଲିଗଲେ ।

ଅନେକ ଦିନ ବିତିଗଲା । କୁନ୍ତୀ, ଗାନ୍ଧାରୀ ଓ ଧୃତରାଷ୍ଟ୍ର କଠୋର ତପସ୍ୟା କରିବାରେ ଲାଗିଥାନ୍ତି । କ୍ରମେ ସେମାନଙ୍କର ଶରୀର ଅତ୍ୟନ୍ତ ଦୁର୍ବଳ ହୋଇଆସିଲା । ଚାଲିବାକୁ ଶକ୍ତି ପାଇଲା ନାହିଁ । ଦିନେ ତିନିହେଁ ଗଂଗାନଦୀରେ ସ୍ନାନ କରି ଫେରୁଥିବା ବେଳେ ଦେଖିଲେ ଅରଣ୍ୟରେ ହଠାତ୍ ନିଆଁ ଲାଗି ଯାଇଛି । ଚାହୁଁ ଚାହୁଁ ସେହି ବନାଗ୍ନି ପ୍ରବଳ ବେଗରେ ମାଡ଼ି ଆସିବାରେ ଲାଗିଲା । ନିମିଷକ ମଧ୍ୟରେ ସେହି ନିଆଁ ଚାରିଆଡ଼େ ବ୍ୟାପିଗଲା । ଅସଂଖ୍ୟ ପଶୁପକ୍ଷୀ ପୋଡ଼ିହୋଇ ମରିବାରେ ଲାଗିଲେ । ହଠାତ୍ ଦଉଡ଼ି ଯାଇ ଆତ୍ମରକ୍ଷା କରିବାର ଶକ୍ତି କୁନ୍ତୀ, ଗାନ୍ଧାରୀ ଓ ଧୃତରାଷ୍ଟ୍ର କାହାରି ହେଲେ ନଥିଲା । ସେମାନ ସ୍ଥିର ହୋଇ ଠିଆ ହୋଇଗଲେ । ଅନ୍ୟ କିଛି କରିବାର ଶକ୍ତି ମଧ୍ୟ ସେମାନଙ୍କର ନଥିଲା । ସେମାନେ ଭାବିନେଲେ, "ଏ ଅଗ୍ନିଦେବ ନୁହନ୍ତି । ଆମ୍ଭମାନଂକୁ ମୁକ୍ତି ଦେଇ ସ୍ୱର୍ଗକୁ ପଠାଇବା ପାଇଁ ସ୍ୱୟଂ ମୃତ୍ୟୁ ଏପରି ଉଗ୍ର ରୂପ ଧରି ଆମ ଆଗରେ ଉପସ୍ଥିତ ହୋଇଛନ୍ତି ।" ତା' ପରେ ସେମାନେ ସ୍ଥିର ଭାବରେ ବସି ରହି ତପସ୍ୟା କରିବାରେ ଲାଗିଲେ । ଅଳ୍ପ ସମୟ ମଧ୍ୟରେ ତିନିଜଣଙ୍କର ଦେହ ପୋଡ଼ିଯାଇ ମୁଠାଏ ପାଉଁଶରେ ପରିଣତ ହୋଇଗଲା । ନାରଦ ଯୁଧିଷ୍ଠିରଙ୍କୁ ଏ ସଂବାଦ ଦେଇ କହିଲେ, "-ନିଜ ଇଚ୍ଛାରେ ଦେହତ୍ୟାଗ କରିଥିବା ଲୋକମାନଙ୍କ ପାଇଁ ଦୁଃଖ କରିବା ଅନୁଚିତ ।"

ପାଣ୍ଡବମାନେ ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଲେ । ସଂଜୟ ମହାରାଜ ଧୃତରାଷ୍ଟ୍ରଙ୍କ ଚକ୍ଷୁ ସ୍ୱରୂପ ଥିଲେ । । ସେ ହିମାଳୟକୁ ଯାଇ ସନ୍ୟାସୀ ଭାବରେ ଶେଷ ଜୀବନ କଟାଇଲେ ।



କୁନ୍ତୀ ଓ ଗାନ୍ଧାରୀ

## ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ

ମହାରାଜ ଯଯାତି ଅସୁର ରାଜା ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା ଓ ଅସୁର ଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀଙ୍କୁ ବିବାହ କରିଥିଲେ । ଶର୍ମିଷ୍ଠା କ୍ଷତ୍ରିୟ ଓ ଦେବଯାନୀ ବ୍ରାହ୍ମଣ କନ୍ୟା ଥିଲେ । ରାଣୀ ଶର୍ମିଷ୍ଠା ଦ୍ରୁହ୍ୟୁ, ଅନୁ ଓ ପୁରୁ ନାମରେ ତିନି ଗୋଟି ପୁତ୍ର ଜନ୍ମ କରିଥିଲେ । ରାଣୀ ଦେବଯାନୀଙ୍କର ମଧ୍ୟ ଯଦୁ ଓ ତର୍ବସୁ ନାମରେ ଦୁଇ ପୁତ୍ର ଥିଲେ । ଯଦୁ ଅତ୍ୟନ୍ତ ପ୍ରତାପଶାଳୀ ରାଜା ଥିବାରୁ ତାଙ୍କ ପରେ ତାଙ୍କ ବଂଶରେ ଯେଉଁମାନେ ରାଜତ୍ୱ କଲେ, ସେମାନଙ୍କୁ ଯଦୁ ବଂଶର ରାଜା ବୋଲି କୁହାଗଲା । ଯଦୁ ବଂଶରେ ବହୁ ରାଜା ରାଜପଣ କଲା ପରେ ଶ୍ରୀକୃଷ୍ଣ ଏହି ବଂଶର ଶେଷ ରାଜା ଥିଲେ ଓ ଶ୍ରୀକୃଷ୍ଣଙ୍କ ସମୟରେ ଯଦୁ ବଂଶ ସମ୍ପୂର୍ଣ୍ଣ ଧ୍ୱସ ହୋଇଥିଲା ।

ଦ୍ୱାରିକାରେ ଶ୍ରୀକୃଷ୍ଣ ଛତିଶ ବର୍ଷ କାଳ ସୁଖରେ ରାଜତ୍ୱ କରିଥିଲେ ତାଙ୍କ ରାଜତ୍ୱ କାଳରେ ଯଦୁବଂଶ ଭୋଜ, ବୃଷ୍ଣି, ଅନ୍ଧକ ଆଦି ଅନେକ ଶାଖାରେ ବିଭକ୍ତ ହୋଇ ଯାଇଥିଲା । କ୍ରମେ ଏମାନେ ଧର୍ମ କର୍ମ ଭୁଲି ଅତ୍ୟନ୍ତ ଗର୍ବୀ ଓ ଉଦ୍ଧତ ହୋଇଉଠିଲେ । ବଡ଼ ସାନର ବିଚାର ଭୁଲି ନାନା ଅନ୍ୟାୟ କାର୍ଯ୍ୟରେ ଲିପ୍ତ ରହିଲେ । ଗୁରୁଜନ, ଦେବତା ଓ ମୁନିଋଷିମାନଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଦେଖାଇବା ତ ଦୂରର କଥା, ସେମାନଙ୍କୁ ଥଟ୍ଟା-ପରିହାସ କରିବାକୁ ମଧ୍ୟ କୁଣ୍ଠିତ ହେଲେ ନାହିଁ ।

ଦିନକର ଘଟଣା, ସାତଜଣ ଋଷି କୃଷ୍ଣ ଓ ବଳରାମଙ୍କ ନିକଟକୁ ଆସୁଥିଲେ । ସେତେବେଳକୁ ଦୁଷ୍ଟ ଯାଦବମାନେ ଶ୍ରୀକୃଷ୍ଣଙ୍କ ପୁଅ ଶାମ୍ବଙ୍କୁ ଏକ ନାରୀ ବେଶରେ ସଜାଇ ଖେଳୁଥାନ୍ତି । ଶାମ୍ବ ଠିକ୍ ଗର୍ଭବତୀ ସ୍ତ୍ରୀଟିଏ ପରି ଦେଖାଯାଉଥାନ୍ତି । ଋଷିମାନଙ୍କୁ ଦେଖି ଯାଦବମାନେ ଥଟ୍ଟା କରି ପଚାରିଲେ, "ହେ ମହର୍ଷିଗଣ, ଏ ସ୍ତ୍ରୀ ଲୋକର ଗର୍ଭରୁ ପୁଅ କି ଝିଅ କଅଣ ଜନ୍ମିବ ଦୟା କରି କହନ୍ତୁ ।" ଯାଦବମାନଙ୍କର ଏପରି ବ୍ୟବହାରରେ ଋଷିମାନେ ଅତ୍ୟନ୍ତ ରାଗି ଯାଇ କହିଲେ, "ତୁମ୍ଭମାନଙ୍କର ଭଲମନ୍ଦ ବିଚାର କରବାର ବୁଦ୍ଧି ନଷ୍ଟ ହୋଇଗଲାଣି । ଶୁଣ, ଏହାର ଗର୍ଭରୁ ପୁଅ ବା ଝିଅ ନୁହେଁ ଏକ ଲୁହାର ମୂଷଳ ଜନ୍ମ ହେବ ଏବଂ ସେହି ମୂଷଳ ସମୁଦାୟ ଯଦୁବଂଶକୁ ଧ୍ୱଂସ କରିଦେବ ।"

ଋଷିମାନେ କୃଷ୍ଣ ଓ ବଳରାମଙ୍କୁ ସାକ୍ଷାତ କରି ଫେରିଯିବା ବେଳେ ସମସ୍ତ ଘଟଣା ଜଣାଇଦେଲେ । ନିଜ ବଂଶର ଧ୍ୱଂସ ସମୟ ନିକଟ ହୋଇ ଆସିବା ଜାଣି କୃଷ୍ଣ ଅତ୍ୟନ୍ତ ଦୁଃଖିତ ହେଲେ । ତାଙ୍କୁ କିଛି ଭଲ ଲାଗିଲା ନାହିଁ ।

ଯାଦବମାନେ ଶାମ୍ବଙ୍କ ଦେହରୁ ସ୍ତ୍ରୀ ବେଶ ଖୋଲିଦେବା ମାତ୍ରେ ସତକୁ ସତ ଏକ ଲୁହାର ମୁଷଳ ଖସି ପଡ଼ିଲା । ଋଷିଙ୍କ କଥା ସତ ହେବା ଦେଖି ଯାଦବମାନେ ମହାଚିନ୍ତାରେ ପଡ଼ିଲେ । ସେମାନଙ୍କୁ ବୁଦ୍ଧିବାଟ ଦିଶିଲା ନାହିଁ । ଯଦୁବଂଶ ଧ୍ୱଂସ ହେବାର ସମୟ ଉପସ୍ଥିତ ହୋଇଗଲା ଜାଣି ସେମାନେ ଅତ୍ୟନ୍ତ ବିବ୍ରତ ହୋଇଉଠିଲେ ।

ଅନେକ ବିଚାର ଆଲୋଚନା ପରେ ଲୁହା ମୁଷଳଟିକି ପଥରରେ ଘସି ଘସି ଧୂଳି ପରି କରାଯିବ ଓ ସେ ଧୂଳିକୁ ପିଙ୍ଗି ଦେବାର ସ୍ଥିର ହେଲା । ଲୁହା ମୂଷଳକୁ ଘସି ଘସି ପ୍ରାୟ ଶେଷ କରିଦିଆଗଲା । ଶେଷକୁ ପାତିଆ ପରି ଖଣ୍ଡେ ରହିଲା ଓ ବାରମ୍ବାର ଘଷିବାରେ ହାତର ଆଙ୍ଗୁଠି ଛିଣ୍ଡି ରକ୍ତ ବହିଲା । ଆଉ ଘଷି ନହେବାରୁ ସେ ଲୁହାଖଣ୍ଡକୁ ସମୁଦ୍ରକୁ ଫିଙ୍ଗିଦେଲେ । ଗୋଟାଏ ବଡ଼ ବିପଦରୁ ରକ୍ଷା ପାଇଗଲେ ଭାବି ଯାଦବମାନେ ଆନନ୍ଦରେ ଘରକୁ ଫେରିଲେ ।

କିଛିଦିନ ବିତିଗଲା । ସମୁଦ୍ର କୂଳରେ ଯେଉଁ ସ୍ଥାନରେ ମୂଷଳଟି ଘଷା ହେଉଥିଲା, ସେଠାରେ ଲୁହାର ଗୁଣ୍ଡମାନ ପଡ଼ିଥିଲା । ବର୍ଷାଦିନ ଆସିବା ପରେ ସେହି ସ୍ଥାନରେ ଏକ ଜଙ୍ଗଲ ବଢ଼ିବାରେ ଲାଗିଲା । ଅଳ୍ପଦିନ ମଧ୍ୟରେ ସ୍ଥାନଟି ଗଛ ଗହଳିରେ ଖୁବ୍ ସୁନ୍ଦର ଦେଖାଗଲା । ଯାଦବମାନେ ଏପରି ଏକ ସୁନ୍ଦର ଜଙ୍ଗଲକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । ସେମାନେ ସେତେବେଳକୁ ଋଷି ଅଭିଶାପ କଥା ସମ୍ପୂର୍ଣ୍ଣ ଭୁଲି ଯାଇଥିଲେ ।

କିଛି ଦିନ ପରେ ଯାଦବମାନେ ସେହି ବଣରେ ଏକ ଭୋଜି କରିବାର ସ୍ଥିରକଲେ । ବଣଟି ପ୍ରଭାସ ତୀର୍ଥ ନିକଟରେ ଥିଲା । ଯାଦବମାନେ ବଣଭୋଜି କରିବା ପାଇଁ ସେଠାରେ ଉପସ୍ଥିତ ହେଲେ । କୃଷ୍ଣ ମଧ୍ୟ ସେମାନଙ୍କ ସହିତ ଯାଇଥିଲେ । ଯଦୁ ବଂଶର ଶେଷସମୟ ଉପସ୍ଥିତ ହୋଇଯିବା ଜାଣି ଭକ୍ତ ଉଦ୍ଧବ ଶ୍ରୀକୃଷ୍ଣ ଓ ବଳରାମଙ୍କଠାରୁ ବିଦାୟ ନେଇ ଅନ୍ୟତ୍ର ଚାଲିଗଲେ ।

ପ୍ରଭାସ ତୀର୍ଥକୁ ଯାଇ ସମସ୍ତେ ପବିତ୍ର ଭାବରେ ପୂଜା ଉପାସନା କରିବେ, କେହି ମଦ୍ୟପାନ କରିବେ ନାହିଁ ବୋଲି ଆଗରୁ ବାରଣ କରାଯାଇଥିଲା । ସମସ୍ତେ ତୀର୍ଥ ସ୍ଥାନରେ ପବିତ୍ରତା ରକ୍ଷା କରିବାକୁ ଏକମତ ହୋଇଥିଲେ । ମାତ୍ର ସେଠାରେ ପହଞ୍ଚିବା ମାତ୍ରେ ଯାଦବମାନେ ସବୁ ଭୁଲିଗଲେ । ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ପରି ସମସ୍ତେ ପ୍ରଚୁର ମଦ୍ୟପାନ କରି ମାତାଲ ହୋଇଉଠିଲେ । ପାଗଳ ହୋଇ ମନଇଚ୍ଛା ପ୍ରଳାପ କରିବାରେ ଲାଗିଲେ ।

ମହାଭାରତ ଯୁଦ୍ଧ ସମୟରେ ସାତ୍ୟକି ପାଣ୍ଡବ ପକ୍ଷରେ ଓ କୃତବର୍ମା କୌରବଙ୍କ ସପକ୍ଷରେ ରହି ଯୁଦ୍ଧ କରୁଥିଲେ । ଅନେକ ଦିନ ତଳର ପୁରୁଣା କଥାକୁ ମନେ ପକାଇ ସାତ୍ୟକି କୃତବର୍ମାଙ୍କୁ କହିଲେ, "ବୁଝିଲୁ, ତୋ ପରି ଲୋକ ବଞ୍ଚି ରହିବା ଉଚିତ ହୋଇ

ନାହିଁ । ତୁ କ୍ଷତ୍ରିୟ ଜାତିର ଏକ କଳଙ୍କ । ନିଦରେ ଶୋଇଥିବା ବୀରମାନଙ୍କୁ ହତ୍ୟା କରି ଯେଉଁ ଅନ୍ୟାୟ କରିଛୁ ଆମେ ତାକୁ କ୍ଷମା କରିପାରିବୁ ନାହିଁ । କୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ମଧ୍ୟ ସାତ୍ୟକିଙ୍କ କଥାକୁ ସମର୍ଥନ କରି ରାଗିଉଠିଲେ । ସମସ୍ତେ ନିଶାରେ ଥିବାରୁ କେବଳ ପ୍ରଳାପ କରିବାରେ ଲାଗିଥାନ୍ତି ।

ସାତ୍ୟକିଙ୍କ କଥା ଶୁଣି କୃତବର୍ମା କହିଲେ, "ପାଟି ବନ୍ଦ କର । ଚାଲୁଣୀ କହୁଛି ଛୁଞ୍ଚିକି ! ହଇରେ, ଭୁରିଶ୍ରବା ଯୋଗଧ୍ୟାନରେ ବସିଥିବା ବେଳେ ତୁମ୍ଭେମାନେ ତାଙ୍କୁ ହତ୍ୟା କରିନାହିଁ ? ନିର୍ଲ୍ଲଜ, ମୋତେ ପୁଣି ଚେତାଇବାକୁ ସାହସ କରୁଛୁ ?" ଏତିକି ବେଳେ ବହୁ ସଂଖ୍ୟକ ଯାଦବ କୃତବର୍ମାଙ୍କ ସହିତ ମିଶି ସାତ୍ୟକିଙ୍କୁ ଆକ୍ରମଣ କରିବାକୁ ଲାଗିଲେ ।

ଚାହୁଁ ଚାହୁଁ ଯାଦବମାନେ ଦୁଇ ଦଳରେ ବିଭକ୍ତ ହୋଇଗଲେ ଓ ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ସାତ୍ୟକି କୃତବର୍ମାଙ୍କ ମୁଣ୍ଡ ହାଣି ଦେଲେ ।

କୃତବର୍ମାଙ୍କ ପକ୍ଷର ଲୋକ ଯେ ଯାହା ପାଇଲେ ହାତରେ ଧରି ସାତ୍ୟକିଙ୍କୁ ଆକ୍ରମଣ କରିବାରେ ଲାଗିଲେ । ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ସାତ୍ୟକୀଙ୍କୁ ରକ୍ଷା କରିବା ପାଇଁ ଆଗେଇ ଆସିଲେ । ମାତ୍ର ସାତ୍ୟକିଙ୍କ ସହିତ ସେ ମଧ୍ୟ ସେଠାରେ ମଲେ । କୃଷ୍ଣ ଏ ଖବର ପାଇଲେ ଓ ଯଦୁ ବଂଶର ଶେଷ ସମୟ ଉପସ୍ଥିତ ହୋଇଗଲା ଜାଣି ଅତ୍ୟନ୍ତ ଦୁଃଖ କରିବାରେ ଲାଗିଲେ । ଆଗକୁ ଚାହିଁ ଦେଖିଲେ ଯାଦବମାନେ ପାଗଳ ପରି ନିଜ ନିଜ ଭିତରେ ପ୍ରବଳ ଯୁଦ୍ଧ ଆରମ୍ଭ କରି ଦେଇଛନ୍ତି । ସମୁଦ୍ର କୂଳରେ ବଢ଼ିଥିବା ଏରକା ଗଛକୁ ଉପାଡ଼ି ପରସ୍ପରକୁ ପିଟିବାରେ ଲାଗିଛନ୍ତି । କିଛି ସମୟ ପରେ ଯାଦବମାନେ ସମସ୍ତେ ମରି ତଳେ ଲୋଟିଗଲେ । ଋଷି ଓ ଗାନ୍ଧାରୀଙ୍କ ଅଭିଶାପ ଠିକ୍ ଫଳିଲା ।

ବଳରାମ ଏକ ନିଛାଟିଆ ସ୍ଥାନରେ ବସି ତପସ୍ୟା କରୁଥିଲେ । ଶ୍ରୀକୃଷ୍ଣ ଦେଖିଲେ, ତାଙ୍କ ମସ୍ତକରୁ ଏକ ସାପ ଆକାରର ଆଲୋକ ରେଖା ବାହାରି ସମୁଦ୍ର ମଧ୍ୟରେ ପ୍ରବେଶ କଲା ।

ବଳରାମ ଦେହ ତ୍ୟାଗ କରିବା ଦେଖି ଶ୍ରୀକୃଷ୍ଣ ସାରଥୀ ଦାରୁକଙ୍କୁ କହିଲେ, "ତୁମେ ହସ୍ତିନାକୁ ଯାଇ ଯାଦବମାନଙ୍କ ମୃତ୍ୟୁ ଖବର ଅର୍ଜୁନଙ୍କୁ ଜଣାଇଦିଅ ଏବଂ ଦ୍ୱାରିକା ଆସିବା ପାଇଁ କହ ।"

ଦାରୁକ ଚାଲିଯିବାପରେ ଶ୍ରୀକୃଷ୍ଣ ଦ୍ୱାରିକାକୁ ଆସି ପିତା ବସୁଦେବଙ୍କୁ କହିଲେ, "କୁରୁକ୍ଷେତ୍ର ଯୁଦ୍ଧରେ କୌରବ ବଂଶର ଧ୍ୱଂସ ଦେଖିଥିଲି । ଆଜି ଆମ ଯଦୁ ବଂଶର ଧ୍ୱଂସ ମଧ୍ୟ ନିଜ ଆଖିରେ ଦେଖିଲି । ଆପଣ ଅନ୍ତଃପୁରର ସ୍ତ୍ରୀଲୋକମାନଙ୍କୁ ରକ୍ଷା କରନ୍ତୁ । ମୁଁ ଅରଣ୍ୟକୁ ତପସ୍ୟା କରିବା ଉଦ୍ଦେଶ୍ୟରେ ଯାଉଛି ।"

କୃଷ୍ଣ ପିତାଙ୍କୁ ପ୍ରଣାମ ଜଣାଇ ଚାଲିଗଲେ । ଯାଦବମାନଙ୍କ ଶୋଚନୀୟ ମୃତ୍ୟୁ ତାଙ୍କୁ ବ୍ୟଥିତ କରି ପକାଉଥାଏ । ସେ ଅତ୍ୟନ୍ତ ଅସ୍ଥିର ହୋଇ କହିଲେ, "ବର୍ତ୍ତମାନ ମୋର ଯିବାର ସମୟ ଉପସ୍ଥିତ ହୋଇଗଲା ।" ମୁଁ ଆଉ ମୁହୂର୍ତ୍ତେ ମଧ୍ୟ ମର୍ତ୍ତ୍ୟରେ ରହିବାକୁ ଇଚ୍ଛା କରୁନାହିଁ" କହି ସେ ଏକ ଗହଳିଆ ଲତା ଗହଳରେ ବିଶ୍ରାମ କରିବାକୁ ଲାଗିଲେ ।

ଏହି ସମୟରେ ଜାରା ନାମରେ ଜଣେ ଶବର ଶିକାର ଉଦ୍ଦେଶ୍ୟରେ ବଣ ମଧ୍ୟରେ ବୁଲୁଥିଲା । ଦୂରରୁ ଶ୍ରୀକୃଷ୍ଣଙ୍କ ପାଦକୁ ଏକ ମୃଗର କାନ ମନେକରି ଶର ମାରିଦେଲା । ବ୍ୟାଧର ଅବ୍ୟର୍ଥ ଲକ୍ଷ୍ୟ ଠିକ୍ ଶ୍ରୀକୃଷ୍ଣଙ୍କ ପାଦ ମଧ୍ୟ ଦେଇ ଗଳିଗଲା । ଶିକାରକୁ ଆଣିବା ପାଇଁ ଯାଇ ଜାରା ଯାହା ଦେଖିଲା, ତହିଁରେ ତା ଦେହ ବରଡ଼ାପତ୍ର ପରି ଥରିବାକୁ ଲାଗିଲା । ଅଜାଣତରେ ମହାପାପ



**ଶ୍ରୀକୃଷ୍ଣଙ୍କର ଦେହତ୍ୟାଗ**

କରିବସିଥିବାରୁ ସେ ଶ୍ରୀକୃଷ୍ଣଙ୍କ ପାଦତଳେ ଲୋଟି ବାରମ୍ବାର କ୍ଷମାଭିକ୍ଷା କରୁଥାଏ । ତା ଦୁଇ ଆଖିରୁ ଧାର ଧାର ହୋଇ ଲୁହ ବହିଯାଉଥାଏ । ସେ ଅତି ବ୍ୟାକୁଳ କଣ୍ଠରେ କହିଲ, "ପ୍ରଭୁ, ମୁଁ ମୂର୍ଖ ଅଜାଣତରେ କି ପାପ ନକରିଛି ? ଏ ଗୁରୁତର ପାପର ପ୍ରାୟଶ୍ଚିତ ନାହିଁ । ମୋତେ ଏଇ ମୁହୂର୍ତ୍ତରେ ହତ୍ୟା କରନ୍ତୁ । ଲୋକେ ମୋ ଅପକର୍ମ କଥା ଜାଣିବା ଆଗରୁ ମୋତେ ଏ ସଂସାରରୁ ବିଦାୟ ଦିଅନ୍ତୁ ପ୍ରଭୁ ।"

ଶ୍ରୀକୃଷ୍ଣ ତାକୁ ଆଶ୍ୱାସନା ଦେଇ କହିଲେ, "ଜାରା, ତୁ ଆଦୌ ଚିନ୍ତିତ ହୁଅନା । ଯାହା ଘଟିବାର ଥାଏ, ତା' ନିଶ୍ଚୟ ଘଟେ । ତାକୁ କେହି ବାଧା ଦେଇପାରନ୍ତି ନାହିଁ । ତୋ ଶରରେ ମୋର ମୃତ୍ୟୁ ହେବ ବୋଲି ବହୁ ପୂର୍ବରୁ ସ୍ଥିର କରାଯାଇଛି । ତୁ କିଛି ହେଲେ ପାପ କି ଅନ୍ୟାୟ କରିନାହୁଁ । ଶୁଣ, ତ୍ରେତା ଯୁଗରେ ମୁଁ ରାମ ଅବତାର ଗ୍ରହଣ କରିଥିଲି । ତୁ ଥିଲୁ ମହାବଳ ବାଳୀପୁତ୍ର ଅଙ୍ଗଦ । ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନ କରି ମୁଁ ତାଙ୍କ ଶତ୍ରୁ ଓ ତୋ'ର ପିତା ବାଳୀଙ୍କୁ ହତ୍ୟା କରିଥିଲି । ତୁ ମୋ ପାଖରେ ଥାଇ ମୋତେ ସାହାଯ୍ୟ କରୁଥିଲେ ମଧ୍ୟ ପୁତ୍ରଋଣ ଶୁଝିବା ପାଇଁ ମନେ ମନେ ଚିନ୍ତା କରୁଥାଉ । ମୋତେ ସେ କଥା ଅଛପା ନଥିଲା । ମାତ୍ର ସେତେବେଳେ ତାହା ସମ୍ଭବ ନହେବାରୁ ମୁଁ କହିଥିଲି, ଦ୍ୱାପରରେ ମୁଁ ଶ୍ରୀକୃଷ୍ଣ ଅବତାର ଗ୍ରହଣ କରିବି । ସେଇ ଅବତାର ବେଳେ ତୁ ମୋତେ ଶର-ମାରି ହତ୍ୟା କରିବୁ ଓ ପିତୃଋଣ ଶୁଝିବୁ । ବର୍ତ୍ତମାନ ତୁ ସେ ସବୁ ଭୁଲି ଯାଇଥିଲେ ମଧ୍ୟ ମୋର ଠିକ୍ ମନେଅଛି ।

ଆହୁରି ଶୁଣ୍‌, ଯେଉଁ ମୁଷଳରେ ଯଦୁବଂଶ ଧ୍ୱଂସ ହେବା ପାଇଁ ଋଷିମାନେ ଅଭିଶାପ ଦେଇଥିଲେ, ସେହି ମୂଷଳର ଏକ କ୍ଷୁଦ୍ର ଅଂଶ ସମୁଦ୍ରକୁ ଫିଙ୍ଗି ଦିଆଯାଇଥିଲା । ଖାଦ୍ୟ ମନେକରି ମାଛଟିଏ ସେ ଲୌହଖଣ୍ଡକୁ ଖାଇଥିଲା । ତୁ ସେହି ମାଛପେଟରୁ ଲୌହ ମୂଷଳର ଛୋଟ ଅଂଶଟି ପାଇ ତହିଁରେ ଶର ମୂନ ତିଆରି କରିଥିଲୁ । ସେହି ଶରରେ ଯଦୁ ବଂଶର ଶେଷ ବ୍ୟକ୍ତି ମୁଁ ଆଜି ମରିବି । ଏଥିରେ ତୁ ନିମିତ୍ତ ମାତ୍ର । ଦୁଃଖ କରିବାର କୌଣସି କାରଣ ନାହିଁ ।

ପିଲାଦିନେ ମୋର ମାଆ ଯଶୋଦା ଥରେ କ୍ଷୀରି ତିଆରି କରି ମହର୍ଷି ଦୁର୍ବାସାଙ୍କୁ ପରଷିଥିଲେ । ଋଷି ଭୋଜନ କରିବା ପରେ ଥାଳିରେ କିଛି କ୍ଷୀରି ବଳି ପଡ଼ିଥିଲା । ମା’ ସେଇ କ୍ଷୀରିକୁ ମୋ ଦେହର ଚାରିଆଡ଼େ ବୋଳିଦେବା ଫଳରେ ମୋର ଶରୀର ବଜ୍ରଠାରୁ ଆହୁରି କଠିନ ହୋଇଯାଇଛି । ମୋ ଦେହରେ କୌଣସି ଶସ୍ତ୍ର ଭେଦ କରିପାରିବ ନାହିଁ । ଋଷିଙ୍କ ପ୍ରସାଦକୁ ପାଦ ତଳେ ବୋଳିବା ପାପ ବୋଲି ବିଚାରି ମାଆ ମୋ ପାଦ ଦୁଇଟି ଛାଡ଼ି ଦେଇଥିଲେ । ଯେଉଁ ପ୍ରସାଦକୁ ମୁଣ୍ଡରେ ଲଗାଇବା କଥା, ତାକୁ ମାଆ କିପରି ବା ପାଦରେ ବୋଳନ୍ତେ ? ସେଇ କାରଣରୁ ମୋର ପାଦ ଦୁଇ ଅତ୍ୟନ୍ତ କୋମଳ ଥିଲା ଓ ତୋ ଶର ଅକ୍ଲେଶରେ ପାଦ ବାଟଦେଇ ମୋ ଦେହରେ ଗଳିଗଲା । ନଚେତ୍‌ ଏ ଶର ମୋର କୌଣସି କ୍ଷତି କରି ପାରିନଥାନ୍ତା । ଏସବୁ ଜାଣିବା ପରେ ତୁ ଆଉ କୌଣସି ଦୁଃଖ କରିବାର କାରଣ ନାହିଁ । କିମ୍ବା ତୁ କୌଣସି ପାପ ମଧ୍ୟ କରିନାହୁଁ । ବିଧିର ଇଚ୍ଛା ପୂରଣରେ ତୁ ସାହାଯ୍ୟ କରିଛୁ ମାତ୍ର ।”

ଏତିକି କହି ଶ୍ରୀକୃଷ୍ଣ ଦେହତ୍ୟାଗ କଲେ ।

ଦାରୁକଙ୍କଠାରୁ ସମସ୍ତ କଥା ଶୁଣି ଅର୍ଜୁନ ତୁରନ୍ତ ଦ୍ୱାରିକାକୁ ଚାଲିଆସିଲେ । ବସୁଦେବ ବ୍ୟାକୁଳ କଣ୍ଠରେ କହିଲେ, “ବତ୍ସ, ଆଉ କଅଣ ବାକି ଅଛି ଯେ ଦେଖିବାକୁ ଆସିଲ ? ସମସ୍ତ ଯାଦବ ତ ମରିଥଲେ । ଏବେ ବଳରାମ ଓ ଶ୍ରୀକୃଷ୍ଣ ମଧ୍ୟ ଆଉ ଏ ସଂସାରରେ ନାହାନ୍ତି । ମୁଁ ନିର୍ଲ୍ଲଜ କିପରି ବଞ୍ଚି ରହିଛି ଜାଣି ପାରୁନାହିଁ । କୃଷ୍ଣ ଯଦୁବଂଶକୁ ଜାଣିଶୁଣି ରକ୍ଷା କରିବାକୁ ଚେଷ୍ଟା କଲେ ନାହିଁ । ଗାନ୍ଧାରୀ ଓ ମହର୍ଷିମାନଙ୍କ ଅଭିଶାପ କାର୍ଯ୍ୟକାରୀ ହେଉ, ଏହା ହିଁ ତାଙ୍କର ଇଚ୍ଛା ଥିଲା । ସେ ଇଚ୍ଛା କରିଥିଲେ ଯଦୁବଂଶ ଏପରି ଭାବରେ ଧ୍ୱଂସ ପାଇନଥାନ୍ତା । ଦ୍ୱାରିକା ଏବେ କେବଳ ସ୍ତ୍ରୀ ଓ ବାଳକମାନଙ୍କ ବିକଳ ଚିତ୍କାରରେ ପୂରି ରହିଛି । ତୁମେ ସେମାନଙ୍କୁ ରକ୍ଷା କର ।”

ସେହିଦିନ ରାତିରେ ବସୁଦେବଙ୍କ ମୃତ୍ୟୁହେଲା । ତାଙ୍କରି ଚିତାଗ୍ନିରେ ତାଙ୍କର ଚାରିପତ୍ନୀ ଦେବକୀ, ଭଦ୍ରା, ରୋହିଣୀ ଓ ମଦିରା ଝାସ ଦେଇ ‘ସତୀ’ ହେଲେ । ଅର୍ଜୁନ ବହୁ ଯାଦବ ବୀରମାନଙ୍କ ଦାହ କାର୍ଯ୍ୟ ଶେଷ କରି ବିଧବା ସ୍ତ୍ରୀ ଓ ବାଳକ ବାଳିକାଙ୍କୁ ସଙ୍ଗରେ ନେଇ ହସ୍ତିନା ଆଡ଼କୁ ଆସିଲେ । ଅଳ୍ପ ସମୟ ମଧ୍ୟରେ ସମୁଦ୍ର ମାଡ଼ି ଆସି ଦ୍ୱାରିକା ନଗରକୁ ସମ୍ପୂର୍ଣ୍ଣ ଜଳମଗ୍ନ କରିଦେଲା ।

ବାଟରେ ଆସୁଥିବାବେଳେ ଦଳେ ଡକାୟତ ସ୍ତ୍ରୀ ଲୋକମାନଙ୍କ ଧନ ସମ୍ପତ୍ତି ଛଡ଼ାଇ ନେବାରେ ଲାଗିଲେ । ମହାବୀର ଅର୍ଜୁନ ଏପରି ଶକ୍ତିହୀନ ହୋଇ ପଡ଼ିଥିଲେ ଯେ ସେମାନଙ୍କୁ ବାଧା ଦେଇ ପାରିଲେ ନାହିଁ । ତାଙ୍କରି ଆଖି ଆଗରେ ସେମାନେ ବହୁ ଧନରତ୍ନ ସହ କେତେକ ସୁନ୍ଦରୀ ରମଣୀଙ୍କୁ ମଧ୍ୟ ଅନାୟାସରେ ନେଇ ଚାଲିଗଲେ ।

ଅର୍ଜୁନ ନିଜର ଦୁର୍ବଳତା ଲକ୍ଷ୍ୟ କରି ଲଜ୍ଜିତ ହେବାରେ ଲାଗିଲେ । ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ଭାବିଲେ, “ମୁଁ କ’ଣ ମହାଭାରତ ଯୁଦ୍ଧର ସେଇ ଅର୍ଜୁନ, ଯେ ମହାରଥୀ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଆଦି ବୀରମାନଙ୍କୁ ହତ୍ୟା କରିଥିଲି । ମୋର ସେ ବୀରତ୍ୱ କାହିଁ ? ଆଜି ସାମାନ୍ୟ ତସ୍କର କେତେଜଣଙ୍କୁ ବାଧା ଦେଇ ନ ପାରିବାର କାରଣ କଅଣ ?”

ଏହିପରି ଭାବି ଭାବି ଯାଉଥିବାବେଳେ ମହର୍ଷି ବ୍ୟାସଙ୍କ ସହିତ ଦେଖାହେଲା । ଅତି ଦୁଃଖରେ ନିଜର ଏ ଅସମ୍ଭବ ଦୁର୍ବଳତାର କାରଣ ପଚାରିବାରୁ ସେ କହିଲେ, “ଏହା ହିଁ ବିଧି ଦ୍ୱାରା ସ୍ଥିରୀକୃତ । ଶ୍ରୀକୃଷ୍ଣ ଇଚ୍ଛା କରିଥିଲେ ବ୍ରାହ୍ମଣଶାପରୁ ନିଜ

ବଂଶକୁ ରକ୍ଷା କରି ପାରିଥାନ୍ତେ । ଗାନ୍ଧାରୀଙ୍କ ଅଭିଶାପ ବା କି ଛାର ! ଅନ୍ୟାୟ ଦୂର କରି ନ୍ୟାୟ ପ୍ରତିଷ୍ଠା ପାଇଁ ସେ ଜନ୍ମ ଗ୍ରହଣ କରିଥିଲେ । ତୁମ୍ଭେମାନେ ଭଗବାନ ଶ୍ରୀକୃଷ୍ଣଙ୍କ ଇଚ୍ଛା ପୂରଣ କରିଛ । ମାତ୍ର ଏବେ ତୁମର ବଳ ଓ ଅସ୍ତ୍ରଶସ୍ତ୍ରର ଶକ୍ତି ଶେଷ ପାଇ ଯାଇଛି । ତୁମେ ଆଉ କିଛି କରିପାରିବ ନାହିଁ । ଶୀଘ୍ର ଏ ସଂସାର ତ୍ୟାଗ କରିବାର ବ୍ୟବସ୍ଥା କର ।

ହସ୍ତିନାରେ ପହଞ୍ଚି ଅର୍ଜୁନ ମହାରାଜ ଯୁଧିଷ୍ଠିରଙ୍କୁ ସମସ୍ତ ଘଟଣା କହିଲେ ।

## ପାଣ୍ଡବମାନଙ୍କ ସ୍ୱର୍ଗଯାତ୍ରା

ଅର୍ଜୁନଙ୍କଠାରୁ ଯଦୁବଂଶ ଧ୍ୱଂସ ଓ ଶ୍ରୀକୃଷ୍ଣଙ୍କ ମୃତ୍ୟୁ ସମ୍ବାଦ ପାଇବା ପରେ ପାଣ୍ଡବମାନେ ଅତ୍ୟନ୍ତ ବ୍ୟାକୁଳ ହୋଇଉଠିଲେ । ସଂସାରରେ ବଞ୍ଚି ରହିବାର ମୋହ ସେମାନଙ୍କର ତୁଟିଗଲା । ସମସ୍ତେ ଏକ ସମୟରେ ରାଜପୁରୀ ତ୍ୟାଗ କରି ସ୍ୱର୍ଗକୁ ଯିବା ପାଇଁ ସ୍ଥିର କଲେ ।

ମହାରାଜ ଯୁଧିଷ୍ଠିର ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତଙ୍କୁ ହସ୍ତିନା ରାଜ ସିଂହାସନରେ ବସାଇ ତାଙ୍କର ଅଭିଷେକ କାର୍ଯ୍ୟ ଶେଷକଲେ । ଇନ୍ଦ୍ରପ୍ରସ୍ଥ ରାଜଗାଦୀରେ ଶ୍ରୀକୃଷ୍ଣଙ୍କ ନାତି ବଜ୍ରଙ୍କୁ ଅଧିଷ୍ଠିତ କରାଯାଇଥିଲା । ପରୀକ୍ଷିତ ବା ବଜ୍ର ଉଭୟେ ନାବାଳକ ଥିବାରୁ ମହାରାଜ ଯୁଧିଷ୍ଠିର ଅଭିମନ୍ୟୁଙ୍କ ମାତା ସୁଭଦ୍ରାଙ୍କୁ କହିଲେ, "ଦେବୀ, ପରୀକ୍ଷିତ ଓ ବଜ୍ର ଉଭୟେ ବାଳକ । ରାଜ୍ୟ ଶାସନ ଦାୟିତ୍ୱ ବହନ କରିବାର ବୟସ ସେମାନଙ୍କର ହୋଇନାହିଁ । ଦୁହେଁ ଉପଯୁକ୍ତ ହେବା ପର୍ଯ୍ୟନ୍ତ ଇନ୍ଦ୍ରପ୍ରସ୍ଥ ଓ ହସ୍ତିନାର ଶାସନ ଦାୟିତ୍ୱ ତୁମ ଉପରେ ନ୍ୟସ୍ତ ରହିଲା । ତୁମେ ଉଭୟ ରାଜ୍ୟକୁ ରକ୍ଷା କରିବ । ମହାରାଜ ଧୃତରାଷ୍ଟ୍ରଙ୍କ ଦାସୀପୁତ୍ର ଯୁଯୁତ୍ସୁ ପରୀକ୍ଷିତଙ୍କ ମନ୍ତ୍ରୀ ରୂପେ ରହି ରାଜ୍ୟ ପରିଚାଳନାରେ ସାହାଯ୍ୟ କରିବେ ।"

ଏହିପରି ସୁବନ୍ଦୋବସ୍ତ କରିବା ପରେ ଧର୍ମରାଜ ଯୁଧିଷ୍ଠିର ନିଜର ଚାରିଭାଇ ଓ ପତ୍ନୀ ଦ୍ରୌପଦୀଙ୍କ ସହିତ ରାଜପ୍ରସାଦରୁ ବାହାରିଗଲେ । ସେମାନେ ଅନେକ ପ୍ରଦେଶ ବୁଲିବୁଲି ଦ୍ୱାରିକାରେ ଉପସ୍ଥିତ ହେଲେ । ମାତ୍ର ସମଗ୍ର ଦ୍ୱାରିକା ସମୁଦ୍ର ଗର୍ଭରେ ଲୀନ ହୋଇଯାଇଥିବା ଦେଖି ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏହା ପରେ ସେମାନେ ନାନା ସ୍ଥାନ ଭ୍ରମଣ କରି କରି ଶେଷରେ ହିମାଳୟର ପାଦ ଦେଶରେ ପହଞ୍ଚିଲେ ।

ଧର୍ମରାଜ ଯୁଧିଷ୍ଠିର ହସ୍ତିନାପୁରରୁ ବାହାରି ବନକୁ ଯିବା ସମୟରୁ ହିଁ କୁଆଡୁ କୁକୁରଟିଏ ଆସି ତାଙ୍କ ସହିତ ସାଥୀ ହେଲା । ବହୁ ସ୍ଥାନ ଭ୍ରମଣକରି ହିମାଳୟର ପାଦ ଦେଶରେ ପହଞ୍ଚିଲା ପର୍ଯ୍ୟନ୍ତ କୁକୁରଟି ପାଣ୍ଡବମାନଙ୍କୁ ପାଖେ ପାଖେ ଛାଇ ପରି ରହିଥାଏ ।

ପାଣ୍ଡବମାନେ ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଯାଉଥିବା ବେଳେ ଦିନେ ଅଗ୍ନିଦେବତା ଅର୍ଜୁନଙ୍କ ଆଗରେ ଉଭା ହୋଇ କହିଲେ, "ତୁମେ କଷ୍ଟକରି ଏ ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣୀର ସଙ୍ଗରେ ନେଉଛ କାହିଁକି ? ଏହା ତୁମର କୌଣସି କାର୍ଯ୍ୟରେ ଆସିବ ନାହିଁ । ତୁମେ ସମ୍ପୂର୍ଣ୍ଣ ଶକ୍ତିହୀନ ହୋଇପଡ଼ିଛ । ଶ୍ରୀକୃଷ୍ଣ ତାଙ୍କର ପ୍ରଧାନ ଅସ୍ତ୍ର ସୁଦର୍ଶନ ଚକ୍ରକୁ ମଧ୍ୟ ଛାଡ଼ି ଯାଇଛନ୍ତି । ତେଣୁ ତୁମେ ଏ ଧନୁ ଓ ତୂଣୀର ମୋତେ ଦେଇଦିଅ ।"

ଅର୍ଜୁନଙ୍କର କିଛି କହିବାର ନଥିଲା । ସେ ସଂଗେ ସଂଗେ ବିନା ଆପତ୍ତିରେ ଧନୁ ଓ ତୂଣୀର ଅଗ୍ନିଦେବତାଙ୍କୁ ସମର୍ପଣ କରି ଆଶ୍ୱସ୍ତ ହେଲେ । ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣୀରକୁ ବହନ କରି ଚାଲିବା ଅର୍ଜୁନଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର ହେଉଥିଲା । ଅଥଚ ଦିନ ଥିଲା, ଯେତେବେଳେ ସେ ସେହି ଧନୁକୁ ଅନାୟାସରେ ବ୍ୟବହାର କରି ଶତ୍ରୁ ସଂହାର କରୁଥିଲେ ।

ଏଥର ପାଣ୍ଡବମାନନେ ହିମାଳୟ ଉପରକୁ ଉଠିବାକୁ ଆରମ୍ଭ କଲେ । ମାତ୍ର ପ୍ରଚୁର ହିମପାତ ହେବା ଫଳରେ ସେମାନଙ୍କ



ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ

ଗତି ରୁଦ୍ଧ ହେବାରେ ଲାଗିଲା । ଅତ୍ୟନ୍ତ କଷ୍ଟରେ ସେମାନେ ପର୍ବତ ଚଢ଼ିବାରେ ଲାଗିଥାନ୍ତି । କିଛି ଦୂର ଯିବାପରେ ପ୍ରଥମେ ଦ୍ରୌପଦୀ ତଳେ ପଡ଼ିଗଲେ ଓ ଚାହୁଁ ଚାହୁଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଦ୍ରୌପଦୀଙ୍କ ଏ ଶୋଚନୀୟ ଅବସ୍ଥା ଦେଖି ଭୀମ ବିକଳ ହୋଇ ଯୁଧିଷ୍ଠିରଙ୍କୁ କହିଲେ, "-ଭାଇ, ଦ୍ରୌପଦୀ ତ କୌଣସି ପାପ କରି ନାହାନ୍ତି । କେଉଁ କାରଣରୁ ସେ ଏପରି ପଡ଼ିଗଲେ ?"

ଯୁଧିଷ୍ଠିର କହିଲେ, "ଦ୍ରୌପଦୀ ଆମ ପାଞ୍ଚଭାଇଙ୍କୁ ବିବାହ କରିଥିଲେ । ତେଣୁ ଆମ ସମସ୍ତଙ୍କ ପ୍ରତି ତାଙ୍କର ସମାନ, ସ୍ନେହ, ମମତା, ଶ୍ରଦ୍ଧା ଓ ଭକ୍ତି ରହିବା କଥା । ମାତ୍ର ଆମ୍ଭମାନଙ୍କ ମଧ୍ୟରୁ ଅର୍ଜୁନଙ୍କୁ ଅଧିକ ଭଲ ପାଉଥିବାରୁ ତାଙ୍କର ଏପରି ପତନ ହୋଇଛି ।" ଯୁଧିଷ୍ଠିର ତଳେ ପଡ଼ିଥିବା ଦ୍ରୌପଦୀଙ୍କ ଆଡ଼କୁ ଟିକିଏ ହେଲେ ନଚାହିଁ ଉପରକୁ ଉଠିବାରେ ଲାଗିଲେ ।

ଆଉ କିଛିଦୂର ଯିବାପରେ ହଠାତ୍ ସହଦେବ ତଳେ ପଡ଼ିଗଲେ ।

ଭୀମ ପୁଣି ଯୁଧିଷ୍ଠିରଙ୍କୁ ଡାକି କହିଲେ, "ଭାଇ, ଗର୍ବ ବା ଅହଂକାର ସହଦେବଙ୍କୁ ସ୍ପର୍ଶ କରିନଥିଲା । ସେ ଏପରି ଅଧବାଟରେ ପଡ଼ିଯିବାର କାରଣ କଅଣ ।"

ଯୁଧିଷ୍ଠିର କହିଲେ, "ତୁମେ ଯାହା କହିଲ, ସେ କଥା ସତ । ସହଦେବ ଅତି ସରଳ ଓ ଅହଂକାର ଶୂନ୍ୟ ଥିଲେ । ମାତ୍ର ସେ ନିଜକୁ ବଡ଼ ପଣ୍ଡିତ ଓ ସର୍ବଜ୍ଞ ବୋଲି ବିଚାର କରୁଥିଲେ । ଏହା ହିଁ ତାଙ୍କ ପତନର ଏକମାତ୍ର କାରଣ ଅଟେ ।"

ଆଉ କିଛି ଦୂର ଯିବାପରେ ନକୁଳଙ୍କ ପତନ ଦେଖି ଭୀମସେନ ପୁଣି ପଚାରିଲେ ଭାଇ, " ଅତି ଧାର୍ମିକ ଓ ନ୍ୟାୟ ପରାୟଣ ନକୁଳ ଏପରି ପଡ଼ିଯିବାର କାଣ କଅଣ ହୋଇପାରେ ।"

ଯୁଧିଷ୍ଠିର କହିଲେ, "କେବଳ ଗୋଟିଏ ମାତ୍ର ଦୋଷ ଯୋଗୁଁ ନକୁଳଙ୍କର ଏ ଦଶା ହୋଇଛି । ତୁମେ ନିଶ୍ଚୟ ସ୍ୱୀକାର କରିବ, ନକୁଳ କନ୍ଦର୍ପ ପରି ସୁନ୍ଦର ହୋଇଥିବାରୁ ତାଙ୍କ ମନରେ ଖୁବ୍ ଅହଂକାର ଥାଏ । ଏହି ଏକମାତ୍ର ଦୋଷରୁ ସେ ଏପରି ଅବସ୍ଥା ଭୋଗିଲେ ।"

ହିମାଳୟର ଅନେକ ଉଚ୍ଚକୁ ଉଠିବା ପରେ ହଠାତ୍ ଅର୍ଜୁନ କଚାଡ଼ି ହୋଇ ତଳେ ପଡ଼ିଗଲେ । ଭୀମ ଚିତ୍କାର କରି କହିଲେ, "ମହାରାଜ ଦେଖନ୍ତୁ, ଦେଖନ୍ତୁ, ମହାପରାକ୍ରମୀ ଅର୍ଜୁନଙ୍କ ପତନ ହୋଇଗଲା । ସେ ଜୀବନରେ କୌଣସି ପାପ ବା ଅନ୍ୟାୟ କରିନାହାନ୍ତି । ତେବେ କେଉଁ କାରଣରୁ ସେ ଏ ଦଶା ଭୋଗ କଲେ ?"

ଯୁଧିଷ୍ଠିର କହିଲେ, "ଅର୍ଜୁନ ମହାଧନୁର୍ଦ୍ଧର, ଅମିତ ବିକ୍ରମର ଅଧିକାରୀ--ଏକଥା ବହୁ ପୂର୍ବରୁ ପ୍ରମାଣିତ ହୋଇସାରିଛି । ଅସାଧାରଣ ବୀର ହୋଇଥିବାରୁ ତାଙ୍କ ମନରେ ଗର୍ବ ଥିଲା । ସେ ଅନ୍ୟ ବୀରମାନଙ୍କୁ ଅବଜ୍ଞା କରୁଥିଲେ । ଏହା ହିଁ ତାଙ୍କର ମୁଖ୍ୟ ପାପ ଓ ପତନର କାରଣ ଅଟେ ।" ଏତିକି କହିବାପରେ ଯୁଧିଷ୍ଠିର ସ୍ଥିରମନରେ ଆଗକୁ ଚାଲିଯିବାପରେ ପ୍ରାଣପ୍ରିୟ ଭାଇ ଅର୍ଜୁନଙ୍କ ଅବସ୍ଥା ଦେଖିବାକୁ ଟିକିଏ ହେଲେ ପଛକୁ ଚାହିଁଲେ ନାହିଁ ।

ଯୁଧିଷ୍ଠିର ପଛେ ପଛେ ଭୀମ ଚାଲିଥାନ୍ତି । ପ୍ରଥମେ ସ୍ତ୍ରୀ ଦ୍ରୌପଦୀ, ପରେ ପରେ ଭାଇମାନେ ଗୋଟିକ ପରେ ଗୋଟିଏ ଟଳି ପଡୁଛନ୍ତି, ମହାରାଜ ଏସବୁ ଜାଣି ମଧ୍ୟ କାହାରିକୁ ଦେଖିବା ପାଇଁ ଟିକିଏ ଆଖି ଫେରାଉ ନାହାନ୍ତି ! ଯେଉଁ ଭାଇମାନଙ୍କୁ ପ୍ରାଣଠାରୁ ଅଧିକ ମନେକରୁଥିଲେ, ଯାହାଙ୍କ ସାମାନ୍ୟ ଅସୁବିଧା ଅଳ୍ପ ସମୟ ଅଦର୍ଶନରେ ଅନ୍ନ ଜଳ ତ୍ୟାଗକରି ପାଗଳ ପରି ହୋଇଉଠୁଥିଲେ, ସେହି ଭାଇମାନେ ଜଣକ ପରେ ଜଣେ ମରି ପଡୁଥିଲେ ମଧ୍ୟ ଯୁଧିଷ୍ଠିର ଟିକିଏ ମାତ୍ର ପଛକୁ ଚାହୁଁ ନାହାନ୍ତି ଦେଖି ଭୀମ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ଉପରର ରାସ୍ତା ଅତି ଦୁର୍ଗମ ଥାଏ । ଯୁଧିଷ୍ଠିର ଓ ଭୀମ ଅତିକଷ୍ଟରେ ଉପରକୁ ଉଠୁଥାନ୍ତି । ସଂଗରେ ଥାଏ ସେହି ବିଶ୍ୱାସୀ କୁକୁରଟି ।

କ୍ରମେ ଭୀମ ଦୁର୍ବଳତା ଅନୁଭବ କରିବାକୁ ଲାଗିଲେ । ତାଙ୍କର ସର୍ବାଙ୍ଗ ଅବଶ ହୋଇଆସିଲା । ସେ ତଳେ ପଡ଼ିଯାଇ ବଡ଼ ପାଟିରେ କହିଲେ, "ମହାରାଜ, ମୁଁ ଆଉ ପାଦେ ହେଲେ ଆଗକୁ ଯାଇପାରିବି ନାହିଁ । ସର୍ବଦା ଆପଣଙ୍କ ଆଦେଶ ପାଳନ ଓ ପ୍ରତିଜ୍ଞା ପୂରଣରେ ମୁଁ ଆଦୌ ତ୍ରୁଟି କରିନାହିଁ । ମାତାଙ୍କର ସେବା ଓ ଗୁରୁଜନଙ୍କ ପ୍ରତି ସର୍ବଦା ଭକ୍ତି ଦେଖାଇଆସିଛି । କେବେହେଲେ କର୍ତ୍ତବ୍ୟରେ ମୁଁ ଅବହେଳା କରିନାହିଁ । କହନ୍ତୁ ମହରାଜ, ମୋର ଏ ଶୋଚନୀୟ ପତନର କାରଣ କଅଣ ?"

ଯୁଧିଷ୍ଠିର କହିଲେ, "ତୁମେ ବହୁ ଖାଦ୍ୟ ଖାଉଥିଲ । ଅନ୍ୟମାନଂକ ଖାଇବା ପ୍ରତି ତୁମ ଧ୍ୟାନ ଆଦୌ ନଥାଏ । ଦୁଃଖୀ, ଦରିଦ୍ର ନିରନ୍ନମାନଙ୍କୁ ଆହାର ଯୋଗାଇ ଆବଶ୍ୟକ ହେଲେ ଉପବାସରେ ଦିନ କାଟିବା ହିଁ ଧର୍ମ । ତୁମେ ସେ ଦିଗ ପ୍ରତି ଆଦୌ ଦୃଷ୍ଟି ନଦେଇ କେବଳ ନିଜର ଉଦର ପୂରଣ ପାଇଁ ସର୍ବଦା ତତ୍ପର ହୋଇଆସିଛ । ପୁଣି ମହାବୀର ବୋଲି ତୁମ ମନରେ ଅତି ଗର୍ବ ଥିଲା । ଏଗୁଡ଼ିକ ହିଁ ତୁମ ପତନର କାରଣ ଅଟେ ।" ଯୁଧିଷ୍ଠିର ଏସବୁ କହିବା ପରେ ତଳେ ପଡ଼ିଥିବା ଭୀମଙ୍କୁ ଆଡଆଖିରେ ମଧ୍ୟ ନଚାହିଁ ଉପରକୁ ଉଠିବାରେ ଲାଗିଲେ । ବର୍ତ୍ତମାନ ସେହି କୁକୁରଟି ବ୍ୟତୀତ ଯୁଧିଷ୍ଠିରଙ୍କର ଅନ୍ୟ ସହଯାତ୍ରୀ କେହି ନଥିଲେ ।

ନିଜେ ଧର୍ମଦେବତା କୁକୁର ରୂପେ ଯୁଧିଷ୍ଠିରଙ୍କ ସଂଗେ ସଂଗରେ ଯାଉଥିଲେ । ଏକଥା ସମସ୍ତେ ଜାଣି ରଖିବା ଉଚିତ ଯେ, ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁ ବା କୁଟୁମ୍ବ କେହି ମନୁଷ୍ୟ ସାଥିରେ ସ୍ୱର୍ଗକୁ ଯାଇପାରନ୍ତି ନାହିଁ । ଏକମାତ୍ର ଧର୍ମ ହିଁ ମନୁଷ୍ୟର ଚିରସାଥୀ ଅଟେ ।

ଯୁଧିଷ୍ଠିର ହିମାଳୟ ଉଚ୍ଚତମ ଶୃଙ୍ଗରେ ଉପନୀତ ହୋଇ ଦେଖିଲେ, "ଦେବରାଜ ଇନ୍ଦ୍ର ତାଙ୍କ ରଥ ଆଣି ସେଠାରେ ଉପସ୍ଥିତ ଅଛନ୍ତି । ସେ ଯୁଧିଷ୍ଠିରଙ୍କୁ ଚାହିଁ କହିଲେ, "ମହାରାଜ, ଆପଣ ଏହି ରଥରେ ଅରୋହଣକରି ସ୍ୱର୍ଗପୁରୀକୁ ଯାତ୍ରା କରନ୍ତୁ ।"

ଯୁଧିଷ୍ଠିର କହିଲେ, "ଦେବରାଜ, ଆସିବା ବାଟରେ ମୋର ପତ୍ନୀ ଦ୍ରୌପଦୀ ଓ ଭାଇମାନେ ପଡ଼ିରହିଯାଇଛନ୍ତି । ସେମାନଙ୍କୁ ଅସହାୟ ଅବସ୍ଥାରେ ଛାଡ଼ି ମୁଁ ଏକାକୀ ସ୍ୱର୍ଗକୁ ଯିବା ପାଇଁ ଇଚ୍ଛା କରୁନାହିଁ ।"

ଇନ୍ଦ୍ର କହିଲେ, "ମହାରାଜ, ଆପଣ ହୁଏତ ଜାଣିନାହାନ୍ତି ଯେ ଆପଣଙ୍କ ପ୍ରିୟଭାଇମାନଙ୍କ ସହିତ ପତ୍ନୀ ଦ୍ରୌପଦୀ ମଧ ଆପଣଙ୍କ ପହଞ୍ଚିବା ଆଗରୁ ସ୍ୱର୍ଗରେ ପହଞ୍ଚିଗଲେଣି । ସେମାନଙ୍କ ପାର୍ଥିବ ଶରୀର ପର୍ବତ ଉପରେ ପଡ଼ିରହିଛି ମାତ୍ର ! ସେମାନଙ୍କ ପାଇଁ ଚିନ୍ତା ନକରି ଆପଣ ରଥରେ ବସନ୍ତୁ । ଅଶେଷ ପୂଣ୍ୟ ବଳରୁ ଆପଣ କେବଳ ମନୁଷ୍ୟ ଦେହରେ ସ୍ୱର୍ଗକୁ ଯାଇପାରିବେ । ସେଠାରେ ଆପଣଙ୍କ ପ୍ରିୟ ପରିବାର ଆପଣଙ୍କୁ ଅପେକ୍ଷା କରି ବସିଛନ୍ତି ।"

ଯୁଧିଷ୍ଠିର କୁକୁରଟିଙ୍କୁ ସାଥୀରେ ନେଇ ରଥରେ ବସିଲେ । ଏକଥା ଦେଖି ଇନ୍ଦ୍ର କହିଲେ, "ଆଶ୍ଚର୍ଯ୍ୟ କଥା ! କୁକୁରଟାକୁ ସଂଗରେ ନେଇ ଆପଣ ସ୍ୱର୍ଗକୁ ଯିବେ ? ଏହା ତ ଆଦୌ ସମ୍ଭବ ନୁହେଁ । ଛାର କୁକୁରଟା ପାଇଁ ସ୍ୱର୍ଗ ପରି ପବିତ୍ର ସ୍ଥାନରେ କୌଣସି ଜାଗା ମିଳିବ ନାହିଁ ।"

ଯୁଧିଷ୍ଠିର କହିଲେ, "ମୋର ଅତି ବିଶ୍ୱାସୀ ସାଥୀଟିକୁ ଯଦି ସାଙ୍ଗରେ ନେବାର ସୁଯୋଗ ଦିଆନଯିବ, ତେବେ ତା ସହିତ ମୁଁ ମଧ ଏହି ସ୍ଥାନରେ ରହିଯିବି । କୁକୁରଟି ମୋର ଅତିପ୍ରିୟ ଓ ବିଶ୍ୱାସୀ । ବରଂ ସ୍ୱର୍ଗକୁ ନଯିବି, କିନ୍ତୁ କୁକୁରଟି ପ୍ରତି ଅନ୍ୟାୟ କରିପାରିବି ନାହିଁ । ପ୍ରାର୍ଥନା କରୁଛି ଆପଣ ରଥ ଲେଉଟାଇ ନେଇଯାନ୍ତୁ ।"

ଧର୍ମଦେବତା କୁକୁର ରୂପେ ଯୁଧିଷ୍ଠିରଙ୍କୁ ପରୀକ୍ଷା କରିବା ପାଇଁ ଆସିଥିଲେ । ପରୀକ୍ଷା ଶେଷ ହୋଇଗଲା । ଯୁଧିଷ୍ଠିର ଦେଖିଲେ, ତାଙ୍କ ପ୍ରିୟ ସାଥୀ କୁକୁରଟି କୁଆଡ଼େ ଅଦୃଶ୍ୟ ହୋଇଯାଇଛି । ଯୁଧିଷ୍ଠିରଙ୍କୁ ଚାହିଁ ଧର୍ମଦେବ କହିଲେ, "ପୁତ୍ର, ତୁମେ ବାସ୍ତବରେ ଧାର୍ମିକ, ନ୍ୟାୟବନ୍ତ ଓ ବୁଦ୍ଧିମାନ । ତୁମ ପରି ଲୋକ ସ୍ୱର୍ଗରେ ସ୍ଥାନ ପାଇବା ଉଚିତ । ତୁମେ ଏଥର ପରୀକ୍ଷାରେ ମଧ୍ୟ ଉତ୍ତୀର୍ଣ୍ଣ ହୋଇଥିବାରୁ ତୁମେ ମରଦେହରେ ସ୍ୱର୍ଗକୁ ଯାଇପାରିବ ।" ଏତିକି କହିବା ପରେ ଧର୍ମରାଜ ଅଦୃଶ୍ୟ ହୋଇଗଲେ ।

ଦେବରାଜଙ୍କ ସହିତ ଯୁଧିଷ୍ଠିର ରଥରେ ବସି ସ୍ୱର୍ଗରେ ଉପସ୍ଥିତ ହେଲେ ଓ ଦେଖିଲେ ସମସ୍ତ କୌରବ ଅତ୍ୟନ୍ତ ଆନନ୍ଦରେ ଅପୂର୍ବ ସୁନ୍ଦର ଆସନ ମାନଙ୍କରେ ଶୋଭାପାଉଛନ୍ତି । ସେମାନଙ୍କ ମଧରେ ଦୁର୍ଯ୍ୟୋଧନ ସୂର୍ଯ୍ୟଙ୍କ ପରି ତେଜୀୟାନ୍ ଦେଖାଯାଉଛନ୍ତି । ମାତ୍ର ସେ ତାଙ୍କ ସ୍ତ୍ରୀ କିମ୍ବା ଭାଇମାନଙ୍କୁ ଦେଖିବାକୁ ନପାଇ ଚକିତ ହୋଇଉଠିଲେ । ସେ ଇନ୍ଦ୍ରଦେବଙ୍କୁ ଚାହିଁ କହିଲେ, "ହେ ଦେବରାଜ, ମହାପାପୀ, ଦୁରାତ୍ମା ଦୁର୍ଯ୍ୟୋଧନ ଲାଗି ଆମ୍ଭେମାନେ ଅକଥନୀୟ ଦୁର୍ଦ୍ଦଶା ଭୋଗିଲୁ । ଶେଷରେ ମହାଭାରତ ଯୁଦ୍ଧରେ ବନ୍ଧୁ, ପୁତ୍ର ଓ କୁଟୁମ୍ବମାନଙ୍କ ମୃତ୍ୟୁ ଜନିତ ଦୁଃଖ ସହିବାକୁ ପଡ଼ିଲା । ଏହି ନିର୍ଲ୍ଲଜ ଦୁର୍ଯ୍ୟୋଧନ ସତୀ ଦ୍ରୌପଦୀଙ୍କୁ କୁରୁସଭା ଆଗରେ ଉଲଗ୍ନ କରିବାପାଇଁ ଆଦେଶ ଦେଇ ତାଙ୍କୁ ଘୋର ଅପମାନ ଦେଇଥିବା କଥା ସ୍ମରଣକଲେ ଏବେ ମଧ ମୋ ଦେହ ଶିହରୀ ଉଠୁଛି । ଏପରି ମହାପାପୀଙ୍କୁ ଆପଣ ସ୍ୱର୍ଗରେ ସ୍ଥାନ ଦେଇ ପାରିଲେ, ଅଥଚ ମୋ ଧର୍ମପତ୍ନୀ ଓ ଭାଇ ମାନଙ୍କ ପରି ପୁଣ୍ୟାତ୍ମା ମାନଙ୍କୁ ସ୍ୱର୍ଗରେ

ଡଖାଇ ପାରିଲେ ନାହିଁ? ଧନ୍ୟ ଏ ସ୍ୱର୍ଗ! ଧନ୍ୟ ଆପଣଙ୍କର ବିଚାର । ନାଁ ମୁଁ ଏପରି ଏକ ସ୍ୱର୍ଗରେ ରହିବାକୁ ଚାହେଁ ନାହିଁ। ଯେଉଁଠି ମୋର ପ୍ରିୟ ପରିଜନମାନେ ଅଛନ୍ତି । ମୋତେ ସେଠାକୁ ନେଇ ଚାଲନ୍ତୁ । ପାପିଷ୍ଠ ଦୁର୍ଯ୍ୟୋଧନର ମୁହଁ ଚାହିଁବାକୁ ମଧ୍ୟ ମୋର ଘୃଣା ହେଉଛି ।"

ଏହି ସମୟରେ ନାରଦ ଉପସ୍ଥିତ ହୋଇ କହିଲେ, "ମହାରାଜ ଯୁଧିଷ୍ଠିର । ଏ ହସ୍ତିନା ରାଜପୁରୀ ନୁହେଁ । ଏହା ପବିତ୍ର ସ୍ୱର୍ଗପୁରୀ । ମାନବ ଶରୀରରେ ଏଠାକୁ ଆସିଥିବାରୁ କ୍ରୋଧ ଓ ଘୃଣାଭାବ ଦୂର ହୋଇନାହିଁ । ତୁମେ ମନରୁ ଘୃଣାଭାବ ଦୂର କରି ଦୁର୍ଯ୍ୟୋଧନଙ୍କ ସହିତ ଆନନ୍ଦରେ ରହ । କ୍ଷତ୍ରିୟ ଯଦି ସମ୍ମୁଖ ଯୁଦ୍ଧରେ ପ୍ରାଣଦିଏ, ତେବେ ସେ ସ୍ୱର୍ଗ ଲାଭକରେ । ଦୁର୍ଯ୍ୟୋଧନ ପ୍ରକୃତ ବୀରତ୍ୱର ସହିତ ଯୁଦ୍ଧ କରି ଜୀବନ ଦେଇଥିବାରୁ ତାଙ୍କୁ ସ୍ୱର୍ଗରେ ସ୍ଥାନ ଦିଆଯାଇଛି ।"

ଯୁଧିଷ୍ଠିର ବିରସ ମନରେ କହିଲେ, "ଦେବର୍ଷି, ପାପୀ ଦୁର୍ଯ୍ୟୋଧନକୁ ସ୍ୱର୍ଗଲାଭ ମିଳିଲା । ମୋର ଭାଇମାନେ ଅତ୍ୟନ୍ତ, ଧାର୍ମିକ ଓ ନ୍ୟାୟ ପରାୟଣ ଅଟନ୍ତି । ସେମାନେ ଓ ମୋର ବଡ଼ଭାଇ କର୍ଣ୍ଣ କେଉଁଠି ଅଛନ୍ତି, ଜଣାଇବାକୁ ପ୍ରାର୍ଥନା କରୁଛି । ମହାରାଜ ଦ୍ରୁପଦ, ବିରାଟ ଅଭିମନ୍ୟୁ, ଘଟୋତ୍କଚ, ଦ୍ରୌପଦୀଙ୍କ ପାଞ୍ଚପୁତ୍ର ଓ ନିଜେ ଦ୍ରୌପଦୀ ଯେଉଁଠି ଅଛନ୍ତି ମୋତେ ସେଠାକୁ ନେଇଚାଲନ୍ତୁ । ମୁଁ ସେମାନଙ୍କଠାରୁ ପୃଥକ ହୋଇ ରହିପାରିବି ନାହିଁ । ସେମାନେ ଯେଉଁଠି ଅଛନ୍ତି, ତାହା ହିଁ ମୋ ପାଇଁ ପ୍ରକୃତ ସ୍ୱର୍ଗ ।"

## ଯୁଧିଷ୍ଠିର ନର୍କ ଦର୍ଶନ

ଯୁଧିଷ୍ଠିରଙ୍କ ବ୍ୟାକୁଳତା ଲକ୍ଷ୍ୟ କରି ଇନ୍ଦ୍ର କହିଲେ, "ଯଦି ଆପଣ ପ୍ରକୃତରେ ସେମାନଙ୍କ ସହିତ ରହିବାକୁ ଚାହୁଁଛନ୍ତି, ତେବେ ଏହି ଦେବଦୂତଙ୍କ ସହିତ ଯାଆନ୍ତୁ, ସେ ଆପଣଙ୍କୁ ସାକ୍ଷାତ କରାଇଦେବେ ।"

ଯୁଧିଷ୍ଠିର ଜଣେ ଦେବଦୂତଙ୍କ ପଛେ ପଛେ ଚାଲିବାରେ ଲାଗିଲେ । ଅଳ୍ପବାଟ ଯିବାପରେ ଚାରିଆଡ଼ ଅନ୍ଧାର ଦେଖାଗଲା । ଶବର ପଚା ଗନ୍ଧରେ ଶ୍ୱାସରୁଦ୍ଧ ହେଲାପରି ବୋଧ ହେଲା । ମଣିଷ ରକ୍ତରେ ବାଟ ଅତ୍ୟନ୍ତ ଖସଡ଼ା ହୋଇଥିଲା । ଏଣେ ତେଣେ କୁଢ଼ କୁଢ଼ ହାଡ଼ ଓ ମୁଣ୍ଡ ବାଳରେ ଗଦାମାନ ଥିଲା । ଚାରି ଦିଗରୁ ବିକଳ ଚିତ୍କାର ଶୁଣି ଯୁଧିଷ୍ଠିର ବିଚଳିତ ହୋଇ ସାଥୀରେ ଥିବା ଦେବଦୂତଙ୍କୁ ପଚାରିଲେ, "ମହାଶୟ, ଏପରି ଭାବରେ ଆଉ କେତେଦୂର ଯିବାକୁ ପଡ଼ିବ? କେଉଁଠି ମୋ ପ୍ରିୟଜନମାନେ ଅଛନ୍ତି? ମୁଁ ଏପରି ପଥରେ ଅଧିକ ଅଗ୍ରସର ହୋଇପାରୁନାହିଁ । ମୋର ମୁଣ୍ଡ ବୁଲାଇ ହୋଇଯାଉଛି । କ୍ରମେ ନିଃଶ୍ୱାସ ବନ୍ଦ ହୋଇଗଲାପରି ବୋଧ ହେଲାଣି ।"

ଦେବଦୂତ କହିଲେ, "ମହାରାଜ, ଦେବରାଜ ଇନ୍ଦ୍ର କହିଛନ୍ତି, "ଯୁଧିଷ୍ଠିର ଯେଉଁଠାରୁ ଫେରିବାକୁ ଚାହିଁବେ, ତାଙ୍କୁ ସେହି ସ୍ଥାନରୁ ହିଁ ଫେରାଇ ଆଣିବ । ଯଦି ଅଧିକ ଅଗ୍ରସର ହେବାପାଇଁ ଆପଣ ଇଚ୍ଛା କରୁନାହାନ୍ତି, ତେବେ ଏହିଠାରୁ ପଛକୁ ଫେରିଚାଲନ୍ତୁ ।"

ଯୁଧିଷ୍ଠିର ଏପରି ଏକ ପୂତିଗନ୍ଧମୟ କଦର୍ଯ୍ୟ ସ୍ଥାନରେ ଅଧିକ ସମୟ ନରହି ଫେରିବାକୁ ବାହାରିଲେ । ଏତିକିବେଳେ କାତର କଣ୍ଠରୁ ଶୁଣାଗଲା, "ମହାରାଜ ଯୁଧିଷ୍ଠିର । ଯେତେକଷ୍ଟ ହେଲେ ମଧ୍ୟ ଆପଣ ଆଉ କିଛି ସମୟ ଦୟାକରି ଏଠାରେ ରହିଯାଆନ୍ତୁ । ଆପଣ ଏଠାରେ ପାଦ ଦେଇଥିବା ସମୟରୁ ହିଁ ଆମ୍ଭେମାନେ ଟିକିଏ ସୁଗନ୍ଧ ପବନ ପାଇଁ ପାରୁଛୁ । ଶରୀରରେ ଯେଉଁ ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଥିଲୁ ତାହା ମଧ୍ୟ ଆପଣ ଆସିବା ପରଠାରୁ ଦୂର ହୋଇଯାଉଛି । ଆମ୍ଭେମାନେ ଅପାର ଆନନ୍ଦ ଲାଭ କରୁଛୁ । ଆମ ପାଇଁ ଆପଣ ଟିକିଏ କଷ୍ଟ ସହ୍ୟ କରିବାକୁ ପ୍ରାର୍ଥନା କରୁଛୁ । ଯୁଧିଷ୍ଠିର ଦୟାର ଅବତାର, ଦୁଃଖୀର ଦୁଃଖ ଦୂର କରିବା ପାଇଁ ସେ ନିଜେ ଜୀବନ ମଧ୍ୟ ଉତ୍ସର୍ଗ କରିପାରନ୍ତି । ଗୁଡ଼ିଏ ଲୋକଙ୍କର ଆକୁଳ ପ୍ରାର୍ଥନାରେ ତାଙ୍କ ହୃଦୟ ତରଳି ଗଲା । ସେ ଆଉ ପଛକୁ ନଫେରି ସେହି ସ୍ଥାନରେ ଠିଆ ହୋଇରହିଲେ । କେଉଁମାନେ କାହିଁକି ଏପରି ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୋଇ

ଆର୍ତ୍ତନାଦ କରୁଛନ୍ତି, ତାହା ଜାଣିବା ପାଇଁ ସେ ବ୍ୟଗ୍ର ହୋଇ ପଚାରିଲେ, "ଆପଣମାନେ କିଏ ? କାହିଁକି ଏ ନର୍କ କୁଣ୍ଡରେ ପଡ଼ି ଅସହ୍ୟ ଯନ୍ତ୍ରଣା ଭୋଗ କରୁଛନ୍ତି ?"

ସଂଗେ ସଂଗେ ଉତ୍ତର ଆସିଲା, "ମୋତେ ଚିହ୍ନନ୍ତୁ, ମୁଁ କର୍ଣ୍ଣ, ମୁଁ ଆପଣଙ୍କ ସାନଭାଇ ଭୀମ, ମୁଁ ଅର୍ଜୁନ, ମୁଁ ଦ୍ରୌପଦୀ, ମୁଁ ଅଭିମନ୍ୟୁ, ମୁଁ ସହଦେବ, ମୁଁ ନକୁଳ, ମୁଁ ଆପଣଙ୍କ ପୁତ୍ର ପ୍ରତିବିନ୍ଧ୍ୟ, ଆମେ ଦ୍ରୌପଦୀଙ୍କ ଅନ୍ୟ ଚାରିପୁତ୍ର । ଏହିପରି ଭାବରେ ସମସ୍ତେ ନିଜ ନିଜର ପରିଚୟ ପ୍ରଦାନ କରିବାରେ ଲାଗିଲେ ।

ଯୁଧିଷ୍ଠିରଙ୍କ ପ୍ରାଣ ଆକୁଳ ହୋଇଉଠିଲା । ଯନ୍ତ୍ରଣାରେ ଛଟପଟ ହୋଇ ସେ ଭାବିଲେ ଏ କି ପ୍ରକାର ସ୍ୱର୍ଗ ? ଦେବତାମାନଙ୍କ ବିଚାରକୁ ମଧ୍ୟ ଧନ୍ୟ କହିବାକୁ ହେବ । ଜୀବନ ଯାକ ଘୋର ପାପ କରି ଦୁର୍ଯ୍ୟୋଧନ ସ୍ୱର୍ଗ ସୁଖର ଅଧିକାରୀ, ଅଥଚ ପୁଣ୍ୟାତ୍ମା କର୍ଣ୍ଣ, ମୋର ଭାଇମାନେ ଓ ସତୀ ଦ୍ରୌପଦୀ ନର୍କ କୁଣ୍ଡରେ ପଡ଼ି ସଢ଼ୁଛନ୍ତି । ଏସବୁ କଅଣ ମୁଁ ଦେଖୁଛି ? ଏହା ସ୍ୱପ୍ନ ନୁହେଁ ତ ? ମୁଁ କ'ଣ ପାଗଳ ହୋଇଯାଇଛି ?"

ଯୁଧିଷ୍ଠିର ଦେବାତାମାନଙ୍କ ଏ ପ୍ରକାର କାର୍ଯ୍ୟକୁ ନିନ୍ଦା କରି କହିଲେ, "ହେ ଦେବଦୂତ, ଆପଣ ଦେବରାଜଙ୍କ ପାଖକୁ ଫେରିଯାଆନ୍ତୁ । ତାଙ୍କୁ କହିବେ, "ଯୁଧିଷ୍ଠିର ଆଉ ଆଗକୁ ଯିବାକୁ ବା ପଛକୁ ଫେରିବାକୁ ଚାହୁଁନାହାନ୍ତି । ଯେଉଁଠାରେ ତାଙ୍କର ପ୍ରିୟ ପରିଜନମାନନେ ଅଛନ୍ତି, ସେହିଠାରେ ସେହିମାନଙ୍କ ସହିତ ରହିବାକୁ ସେ ସ୍ଥିର କରିଛନ୍ତି । ଆହୁରି କହିବ, ମୋ ଆସିବା ଫଳରେ ମୋ ଆତ୍ମୀୟ ସ୍ୱଜନ ମାନଙ୍କର କଷ୍ଟ ଦୂର ହୋଇଯାଇଛି ଓ ସେମାନେ ଆନନ୍ଦରେ ଅଛନ୍ତି । ତେଣୁ ସେମାନଙ୍କୁ ଛାଡ଼ି ମୁଁ ଅନ୍ୟ କେଉଁ ସ୍ଥାନକୁ ଯିବାକୁ ଇଚ୍ଛା କରୁନାହିଁ । ଏହାହିଁ ମୋର ପ୍ରକୃତ ସ୍ୱର୍ଗ ।"

ଯୁଧିଷ୍ଠିରଙ୍କ ତୁଣ୍ଡରୁ କଥା ସରିନାହିଁ ହଠାତ୍ ସେଠାରେ ଦେବରାଜଙ୍କ ସହିତ ଧର୍ମଦେବତା ଉପସ୍ଥିତ ହୋଇ କହିଲେ, "ବତ୍ସ, ତୃତୀୟଥର ପାଇଁ ମଧ୍ୟ ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲ । ଏହା କମ୍ ଗୌରବର କଥା ନୁହେଁ । ସ୍ମରଣ ଥିବ, ପ୍ରଥମ ଥର ମୁଁ ଯକ୍ଷ ରୂପରେ ତୁମକୁ କେତେକ ପ୍ରଶ୍ନ ପଚାରି ଯଥାର୍ଥ ଉତ୍ତର ପାଇଥିଲି । ଦ୍ୱିତୀୟରେ ଏକ କୁକୁର ରୂପେ ସାଥୀ ହୋଇ ତୁମର ନିଷ୍ଠା ପରୀକ୍ଷା କରିଥିଲି । ଏବେ ତୃତୀୟଥର ପାଇଁ ପରୀକ୍ଷା କରିନେଲି । ନିଜର ଭାଇମାନଙ୍କ ପାଇଁ ତୁମେ ନର୍କ ପରି ଏକ କଦର୍ଯ୍ୟ ଓ ପୂତି ଗନ୍ଧମୟ ସ୍ଥାନରେ ରହିବାକୁ ମଧ୍ୟ ଘୃଣା ବୋଧ କରୁନାହଁ । ଏହାହିଁ ତୁମର ସର୍ବଶ୍ରେଷ୍ଠ ପରୀକ୍ଷା ଓ ତୁମ ମହତ ଗୁଣର ପରିଚୟ । ଅଳ୍ପ ସମୟ ପାଇଁ ତୁମେ ନର୍କ କୁଣ୍ଡ ନିକଟରେ ରହିଛ । ପୃଥିବୀରେ କରିଥିବା ରାଜାମାନଙ୍କୁ ନର୍କର ଯନ୍ତ୍ରଣା ଅନୁଭବ କରିବା ଉଚିତ । ଏହି କାରଣରୁ ତୁମକୁ ଅଳ୍ପ ସମୟ ପାଇଁ ନର୍କ ଯନ୍ତ୍ରଣା ସହିବାକୁ ପଡ଼ିଲା । ପ୍ରତ୍ୟେକ ମନୁଷ୍ୟର କିଛି ପାପ ଓ କିଛି ପୁଣ୍ୟ ଥାଏ । ସେଥିଲାଗି ପ୍ରତ୍ୟେକଙ୍କୁ କିଛି ସମୟ ପାଇଁ ନର୍କ ଦର୍ଶନ କରବାକୁ ପଡ଼ିଥାଏ । ଯେଉଁ ବ୍ୟକ୍ତି ଅଧିକ ପାପ ଓ ଅଳ୍ପ ପୁଣ୍ୟ ଅର୍ଜନ କରିଥାଏ, ତାକୁ ପ୍ରଥମେ କିଛି ସମୟ ସ୍ୱର୍ଗ ସୁଖ ମିଳି ପରେ ନର୍କ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼େ । ଯେଉଁ ଲୋକର ପୁଣ୍ୟ ପରିମାଣ ଅଧିକ ଓ ପାପର ଭାଗ ସାମାନ୍ୟ ଥାଏ, ତାକୁ ଅଳ୍ପ ସମୟ ନର୍କର ଦୁଃଖ ଭୋଗ କରିବାକୁ ପଡ଼ି, ପରେ ସ୍ୱର୍ଗ ସୁଖ ମିଳେ । ସେହି କାରଣରୁ ନର୍କର କଷ୍ଟ କିପରି ତାହା ତୁମକୁ ଜଣାଇ ଦିଆଗଲା । ପ୍ରସିଦ୍ଧ ଯୋଦ୍ଧା ଭୀମ, ଅର୍ଜୁନ, କର୍ଣ୍ଣ ଆଦି ତୁମର ଭାଇମାନେ କେବେହେଲେ ନର୍କରେ ନାହାନ୍ତି । ସେମାନେ ଅଖଣ୍ଡ ସ୍ୱର୍ଗ ସୁଖ ଭୋଗ କରୁଛନ୍ତି । ତୁମକୁ ପରୀକ୍ଷା କରିବା ପାଇଁ ଏକ ମାୟା ସୃଷ୍ଟି କରାଯାଇଥିଲା ମାତ୍ର । ବାସ୍ତବରେ ଏହା ଦେବଲୋକ ଅଟେ । ଧର୍ମରାଜ ଏପରି କହିବାପରେ ଯୁଧିଷ୍ଠିର ଦେଖିଲେ ସେଠାରେ ତାଙ୍କର ସବୁଭାଇ ଅତ୍ୟନ୍ତ ପ୍ରସନ୍ନ ଚିତ୍ତରେ ବସିରହିଛନ୍ତି । ଯୁଧିଷ୍ଠିରଙ୍କ ମନରେ ଅପାର ଶାନ୍ତି ଜାତହେଲା । ଧର୍ମଙ୍କ ପରାମର୍ଶ କ୍ରମେ ସ୍ୱର୍ଗର ଗଙ୍ଗା ମନ୍ଦାକିନୀର ପବିତ୍ର ଜଳରେ ସ୍ନାନ କରିବା ପରେ ଯୁଧିଷ୍ଠିରଙ୍କ ରକ୍ତ ମାଂସର ଦେହ ଆଉ ରହିଲା ନାହିଁ । ସେ ଦେବ ଶରୀର ଲାଭକଲେ । ନର ଦେହ ତ୍ୟାଗ କରିବା ସଂଗେ ସଂଗେ ଈର୍ଷା, କ୍ରୋଧ, ଘୃଣା, ଶତ୍ରୁତା ଆଦି ମାନବିକ ଦୁର୍ବଳତା ଗୁଡ଼ିକ ଆପେ ଆପେ ଦୂର ହୋଇଗଲା । ଯୁଧିଷ୍ଠିରଙ୍କ ମନ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ସେ ପ୍ରକୃତ ଶାନ୍ତି ଓ ସ୍ୱର୍ଗ ଲାଭକଲେ ।

କାଶୀନାଥ ନାୟକ ୧୯୧୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ଦୀର୍ଘ ୪୫ ବର୍ଷ ଶିକ୍ଷକ ଭାବରେ କାର୍ଯ୍ୟ କରିବା ପରେ ସେ ୧୯୮୦ ମସିହାରେ ଅବସର ଗ୍ରହଣ କରିଥିଲେ । ୧୯୬୨ ମସିହାରେ ଶିକ୍ଷା ଓ ପାଠ୍ୟପୁସ୍ତକ ରଚନା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ତାଙ୍କୁ ରାଷ୍ଟ୍ରପତି ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଇଥିଲା । ତାଙ୍କ ଦ୍ୱାରା ଲିଖିତ ୮୦ ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇଅଛି । ସେଥିମଧ୍ୟରୁ ୧୪ ଟିକୁ ପାଠ୍ୟପୁସ୍ତକ ଭାବରେ ସ୍ୱୀକୃତି ମିଳିଥିଲା । ତାଙ୍କର ଆତ୍ମଜୀବନୀ "ଶିକ୍ଷକର ଜୀବନସ୍ମୃତି" ଶିକ୍ଷାସନ୍ଧାନଙ୍କ ଦ୍ୱାରା ୨୦୦୫ ମସିହାରେ ପ୍ରକାଶିତ ହୋଇଅଛି । ୨୦୦୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀଙ୍କ ତରଫରୁ ତାଙ୍କୁ ସମ୍ମାନିତ କରାଯାଇଥିଲା । ଏହି କୃତବିଦ୍ୟ ଶିକ୍ଷକ ଓ ଶିଶୁ ସାହିତ୍ୟିକ ଜାନୁୟାରୀ ୬, ୨୦୦୮ ରେ ଇହଲୀଳା ସମ୍ବରଣ କରିଛନ୍ତି

ମୂଲ୍ୟ : ଟ. ୨୦୦/-
ଆଇ.ଏସ. ବି. ଏନ୍ - ୧୩ : ୯୭୮-୮୧-୮୭୯୮୨-୪୨-୫